ଲେଖକଙ୍କର ପୂର୍ବ ପ୍ରକାଶିତ ପୁସ୍ତକ :

- ଆମ ପ୍ରିୟ ଫୁଲ ଫଳ
- ମଧୁମଣ୍ଡନ
- ମଧୁଶାୟୀ ଶ୍ରୀ ନାରାୟଣ ଭକ୍ତି ସୁମନ
- ନିବନ୍ଧ ବିନ୍ଦୁ ବିସର୍ଗ
- ସାରସତ ସମୀକ୍ଷଣ
- ସାରଳା ସମୀକ୍ଷଣ
- ଭକ୍ତି ସୁମନ ଶତକ
- ଶ୍ରୀଦୁର୍ଗା ଭକ୍ତି ସୁମନ ଶତକ
- ସମର୍ପଣ ସୁମନ ଶତକ
- ଭଜନ ସୁମନ ଶତକ
- ଅମୃତ ବିନ୍ଦୁ
- ଅମୃତ ଝର
- ଅମୃତ ତଟିନୀ
- ବେଦାନ୍ତ ଅଧ୍ୟୟନ ଓ ଅନ୍ୟାନ୍ୟ ପ୍ରବନ୍ଧ
- ସୁବୋଧ ଜୀବନ ସରଣୀ
- ନିବେଦନ ସୁମନ ଶତକ
- ପ୍ରାର୍ଥନା
- ଦିବ୍ୟ ଜ୍ୟୋତିଧାରା

# ଭାରତୀୟ ସନ୍ଥ ପରଂପରା

ଲେଖକ- ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା
ବାରବାଟୀ, ଧର୍ମଶାଳା, ଯାଜପୁର, ଫୋନ୍: ୯୮୬୧୭୨୨୨୫୮

ପ୍ରକାଶକ : **କୃଷ୍ଣା**
ଛାରକା, ଧର୍ମଶାଳା, ଯାଜପୁର, ଫୋନ୍: ୯୨୩୮୫୧୯୮୧୫

ପ୍ରଥମ ସଂସ୍କରଣ : ୨୬/୦୧/୨୦୨୩, ଶ୍ରୀପଂଚମୀ
ମୂଲ୍ୟ : ଟ୩୫୧/-

# BHARATIA SANTHA PARAMPARA

BY
Sushanta Kumar Panda , Reader
Barabati, Dharmasala, Jajpur, Ph: 9861722258

**Published by: KRUSNA**
Jaraka, Dharamasala, Jajpur, Ph: 9238519815
E-mail. krusnadtp@gmail.com
**First Edition : 26 / 01 / 2023, Shreepanchami**
Price **Rs. 351/**

**ISBN. 9789393178206**



ଓଁ

ଗ୍ରନ୍ଥ ନାମ 'ଭାରତୀୟ ସନ୍ଥ ପରଂପରା' । ଏହା ଦୁଇ ଭାଗରେ ପ୍ରକାଶିତ ହେବ । ପ୍ରଥମ ଭାଗରେ ପ୍ରାଚୀନ ଭାରତ ଏବଂ ଆଧୁନିକ ଓଡ଼ିଶାର ବହୁ ସନ୍ଥଙ୍କର ଜୀବନ ଦର୍ଶନ ସଂକ୍ଷେପରେ ଆଲୋଚିତ । ସନ୍ଥ କିଏ ? ଭାରତୀୟ ଭାଷାରେ ଏବଂ ଲୋକ ମୁଖରେ "ସାଧୁ- ସନ୍ଥ" ଶବ୍ଦ ପ୍ରୟୋଗ ବହୁତ ହୁଏ । ସାଧୁ ଓ ସନ୍ଥ ସମପର୍ଯ୍ୟାୟବାଚୀ ଭାବରେ ନିଆ ଯାଇଥାଏ ।

ସନ୍ଥ ଓଡ଼ିଆ ଶବ୍ଦ । ଏହାର ମୂଳ ସଂସ୍କୃତ ଭାଷାରେ ସନ୍ତ । ଓଡ଼ିଆ ଭାଷାରେ ଏକ ସଂକୀର୍ଣ୍ଣ ଶବ୍ଦ ମହନ୍ତ କିନ୍ତୁ ଏହାର ମୂଳ ସଂସ୍କୃତ ଶବ୍ଦ ମହାନ୍ତ । ମହାନ୍ ଶବ୍ଦରୁ ମହାନ୍ତ ବା ମହନ୍ତ ଏବଂ ସନ୍ ଶବ୍ଦରୁ ସନ୍ତ ।

ସନ୍ଥ ଶବ୍ଦର ଅର୍ଥ ଯାହା ଅଭିଧାନରେ ମିଳେ- ତାହା ହେଲା ସାଧୁ, ଧାର୍ମିକ, ମହାପୁରୁଷ ଇତ୍ୟାଦି । ସନ୍ଥଙ୍କର କୌଣସି ସୀମାଂକିତ ବୟସ ନାହିଁ- ଯଥା ବାଳସନ୍ଥ, ଯୁବାସନ୍ଥ । ସନ୍ଥଙ୍କର କୌଣସି ନିର୍ଦ୍ଦିଷ୍ଟ ଆଶ୍ରମ ନାହିଁ- ଯଥା ଗୃହସ୍ଥ ସନ୍ଥ କିମ୍ବା ଗୃହତ୍ୟାଗୀ ସନ୍ଥ ମଧ୍ୟ ହୋଇପାରନ୍ତି । ସନ୍ଥଙ୍କର କୌଣସି ଲିଙ୍ଗ ବିଶେଷତା ମଧ୍ୟ ନାହିଁ ।

ସନ୍ଥଙ୍କର ଜୀବନ, କର୍ମ, ଶିକ୍ଷା ଆଦି କେବଳ କୌଣସି ନିର୍ଦ୍ଦିଷ୍ଟ ଭୂଖଣ୍ଡ ପାଇଁ ମଧ୍ୟ ନୁହେଁ । ଯିଏ ଭଗବତ୍ ନିଷ୍ଠ, ଭଗବତ୍ ପ୍ରାପ୍ତ, ଭଗବତ ପ୍ରେମୀ ମହାପୁରୁଷ ତାଙ୍କ ଜୀବନ ସାର୍ବଭୌମ ଏବଂ ସର୍ବଭୂତ ହିତେ ରତ ସମସ୍ତ ପ୍ରାଣୀ (ମନୁଷ୍ୟ, ମନୁଷ୍ୟେତର ଏପରିକି ବୃକ୍ଷଲତା)ଙ୍କ ପାଇଁ ମଧ୍ୟ ।

ବର୍ତ୍ତମାନର ଯୁଗ ନୈତିକ ଅବକ୍ଷୟ, ଆଦର୍ଶ ହୀନ, ଭୋଗବିଳାସ ପ୍ରିୟ, ବହିର୍ମୁଖୀ ଯୁଗ । ବିଶେଷ କରି ଭାରତୀୟ ସଂସ୍କୃତି, ସମାଜ ଓ ଜୀବନଧାରା ଏହି ଘୂର୍ଣ୍ଣି ମଧ୍ୟରେ ତ୍ରସ୍ତ । ଏହିପରି ଏକ ସଂକଟମୟ କାଳରେ ସାଧୁସନ୍ଥମାନଙ୍କର ଜୀବନୀ, ବାଣୀ ଓ ଆଦର୍ଶ ଏକ ମହାନ ପାଥେୟ । ସାଧୁ ସନ୍ଥଙ୍କର ଜୀବନଧାରାକୁ ନେଇ ସଂକଳିତ ଏହି ଗ୍ରନ୍ଥ ।

ଏହି ଗ୍ରନ୍ଥର ଗ୍ରନ୍ଥନା କରିଛନ୍ତି ପ୍ରବୀଣ ଅଧ୍ୟାପକ, ସାହିତ୍ୟିକ ଏବଂ କର୍ମକ୍ଷେତ୍ରରୁ ଅବସର ନେବା ପରେ ମଧ୍ୟ ଯୋଗ, ସାଧନା, ବୈଦିକ କର୍ମକାଣ୍ଡ, ଶ୍ରୀମଦ୍ ଭଗବତ୍ ଗୀତାର ବାଣୀ ପ୍ରଚାରରେ ସକ୍ରିୟ ବିଜ୍ଞ ବ୍ୟକ୍ତିତ୍ୱ ଶ୍ରୀଯୁକ୍ତ ସୁଶାନ୍ତ କୁମାର ପଣ୍ଡା । ଅବିଭକ୍ତ କଟକ (ବର୍ତ୍ତମାନ ଯାଜପୁର) ଜିଲ୍ଲାରେ ଜନ୍ମିତ ପ୍ରାଧ୍ୟପକ ପଣ୍ଡା ନିଜ ଶିକ୍ଷାଦାନ ବୃତ୍ତି ସହିତ ସାରସ୍ୱତ ସାଧନାରେ ଲିପ୍ତ ଏବଂ ବିଂଶାଧିକ ବହୁ ସୁନ୍ଦର ଗ୍ରନ୍ଥମାନଙ୍କର ସ୍ରଷ୍ଟା ସେ । କହିବା ବାହୁଲ୍ୟ, ଶିକ୍ଷାଲାଭ କରିବା କାଳରେ, ରେଭେନ୍ସା ମହାବିଦ୍ୟାଳୟ (ବର୍ତ୍ତମାନ ବିଶ୍ୱବିଦ୍ୟାଳୟ)ରେ ଏବଂ ଏପରିକି ନୂତନ ସ୍ନାତକୋତ୍ତର ଛାତ୍ରାବାସରେ, ସେ ମୋର ଅଗ୍ରଜ ।

ତାଙ୍କର ସାହିତ୍ୟକୃତି, ସମାଜର ପରିବର୍ତ୍ତନ ଏବଂ ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟବୋଧର ସୁରକ୍ଷା ଦିଗରେ ସତତ ପ୍ରଚେଷ୍ଟା ଫଳବତୀ ହେଉ ।

ଲେଖକ, ପ୍ରକାଶିକା ପ୍ରେମଲତା ମହାରଣା (କୃଷ୍ଣା) ଓ ପାଠକଙ୍କର ସର୍ବବିଧ ମଂଗଳ ପାଇଁ ବିଭୁ ପଦାରବିନ୍ଦରେ ପ୍ରାର୍ଥନା ।

**ବିନୀତ**

ପ୍ରଜ୍ଞାନାନନ୍ଦ

**ଓଁ**

**ଶ୍ରୀହରିହରାନନ୍ଦ ଗୁରୁକୁଳମ୍**
**ବାଲିଘାଇ, ପୁରୀ**



# ଆଶୀର୍ବଚନ

ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡାଙ୍କ ରଚିତ ଭାରତୀୟ ସନ୍ଥ ପରଂପରା ଗ୍ରନ୍ଥରେ ଯୁଗେ ଯୁଗେ ଭାରତୀୟ ସଂଥ, ମହାପୁରୁଷ, ସାଧୁ, ମହାତ୍ମାମାନେ କିପରି ସମାଜକୁ ମଧୁମୟ କରିବାପାଇଁ ବ୍ୟକ୍ତି, ପରିବାର ତଥା ସମାଜକୁ ଶୃଂଖଳିତ କରିବାର ପ୍ରେରଣା-ପ୍ରଚୋଦନା ଦେଇ ଆସିଛନ୍ତି ସେ ସକଳର ସମ୍ୟକ ସୂଚନା ଉପସ୍ଥାପିତ କରିଛନ୍ତି । ଧୂଳି ଧୂସରିତ ଧରଣୀରେ ଅନ୍ୟମାନଙ୍କ ପରି ବିଚରଣ କରୁଥିବା ମହାପୁରୁଷ ଦିବ୍ୟଲୋକରେ ସଂଚରଣ କରି ତାଙ୍କ ସାଧାରଣ କର୍ତ୍ତବ୍ୟ କର୍ମ ମଧରେ ଅସାଧାରଣ ଚମତ୍କାର ସୃଷ୍ଟି ପ୍ରଦର୍ଶନରେ ସାଧାରଣ ବ୍ୟକ୍ତି ମନରେ ତାଙ୍କ ପ୍ରତି ଶ୍ରଦ୍ଧା, ଆନ୍ତରିକତା, ଭକ୍ତି ସୃଷ୍ଟି କରିଥାନ୍ତି । 'ଜନ୍ମ କର୍ମ ଚମେ ଦିବ୍ୟମ୍' ବୋଲି ଗୀତାରେ କୁହାଯାଇଛି । ପୁନଃ 'ଅବଜାନାନ୍ତି ମାଂ ମୂଢ଼ାଃ' । ସେହି କାଳଖଣ୍ଡରେ ତାଙ୍କୁ ଶଂଶୟ କରିବା ବ୍ୟକ୍ତି ମଧ ଉଣା ନାହାଁନ୍ତି । ସବୁକଥାରେ ଚାକ୍ଷୁଷ ପ୍ରମାଣ ଅଥବା ଅନୁଭବ୍ୟ ପ୍ରମାଣ ସଂଭବ ନୁହେଁ; କାରଣ ଆମ ଦୃଷ୍ଟି, ଶ୍ରବଣଶକ୍ତି, ସ୍ପର୍ଶ ଆଦି ଅନୁଭବର ମଧ ଏକ ସୀମା ଅଛି । ଏ ସମସ୍ତ ଅନୁଭବ ସାମର୍ଥ୍ୟ ବାହାରେ ଯେ ଦୁନିଆ ନାହିଁ; ଏହା ନୁହେଁ, ମହାନୁଭବ ମହାପୁରୁଷମାନେ ସେହି ପରିବ୍ୟାପ୍ତ ଅସାଧାରଣ ଅନନୁଭବ୍ୟ ସ୍ତରରେ ବିହାର କରିଥାନ୍ତି ।

ଭାରତର ସର୍ବତ୍ର ତଥା ସମଗ୍ର ବିଶ୍ୱରେ ପ୍ରତ୍ୟେକ ଦେଶ, ଜାତି ମଧରେ ଏହିପରି ଦିବ୍ୟ ଚେତନାରେ ଅବଗାହନ କରୁଥିବା ମହାତ୍ମାମାନଙ୍କୁ ଦେଖିବାକୁ ମିଳିଥାଏ । 'ବର୍ଷାଣାଂ ଭାରତ ଶ୍ରେଷ୍ଠଃ' ବୋଲି କୁହାଯାଇଛି । ଭାରତର ଧୂଳିମାଟି ପବିତ୍ର (ବିଷ୍ଣୁପୁ, ଦ୍ୱିତୀୟ ଅଂଶ; ଅ-୪) । 'ସଂଭବାମି ଯୁଗେ ଯୁଗେ' ନ୍ୟାୟରେ ଈଶ୍ୱରଙ୍କ କଳା, ବିଭୂତି, ଅଂଶ ନେଇ ମହାପୁରୁଷମାନଙ୍କର ଆବିର୍ଭାବ । ଐହିକ, ପାରତ୍ରିକ ସନ୍ତାପରୁ ମୋହଗ୍ରସ୍ତ ମାନବକୁ ସତ୍ମାର୍ଗର ଆଲୋକ ଦର୍ଶନ କରାନ୍ତି । ଫଳତଃ ଅଧିକାରୀ ଭେଦରେ ବିବିଧ ଭକ୍ତମାନଙ୍କର କଲ୍ୟାଣ ସାଧିତ ହୋଇଥାଏ ।

ପୁରାଣ, ଇତିହାସ ଅନୁଧ୍ୟାନ କଲେ ଜଣାଯାଏ ଯେ ସନ୍ଥର ଜାତି ନାହିଁ, ସମଗ୍ର ମାନବ ସମାଜକୁ ଈଶ୍ୱରଙ୍କ ସଂତାନ ଭାବେ ବିଚାରି ସେହି ଧାରାରେ ଭକ୍ତମାନଙ୍କୁ ସଂବୋଧିତ କରୁଥିବାର ଦେଖାଯାଏ । ଆର୍ତ୍ତ ଭକ୍ତମାନଙ୍କର ସଂତାପ ନିବାରଣ ଯେପରି କରିଥାନ୍ତି, ଅନୁରୂପ ଭାବେ ଜିଜ୍ଞାସୁ ଭକ୍ତମାନଙ୍କ ଜିଜ୍ଞାସା ପରିଶାନ୍ତ କରିବାରେ ସେମାନଙ୍କର ପଟାନ୍ତର ନାହିଁ । ବିଶେଷ ଲକ୍ଷ୍ୟଣୀୟ ଏହିକି ଶାସ୍ତ୍ରବାକ୍ୟକୁ ବୋଧଗମ୍ୟ କରାଇବା ପାଇଁ ସ୍ୱୟଂ ପ୍ରତ୍ୟକ୍ଷ, ଅନୁଭବ୍ୟ ଦୃଷ୍ଟାନ୍ତର ପ୍ରୟୋଗ କରିଥାନ୍ତି । ଫଳତଃ ତାହା ଶାସ୍ତ୍ର ଜ୍ଞାନ ନହୋଇ ଅନୁଭବ୍ୟ ବିଜ୍ଞାନରେ ପରିଣତ ହୋଇଥାଏ । ଭାରତ 'ଇତିହାସ ବିମୁଖ ଜାତି' ହୋଇଥିବାରୁ ବହୁ ମହାନୁଭବଙ୍କ ଧାମ, ସମୟ ମଧ୍ୟ ନିର୍ଣ୍ଣିତ ହୋଇ ପାରିନାହିଁ । ସେପରି ସ୍ଥଳେ ବିବିଧ ଅଂଚଳରେ ଭିନ୍ନଭିନ୍ନ କାଳରେ ଆବିର୍ଭାବ ହୋଇଥିବା ମହାପୁରଷମାନଙ୍କୁ ଜାଣିବାର ଖୁବ୍ କମ୍ ସୁଯୋଗ ରହିଛି ।

ଶ୍ରୀ ପଣ୍ଡା ବିବିଧ ଗ୍ରନ୍ଥ ଅବଲମ୍ବନରେ ପ୍ରସିଦ୍ଧ ମହାପୁରୁଷମାନଙ୍କ ସଂକ୍ଷିପ୍ତ ଜୀବନ-ଦର୍ଶନ ରଚନା କରିବାରେ ପ୍ରୟାସୀ ହୋଇଛନ୍ତି । ଶଂଶିତ ଗ୍ରନ୍ଥରେ ଓଡ଼ିଶାର ସନ୍ଥ ପରଂପରା ସୀମିତ ରଖିଛନ୍ତି, ହୁଏତ ପରବର୍ତ୍ତୀ ସମୟରେ ସେ ଏ ଦିଗରେ ପ୍ରୟାସୀ ହୋଇପାରନ୍ତି ।

ଭାରତର ଆସାମ ପୂର୍ବାଞ୍ଚଳ ଶଂକରଦେବ, ରାଜସ୍ଥାନର ମୀରାବାଈ, ଦକ୍ଷିଣ ଭାରତର ଅଲବାର ସଂପ୍ରଦାୟ ତଥା କେନ୍ଦ୍ର ଏବଂ ଉତ୍ତର ଭାରତର ବହୁ ସନ୍ଥଙ୍କ ସଂପର୍କରେ ଆଲୋଚନା କରିବାର ପ୍ରଚେଷ୍ଟା କରିଛନ୍ତି ।

ସାଂପ୍ରତିକ ସମାଜରେ ଘଟୁଥିବା ନୈତିକ ଅବକ୍ଷୟ, ଆଧ୍ୟାତ୍ମିକତାର ବିଚ୍ୟୁତି ଆଦି ବିଚାରଶୀଳମାନଙ୍କର ଶୋଚନୀୟ ପ୍ରସଂଗ ହୋଇଛି । ସେପରି ସ୍ଥଳେ ଆର୍ଯ୍ୟଧାରାର ମହାନ୍ ସନ୍ଥମାନଙ୍କ ଚରିତ, ଆଦର୍ଶ ପଠନ ପାଠନ ଦ୍ୱାରା ପାଠକ ପ୍ରାଣରେ ଆଧ୍ୟାତ୍ମିକତା, ନୈତିକତା ଧର୍ମୀୟ ବିଚାର ସଂଚାରିତ ଆଶା କରାଯାଏ, ପୁସ୍ତକର ବହୁଳ ପ୍ରସାର ସହ ଲେଖକଙ୍କ ଏ ଦିଗରେ ଉଦ୍ୟମ ଅବ୍ୟାହତ ରହିବାର କାମନା କରୁଛି ।

ବ୍ରହ୍ମାନନ୍ଦ ଭଗତ ଦାସ

ମହିମା ଗାଦି ଯୋରନ୍ଦା

ଢେଙ୍କାନାଳ

# ଆତ୍ମକଥନ

'ସର୍ବେଭବନ୍ତୁ ସୁଖୀନଃ' ସେ କେବଳ କହିପାରେ, ଯେ ସକଳ ପ୍ରକାର ସଂକୀର୍ଣ୍ଣ ସ୍ୱାର୍ଥରୁ ଊର୍ଦ୍ଧ୍ୱକୁ ଯାଇପାରିଛି; ଯାହା ବିଚାରରେ ଅହଂତ୍ୱ ମମତ୍ୱର ବିଲୟ ଘଟିଛି । ସର୍ବୋପରି ଉଦାତ୍ତ ବିଶ୍ୱଭାବନା ଯାହା ଅନ୍ତଃକରଣରେ ସ୍ଥାପିତ ହୋଇପାରିଛି । ଲୋଭ- ଲାଭର ବନ୍ଧନ ମଧ୍ୟରୁ ସଦାମୁକ୍ତ । ବୈଦିକ ଯୁଗରୁ ଭାରତବର୍ଷରେ ବ୍ରହ୍ମଋଷିମାନଙ୍କ ଚିନ୍ତନ- ମନନ- ବାଣୀରେ ବିଶ୍ୱ କଲ୍ୟାଣର ଭାବନା ଦେଖିବାକୁ ମିଳିଥାଏ । ବୈଦିକ ଉତ୍ତର କାଳରେ ଉପନିଷଦ, ପୁରାଣ, ସ୍ମୃତି ଗ୍ରନ୍ଥ, ଦର୍ଶନ, ଧର୍ମଶାସ୍ତ୍ର ସାହିତ୍ୟ ପ୍ରଭୃତିର ଅଶେଷ ଧାରା ପ୍ରବାହିତ ହେବା ପରି ଋଷି ପରଂପରା ବହୁଧା ଆଦର୍ଶଗତ ବିଭାଜନ ସତ୍ତ୍ୱେ ଏବେ ବି ଜୀବିତ ଅଛି, ଯେଉଁମାନେ ପ୍ରତ୍ୟହ ବିଶ୍ୱକଲ୍ୟାଣ କାମନାର ତପୋମଗ୍ନ ହେଉଛନ୍ତି ।

ସେହି ମହତୀ ପ୍ରବାହର ମାଧୁର୍ଯ୍ୟ, ଆଦର୍ଶ, ତ୍ୟାଗପୂତ ବିଚାରନିଷ୍ଠମାନଙ୍କ ସଂପର୍କରେ ଉକ୍ତ ଗ୍ରନ୍ଥରେ ଆଲୋକପାତ କରିବାର ପ୍ରୟାସ କରାଯାଇଅଛି । କେତେକ ସ୍ଥଳରେ ସେମାନଙ୍କୁ ଈଶ୍ୱରଙ୍କ ଅବତାର ଭାବେ କୁହାଯାଇଥାଏ । ସମାଜରେ ପ୍ରଚଳିତ କୁରୀତି, ରୂଢ଼ିବାଦୀ ବିଚାର ମୂଳରେ କୁଠାରଘାତ ପୂର୍ବକ ସଂସ୍କାର ଆନୟନ କରିବାରେ ଅବ୍ୟାହତ ପ୍ରୟାସ ଜାରି ରଖିଥାନ୍ତି । କତିପୟ ସନ୍ଥ ଗୃହସ୍ଥାଶ୍ରମରେ ଥାଇ ମଧ୍ୟ ଲୋକ କଲ୍ୟାଣରେ ନିଜର ସକଳ ଶକ୍ତି, ସାମର୍ଥ୍ୟ ବିନିଯୋଗ କରିଥିବା ଜଣାଯାଏ । 'ଆତ୍ମାନୁମୋକ୍ଷୟ- ଜଗତ ହିତାୟ ଚ' ଆଦର୍ଶ ଆଧାରରେ ସଂପୂର୍ଣ୍ଣ ଜୀବନ ଉତ୍ସର୍ଗ କରି ଦେଇଛନ୍ତି ।

ସେହି ମହାତ୍ମା, ମହାପୁରୁଷମାନଙ୍କ ମଧ୍ୟରୁ କତିପୟ ବିଖ୍ୟାତ ବ୍ୟକ୍ତିତ୍ୱ ସମ୍ବନ୍ଧରେ ପ୍ରେରଣାପ୍ରଦ ବିଚାର ଆଧାରରେ ସେମାନଙ୍କ ଜୀବନୀ, ଦର୍ଶନ ତଥା ସାମାଜିକ ସଂପୃକ୍ତି ଚର୍ଚ୍ଚା କରିବାର ଉଦ୍ୟମ କରାଯାଇଛି । ଯାହା ଚର୍ଚ୍ଚା କରିବା ସମୟରେ ମୋତେ ଅଶେଷ ପ୍ରେରଣା ପ୍ରାପ୍ତ ହୋଇଛି ତଥା ସମଭାବରେ ପାଠକ ଶ୍ରୋତାମାନଙ୍କ ଚିତ୍ତକୁ ଉଦ୍‌ବୁଦ୍ଧ କରିବାର ଆଶା କରିବା ସ୍ୱାଭାବିକ ।

ପୂର୍ବ ସୂରୀମାନଙ୍କ ମାର୍ଗରେ ଅନୁବର୍ତ୍ତୀ ହୋଇଥିବାରୁ ସେମାନଙ୍କ ନିକଟରେ ଚିରକୃତଜ୍ଞ । ବିଶେଷକରି ଗୀତାପ୍ରେସ୍ ଖୋରଖପୁର ପ୍ରକାଶିତ ବିଭିନ୍ନ ବିଶେଷ ଅଂକ ତଥା ଅନ୍ୟ କେତେକ ପୁସ୍ତକ, ସଂପାଦକଙ୍କ ନିକଟରେ କୃତଜ୍ଞ ।

ବରିଷ୍ଠ 'ମହିମା' ସନ୍ଥ ବାବା ନଟବର ଦାସ(ବକଲଧାରୀ) ସଂଶିତ ପୁସ୍ତକରେ ଆଶୀର୍ବଚନ ପ୍ରଦାନ ପୂର୍ବକ କୃତାର୍ଥ କରିଅଛନ୍ତି । ପ୍ରାଜ୍ଞପୁରୁଷ ପରମହଂସ ପ୍ରଜ୍ଞାନାନନ୍ଦଜୀ ତାଂକ ମହାମୂଲ୍ୟ ବାଣୀ ପ୍ରଦାନ ଦ୍ୱାରା ଅନୁଗୃହୀତ କରିଅଛନ୍ତି । ଉଭୟ ମହାନୁଭବଙ୍କୁ ମୋର ଭକ୍ତିପୂତ ପ୍ରଣିପାତ ।

ପରିଶେଷରେ ସନ୍ଧାନୀ, ଜିଜ୍ଞାସୁ, ଶ୍ରଦ୍ଧାଳୁ ପାଠକମାନଙ୍କର ସଂପୃକ୍ତ ଦିଗରେ ଯତ୍ କିଞ୍ଚିତ ଉପକାର ହୋଇପାରିଲେ ଶ୍ରମ ସାର୍ଥକ ହେବ ।

ବିନୀତ
ଲେଖକ

# ସୂଚୀପତ୍ର



## ◆◆ ପରିଶିଷ୍ଟ ◆◆

# ଶ୍ରୀ ଜ୍ଞାନେଶ୍ୱର

ଶ୍ରୀବିଟ୍‌ଠଳ ସନ୍ଥଙ୍କ ଦ୍ୱିତୀୟ ପୁତ୍ର, ଶ୍ରୀ ନିବୃତ୍ତିନାଥଙ୍କ ସାନଭାଇ ଶ୍ରୀ ଜ୍ଞାନେଶ୍ୱରଙ୍କ ଜନ୍ମ ୧୩୩୨ ବି.ସଂ. ଭାଦ୍ର କୃଷ୍ଣାଷ୍ଟମୀ ମଧ୍ୟରାତ୍ରରେ ହୋଇଥିଲା । ତାଙ୍କ ମାତାଙ୍କ ନାମ ରୁକ୍ମିଣୀ ବାଈ, ସାନ ଭାଇଙ୍କ ନାମ ସୋପାନଦଦେବ ଏବଂ ମୁକ୍ତାବାଈ ନାମକ ସାନ ଭଉଣୀ ଥିଲା । ତାଙ୍କ ଭାଇ ଭଉଣୀମାନେ ସମସ୍ତେ ସନ୍ଥ ପରଂପରାରେ ନିଜକୁ ପ୍ରତିଷ୍ଠିତ କରି କେବଳ ମହାରାଷ୍ଟ୍ରରେ ନୁହେଁ ସମଗ୍ର ଭାରତରେ ଜଣାଶୁଣା ଭକ୍ତ ଭାବେ ଖ୍ୟାତିସଂପନ୍ନ ହୋଇଥିଲେ । ତାଙ୍କ ବାଲ୍ୟକାଳର ନାମ ଜ୍ଞାନଦେବ ଥିଲା ।

ଜଣେ ସନ୍ଥ କହିଛନ୍ତି- 'ଜ୍ଞାନଦେବ ରଚିଲା ପାୟା, ଉଭାରିଲ ଦେବାଲୟା'- ଏହିହେତୁ ସନ୍ଥ ମହାତ୍ମା ତାଙ୍କୁ ଆଚାର୍ଯ୍ୟ ଭାବେ ସ୍ୱୀକାର କରିଅଛନ୍ତି । ବାଲ୍ୟକାଳରୁ ମାତୃପିତୃହୀନ ହୋଇ ଅନାଥ ହୋଇଗଲେ । ଜୀବନ ନିର୍ବାହ ପାଇଁ ଭିକ୍ଷାବୃତ୍ତି ଅବଲମ୍ବନ ଏକମାତ୍ର ଆଶ୍ରୟ ଥିଲା । ଏହି ସମୟରେ ମଧ୍ୟ ଭଗବତ୍ ଭଜନ, ଭଗବତ୍ କଥା କୀର୍ତ୍ତନ ଏବଂ ଭଗବତ୍ ଚର୍ଚ୍ଚାରେ ସମୟ ବ୍ୟତୀତ ହୋଇ ଯାଉଥିଲା । ସେତେବେଳେ ଉପନୟନ ସଂସ୍କାର ତାଙ୍କ ପାଇଁ ବଡ଼ ସମସ୍ୟା ହୋଇଥିଲା । ଆଳନ୍ଦୀର ବ୍ରାହ୍ମଣଙ୍କ ସୂଚନା କ୍ରମେ ସେମାନେ ପୈଠନ ଯାତ୍ରା କରିଥିଲେ । ଆଶାଥିଲା ଯେ ସେଠାକାର ବିଦ୍ୱାନ ଶାସ୍ତ୍ରଜ୍ଞମାନେ ଯଦି ଉପନୟନ କରାଇ ପାରନ୍ତି । ସେମାନଙ୍କ ପାଇଁ ବ୍ରାହ୍ମଣଙ୍କର ସଭା ବସିଲା, ସିଦ୍ଧାନ୍ତ ହେଲା

ଯେ ଏହି ବାଳକର ଶୁଦ୍ଧି ଆଉ କୌଣସି ପ୍ରକାର ମଧ ହୋଇ ପାରିବ ନାହିଁ। କେବଳ ଗୋଟିଏ ଉପାୟ ରହିଛି।

ବିସୃଜ୍ୟ ସ୍ୱୟମାନାନ୍ ସ୍ୱାନ୍ ଦୃଶଂ ବ୍ରୀଡ଼ାଂ ଚ ଲୌକିକୀମ୍।
ପ୍ରଣମେ ଦଣ୍ଡବତ୍ ଭୂମା ବାଶ୍ୱ ଚାଣ୍ଡାଳ ଗୋଖରମ୍ ॥
(ଶ୍ରୀମଦ୍ ଭାଗବତ)

ଅର୍ଥାତ୍ 'ନିଜ ଉପରେ ହସୁଥିବା ଲୋକଙ୍କୁ ଏବଂ ଦେହଦୃଷ୍ଟି ତଥା ଲୋକ ଲଜ୍ଜାକୁ ତ୍ୟାଗକରି ସେହି ଲୋକ କୁକୁର, ଚାଣ୍ଡାଳ ଏବଂ ଗୋ ସମେତ ସମସ୍ତଙ୍କୁ ଭୂମିରେ ସାଷ୍ଟାଙ୍ଗ ପ୍ରଣାମ କର ଏବଂ ସେହିପରି ଭଗବାନଙ୍କୁ ଅନନ୍ୟ ଭକ୍ତି କର।' ଏହି ନିର୍ଣ୍ଣୟ ଶୁଣି ଭାଇ-ଭଉଣୀ ସନ୍ତୁଷ୍ଟ ହୋଇଗଲେ। ନିବୃତ୍ତିନାଥ କହିଲେ ଠିକ୍ ହୋଇଛି। ସୋପାନ ଓ ମୁକ୍ତା କହିଲେ ଏହା ଆନନ୍ଦର କଥା। ଜ୍ଞାନଦେବ ଗମ୍ଭୀର ଭାବରେ କହିଲେ ଆପଣମାନେ ଯାହା କହିଛନ୍ତି, ତାହାକୁ ସ୍ୱୀକାର କରୁଛୁ। ବାହୁଡ଼ି ଆସିବା ମାର୍ଗରେ କିଛି ଖଳ ପ୍ରକୃତିର ଲୋକ ତାଙ୍କ ସହ ଥଟ୍ଟା- ମଜା ଆରମ୍ଭ କରିଦେଲେ। କେହି ଜଣେ ପଚାରିଲା ତୁମର ନାମ କ'ଣ ? ଜ୍ଞାନଦେବ କହିଲେ- ଜ୍ଞାନଦେବ। ପାଖରେ ଗୋଟେ ମଇଁଷି ଥିଲା ତାକୁ ନିର୍ଦ୍ଦେଶ କରି ଜଣେ କହି ପକାଇଲା, ଏଠାରେ ତ ଇଏ ଜ୍ଞାନଦେବ ରହିଛି, ଦିନମାନ ବିଚରା ଜ୍ଞାନର ବୋଝ (ଘେୟା) ଖାଇ ଦେଉଛି; କୁହନ୍ତୁ ଦେବତା! ଆପଣ କ'ଣ ଏହିପରି ଜ୍ଞାନଦେବ ? ଜ୍ଞାନଦେବ କହିଲେ ହଁ ହଁ ଏଥିରେ ସନ୍ଦେହ କ'ଣ ଅଛି ? ସେ ତ ମୋର ଆତ୍ମା। ତା' ମୋ ଭିତରେ କୌଣସି ଅନ୍ତର ନାହିଁ। ଏ କଥା ଶୁଣି ସଙ୍ଗେ ସଙ୍ଗେ ମଇଁଷି ପିଠିରେ ଦୁଇ ପାହାର କସି ଦେଲା। କହିଲା ଏ ପାହାର ତ ତୁମକୁ ନିଶ୍ଚୟ ହୋଇଥିବ। ଜ୍ଞାନଦେବ କହିଲେ ହଁ। ନିଜ ମୁହଁ ଖୋଲି ଦେଖାଇ ଦେଲେ, ତା' ଉପରେ ପାହାର ଚିହ୍ନ ସ୍ପଷ୍ଟ ଦେଖାଯାଇଥିଲା।

କିନ୍ତୁ ଏତିକିରେ ବି ସେଠାକାର ଲୋକଙ୍କ ଆଖି ଖୋଲିଲା ନାହିଁ। ଆଉଜଣେ ବିଚକ୍ଷଣ କହିପକାଇଲେ- ଏ ମଇଁଷି ଯଦି ତୁମେ ଯେପରି ସେ ସେହିପରି ହେଲା- ତୁମେ ଯେପରି ଜ୍ଞାନର କଥା କହୁଛ, ତାକୁ ସେହିପରି କୁହା କର। ଜ୍ଞାନଦେବ ମଇଁଷି ପିଠିରେ ହାତ ରଖିଲେ, ହାତ ରଖିବା ମାତ୍ରେ ସେ ଓଁକାର ଉଚ୍ଚାରଣ କଲା। ପରେ ପରେ ବେଦମନ୍ତ୍ର ପାଠ କରିବାକୁ ଲାଗିଲା। ଏହି ଅଦ୍ଭୁତ କ୍ରିୟା ଦେଖି ପୈଠଣର ବିଦ୍ୱାନ୍ ବ୍ରାହ୍ମଣ ଚକିତ ସ୍ତମ୍ଭିତ ହୋଇଗଲେ।

ସେମାନେ ଏବେ ଜାଣିଲେ ଯେ ଇଏ କୌଣସି ସାଧାରଣ ମନୁଷ୍ୟ ନୁହେଁ, ନିଶ୍ଚୟ କୌଣସି ମହାତ୍ମା । ଦିନେ ଜଣେ ବ୍ରାହ୍ମଣ ଘର ଶ୍ରାଦ୍ଧ ଅବସରରେ ଜ୍ଞାନେଶ୍ୱର ଧ୍ୟାନବଳରେ 'ଆଗନ୍ତବ୍ୟମ୍' କହି ତାଙ୍କ ପିତୃପୁରୁଷଙ୍କୁ ଡାକିଲେ ଏବଂ ସେମାନେ ଭୋଜନ କଲେ । ଏହିପରି ତାଙ୍କ ଅଦ୍ଭୁତ ସାମର୍ଥ୍ୟ ଦେଖି ପୈଠଣର ଲୋକ ତାଙ୍କ ଉପରେ ମୁଗ୍ଧ ହୋଇଗଲେ । ତାଙ୍କ ନିକଟକୁ ଆସି ତାଙ୍କଠାରୁ ଭଗବତ୍ ନାମ ସଂକୀର୍ତ୍ତନ ଏବଂ ଭଗବତ୍ କଥା ଶ୍ରବଣ କରିବାକୁ ଲାଗିଲେ । ଧର୍ମଜ୍ଞ ବ୍ରହ୍ମଣ ସମାଜ ତାଙ୍କୁ ନମ୍ରତାର ସହ 'ଶୁଦ୍ଧିପତ୍ର' ଲେଖିଦେଇଥିଲେ । ଏହି ଘଟଣାପରେ କିଛିକାଳ ଚାରି ଭାଇ ଭଉଣୀ ପୈଠଣରେ ଅବସ୍ଥାନ କରିଥିଲେ । ଏହଠାରେ ଯେଉଁ ଭକ୍ତମାନେ ଗୋଦାବରୀ ସ୍ନାନ କରୁଥିଲେ, ବେଦାନ୍ତର ଚର୍ଚ୍ଚା କରୁଥିଲେ, ଭଗବତ୍ ନାମ ସଂକୀର୍ତ୍ତନ କରୁଥିଲେ, ପୁରାଣ ପଠନ କରୁଥିଲେ ତଥା ପୈଠଣର ଅଧିବାସୀମାନଙ୍କୁ ଭଗବତ୍ ଭକ୍ତି ମାର୍ଗ ପ୍ରଦର୍ଶନ କରାଉଥିଲେ, ସେହିଠାରେ ରହି ଜ୍ଞାନଦେବ ଶ୍ରୀମଦ୍ ଶଙ୍କରାଚାର୍ଯ୍ୟଙ୍କ ଭାଷ୍ୟ, ଶ୍ରୀମଦ୍ ଭାଗବତ୍, ଯୋଗବାଶିଷ୍ଠ ଦେଖି ନେଇଥିଲେ । ଆଗାମୀ ସମୟରେ ଯେଉଁ ଗ୍ରନ୍ଥ ପ୍ରସ୍ତୁତ କରିବେ ତା'ର ଭୂମିକା ଏହିଠାରେ ପ୍ରସ୍ତୁତ କରିଥିଲେ । କିଛିକାଳ ସେଠାରେ ଅବସ୍ଥାନ କରି ଆଳେଁ ନାମକ ସ୍ଥାନରେ ନିବାସ କଲେ ।

ଏହିଠାରେ ଅବସ୍ଥାନ କାଳରେ ଗୀତାର ଜ୍ଞାନେଶ୍ୱରୀ ଭାଷ୍ୟ ରଚନା କରିଥିଲେ, ଯାହାକୁ ସଚ୍ଚିଦାନନ୍ଦଜୀ ଲେଖିଥିଲେ । କିଛିକାଳପାଇଁ ଅଳନ୍ଦୀ ଚାଲି ଯାଇଥିଲେ । ସେଠାକାର ଲୋକମାନେ ଜ୍ଞାନେଶ୍ୱରଙ୍କୁ ବଡ଼ ଆଦର କଲେ । ପ୍ରେମର ସହ ସ୍ୱାଗତ କଲେ । ପୁନଃ ଭାଇଭଉଣୀଙ୍କ ସହ 'ନେବାସ' ଫେରି ଆସିଲେ । ଏବେ ସେ ସଦ୍‌ଗୁରୁ ନିବୃତ୍ତି ନାଥଙ୍କ ସମ୍ମୁଖରେ ଗୀତାର ସ୍ୱାନୁଭୂତ ଭାଷ୍ୟ କହିବା ଆରମ୍ଭ କଲେ । ଏହି ସମୟରେ ନିବୃତ୍ତିନାଥଙ୍କୁ ସତରବର୍ଷ, ଜ୍ଞାନେଶ୍ୱରଙ୍କୁ ପନ୍ଦରବର୍ଷ, ସେପାନଦେବଙ୍କୁ ତେରବର୍ଷ ଏବଂ ମୁକ୍ତାବାଈଙ୍କୁ ଏଗାର ବର୍ଷ ବୟସ ହୋଇଥିଲା । ଜ୍ଞାନେଶ୍ୱରଙ୍କର ଏହି କିଶୋର ବୟସରେ ସର୍ବୋତ୍ତମ ଆଶ୍ଚର୍ଯ୍ୟ ହେଉଛି ଜ୍ଞାନେଶ୍ୱର ଗ୍ରନ୍ଥ । ଯାହା ତାଙ୍କ ପନ୍ଦରବର୍ଷ ବୟସରେ ୧୩୪୭ ବି.ସ.ରେ ଏହି ଗ୍ରନ୍ଥ ପୂର୍ଣ୍ଣ ହୋଇଥିଲା ।

ଏହାପରେ ଶ୍ରୀଜ୍ଞାନେଶ୍ୱର ତୀର୍ଥ ଯାତ୍ରାରେ ବାହାରିଲେ । ତାଙ୍କ ସହ ନିବୃତ୍ତିନାଥ, ସୋପାନ ଦେବ ଏବଂ ମୁକ୍ତାବାଈ ମଧ୍ୟ ସହଯାତ୍ରୀ ହୋଇଥିଲେ ।

କୁହାଯାଏ ଏହି ଯାତ୍ରାରେ ବିସୋବା ଖେଚର, ଗୋରାକୁମ୍ଭାର, ଚୋଖାମେଳା, ନରହରି ସୁନାର ଆଦି ଅନେକ ସନ୍ଥ ମଧ୍ୟ ସହଯାତ୍ରୀ ହୋଇଥିଲେ । ସର୍ବ ପ୍ରଥମ ଜ୍ଞାନେଶ୍ୱର ମହାରାଜ ପାଣ୍ଡରପୁର ଯାଇଥିଲେ । ସେଠାରେ ସେ ବିଟ୍‌ଠଲ ଭଗବାନଙ୍କ ଦର୍ଶନ କରି ପରମବିଟ୍‌ଠଲ ଭକ୍ତ ନାମଦେବଙ୍କ ସହ ସାକ୍ଷାତ୍ ହୋଇଥିଲା । ତତ୍‌ପରେ ବିଟ୍‌ଠଲଦେବଙ୍କୁ ସଂଗରେ ଘେନି ଶ୍ରୀ ଜ୍ଞାନେଶ୍ୱର ମହାରାଜ ଅନେକ ସ୍ଥାନରେ ଜ୍ଞାନ ଉପଦେଶ ଦ୍ୱାରା ଅସଂଖ୍ୟ ମନୁଷ୍ୟଙ୍କୁ ଉଦ୍ଧାର କରିବା ପାଇଁ ଉଜ୍ଜୟିନୀ, ପ୍ରୟାଗ, କାଶୀ, ଗୟା, ଅଯୋଧ୍ୟା, ଗୋକୁଳ, ବୃନ୍ଦାବନ, ଦ୍ୱାରିକା, ଗିରନାର ଆଦି ତୀର୍ଥ ସ୍ଥାନ ପରିଭ୍ରମଣ କରିଥିଲେ । ସମସ୍ତ ସନ୍ଥଙ୍କ ସହ ପୁନଃ ପଣ୍ଡରପୁର ବାହୁଡ଼ି ଆସିଲେ । ପୈଠଣପୁର ଆଦି ସ୍ଥାନମାନଙ୍କରେ ଯେଉଁ ସବୁ ଚମତ୍କାର ଦେଖାଇଥିଲେ, ସେହି ହେତୁ ସେହି ଚାରିଭାଇ ଭଉଣୀଙ୍କ ଯଶ ସର୍ବତ୍ର ପରିବ୍ୟାପ୍ତ ହୋଇଗଲା ।

ସବୁ ଅଂଚଳରୁ ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥି ତଥା ଜ୍ଞାନୀ ସକଳ ପ୍ରକାର ଭଗବତ୍ ଭକ୍ତ, ଯୋଗୀ, ଯତି, ସାଧକ ଆଦି ତାଙ୍କ ଦର୍ଶନ ପାଇଁ ଆସିବାକୁ ଲାଗିଲେ ।

ଏକୋଇଶ ବର୍ଷ ତିନିମାସ ପାଞ୍ଚ ଦିନରେ ଅଳ୍ପାୟୁ ଅର୍ଥାତ୍ ୧୩୫୩ ବି.ସ. ମାର୍ଗଶୀର କୃଷ୍ଣ ତ୍ରୟୋଦଶୀରେ ଶ୍ରୀଜ୍ଞାନେଶ୍ୱର ଜୀବିତ ସମାଧି ଗ୍ରହଣ କଲେ । ତାଙ୍କ ସମାଧି ନେବାର ଏକବର୍ଷ ମଧ୍ୟରେ ସୋପାନଦେବ, ଚାଙ୍ଗଦେବ ମୁକ୍ତାବାଈ ଏବଂ ନିବୃତ୍ତିନାଥ ମଧ୍ୟ ଜଣ ଜଣ କରି ପରମଧାମର ଯାତ୍ରୀ ହେଲେ ।

ଶ୍ରୀଜ୍ଞାନେଶ୍ୱର ମହାରାଜଙ୍କର ଚାରିଗୋଟି ଗ୍ରନ୍ଥ ବହୁତ ପ୍ରସିଦ୍ଧ । (୧) ଭାବାର୍ଥ ଦୀପିକା ଅର୍ଥାତ୍ ଜ୍ଞାନେଶ୍ୱରୀ, ଅମୃତାନୁଭବ, ହରିପାଠକେ ଅଭଙ୍ଗ ଏବଂ ଚାଙ୍ଗଦେବ- ପାସଠୀ (ପଞ୍ଚଷଠୀ) । ଏହା ବ୍ୟତୀତ ସେ ଯୋଗବାଶିଷ୍ଠ ଉପରେ ଏବଂ ଅଭଙ୍ଗ ବୃତ୍ତର ଟୀକା ମଧ୍ୟ ରଚନା କରିଥିଲେ । ଏବେ ସୁଦ୍ଧା ତାହା ଅନୁପଲଭ୍ୟ ।

* *ବି.ସ. - ବିକ୍ରମ ସଂବତ*



# ଶ୍ରୀଶ୍ରୀ ଚୈତନ୍ୟ ମହାପ୍ରଭୁ

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପ୍ରାକଟ୍ୟ ଶକ ସଂବତ୍ ୧୪୦୭-(୧୪୮୫ ଖ୍ରୀ.ଅ.) ଫାଲଗୁନ ପୂର୍ଣ୍ଣିମା, ସିଂହ ଲଗ୍ନରେ ବଂଗଳାର ନବଦ୍ୱୀପ ଗ୍ରାମରେ ହୋଇଥିଲା । ତାଙ୍କ ପିତାଙ୍କ ନାମ ଜଗନ୍ନାଥ ମିଶ୍ର ଏବଂ ମାତାଙ୍କ ନାମ ସଚିଦେବୀ । ସେ ଭଗବାନ ଶ୍ରୀକୃଷ୍ଣଙ୍କର ଅନନ୍ୟ ଭକ୍ତ ଥିଲେ । ତାଙ୍କୁ ଲୋକେ ଶ୍ରୀରାଧାଙ୍କର ଅବତାର ମାନୁଥିଲେ । ବଂଗଳାର ବୈଷ୍ଣବ ତାଙ୍କୁ ସାକ୍ଷାତ୍ ପୂର୍ଣ୍ଣବ୍ରହ୍ମ ହିଁ ମାନୁଥିଲେ ।

ଜଗନ୍ନାଥ ମିଶ୍ର ଏବଂ ସଚିଦେବୀଙ୍କର ପ୍ରଥମ ବିଶ୍ୱରୂପ ତଥା ଦ୍ୱିତୀୟ ପୁତ୍ର ନାମ ସ୍ନେହରେ ନିମାଇଁ ରଖିଥିଲେ । ସେ ବାଲ୍ୟକାଳରେ ବିଶେଷ ଚପଳ ଥିଲେ । ଭାଗବତ ଶୁଣିବା ପାଇଁ ଉତ୍କଣ୍ଠିତ ହେବାର ଦେଖି ମାତାପିତା ତଥା ଅନ୍ୟମାନେ ଆଶ୍ଚର୍ଯ୍ୟ ଚକିତ ହେଉଥିଲେ । ଶିକ୍ଷାଲାଭ ପାଇଁ ଗୁରୁଙ୍କ ନିକଟକୁ ଗଲେ । ସେ ଖଡ଼ୀଧରି ‘ରାମ’, ‘କୃଷ୍ଣ’ ଇତ୍ୟାଦି ଲେଖି ସମସ୍ତଙ୍କୁ ତଟସ୍ଥ କରିଦେଇଥିଲେ । ଦିନକୁ ଦିନ ତାଙ୍କ ଅଲୌକିକ ପ୍ରତିଭାର ପରିଚୟ ଗୁରୁ ତଥା ଅନ୍ୟମାନେ ଲକ୍ଷ୍ୟ କରି ପାରିଥିଲେ ।

ସମୟକ୍ରମେ ନିମାଇଁଙ୍କର ଉପନୟନ ସଂସ୍କାର ସଂପନ୍ନ ହେଲା । ଧର୍ମ କର୍ମରେ ଅଧିକ ସମୟ ଦେଉଥିଲେ । ଏହି ଅବସରରେ ଜ୍ୟେଷ୍ଠଭ୍ରାତା ବିଶ୍ୱରୂପ ସନ୍ନ୍ୟାସ ଗ୍ରହଣ କଲେ । ଶାସ୍ତ୍ରଜ୍ଞାନ ହିଁ ତାଙ୍କ ସନ୍ନ୍ୟାସର କାରଣ ବିଚାରକରି ନିମାଇଁଙ୍କୁ ଆଉ ଅଧିକ ପାଠ ନ ପଢ଼ାଇବାକୁ ସ୍ଥିର କଲେ । ନିମାଇଁଙ୍କର ଦ୍ୱାଦଶବର୍ଷ ବୟସରେ ପିତା ଜଗନ୍ନାଥ ମିଶ୍ରଙ୍କର ପରଲୋକ ଗମନପରେ ପୁତ୍ରର ସମସ୍ତ ଦାୟିତ୍ୱ ଜନନୀଙ୍କ ଉପରେ ନ୍ୟସ୍ତ ହେଲା । ସେ ପୁତ୍ରର ବିଦ୍ୟାନୁରାଗ ଦେଖି ତାଙ୍କୁ ଏକ ପ୍ରସିଦ୍ଧ ପଣ୍ଡିତଙ୍କ ପାଖରେ ଛାଡ଼ିଥିଲେ ।

କେଶବଭାରତୀ ସେକାଳର ଜଣେ ପ୍ରସିଦ୍ଧ ବିଦ୍ୱାନ୍ ଏବଂ ଭକ୍ତରୂପେ ବିଖ୍ୟାତ ଥିଲେ । ନିମାଇଁ ତାଙ୍କଠାରୁ ‘ଭକ୍ତିମାର୍ଗ’ ଉତ୍ତମ ରୂପେ ଶିକ୍ଷାଲାଭ କରିଥିଲେ । କିଛି ସହୃଦୟ ବିଚାରିଲେ ନିମାଇଁଙ୍କୁ ଭକ୍ତିଶିକ୍ଷା ଦେବାପାଇଁ ପଣ୍ଡିତ ଭାରତୀ ଯେପରି ସ୍ୱର୍ଗୀୟ ଦୂତରୂପେ ଅବତୀର୍ଣ୍ଣ ହୋଇଥିଲେ ।

କ୍ରମଶଃ ନିମାଇଁଙ୍କ ଲୋକୋତ୍ତର ପ୍ରତିଭା ବିକଶିତ ହେବା ସହିତ ବୈରାଗ୍ୟ ମଧ୍ୟ ବୃଦ୍ଧି ପାଇବା ଦେଖି ଜନନୀ ଶୋକାକୁଳା ହେଲେ । ପୁତ୍ରକୁ ସଂସାର ବଂଧନରେ ଆବଦ୍ଧ କରିବା ପ୍ରୟୋଜନ ମନେକରି ବଲ୍ଲଭାଚାର୍ଯ୍ୟ ନାମକ ଜଣେ ପ୍ରସିଦ୍ଧ ପଣ୍ଡିତଙ୍କ କନ୍ୟା ଲକ୍ଷ୍ମୀଙ୍କ ସହ ପୁତ୍ରର ପରିଣୟ ସଂପନ୍ନ କରିଦେଲେ ।

ନିମାଇଁଙ୍କର ସମସ୍ତଙ୍କୁ ସମଦୃଷ୍ଟି, ହରିନାମ ସଂକୀର୍ତ୍ତନରେ ଭେଦାଭେଦ ଶୂନ୍ୟ ବିଚାର, ସମସ୍ତେ ଈଶ୍ୱର ପ୍ରାପ୍ତିର ଅଧିକାରୀ, ସୁତରାଂ ଆଚାଣ୍ଡାଳ- ବ୍ରାହ୍ମଣ ଏପରିକି ଅନ୍ୟ ଧର୍ମଧାରାର ଭକ୍ତମାନଙ୍କୁ ନିଜ ଆଡ଼କୁ, ନିଜ ଦର୍ଶନରେ ଓତଃପ୍ରୋତ କରି ବୈଷ୍ଣବ ଧର୍ମକୁ ଗଣଧର୍ମରେ ପରିଣତ କରିଥିଲେ । ତାଙ୍କ ଅଲୌକିକ ଶକ୍ତି ବଳରେ ପଣ୍ଡିତମାନଙ୍କୁ ଯୁକ୍ତିରେ ପରାସ୍ତ କରି ପ୍ରେମ ରଜ୍ଜୁରେ ନିଜ ଆଡ଼କୁ ଆକର୍ଷିତ କରିବାର ଅପୂର୍ବ କଳା ତାଙ୍କର ଥିଲା । ନିମାଇଁ ଯେପରି ବିନୟୀ ସେହିପରି ନିରଭିମାନୀ ଥିଲେ । ଏହି ମହତଗୁଣ ପାଇଁ ସେ ସର୍ବଜନାଦୃତ ହୋଇଥିଲେ । ଇତି ମଧ୍ୟରେ ଲକ୍ଷ୍ମୀ ଅକସ୍ମାତ୍ ସ୍ୱର୍ଗାରୋହଣ କଲେ । ନିମାଇଁ ଅନିଚ୍ଛା ସତ୍ତ୍ୱେ ମାତାଙ୍କ ଆଦେଶରେ ସଦାନନ୍ଦଙ୍କ ଦୁହିତା ବିଷ୍ଣୁପ୍ରିୟାଙ୍କୁ ବିବାହ କଲେ ।

ବିବାହର ବର୍ଷକ ପରେ ନିମାଇଁ ପିତୃକାର୍ଯ୍ୟ ସଂପାଦନ ଉଦ୍ଦେଶ୍ୟରେ ପାବନ ଗୟାଧାମରେ ଉପସ୍ଥିତ ହେଲେ । ସେହି ସ୍ଥାନରେ ଉଦ୍ଦିଷ୍ଟ କର୍ତ୍ତବ୍ୟ ସମାପନ କରି ପଣ୍ଡିତମାନଙ୍କ ସହ ଶାସ୍ତ୍ରାଲୋଚନାରେ ପ୍ରବୃତ୍ତ ହେଲେ । ନିମାଇଁ ଅତ୍ୟନ୍ତ ଗୌର ଥିଲେ, ତେଣୁ ତାଙ୍କୁ ଗୌରାଙ୍ଗ ନାମରେ ସଂବୋଧନ କରାଯାଉଥିଲା । ଈଶ୍ୱର ଉପାସନାର ସରଳ ଏବଂ ସର୍ବଗ୍ରାହ୍ୟ ଧାରାକୁ ସମସ୍ତ ବର୍ଗର ଲୋକେ ଦ୍ୱିଧାହୀନ ଭାବେ ଗ୍ରହଣ କରି ଚାଲିଲେ ।

ସେ ଅବଧୂତ ନିତ୍ୟାନନ୍ଦ ଓ ଈଶ୍ୱରପୁରୀଙ୍କ ସଂପର୍କରେ ଆସି ବିଶେଷଭାବେ ଭକ୍ତି ତନ୍ମୟ ହେଲେ । ବୈଷ୍ଣବ ଧର୍ମ ଗ୍ରହଣ କରି 'ଚୈତନ୍ୟ' ନାମରେ ପରିଚିତ ହେଲେ । ଯେଉଁ ସମୟର ପ୍ରସଂଗ ଚର୍ଚ୍ଚା କରିବାକୁ ଯାଉଛେ, ସେହି ସମୟରେ ବଂଗଳାର ରାଜନୈତିକ, ସାମାଜିକ ଏବଂ ଧାର୍ମିକ ଅବସ୍ଥା ଶୋଚନୀୟ ଥିଲା । ଦେଶରେ ମୁସଲମାନ ଆତଙ୍କ ଛାଇ ଯାଇଥିଲା । ମନୁଷ୍ୟ ଧର୍ମ କର୍ମରୁ ବିଚ୍ୟୁତ ହୋଇ ପାଖଣ୍ଡ-ଧର୍ମର ଆଶ୍ରୟ କରିଥିଲେ । ବାମମାର୍ଗର ପ୍ରଚାର ବ୍ୟାପକ ହୋଇଥିଲା । ପଞ୍ଚ 'ମ'କାର ସାଧନା, ଗୁହ୍ୟ ସାଧନା ପ୍ରଭୃତି

ଆଧ୍ୟାତ୍ମିକତା ନାମରେ ପ୍ରଚଳିତ ଥିଲା । ଛେଳି, ମେଣ୍ଢା, ମଇଁଷି ବଳି ଦିଆଯାଉଥିଲା, କେଉଁଠି ନରବଳୀ ମଧ୍ୟ ଦିଆଯିବାର ଦୃଷ୍ଟି ଗୋଚର ହେଉଥିଲା । ବ୍ରାହ୍ମଣ ହାତରେ ଖଣ୍ଡାଧରି ବଳି ପ୍ରଦାନ କରି ଦେବୀପୂଜା ସଂପନ୍ନ କରୁଥିଲେ । ବୈଷ୍ଣବ ଧର୍ମକୁ ହସି ଉଡ଼ାଇ ଦେଉଥିଲେ । ଭକ୍ତି କରିବା କେବଳ ମୂର୍ଖମାନଙ୍କୁ ଶୋଭାପାଏ ବୋଲି ତଥା କଥିତ ବିଦ୍ୱାନମାନଙ୍କର ଧାରଣା ବଦ୍ଧମୂଳ ହୋଇଥିଲା । ବାଦ-ବିବାଦ କରିବା ହିଁ ବିଦ୍ୟାର ମୁଖ୍ୟ ପ୍ରୟୋଜନ ବୁଝାଯାଉଥିଲା । ଏ ସମସ୍ତ ସହ ଛୁଆଁ- ଅଛୁଆଁର ଭୂତ ସମସ୍ତଙ୍କ ମୁଣ୍ଡରେ ବସି ରହିଥିଲା । ଯଦି ଛୋଟ ଜାତିର ଲୋକ ଉଚ୍ଚ ଜାତିର ପବିତ୍ର ପୁରୁଷଙ୍କୁ ଛୁଇଁ ଦେଲା ତେବେ ତା'ର ଧର୍ମ ଭ୍ରଷ୍ଟ ହୋଇଯିବା ଧାରଣା ଥିଲା । କୌଣସି ବିଧବା ଯଦି ମୁସଲମାନ୍ ସହ କଥାବାର୍ତ୍ତା ହୋଇଗଲା ତେବେ ସେ ପତିତ ହୋଇଗଲା । (ଶାସକ ଓ କର୍ମଚାରୀ ଅଧିକାଂଶ ମୁସଲମାନ ଥିଲେ) ସେ ସମାଜର କୌଣସି ଶୁଭ କର୍ମରେ ଅଂଶ ଗ୍ରହଣ ନିଷିଦ୍ଧ ହୋଇଗଲା । ନିମ୍ନ ବର୍ଗର ଲୋକେ ହିନ୍ଦୁଧର୍ମ ତ୍ୟାଗ କରି ମୁସଲମାନ ଧର୍ମ ଗ୍ରହଣ କରି ସୁଖ ସୁବିଧା ଭୋଗ କାମନାରେ ସେମାନଙ୍କ ସଂଖ୍ୟା ବୃଦ୍ଧି କରିବାକୁ ଲାଗିଲେ । ବଂଗଳାରେ ୫୨,୫୩% ମୁସଲମାନ ଧର୍ମାନ୍ତର ଦ୍ୱାରା ହିଁ ହୋଇଛନ୍ତି ।

ଶ୍ରୀଚୈତନ୍ୟ ଦେବଙ୍କ ବିଚାର ହେଲା ଧର୍ମଜ୍ଞାନ ଭକ୍ତି ଆଧାରିତ ହେବା ଦରକାର । ଭକ୍ତି ବିହୀନ ଜ୍ଞାନ, ଜ୍ଞାନନୁହେଁ । ସମସ୍ତ ପ୍ରକାର ଆରାଧନା ଅପେକ୍ଷା ନାମ ଜପ ଶ୍ରେଷ୍ଠ । ପୁଣି ଅଛୁଆଁ ଅସ୍ପୃଶ୍ୟ କହି କିଛି ଲୋକଙ୍କୁ ଦୂରେଇ ଦେବା ଧର୍ମଠାରୁ ସମସ୍ତଙ୍କୁ ସହଜ, ସୁଲଭ ଭକ୍ତିମାର୍ଗ ଏବଂ ନାମ ମନ୍ତ୍ରରେ ଉଦ୍‌ବୁଦ୍ଧ କରି ଭକ୍ତି- ପ୍ରେମର ମନ୍ଦାକିନୀ ପ୍ରବାହିତ କରିବାକୁ ଲାଗିଲେ । ଚୈତନ୍ୟ ଦେବଙ୍କ ସନ୍ନ୍ୟାସ ଧର୍ମ ଗ୍ରହଣ ଓ ଗୈରିକ ବସନ ପରିଧାନ ଦେଖି ଜନନୀ ଓ ପତ୍ନୀଙ୍କ ହୃଦୟ ଦୁଃଖରେ ବିଗଳିତ ହୋଇଗଲା । କିନ୍ତୁ ଚୈତନ୍ୟ ସେମାନଙ୍କୁ ଭକ୍ତିମାର୍ଗ ବୁଝାଇ ହରିନାମ ପ୍ରେମରେ ଉଦ୍‌ବୁଦ୍ଧ ହେବାକୁ ପ୍ରେରଣା ଦେଲେ । ଶ୍ରୀଚୈତନ୍ୟଙ୍କ ସଂକୀର୍ତ୍ତନର ମାଦକତା ଏପରି ଥିଲା ଯେ ପଶୁପକ୍ଷୀ ମଧ୍ୟ କୀର୍ତ୍ତନ ଶ୍ରବଣରେ ମୁଗ୍ଧ ହୋଇ ଯାଉଥିଲେ । ପାଷାଣ୍ଡ, ନାସ୍ତିକ, ଯବନମାନେ ମଧ୍ୟ ହରିପ୍ରେମ ବନ୍ୟାରେ ଭାସମାନ ହେବାକୁ ଲାଗିଲେ ।

ଏକଦା ନିତ୍ୟାନନ୍ଦ ଓ ଚୈତନ୍ୟ ହରିନାମ ସଂକୀର୍ତ୍ତନ କରି ରାଜମାର୍ଗରେ ଯାଉଥିଲେ । ଜଗନ୍ନାଥ ଓ ମାଧବ ଦୁଇଜଣ ପାପୀଷ୍ଠଙ୍କୁ ଶୂଳବିଦ୍ଧ ତୁଲ୍ୟ ବୋଧ

ହେଲା । ସେମାନେ ଧର୍ମ ନାମରେ ମଦ୍ୟପାନ, ଚୌର୍ଯ୍ୟବୃତ୍ତି ଆପଣେଇ ନେଇଥିଲେ । ତାଙ୍କ ଦୌରାତ୍ମ୍ୟରେ ବହୁ ନିର୍ଦ୍ଦୋଷ ବ୍ୟକ୍ତି ସନ୍ତପ୍ତ ହେଉଥିଲେ । ସେହି ଉନ୍ମତ୍ତ ପାଷଣ୍ଡ ଦ୍ୱୟ ଉଭୟ ମହାତ୍ମାଙ୍କୁ ପ୍ରହାର କରିବାରେ ଲାଗିଲେ । ଉପସ୍ଥିତ ଦର୍ଶକମାନେ ବିଷମ ବ୍ୟଥା ଅନୁଭବ କରି ପ୍ରାଣ ଭୟରେ ଏହାର ପ୍ରତିବାଦ କରି ପାରିଲେ ନାହିଁ । ଭକ୍ତ ଦ୍ୱୟ ରକ୍ତାକ୍ତ ଅବସ୍ଥାରେ ସୁଦ୍ଧା 'ଯାହା କରୁଛ କର, ଥରେ ହରିବୋଲ ଡାକିଦିଅ', ଏହାକହି ନାମ ସଂକୀର୍ତ୍ତନ କରିବା ଦେଖି ପାପୀଷ୍ଠମାନଙ୍କର ହୃଦୟ ବିଗଳିତ ହେଲା । ନିଜର ମହାଭ୍ରମ ବୁଝିପାରି ଭକ୍ତଦ୍ୱୟଙ୍କ ପଦାରବିନ୍ଦରେ ପତିତ ହୋଇ କ୍ଷମା ପ୍ରାର୍ଥନା କଲେ । ଚୈତନ୍ୟ ସେମାନଙ୍କୁ ହରିନାମ ପ୍ରେମତତ୍ତ୍ୱ ଶ୍ରବଣ କରାଇ ମୁଗ୍ଧ କରାଇଲେ । ପରବର୍ତ୍ତୀ କାଳରେ ସେମାନେ ପ୍ରସିଦ୍ଧ ଆଚାର୍ଯ୍ୟ, ବ୍ରହ୍ମଚାରୀ ଭାବେ ପ୍ରସିଦ୍ଧ ହୋଇଥିଲେ ।

ଚୈତନ୍ୟ କାଶୀ- ବୃନ୍ଦାବନ, ବଂଗଳାର ବହୁ ସ୍ଥାନରେ ଧର୍ମ ପ୍ରଚାର ପୂର୍ବକ ଅବଶେଷରେ ପୂର୍ବପୁରୁଷଙ୍କ ଜନ୍ମଭୂମି ଉତ୍କଳ ଭୂମିରେ ପଦାର୍ପଣ କଲେ । ବହୁ ନରନାରୀ ସରଳ ଧର୍ମମାର୍ଗରେ ତାଙ୍କ ଅନୁଗାମୀ ହେଲେ । ଚୈତନ୍ୟ ଉତ୍କଳ ଭୂମିରେ ପାଦଦେବା ମାତ୍ରେ ଏକ ଅପୂର୍ବ ଆନନ୍ଦ ତାଙ୍କର ମନ- ପ୍ରାଣକୁ ଆବିଷ୍ଟ କଲା । ସେ ପବିତ୍ର ଉତ୍କଳର ପ୍ରତ୍ୟେକ ଧୂଳିକଣାକୁ ସୁଦ୍ଧା ପୁଣ୍ୟମୟ ଜ୍ଞାନ କରୁଥିଲେ । ରେମୁଣାର କ୍ଷୀରଚୋରା ଗୋପୀନାଥ, ଭଦ୍ରଖ, ବୈତରଣୀ ନଦୀରେ ସ୍ନାନ, ଯାଜପୁର ପ୍ରାଚୀନ ପୁଣ୍ୟପୀଠରେ ଅବସ୍ଥାନ ପରେ ବହୁ ଗ୍ରାମ ଜନପଦ ମଧ୍ୟରେ ସଂକୀର୍ତ୍ତନ କରି କଟକ ଏବଂ ସାକ୍ଷୀ ଗୋପାଳ ଦର୍ଶନ କରି ଅବଶେଷରେ ପୁରୁଷୋତ୍ତମ କ୍ଷେତ୍ର ଶ୍ରୀମନ୍ଦିର ଧ୍ୱଜା ଦର୍ଶନ କରି ଆତ୍ମହରା ହୋଇଗଲେ । ନୀଳାଚଳ ନାଥ ଶ୍ରୀଜଗନ୍ନାଥଙ୍କୁ ଦର୍ଶନକରି ଭକ୍ତି ବିଭୋର ହୋଇଗଲେ । ଖୁବ୍ ଅଳ୍ପ ସମୟ ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ରକୁ ଭକ୍ତିରସରେ ଆପ୍ଲୁତ କଲେ ।

ବାସୁଦେବ ସାର୍ବଭୌମ ନାମକ ଜଣେ ଭୁବନ ବିଖ୍ୟାତ ପଣ୍ଡିତଙ୍କ ସହ ତାଙ୍କର ମିଳନ ହେଲା । ସାର୍ବଭୌମ ଚୈତନ୍ୟଙ୍କ ଭକ୍ତିଭାବରେ ବିସ୍ମିତ ହେଲେ । ତାଙ୍କର ଜ୍ଞାନାଭିମାନ ତିରୋହିତ ହେଲା । କଥିତ ଅଛି ଚୈତନ୍ୟ ତାହାଙ୍କୁ ଚତୁର୍ଭୁଜ ମୂର୍ତ୍ତି ଦର୍ଶନ କରାଇଥିଲେ । ସାର୍ବଭୌମ ସର୍ବାନ୍ତ କରଣରେ ଚୈତନ୍ୟଙ୍କ ମତାବଲମ୍ବୀ ହେଲେ । ଏହି ଘଟଣାରେ ଚୈତନ୍ୟଙ୍କ ମହାତ୍ମ୍ୟ ବହୁ ପ୍ରଚାରିତ ହେଲା ।

ତତ୍କାଳୀନ ଓଡ଼ିଶାର ସମ୍ରାଟ, ଭକ୍ତପ୍ରବର ପ୍ରତାପରୁଦ୍ରଦେବ ଉଭୟ ବୀର ଏବଂ ଭକ୍ତ । କ୍ରମେ ଚୈତନ୍ୟଙ୍କ ଦେବୋପମ ପ୍ରତିଭା ତାଙ୍କ ଗୋଚରୀଭୂତ ହେଲା । ସେ ଚୈତନ୍ୟଙ୍କ ସହ ଆଳାପାଦି କରି ଆପଣାକୁ ଧନ୍ୟ ମନେକଲେ । ଫଳରେ ରାଜ- ଅନୁକୂଳ ସୁବିଧା ସୁଯୋଗ ପ୍ରାପ୍ତି ହୋଇଥିଲେ । ଜଗନ୍ନାଥ ଦାଶ ନାମକ ଜଣେ ପ୍ରସିଦ୍ଧ ଭକ୍ତ ପୁରୀରେ ଅବସ୍ଥାନ କରୁଥିଲେ । ସେ ମୂଳ ସଂସ୍କୃତ ଭାଗବତକୁ ସୁଲଳିତ ନବାକ୍ଷରୀ ବୃତ୍ତରେ ଓଡ଼ିଆ ରଚନା କରୁଥିଲେ । 'କଳ୍ପବଟ' ମୂଳରେ ବସି ଧାର୍ମିକ ନରନାରୀଙ୍କୁ ଭାଗବତ ମର୍ମ ବୁଝାଉଥିଲେ । ଦିନେ ଚୈତନ୍ୟ ଦାଶଙ୍କଠାରୁ ଭାଗବତ ଶୁଣିବା ପାଇଁ ସେଠାରେ ପହଞ୍ଚି ଗଲେ । ଦାଶଙ୍କର ଭକ୍ତିତତ୍ତ୍ୱ, ପାଣ୍ଡିତ୍ୟ ଦେଖି ବିଶେଷ ମୁଗ୍ଧ ହେଲେ । କୁହାଯାଏ ଉଭୟଙ୍କ ମଧ୍ୟରେ ପ୍ରେମାଲିଂଗନ ଅଢ଼େଇଦିନ (ଘଡ଼ି) ପର୍ଯ୍ୟନ୍ତ ରହିଥିଲା । ଅନ୍ୟଏକ ଅବକାଶରେ ସେ ଦାଶଙ୍କୁ କହିଲେ- ମୁଁ ବହୁତୀର୍ଥ ବୁଲି ଆସିଲି । ବହୁ ପଣ୍ଡିତ, ବିଦ୍ୱାନ, ସାଧକ, ବିଦ୍ୱାନଙ୍କ ସହ ଶାସ୍ତ୍ରାଳାପ କଲି କିନ୍ତୁ ଆପଣଙ୍କ ପରି ଜଣେ ବ୍ୟକ୍ତି ଦେଖିନାହିଁ । 'ଆପଣ ଅତିବଡ଼ି' ଅଟନ୍ତି । ସେ ଏପରି କହି ଆପଣାର ଗୈରିକ ଉତ୍ତରୀୟ ଦାଶଙ୍କ ମସ୍ତକରେ ବାନ୍ଧିଦେଲେ । ସେହିଦିନଠାରୁ ଭକ୍ତ ଜଗନ୍ନାଥ 'ଅତିବଡ଼ି' ସ୍ୱାମୀ ନାମରେ ପରିଚିତ ହେଲେ ।

ଜଣେ ଉତ୍କଳୀୟ ପ୍ରତି ଚୈତନ୍ୟଙ୍କ ଏତାଦୃଶ ସମ୍ମାନବୋଧ ଗୌଡ଼ୀୟ ବୈଷ୍ଣବମାନଙ୍କ ପକ୍ଷେ ଅସହ୍ୟ ହେଲା । ସେମାନେ କ୍ରୋଧ- ଅଭିମାନରେ ଚୈତନ୍ୟଙ୍କ ନିକଟରୁ ପଳାଇ ଗଲେ । ଚୈତନ୍ୟ ଏହି ଘଟଣାରେ ଅତ୍ୟନ୍ତ ମର୍ମାହିତ ହେଲେ । ସେମାନେ (ପଳାଇ ଆସିଥିବା ଭକ୍ତ) ଯାଜପୁରରେ ଅବସ୍ଥାନ କଲେ । (ସୂଚନାଯୋଗ୍ୟ ଆଗ ଭକ୍ତବୃନ୍ଦ କେବଳ 'ଯାଜପୁର' ପରିସରରେ ସୀମିତ ଅଂଚଳରେ ନିଜକୁ ଆବଦ୍ଧ ନ କରି ପାର୍ଶ୍ୱବର୍ତ୍ତୀ ସ୍ଥାନମାନଙ୍କରେ ସଂକୀର୍ତ୍ତନ ଓ ସତ୍‌ସଂଗ ଅବ୍ୟାହତ ରଖିଥିଲେ । ହରିପୁର ତନ୍ମଧ୍ୟରୁ ଏକ ପ୍ରଧାନ ସ୍ଥାନ ଥିଲା ।)

ଶ୍ରୀଚୈତନ୍ୟଦେବ ସକଳ ପରିଜ୍ଞାତ ହୋଇ ଅଧୋଲିଖିତ ଶ୍ଳୋକଟି ଲେଖି ଭକ୍ତାଗ୍ରଗଣ୍ୟ ହରିଦାଶଙ୍କୁ ପଠାଇଲେ । ଅନ୍ୟାନ୍ୟ ବିଷୟ ମଧ୍ୟରେ ପତ୍ରରେ ଲେଖାଥିଲା-

ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁନା
ଅମାନିନା ମାନଦେନ କୀର୍ତ୍ତନୀୟଃ ସଦାହରିଃ ॥

ନାମତଃ ରିକ୍ତ ଅଭିମାନୀ ବୈଷ୍ଣବମାନଙ୍କ ହୃଦୟ ବିଚଳିତ ହେଲା ନାହିଁ । ଅପର ପକ୍ଷେ ସ୍ୱୟଂ ଚୈତନ୍ୟ ତାଙ୍କ ନିକଟକୁ ଆସିବାକୁ କହିଲେ । ଦୟାଦ୍ର ହୃଦୟ, ଭକ୍ତି ସାଗର, କ୍ଷମାମୟ ଚୈତନ୍ୟ 'ଅତିବଡ଼ି' ଦାଶଙ୍କୁ ସାଥୀରେ ଘେନି ଯାଜପୁରେ ପହଞ୍ଚିଲେ । ଏବେ ସେମାନେ ବଚନ ରକ୍ଷା କରି ପ୍ରତ୍ୟାବୃତ୍ତ ହେଲେ । ପଞ୍ଚସଖା କୁହାଯାଉଥିବା ସନ୍ଥମାନଙ୍କ ମଧ୍ୟରୁ ଅଚ୍ୟୁତାନନ୍ଦ ଚୈତନ୍ୟଙ୍କ ଦ୍ୱାରା ସମାଦୃତ ହୋଇଥିଲେ । ଚୈତନ୍ୟ ଭକ୍ତମାନଙ୍କୁ ଈଶ୍ୱର ତୁଲ୍ୟ ଜ୍ଞାନ କରୁଥିଲେ । ଭକ୍ତ, ମୂର୍ଖ, ପଣ୍ଡିତ, ବ୍ରାହ୍ମଣ, ଚଣ୍ଡାଳ ଏହି ଭେଦ ତାଙ୍କର ନଥିଲା ।

ପୁରୁଷୋତ୍ତମ କ୍ଷେତ୍ରରୁ ଅଲାରନାଥ ମାର୍ଗ ଦେଇ ଦକ୍ଷିଣାପଥ ଯାତ୍ରାକଲେ । ବିଦ୍ୟାନଗର ରାଜ୍ୟର ଶାସକ ଶ୍ରୀ ରାୟ ରାମାନନ୍ଦଙ୍କ ସହ ତାଙ୍କ ସାକ୍ଷାତ ବହୁତ ମହତ୍ତ୍ୱପୂର୍ଣ୍ଣ । ତାଙ୍କ ଅନୁରୋଧ କ୍ରମେ ଶ୍ରୀଚୈତନ୍ୟ କିଛିକାଳ ତାଙ୍କ ଭବନରେ ଅତିଥି ହୋଇଥିଲେ । ଉଭୟ ମହାପୁରଷଙ୍କ ଅଧିକାଂଶ ସମୟ ଶାସ୍ତ୍ର ଆଲୋଚନାରେ ବ୍ୟତୀତ ହେଉଥିଲା । ତଦୁତ୍ତାରୁ ଶ୍ରୀଚୈତନ୍ୟ ସମଗ୍ର ଦକ୍ଷିଣ ଭାରତ ପାଦରେ ଚାଲିଚାଲି ପରିଭ୍ରମଣ କରିଥିଲେ । ବିଶେଷକରି ତାମିଲନାଡୁର ଭକ୍ତି ମାର୍ଗ ତାଙ୍କୁ ଅଧିକ ଉତ୍ସାହିତ କରିଥିଲା । ଲୀଳାଶୁକଙ୍କର କୃଷ୍ଣ କର୍ଣ୍ଣାମୃତମ୍ ତାଙ୍କ ଉପରେ ଦୀର୍ଘସ୍ଥାୟୀ ପ୍ରଭାବ ବିସ୍ତାର କରିଥିଲା । ଦାକ୍ଷିଣାତ୍ୟରେ ଭ୍ରମଣ କାଳୀନ ଅନୁଭୂତି ଚୈତନ୍ୟ ଚରିତାମୃତ ଏବଂ ଚୈତନ୍ୟ ଭାଗବତରେ ବର୍ଣ୍ଣିତ ହୋଇଛି । ସାମୂହିକ ଭାବେ ଭକ୍ତିସ୍ରୋତର ପ୍ଲାବନ ତଥା ହିନ୍ଦୁଧର୍ମ ମାଧ୍ୟମରେ ଜାତୀୟ ଏକ୍ୟ ସ୍ଥାପନ ଏବଂ ବ୍ୟକ୍ତିଗତ ଚମତ୍କରିତା ବହୁତ ଅଧିକ । ଦାକ୍ଷିଣାତ୍ୟ ପ୍ରବଜ୍ୟାରୁ ବାହୁଡ଼ି ଶ୍ରୀକ୍ଷେତ୍ରରେ ରହିବାକୁ ଲାଗିଲେ । ଭକ୍ତ, ସନ୍ଥ ସେବକ ପରିବେଷ୍ଟିତ ହୋଇ ମୁଖ୍ୟତଃ ଗଭୀର ଆଧ୍ୟାତ୍ମିକ ବାତାବରଣ ମଧ୍ୟରେ ସମୟ ଅତିବାହିତ ହେବାକୁ ଲାଗିଲା । ଅଷ୍ଟପ୍ରହର ନାମଯଜ୍ଞ, ଚବିଶ ପ୍ରହର ନାମଯଜ୍ଞର ପ୍ରବର୍ତ୍ତନ କରି ଈଶ୍ୱରଙ୍କ ସର୍ବ ସୁଲଭତା ପ୍ରତିଷ୍ଠା କରିଗଲେ, ଯାହା ଏ ପର୍ଯ୍ୟନ୍ତ ସମଗ୍ର ଓଡ଼ିଶା ବିଶେଷ କରି ଉପକୂଳ ଓଡ଼ିଶାରେ ଏ ଯାବତ୍ ଅପ୍ରତିହତ ଭାବେ ପ୍ରବାହିତ ହୋଇ ଆସୁଅଛି । ନାମ ସଂକୀର୍ତ୍ତନ ଦ୍ୱାରା ମାନବ ସମାଜକୁ ଈଶ୍ୱର ପ୍ରେମରେ ପ୍ରଭାବିତ କରିବା ତାଙ୍କର ମୂଳମନ୍ତ୍ର ଥିଲା । ସେ ଭାବ ବିହ୍ୱଳ ହୋଇ ଗାନ କରୁଥିଲେ-

ହରେର୍ନାମ ହରେର୍ନାମ ହରେର୍ନାମେବ କେବଳଂ
କଳୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ॥

ନାମ ସଂକୀର୍ତ୍ତନ ଫଳରେ ଈଶ୍ୱର ପ୍ରେମ ହୃଦୟରେ ସ୍ୱତଃ ଜାଗ୍ରତ ହୁଏ । ଚିତ୍ତ ଦର୍ପଣତୁଲ୍ୟ ଉଜ୍ଜ୍ୱଳ କରିବାକୁ ହେଲେ ନାମଜପ ସର୍ବାଦୌକରଣୀୟ । ଭାଗବତ ପାଠ, ନାମ ସଂକୀର୍ତ୍ତନ, ସତ୍‌ସଂଗ ଏବଂ ତୀର୍ଥାଟନ ମହାପ୍ରଭୁଙ୍କ ମତରେ ଧର୍ମ ସାଧନର ପ୍ରଧାନ ଉପାଦାନ । ତାଙ୍କ ପ୍ରବର୍ତ୍ତିତ ଧର୍ମୀୟ ଧାରାରେ ଜାତି, ଧର୍ମ, ଗୋଷ୍ଠୀ, ବର୍ଣ୍ଣ, ଲିଂଗ ଭେଦ ନଥିଲା । ସେ ସମସ୍ତ ନର-ନାରୀଙ୍କୁ ଭକ୍ତି ପଥରେ ଘେନି ଯିବାର ପ୍ରୟାସ କରିଥିଲେ । ଏପରିକି ମୁସଲମାନମାନଙ୍କୁ ମଧ୍ୟ ସେ ନିଜର ଭକ୍ତି ପଥର ପଥିକ କରି ମୁକ୍ତି ପ୍ରଦାନ କରିବାର ପ୍ରୟାସ କରିଥିଲେ । ତାଙ୍କ ପ୍ରେମ, ଉଚ୍ଚ ମାନବିକତା, କ୍ଷମାଶୀଳତା ଏବଂ ଆତ୍ମତ୍ୟାଗର ପଟାନ୍ତର ନାହିଁ । ତାଙ୍କ ମତରେ କୃଷ୍ଣଙ୍କ ପ୍ରତି ପ୍ରେମ ସମସ୍ତ ପାପ ନାଶନର ସର୍ବୋତ୍ତମ ଏବଂ ସରଳତମ ପନ୍ଥା ।

ସମସ୍ତ ବୈଷ୍ଣବ ଭ୍ରାତୃଭାବରେ ପ୍ରଭୁଙ୍କ ନାମ ସଂକୀର୍ତ୍ତନ କରିବା କର୍ତ୍ତବ୍ୟ । ବୈଷ୍ଣବଙ୍କ ସହ ମିଳିତ ହେବା ସତ୍‌ସଂଗ ପର୍ଯ୍ୟାୟର । ଦୃଢ଼ ଭକ୍ତି ଏବଂ ଦୀର୍ଘକାଳୀନ ଅଭ୍ୟାସ ସେବା ଭାବ, ଈଶ୍ୱରୀୟ ଆଶୀର୍ବାଦ ଫଳରେ ମନୁଷ୍ୟ ମୁକ୍ତି ସୋପାନରେ ଅଧିଷ୍ଠିତ ହୋଇ ପାରିବ ।

ତାଙ୍କ ଜୀବନର ସ୍ୱଳ୍ପ ୪୭ ବର୍ଷ ମଧ୍ୟରୁ ପୁରୀରେ ୧୭ବର୍ଷ ଅତିବାହିତ ହୋଇଥିଲା । ସେ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରୁଥିଲେ । କୁହାଯାଏ ଅତ୍ୟଧିକ ଭାବାବିଷ୍ଟ ହୋଇ ସମୁଦ୍ରରେ ଶ୍ରୀକୃଷ୍ଣଙ୍କ ବର୍ଣ୍ଣସାମ୍ୟ ବିଚାରୀ ଆଲିଙ୍ଗନ କରିବାକୁ ଯାଇ ୧୫୩୩ରେ ପ୍ରାଣ ବିସର୍ଜନ କରିଛନ୍ତି । ଅନ୍ୟଏକ ଜନଶ୍ରୁତି ଅନୁସାରେ ପ୍ରତିଦିନ ଶ୍ରୀଜଗନ୍ନାଥ ଦର୍ଶନ ପରେ ଜଳ ତୁଳସୀ ସେବନ କରୁଥିଲେ । ଉକ୍ତ ଦିନ ଗମ୍ଭୀରାରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଶ୍ରୀମନ୍ଦିର ଗମ୍ଭୀରା ଭିତରକୁ ଯିବା ପରେ ଆଉ ପଦାକୁ ବାହାରି ନାହାଁନ୍ତି । ଅର୍ଥାତ୍ ଜଗନ୍ନାଥଙ୍କ ବିଗ୍ରହରେ ସେ ଲୀନ ହୋଇଗଲେ । ସମକାଳୀନ ଭାରତ ବର୍ଷର ଅନ୍ୟ କେତେକ ସନ୍ଥଙ୍କ ସଂପର୍କରେ ମଧ୍ୟ ଏହିପରି ଲୋକକଥା ରହିଥିବାର ଜଣାଯାଏ ।।



# ମହାପ୍ରଭୁ ଚୈତନ୍ୟ ଏବଂ ତାଙ୍କ ଦାର୍ଶନିକ ସିଦ୍ଧାନ୍ତ

ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ଲିଖିତ କୌଣସି ସ୍ୱତନ୍ତ୍ର ଗ୍ରନ୍ଥ ଉପଲବ୍ଧ ନୁହେଁ, ଯାହାର ଆଧାରରେ ତାଙ୍କ ଦାର୍ଶନିକ ସିଦ୍ଧାନ୍ତର ସମୀକ୍ଷା କରାଯାଇ ପାରିବ । ଅତଃ ତାଙ୍କ ଦାର୍ଶନିକ ସିଦ୍ଧାନ୍ତର ଯତ୍ କିଞ୍ଚିତ ବୀଜ ତାଙ୍କ ଚରିତ ଗ୍ରନ୍ଥରେ ହିଁ ଦେଖାଯାଏ, ଯାହା ତାଙ୍କ ଅନୁଗାମୀମାନଙ୍କ ଦ୍ୱାରା ରଚିତ ହୋଇଛି । ଏଠାରେ ସେହି ଚରିତ ଗ୍ରନ୍ଥ ଆଧାରରେ ହିଁ ଚୈତନ୍ୟଙ୍କ ଦାର୍ଶନିକ ସିଦ୍ଧାନ୍ତର ନିରୂପଣ କରାଯାଉଛି ।

ମହାପ୍ରଭୁ ଚୈତନ୍ୟ (୧୪୮୫-୧୫୩୩ A.D.)ଙ୍କ ଦାର୍ଶନିକ ସିଦ୍ଧାନ୍ତ ଅଚିନ୍ତ୍ୟ ଭେଦାଭେଦବାଦ । ଏହି ସିଦ୍ଧାନ୍ତ ଅନ୍ତର୍ଗତ ଭଗବାନଙ୍କ ଶକ୍ତି ହେଉଛି ଅଚିନ୍ତ୍ୟ । ଏଣୁ ଭଗବାନ୍ ଏବଂ ଜଗତରେ ଭେଦ ବା ଅଭେଦ ଏହା ମଧ୍ୟ ଅଚିନ୍ତ୍ୟ । ଏଥିପାଇଁ ଏହି ସିଦ୍ଧାନ୍ତର ନାମ ଅଚିନ୍ତ୍ୟ ଭେଦାଭେଦ । ୧. ଭେଦାଭେଦ ଅଚିନ୍ତ୍ୟ ହେବା କାରଣୁ ଚୈତନ୍ୟ ସଂପ୍ରଦାୟର ଅନୁରୂପ ଜଗତ୍, ଶଙ୍କରଙ୍କ ବେଦାନ୍ତ ପରି ମିଥ୍ୟା ନହୋଇ ସତ୍ୟ ହୋଇଥାଏ । ପ୍ରଳୟ କାଳରେ ମଧ୍ୟ ଜଗତ୍ ଭଗବାନଙ୍କ ସହିତ ସେହିପରି ସୂକ୍ଷ୍ମ ରୂପରେ ସ୍ଥିତ ହୋଇ ରହିଥାଏ, ଯେପରି ରାତ୍ରିରେ ପକ୍ଷୀ ବଣରେ ଲୀନ ହୋଇଯାଇଥାଏ ।

ଶାଙ୍କର ବେଦାନ୍ତ ପରି ଚୈତନ୍ୟ ସଂପ୍ରଦାୟ ଅନ୍ତର୍ଗତ ବ୍ରହ୍ମକୁ ନିର୍ଗୁଣ ସ୍ୱୀକାର ନକରି ପୂର୍ଣ୍ଣ ଭାବେ ସଗୁଣ, ସ୍ୱୀକାର କରିଅଛନ୍ତି । ବ୍ରହ୍ମର ଶକ୍ତି ଅନେକ । ଚୈତନ୍ୟ ସଂପ୍ରଦାୟ ଅନ୍ତର୍ଗତ ଭଗବାନଙ୍କ ଶକ୍ତିର ତିନିରୂପ ହେଉଛି ବିଷ୍ଣୁଶକ୍ତି, କ୍ଷେତ୍ରଜ୍ଞଶକ୍ତି ଓ ଅବିଦ୍ୟାଶକ୍ତି । ୨. ବିଷ୍ଣୁ ଶକ୍ତିକୁ ମଧ୍ୟ ହ୍ଲାଦିନୀ, ସନ୍ଧିନୀ ଏବଂ ସଂବିତ୍ ଭେଦରେ ବିଭାଜିତ କରାଯାଇଛି । ସତ୍, ଚିତ୍ ଏବଂ ଆନନ୍ଦ ଶକ୍ତିଗୁଡ଼ିକ ପରାଶକ୍ତି ବା ବିଷ୍ଣୁ ଶକ୍ତିର ଅନ୍ତର୍ଗତ । କ୍ଷେତ୍ରଜ୍ଞଶକ୍ତି (ଜୀବଶକ୍ତି) ଏବଂ ଅବିଦ୍ୟା ଶକ୍ତି ଭଗବାନଙ୍କ ପରାଶକ୍ତିର ଅନ୍ତର୍ଗତ ନୁହେଁ ।

ବୈଷ୍ଣବ ଦର୍ଶନର ବ୍ରହ୍ମ ପ୍ରାକୃତ ଗୁଣ ରହିତ ହୋଇ ମଧ୍ୟ ଅପ୍ରାକୃତ ବିଶେଷଣରେ ବିଶିଷ୍ଟ ।

ଶ୍ରୀମଦ୍ ଭାଗବତ୍ ଗୀତା ଅନ୍ତର୍ଗତ ମୟାଦ୍ୱାରା ଈଶ୍ୱରଙ୍କ ନିୟନ୍ତୃତ୍ୱ ବିଚାରଣା ମିଳିଥାଏ । ମାୟାଶକ୍ତିରେ ସଂପନ୍ନ । ଚୈତନ୍ୟ ଦର୍ଶନର ଈଶ୍ୱର ମଧ୍ୟ ଜୀବର ନିୟନ୍ତା । ଈଶ୍ୱର ନିଜର ଅଚିନ୍ତ୍ୟ ଶକ୍ତିଦ୍ୱାରା ଜଗତକୁ ସୃଷ୍ଟି କରିଥାନ୍ତି । ଈଶ୍ୱର ସୃଷ୍ଟ ଜଗତ କଦାପି ମିଥ୍ୟା ହୋଇ ନପାରେ । କିନ୍ତୁ 'ଯଦୁତ୍ପତ୍ୟାଦି ବିନାଶିତତ୍' ଅନୁସାରେ ବିନାଶଶୀଳ ଅବଶ୍ୟ ହେବ । ଏହା ହିଁ ଶଙ୍କର ବେଦାନ୍ତ ଏବଂ ଚୈତନ୍ୟ ଦର୍ଶନର ଜଗତ ସଂବନ୍ଧୀ ଦୃଷ୍ଟିକୋଣର ପ୍ରଭେଦ । ଶାଙ୍କର ବେଦାନ୍ତରେ ଜଗତ ପରମାତ୍ମାଙ୍କ ଅବିଦ୍ୟା ଶକ୍ତିରୁ ଉତ୍ପନ୍ନ ହେବା କାରଣରୁ ମିଥ୍ୟା ।

ଚୈତନ୍ୟ ସଂପ୍ରଦାୟର ଭକ୍ତି ସଂବନ୍ଧୀ ସିଦ୍ଧାନ୍ତର ସଂକେତ ଆମେ ଚୈତନ୍ୟ ଏବଂ ରାମାନନ୍ଦଙ୍କ ସଂବାଦରୁ ପ୍ରାପ୍ତ ହୋଇଥାଉ । ରାମାନନ୍ଦଙ୍କ ବକ୍ତବ୍ୟ ହେଉଛି କି ବର୍ଣ୍ଣାଶ୍ରମ ବ୍ୟବସ୍ଥାଗତ କର୍ମ କରିବା ଦ୍ୱାରା ଭଗବାନଙ୍କ ଭକ୍ତି ପ୍ରାପ୍ତ ହୋଇଥାଏ । କିନ୍ତୁ ଭକ୍ତି ରସାମୃତ ସିନ୍ଧୁକାରଙ୍କ ମତ ଚୈତନ୍ୟ ଚରିତାମୃତକାରଙ୍କ ଉକ୍ତ ମତଠାରୁ ଭିନ୍ନ । ଭକ୍ତିରସାମୃତ ସିନ୍ଧୁକାରଙ୍କ ବକ୍ତବ୍ୟ ହେଲା, ଭକ୍ତି ସମସ୍ତ ଅଭିଳାଷଶୂନ୍ୟ ତଥା ଜ୍ଞାନ- କର୍ମାଦିରୁ ଅନାବୃତ୍ତ । ଏହିପରି ଅନୁକୂଲ୍ୟ ସହିତ ଭଗବାନ୍ କୃଷ୍ଣଙ୍କ ଅନୁସେବନ ହେଉଛି ଭକ୍ତି । ଏଠାରେ ଏହା ସୂଚନା ଯୋଗ୍ୟ ଯେ ଚୈତନ୍ୟ ରାମାନନ୍ଦଙ୍କ ଏହି ଉପର୍ଯ୍ୟୁକ୍ତ ମତସହ ସହମତ ନଥିଲେ । ତାଙ୍କ ଭକ୍ତି ଥିଲା ବର୍ଣ୍ଣାଶ୍ରମ ବ୍ୟବସ୍ଥାଗତ କର୍ମର ବିଧାନରୁ ଭକ୍ତିର ଉପଲବ୍ଧି ହୋଇଥାଏ । ଚୈତନ୍ୟଙ୍କ ଉକ୍ତ ଅସହମତି ଦେଖି ରାମାନନ୍ଦ, ଭକ୍ତିକୁ ଏକ ଅଧିକ ଉଚ୍ଚତର ସ୍ଥିତି ମାନିଥିଲେ । ତାଙ୍କ ଅନୁସାରେ ଭକ୍ତ ଈଶ୍ୱର ପ୍ରାପ୍ତିର ଅନୁଷ୍ଠାନ କରି ସମସ୍ତ କାମନାକୁ ତ୍ୟାଗ କରି ଦେଇଥାଏ । ଏହାପରେ ଭକ୍ତିର ଏହି ସ୍ଥିତି ଆସିଥାଏ । ଯାହା ଅନୁସାରେ ଭକ୍ତ ଭାଗବତ୍ ପ୍ରେମଦ୍ୱାରା ସମସ୍ତ କର୍ମ ବିଧାନକୁ ତ୍ୟାଗ କରି ଦେଇଥାଏ । ଏହାପରେ ଭକ୍ତିର ଏହି ଜ୍ଞାନ ଗର୍ଭିତ ସ୍ଥିତି ଆସିଥାଏ । ଯହିଁରେ ଭକ୍ତିକୁ ଭଗବାନଙ୍କ ମହାତ୍ମ୍ୟ ଏବଂ ସ୍ୱଭାବରର ଜ୍ଞାନ ଭକ୍ତିର ବାଚକ ନହୋଇ ସାଧକ ହିଁ ହୋଇଥାଏ ।

**୧. ସ୍ୱରୂପାଦି ଭିନ୍ନତ୍ୱେନ ଚିନ୍ତୟିତୁ ମଶକ୍ୟତ୍ୱାଦ୍ ଭେଦଃ, ଭିନ୍ନତ୍ୱେନ ଚିନ୍ତୟିତୁ ମଶକ୍ୟତ୍ୱାଦ୍ ଭେଦଶ୍ଚ ପ୍ରତୀୟତେ ଇତି ଶକ୍ତି ଶକ୍ତିମତୋ ଭେଦାଭେଦାବଂଗୀକୃତୌ । ତୌ ଚ ଅଚିନ୍ତ୍ୟୌ । ସ୍ୱୟମେତୁ ଅଚିନ୍ତ୍ୟ**

ଭେଦାଭେଦାବେବ ଅଚିନ୍ତ୍ୟ ଶକ୍ତିତ୍ୱାତ୍ । (ଜୀବଗୋସ୍ୱାମୀ, ସର୍ବ ସଂବାଦିନୀ)

୨. ବିଷ୍ଣୁ ପରାପ୍ରୋକ୍ତା କ୍ଷେତ୍ରଜ୍ଞାଖ୍ୟା ତଥା ପରା
ଅବିଦ୍ୟା କର୍ମ ସଂଜ୍ଞାନ୍ୟା ତୃତୀୟା ଶକ୍ତି ରିଷ୍ୟତେ ।
(ବିଷ୍ଣୁ ପୁରାଣ ୬/୭/୬୧)

ପଞ୍ଚଧାଭକ୍ତି- ଭଗବାନଙ୍କ ପ୍ରତି ଭକ୍ତଙ୍କର ଯେଉଁ ସ୍ୱାଭାବିକ ଏବଂ ଅବିଚ୍ଛେଦ୍ୟ ଅନୁରାଗ ହୋଇଥାଏ, ତାହାକୁ ପ୍ରେମାଭକ୍ତି କୁହାଯାଏ । ଏହା ପଞ୍ଚଧା ବିଭକ୍ତ, ଯଥା- ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଏବଂ ମାଧୁର୍ଯ୍ୟ ।

ଶୁଦ୍ଧାଭକ୍ତି- ଚୈତନ୍ୟ ଶୁଦ୍ଧାଭକ୍ତିକୁ ପୃଥକ ଭାବରେ ଚର୍ଚ୍ଚା କରିଅଛନ୍ତି । ଚୈତନ୍ୟଙ୍କ ମତାନୁସାରେ ଶୁଦ୍ଧାଭକ୍ତି ହେଉଛି- ଯହିଁରେ ଭକ୍ତ ସମସ୍ତ କାମନା, ବୈଧାନିକ ଉପାସନା, ଜ୍ଞାନ ଏବଂ କର୍ମକୁ ତ୍ୟାଗକରି ଦେଇଥାଏ ଏବଂ ନିଜର ସମସ୍ତ ଇନ୍ଦ୍ରିୟର ସାମର୍ଥ୍ୟ ଏକମାତ୍ର କୃଷ୍ଣଙ୍କଠାରେ ଲୀନ ହୋଇଥାଏ । ଶୁଦ୍ଧା ଭକ୍ତି ସଂପନ୍ନ ଭକ୍ତ ଭଗବାନଙ୍କଠାରୁ କୌଣସି ପ୍ରକାର କାମନା ପୂର୍ତ୍ତିର ଇଚ୍ଛା କରି ନଥାନ୍ତି । ତାଙ୍କୁ କେବଳ ଭଗବାନ୍‌ଙ୍କ ଅନୁରାଗରୁ ହିଁ ଆନନ୍ଦ ମିଳିଥାଏ । ଶାଙ୍କର ବେଦାନ୍ତ ଏବଂ ଚୈତନ୍ୟ ସିଦ୍ଧାନ୍ତ ପରଂପରା ବୈଷମ୍ୟ ହୋଇଥିଲେ ହେଁ, ଏହି ସାମ୍ୟ ବିଶେଷ ରୂପେ ଉଲ୍ଲେଖନୀୟ ଯେ ଯେଉଁ ପରି ଶାଙ୍କର ବେଦାନ୍ତ ଅନ୍ତର୍ଗତ କର୍ମରୁ ମୁକ୍ତିରେ ସାକ୍ଷାତ୍ ସଂବଂଧ ନହେବା ପରେ ମଧ୍ୟ ଆଚାର ଏବଂ ଦାର୍ଶନିକ ଦୃଷ୍ଟିରୁ ତା'ର ମହତ୍ତ୍ୱ ସ୍ୱୀକାର କରାଯାଇଛି, ସେହିପରି ଚୈତନ୍ୟ ବିଚାର ପଦ୍ଧତି ଅନୁସାରେ ମଧ୍ୟ ଭକ୍ତ ପାଇଁ ଆଚାରର ମହତ୍ତ୍ୱପୂର୍ଣ୍ଣ ଉପଯୋଗିତା ନିର୍ଦ୍ଦେଶିତ ହୋଇଛି । ଏ ସଂବନ୍ଧରେ ଚୈତନ୍ୟ ଦର୍ଶନ ଅନ୍ତର୍ଗତ ଏହା ସ୍ପଷ୍ଟ ଭାବେ ଉଲ୍ଲିଖିତ ହୋଇଅଛି ଯେ କୃଷ୍ଣଙ୍କ ଭକ୍ତକୁ ଦୟାଳୁ, ସତ୍ୟପାଳକ, ସମଦୃଷ୍ଟି ସଂପନ୍ନ, ଅନପକାରୀ, ଉଦାରଚେତ୍ତା, ସହୃଦୟ, ଶୁଦ୍ଧ, ନିଃସ୍ୱାର୍ଥୀ ଏବଂ ଶାନ୍ତ ହେବା ଉଚିତ । ଏହିପରି ଶାଙ୍କର ବେଦାନ୍ତ ଏବଂ ଚୈତନ୍ୟ ଦର୍ଶନ ଉଭୟ ମଧ୍ୟରେ ଥିବା ଆଚାର ପକ୍ଷ ଉପରେ ସମାନ ଭାବେ ନିର୍ଦ୍ଦେଶିତ ହୋଇଅଛି ।

ବଲ୍ଲଭ ଏବଂ ଚୈତନ୍ୟଙ୍କ ଦାର୍ଶନିକ ଦୃଷ୍ଟିର ଏହା ପ୍ରମୁଖ ଭେଦ ଉଲ୍ଲେଖନୀୟ କି ଚୈତନ୍ୟଙ୍କ ଭକ୍ତିଭାବନା ସଂଗୀତ, ଭଜନ ସଂକୀର୍ତ୍ତନ ହେବା

କାରଣରୁ ପ୍ରଚୁର ଭାବୁକତାରେ ଆପ୍ଲାବିତ । ଏହାର ବିପରୀତ ବଲ୍ଲଭାଚାର୍ଯ୍ୟ ଏବଂ ତାଙ୍କ ଅନୁସର୍ତ୍ତାଗଣ ଧାର୍ମିକ ରୀତି, ନୀତି ଏବଂ ଦାର୍ଶନିକ ସିଦ୍ଧାନ୍ତର ବିଶ୍ଳେଷଣ ଏବଂ ଖଣ୍ଡନ-ମଣ୍ଡନ ଉପରେ ଅଧିକ ଥିଲା । ଚୈତନ୍ୟଙ୍କ ଭକ୍ତି ଦର୍ଶନ ପୂର୍ଣ୍ଣ ଭାବେ ଭକ୍ତିପରକ ହେବା କାରଣରୁ ସାମାନ୍ୟରୁ ସାମାନ୍ୟ ବ୍ୟକ୍ତିଙ୍କ ପାଇଁ ଗ୍ରାହ୍ୟ ଥିଲା । ତାଙ୍କ ଭକ୍ତିଦର୍ଶନ କୌଣସି ପ୍ରକାର ଜାତି, ପଂକ୍ତି ଉପରେ ଆଧାରିତ ନ ହୋଇଥିବା କାରଣରୁ ସମସ୍ତ ସମାଜରେ ଗ୍ରାହ୍ୟ ହୋଇଥିଲା । ଏଥିପାଇଁ ଚୈତନ୍ୟ ସଂପ୍ରଦାୟ ଅନ୍ତର୍ଗତ ଅନେକ ମୁସଲମାନ ସନ୍ଥ ମଧ୍ୟ ହୋଇଥିଲେ ।

କୃଷ୍ଣ ଚୈତନ୍ୟ, ନିତ୍ୟାନନ୍ଦ ଏବଂ ଅଦ୍ୱୈତାନନ୍ଦ, ଏ ତିନିଜଣ ଚୈତନ୍ୟ ସଂପ୍ରଦାୟର କର୍ଣ୍ଣଧାର ଥିଲେ । ନିତ୍ୟାନନ୍ଦଙ୍କ ଉତ୍ତରାଧିକାରୀ ନଦିଆ (ନବଦ୍ୱୀପ)ରେ ଏବଂ ଅଦ୍ୱୈତନନ୍ଦଙ୍କ ଉତ୍ତରାଧିକାରୀ ଶାନ୍ତିପୁରୀରେ ରହୁଥିଲେ । ଚୈତନ୍ୟ ସଂପ୍ରଦାୟର ମଠ ଏବଂ ମନ୍ଦିର ମଥୁରା, ବୃନ୍ଦାବନ, ତଥା ବଂଗଳାର ନଦିଆ, ଅମ୍ବିକା ଏବଂ ଅଗ୍ରଦ୍ୱୀପରେ ରହିଛି । ସିଲହଟ୍‌ରୁ ଉତ୍ତରକୁ ଏବଂ ଢାକାର ଦକ୍ଷିଣର କ୍ଷେତ୍ରରେ ମଧ୍ୟ ଚୈତନ୍ୟ ସଂବଂଧିତ ଏକ ପବିତ୍ର ସ୍ଥାନ, ଯେଉଁଠିକୁ ଦୂରରୁ ହଜାର ହଜାର ସଂଖ୍ୟାରେ ଭକ୍ତ ଦର୍ଶନ ପାଇଁ ଆସିଥାନ୍ତି ।

ଚୈତନ୍ୟ ସଂପ୍ରଦାୟର ଆଉ ଜଣେ ଉଲ୍ଲେଖନୀୟ ସନ୍ଥଙ୍କ ନାମ ରାମଶରଣ ପାଲ । ସେ ସଦ୍‌ଗୋପ ଜାତିର ଥିଲେ । ସେ ପ୍ରାୟ ୨୦୦ବର୍ଷ ପୂର୍ବେ ଚୈତନ୍ୟ ସଂପ୍ରଦାୟର ଏକ ଶାଖା କର୍ତ୍ତାଭାଜସର ସ୍ଥାପନା କରିଥିଲେ । ଏହି ଶାଖାରେ ସମସ୍ତ ଜାତିର ଲୋକଙ୍କୁ ସ୍ଥାନ ଦେଇଥିଲେ । ରାମରସନ ପାଲ କର୍ତ୍ତାବାବାଙ୍କ ନାମରେ ମଧ୍ୟ ବିଖ୍ୟାତ ହୋଇଥିଲେ । ଚୈତନ୍ୟ ମହାପ୍ରଭୁ, ନିତ୍ୟାନନ୍ଦ ଏବଂ ଅଦ୍ୱୈତାନନ୍ଦଙ୍କର କୌଣସି ଗ୍ରନ୍ଥ ମିଳେ ନାହିଁ । କିନ୍ତୁ ଚୈତନ୍ୟଙ୍କ ଶିଷ୍ୟ ରୂପଗୋସ୍ୱାମୀ ଏବଂ ସନାତନ ଗୋସ୍ୱାମୀ ଚୈତନ୍ୟ ସଂପ୍ରଦାୟର ସିଦ୍ଧାନ୍ତ ସଂବନ୍ଧରେ ବିଶେଷଭାବେ ଉଲ୍ଲେଖ କରିଅଛନ୍ତି । ସନାତନ ଗୋସ୍ୱାମୀଙ୍କ ଗ୍ରନ୍ଥ 'ଭକ୍ତି ରସାମୃତ ସିନ୍ଧୁ' ଚୈତନ୍ୟ ସଂପ୍ରଦାୟର ଏକ ବିଶେଷ ଗ୍ରନ୍ଥ, ଯହିଁରେ ଭକ୍ତିର ବିବିଧ ବିଶ୍ଳେଷଣ ଏବଂ ପ୍ରେମତତ୍ତ୍ୱ ସଂପର୍କରେ ବ୍ୟାପକ ଆଲୋଚନା ହୋଇଛି ॥



# ରାୟ ରାମାନନ୍ଦ

ରାୟ ରାମାନନ୍ଦ ପିତାଙ୍କ ନାମ ଭବାନନ୍ଦ, ପୁରୀଠାରୁ ତିନିକ୍ରୋଶ ଦୂରବର୍ତ୍ତୀ ଅଲାରନାଥଙ୍କ ନିକଟରେ ରହୁଥିଲେ । ସେ କରଣ ବଂଶୀୟ କାୟସ୍ଥ ଥିଲେ । ଭବାନନ୍ଦଙ୍କର ରାୟରାମାନନ୍ଦ, ଗୋପୀନାଥ ପଟ୍ଟନାୟ, କଳାନିଧି, ସୁଧାନିଧି ଏବଂ ବରଣୀନାଥ ନାମକ ପାଞ୍ଚପୁତ୍ର ଥିଲେ । ମହାରାଜ ପ୍ରତାପରୁଦ୍ରଦେବଙ୍କ ରାଜଦରବାରରେ ପ୍ରମୁଖ କର୍ମଚାରୀ ଥିଲେ । ଗୋପୀନାଥ କଟକ ଦରବାର ଦିଗରୁ ମାଲଜେଠା ପ୍ରଦେଶର ଶାସକ ଥିଲେ । ବରଣୀନାଥ ଦରବାରରେ କୌଣସି ଉଚ୍ଚ ପଦାଧିକାରୀ ଏବଂ ରାୟ ରାମାନନ୍ଦ ଉତ୍କଳପ୍ରଦେଶ ଅନ୍ତର୍ଗତ ବିଦ୍ୟାନଗର ରାଜ୍ୟର ଶାସକ ଥିଲେ ।

ରାୟ ମହାଶୟ ରାଜ କାର୍ଯ୍ୟର ପ୍ରବୀଣ, ଦେଶ କାଳଜ୍ଞାତା ବିନୟୀ ସୁର ତଥା ସଦାଚାରୀ ପୁରୁଷ ଥିଲେ । ପାର୍ଶି ପଣ୍ଡିତ ହେବା ସହିତ ସଂସ୍କୃତରେ ଯଥେଷ୍ଟ ଅବଗାହନ ଥିଲା । ସଂସ୍କୃତ ସାହିତ୍ୟରେ ତାଙ୍କର ଯଥେଷ୍ଟ ପ୍ରବେଶ ଥିଲା । ସକଳ ଶାସ୍ତ୍ରରେ ତାଙ୍କର ପାରିଦର୍ଶିତା ଥିଲା । ବିଦ୍ୟା ବ୍ୟାସଂଗୀ ହେବା କାରଣରୁ ତାଙ୍କର ସାର୍ବଭୌମ ଭଟ୍ଟାଚାର୍ଯ୍ୟଙ୍କ ସହିତ ଅତ୍ୟଧିକ ସ୍ନେହ ଥିଲା । ସେ ଯେବେ ରାଜକାର୍ଯ୍ୟରେ ଓଡ଼ିଶା ଯାଉଥିଲେ ତେବେ ପୁରୀ ଯାଇ ସାର୍ବଭୌମଙ୍କ ସହିତ ସାକ୍ଷାତ୍ କରୁଥିଲେ । ଶାସ୍ତ୍ରାଲୋଚନାରେ ବ୍ୟାପୃତ ରହୁଥିଲେ । ସାର୍ବଭୌମଙ୍କର ମଧ୍ୟ ତାଙ୍କ ପ୍ରତି ଗଭୀର ଅନୁରାଗ ଥିଲା । ଉଭୟ ସରସ, ସରଳ ବିଦ୍ୱାନ ଏବଂ ଶାସ୍ତ୍ରାଭ୍ୟାସୀ ଥିଲେ । ମହାରାଜ ପ୍ରତାପରୁଦ୍ର ମଧ୍ୟ କାବ୍ୟାମୋଦୀ ରସିକ ଥିଲେ । ଉଭୟଙ୍କୁ ରାଜା ସମାଦର କରୁଥିଲେ । ରାୟ ମହାଶୟ ତାଙ୍କ 'ଜଗନ୍ନାଥ ବଲ୍ଲଭ' ନାଟକରେ ମହାରାଜ ପ୍ରତାପରୁଦ୍ରଙ୍କ ବହୁ ଅଧିକ ପ୍ରଶଂସା କରିଅଛନ୍ତି ।

ରାୟ ରାମାନନ୍ଦ କରଣ ବଂଶୀୟ କାୟସ୍ଥ ଥିଲେ । ତେବେ ବି ତାଙ୍କ ଆଚାର ବିଚାର ବଡ଼ ଶୁଦ୍ଧ ଏବଂ ପବିତ୍ର ଥିଲା । ଦେବ-ବ୍ରାହ୍ମଣଙ୍କୁ ଅତ୍ୟଧିକ ଶ୍ରଦ୍ଧା

କରୁଥିଲେ । ବୈଦିକ ଶ୍ରୌତ- ସ୍ମାର୍ତ୍ତ ଆଦି କର୍ମ ବିଧିବତ୍ ଅନୁଷ୍ଠାନ କରୁଥିଲେ । ଶାସନ କାର୍ଯ୍ୟ ପରିଚାଳନା କରିବା ସହିତ ଶ୍ରୀକୃଷ୍ଣ ଚରଣାରବିନ୍ଦରେ ମନ ଲଗାଇଲେ ।

ଦିନେ ପ୍ରାତଃକାଳରେ ପୁଣ୍ୟତୋୟା ଗୋଦାବରୀରେ ସ୍ନାନ କରିବା ନିମିତ୍ତ ଯାଇଥିଲେ । ତାଙ୍କ ସହିତ ବ୍ରାହ୍ମଣମାନେ ସ୍ତୋତ୍ର ପାଠ ଆଦିକରି ଯାଉଥାନ୍ତି । ବ୍ରାହ୍ମଣମାନେ ପୂତ ସଲିଳା ଗୋଦାବରୀରେ ସ୍ନାନକଲେ । ରାୟ ରାମାନନ୍ଦ ସ୍ନାନ ତର୍ପଣାଦି ସମାପ୍ତ କରି ଦେବ-ପିତୃ-ଋଷି ନିରାଜନା କରି, ବ୍ରାହ୍ମଣମାନଙ୍କୁ ଦକ୍ଷିଣା ଦେଇ ରାଜଧାନୀକୁ ଫେରିଆସୁଥାନ୍ତି-

ସେହି ସମୟରେ ଦୂରରୁ ଜଣେ ଏକାକୀ ବୃକ୍ଷମୂଳରେ କଷାୟ ବସ୍ତ୍ରଧାରୀ ପରମ ରୂପ ଲାବଣ୍ୟ ଯୁକ୍ତ ଯୁବକ ସନ୍ନ୍ୟାସୀଙ୍କୁ ଦେଖିଲେ । ତାଙ୍କୁ ଦେଖି ରାୟ ରାମାନନ୍ଦ ମନ୍ତ୍ରମୁଗ୍ଧ ହୋଇଗଲେ । ସେ ଦେଖିଲେ ସନ୍ନ୍ୟାସୀଙ୍କ ଅଂଗ ପ୍ରତ୍ୟଂଗରୁ ମଧୁରିମା ନିର୍ଗତ ହୋଇ ନିର୍ଜନ ପ୍ରଦେଶକୁ ମଧୁମୟ, ଆନନ୍ଦମୟ ତଥା ଉଲ୍ଲାସମୟ କରୁଅଛି । ସନ୍ନ୍ୟାସୀ ଏକ ଲୟରେ ରାୟ ରାମାନନ୍ଦଙ୍କୁ ଦେଖୁଅଛନ୍ତି । ତାଙ୍କ ମୁଖରେ ପ୍ରସନ୍ନତା, ଉତ୍ସୁକତା ଏବଂ ତନ୍ମୟତା ପ୍ରାପ୍ତ କରିବାର ଉତ୍କଟ ଇଛା ପ୍ରକାଶିତ । ରାୟ ମହାଶୟ ନିଜକୁ ଆଉ ସମ୍ଭାଳି ପାରିଲେ ନାହିଁ । କି ମୋହିନୀ ମନ୍ତ୍ର ସେ ପଢ଼ିଲେ କି କ'ଣ ସେ ମନ୍ତ୍ରମୁଗ୍ଧ ହୋଇଗଲେ । ରାଜପଣର ଅଭିମାନ ତ୍ୟାଗକରି ପାଲିଙ୍କି ସିଧା ସେହି ସନ୍ନ୍ୟାସୀଙ୍କ ଦିଗକୁ ଚାଳିତ ହେଲା । ନିଜର ପ୍ରଭୁଙ୍କୁ ସେହି ସନ୍ନ୍ୟାସୀଙ୍କ ଆଡ଼କୁ ଯିବାର ଦେଖି ସେବକମାନେ ମଧ ସେ ଦିଗରେ ଚାଲିଲେ ।

ସେହି ନବୀନ ସନ୍ନ୍ୟାସୀ ଆମର ପ୍ରେମ ପରଶମଣି ଚୈତନ୍ୟ ମହାପ୍ରଭୁ ଗୋଦାବରୀ ତୀରରେ ଏକାନ୍ତରେ ସ୍ନାନାଦିରୁ ନିବୃତ୍ତ ହୋଇ ଚିନ୍ତା କରୁଥିଲେ କିପରି ରାମାନନ୍ଦଙ୍କ ସହ ସାକ୍ଷାତ୍ ହେବ । ସେହି ସମୟରେ ବାଦ୍ୟଧ୍ୱନି ଶୁଣାଗଲା । ମହାପ୍ରଭୁ ସେ ଦିଗକୁ ଲକ୍ଷ୍ୟକଲେ । ବାଦ୍ୟକାରଙ୍କ ପଛରେ ଗୋଟିଏ ସୁସଜ୍ଜିତ ପାଲିଙ୍କିରେ ଜଣେ ସୁଦର୍ଶନ ପୁରୁଷ ବସିଥିବାର ଦେଖିଲେ । ତାଙ୍କୁ ଦେଖି ସେ ରାୟ ରାମାନନ୍ଦ ବୋଲି ନିଶ୍ଚୟ କଲେ । ଏତେ ସମୃଦ୍ଧଶାଳୀ ପୁରୁଷ ଭୂମିଷ୍ଠ ହୋଇ ମହାପ୍ରଭୁଙ୍କ ଚରଣରେ ପ୍ରଣାମ କଲେ । ମହାପ୍ରଭୁ ତାଙ୍କୁ ପ୍ରଶ୍ନ କଲେ, ଆପଣଙ୍କ ନାମ କ'ଣ ରାଜା ରାମାନନ୍ଦ ରାୟ କି ? ଦୁଇହାତକୁ ଅଂଜଳି ବଦ୍ଧ କରି

ବିନୀତ ଭାବରେ ରାୟ ଉତ୍ତର କଲେ- ଭଗବାନ୍ ! ଦୀନହୀନ, ଭକ୍ତିହୀନ ଶୁଦ୍ରାଧମ ହିଁ ରାମାନନ୍ଦ ।

ଏହାଶୁଣି ହିଁ ପ୍ରଭୁ ଉଠି ରାୟ ରାମାନନ୍ଦଙ୍କୁ ଆଲିଙ୍ଗନ କଲେ । କହିଲେ- ରାୟ ମହାଶୟ ମୋତେ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଆପଣଙ୍କ ପରିଚୟ ଦେଇଛନ୍ତି । ତାଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି କେବଳ ଆପଣଙ୍କୁ ହିଁ ଦର୍ଶନ କରିବା ପାଇଁ ମୁଁ ବିଦ୍ୟାନଗର ଆସିଅଛି । କିପରି ଆପଣଙ୍କ ସହ ସାକ୍ଷାତ୍ ହେବ, ଏହି ଭାବନାରେ ଥିଲି । କୃପାସାଗର ପ୍ରଭୁଙ୍କ ଅପାର କରୁଣାରୁ ଅକସ୍ମାତ୍ ଆପଣଙ୍କ ଦର୍ଶନ ହୋଇଗଲା । ଆଜି ଆପଣଙ୍କ ଦର୍ଶନରେ ମୁଁ କୃତାର୍ଥ ହୋଇଗଲି । ମୋର ଯାତ୍ରା ସଂପୂର୍ଣ୍ଣ ସଫଳ ହୋଇଗଲା ।

ହାତଯୋଡ଼ି ଦୀନତା ପୂର୍ବକ ରାମାନନ୍ଦ କହିଲେ- ଭଗବାନ, ମୋତେ ତ ଏପରି ପ୍ରତୀତ ହେଉଛି କି ଆଜି ମୋର ଅନନ୍ତ ଜନ୍ମର ପୁଣ୍ୟୋଦୟ ହୋଇଛି, ଯେ ସାକ୍ଷାତ୍ ନାରାୟଣ ସ୍ୱରୂପ ଆପଣ ସନ୍ନ୍ୟାସୀ ବେଶ ଧାରଣ କରି ମୋତେ ପାବନ କରିବା ଲାଗି ସ୍ୱୟଂ ଉପସ୍ଥିତ ହୋଇ ଅଛନ୍ତି । ଭଟ୍ଟାଚାର୍ଯ୍ୟ ସାର୍ବଭୌମଙ୍କର ମୋ ଉପରେ ସର୍ବଦା ଅହୈତୁକୀ କୃପା ରହିଛି । ସେ ପୁତ୍ରପରି, ଶିଷ୍ୟପରି, ସେବକ ଓ ସଂବନ୍ଧି ପରି ସଦା ମୋ' ଉପରେ ଅନୁଗ୍ରହ କରିଅଛନ୍ତି । ପ୍ରତୀତ ହେଉଛି ତାଙ୍କ ଉପରେ ଆପଣଙ୍କର ଅସୀମ କୃପା ରହିଛି । ତାଙ୍କ ଆଗ୍ରହକୁ ସ୍ୱୀକାର କରି ଆପଣ ମୋତେ ଦର୍ଶନରେ କୃତାର୍ଥ କରିଛନ୍ତି । ସେ ଏକାନ୍ତରେ ମୋର କଲ୍ୟାଣ କଥା ଚିନ୍ତା କରିଥାନ୍ତି । ଫଳସ୍ୱରୂପ ଆପଣଙ୍କ ଅପୂର୍ବ ଦର୍ଶନର ସୌଭାଗ୍ୟ ମୋ'ପରି ବିଷୟୀ ଏବଂ ପରମାର୍ଥ- ପଥ ବିମୁଖ ଅଧମକୁ ମଧ୍ୟ ଆପଣ ଆଲିଙ୍ଗନ ପ୍ରଦାନ କରିଛନ୍ତି । ଏହା ଆପଣଙ୍କ ଦୀନ ବତ୍ସଳତା । ଏଥିରେ ମୋର କୌଣସି ପୁରୁଷାର୍ଥ ନାହିଁ । ପ୍ରଭୁ ଏହି ଅଧମକୁ ଏତେ ସ୍ମୃତିରେ ରଖିଛନ୍ତି, ଏହାକୁ ମୁଁ କେଉଁ ପୁଣ୍ୟର ଫଳ ବୁଝିବି । ମାହାପ୍ରଭୁ କହିଲେ- ରାୟ ମହାଶୟ ! ମୁଁ ଆପଣଙ୍କ ମୁଖରୁ ଶ୍ରୀକୃଷ୍ଣ କଥା ଶ୍ରବଣ କରିବା ପାଇଁ ଏଠାକୁ ଆସିଅଛି, କୃପା କରି ମୋତେ ଶ୍ରୀକୃଷ୍ଣ କଥା ଶୁଣାଇ କୃତାର୍ଥ କରନ୍ତୁ ।

ରାୟ ରାମାନନ୍ଦ କହିଲେ- ଭଗବାନ୍ ! ସଂସାର ପଙ୍କରେ ଲିପ୍ତ ହୋଇଯାଇଛି ମୁଁ ମାୟାବଦ୍ଧ ଜୀବ, ଆପଣଙ୍କ ସମ୍ମୁଖରେ ଶ୍ରୀକୃଷ୍ଣ କଥା କ'ଣ କହିପାରିବ ? ଆପଣ ତ ସାକ୍ଷାତ୍ ହରିଙ୍କ ସ୍ୱରୂପ ।

ମହାପ୍ରଭୁ କହିଲେ- ସନ୍ନ୍ୟାସୀ ବୁଝି ଆପଣ ମୋର ପ୍ରବଂଚନା କରନ୍ତୁ ନାହିଁ । ସାର୍ବଭୌମ ମହାଶୟ ମୋର ଶୁଷ୍କ ହୃଦୟକୁ ସରଳ କରିବା ପାଇଁ ହିଁ ଏଠାକୁ ପ୍ରେରଣ କରିଛନ୍ତି । ଆପଣ ମୋତେ ଭକ୍ତିତତ୍ତ୍ୱ ବତାଇ ମୋର ମଳିନ ମନକୁ ବିଶୁଦ୍ଧ କରନ୍ତୁ । ମହାପ୍ରଭୁ ଓ ରାମାନନ୍ଦଙ୍କ ମଝିରେ ଏ ପ୍ରକାର କଥାବାର୍ତ୍ତା ହେଉଥିଲା । ଏହି ସମୟରେ ଜଣେ ବୈଦିକ ବ୍ରାହ୍ମଣ ଆସି ପ୍ରଭୁଙ୍କୁ ଭୋଜନ ପାଇଁ ନିମନ୍ତ୍ରିତ କଲେ । ରାୟ ମହାଶୟ ମଧ୍ୟ ବୁଝିଗଲେ ଯେ ଏହା ଏତେ ଭିଡ଼ରେ ମହାପୁରୁଷଙ୍କୁ ଆନ୍ତରିକ କଥା କରିବା ଠିକ୍ ନୁହେଁ । ଏଣୁ ପୁନଃ ଆସି ଦର୍ଶନ କରିବା ଏହିପରି କହି ରାମାନନ୍ଦଜୀ ପ୍ରଭୁଙ୍କଠାରୁ ଯିବାକୁ ଆଜ୍ଞା ମାଗିଲେ । ପ୍ରଭୁ ମଧ୍ୟ କହିଲେ ଭୁଲିବେ ନାହିଁ, ପୁଣି ଆସି ଏକତ୍ର ହେବେ । ଆପଣଙ୍କ ସହ ସାକ୍ଷାତ୍ ହେବାରୁ ମୋତେ ପ୍ରସନ୍ନତା ମିଳିଛି । ଆପଣଙ୍କ ମୁଖରୁ ଶ୍ରୀକୃଷ୍ଣ କଥା ଶୁଣିବାର ବଡ଼ ଉତ୍କଟ ଇଛା ହେଉଛି । ସୁତରାଂ କାହିଁକି ନ ଆସିବେ !

ରାମାନନ୍ଦ ଧୀରେ କହିଲେ ଅବଶ୍ୟ ଆସିବି, ଶୀଘ୍ର ହିଁ ଶ୍ରୀଚରଣ ଦର୍ଶନ କରି ଆପଣାକୁ କୃତାର୍ଥ କରିବି । ପ୍ରଭୋ ! ଯେବେ ଆପଣ ଏହି ଅଧମ ଉପରେ ଅପାର ଅନୁଗ୍ରହ କରୁଛନ୍ତି, ତେବେ କିଛିକାଳ ପାଇଁ ଏଠାରେ ନିବାସ କରି ମୋତେ ସଂଗତି ସୁଖ ଦିଅନ୍ତୁ । ମୁଁ ଏତେ ଅଧିକ ପାପୀ ଯେ ଆପଣଙ୍କ ଦର୍ଶନରେ କେବଳ ମୋର ଉଦ୍ଧାର ହୋଇ ପାରିବ ନାହିଁ । ଏତିକି କହି ରାୟ ମହାଶୟ ପ୍ରଭୁଙ୍କ ପାଦ ପଦ୍ମରେ ପ୍ରଣାମ କରି ନିଜ ସେବକମାନଙ୍କ ସହ ରାଜଧାନୀ ଦିଗରେ ଚାଲିଗଲେ । ଏ ପାଖରେ ମହାପ୍ରଭୁ ମଧ୍ୟ ସେହି ବ୍ରାହ୍ମଣଙ୍କ ସହ ତାଙ୍କ ଗୃହକୁ ଭିକ୍ଷା କରିବାକୁ ଗଲେ ।

**ଶ୍ରୀ ଚୈତନ୍ୟ ମହାପ୍ରଭୁ ଏବଂ ଶ୍ରୀରାମାନନ୍ଦ ରାୟ ଅଦ୍ଭୁତ ସତସଂଗ-**

ସଂଧ୍ୟା ଆଗତ ପ୍ରାୟ, ସୂର୍ଯ୍ୟଦେବ ଆରକ୍ତ କିରଣ ଢାଳି ଅସ୍ତାଚଳ ଗୁହାରେ ନିଜକୁ ଗୋପନ କରିଦେବାର ସମୟ ଆସନ୍ନ । ପକ୍ଷୀମାନେ ନିଜ ନୀଡ଼ ଅଭିମୁଖେ ଉନ୍ମୁଖ । ମଧୁର ରାତ୍ରିର ଉପାସକ ନିଜର ପ୍ରିୟ ବସ୍ତୁ ସହିତ ମିଳିତ ହେବାପାଇଁ ଉତ୍କଣ୍ଠିତ ହୋଇ ଭଗବତୀ ନିଶାଦେବୀଙ୍କ ଆରାଧନାରେ ଲାଗି ପଡ଼ିଛନ୍ତି । ସଂସାରୀ ଲୋକେ ନିଦ୍ରା ଭଜିଲେଣି । ବିଷୟୀମାନେ ବିଷୟ ଚିନ୍ତନରେ ନିମଗ୍ନ ସଂଜମୀ ଜାଗ୍ରତ ହୋଇ ଅଖଣ୍ଡ ଜ୍ୟୋତିର ଧ୍ୟାନ କଲେଣି, ମହାପ୍ରଭୁ ମଧ୍ୟ ଏକାନ୍ତରେ ବସି ରାୟ ମହାଶୟଙ୍କ ପ୍ରତୀକ୍ଷା କରୁଅଛନ୍ତି ।

ପ୍ରେମର କେତେ ଅଧିକ ଆକର୍ଷଣ । ପ୍ରେମ ପାତ୍ରକୁ ଦୂରରୁ ସମୀପକୁ ଘେନିଆସେ । ବାହାରେ ରହିଲେ ମଧ ଭିତରକୁ ଆକର୍ଷିତ କରିନିଏ । ମଧ୍ୟସ୍ଥ ଅନ୍ତରାୟକୁ ଭାଙ୍ଗିଦେଇ ରାସ୍ତାକୁ ପରିଷ୍କାର କରିଦିଏ । ରାୟ ମହାଶୟ ଶରୀରରେ ତ ଚାଲି ଆସିଲେ, କିନ୍ତୁ ତାଙ୍କ ମନ ପ୍ରଭୁଙ୍କ ପାଦପଦ୍ମରେ ଲାଗି ରହିଥାଏ । ଶରୀରରେ ଯନ୍ତ୍ରବତ୍ ରାଜକାର୍ଯ୍ୟ କରୁଥାନ୍ତି । ସାୟଂକାଳ ହେବାରୁ ତାଙ୍କ ଶରୀର ଆପଣା ମନର ସଂଧାନରେ ଆପେ ଆପେ ସେହି ଦିଗକୁ ଚାଳିତ ହେଲା । ସେ ରାଜ ଥାଟ-ପାଟ, ପଦ ପ୍ରତିଷ୍ଠା, ମାନ ସମ୍ମାନ କୌଣସିର ପରବାୟ ନ କରି ଜଣେ ସାଧାରଣ ସେବକକୁ ସାଥୀରେ ନେଇ ଦୀନଭାବରେ ପ୍ରଭୁଙ୍କ ନିବାସ ସ୍ଥାନ ଦିଗରେ ଚାଲିଲେ । ଦୂରରୁ ଦେଖି ସେ ପ୍ରଭୁଙ୍କ ଯୁଗଳ ଚରଣରେ ପ୍ରଣାମ କଲେ । ପ୍ରଭୁ ମଧ ତାଙ୍କୁ ଉଠାଇ କଣ୍ଠରେ ଲଗାଇଲେ । ଏହାପରେ ଉଭୟ କିଛି ସମୟ ପାଇଁ ମୌନ ବସି ରହିଲେ । କିଛିକାଳ ପରେ ପ୍ରଭୁ କହିଲେ ରାୟ ମହାଶୟ ! ମୁଁ ଆପଣଙ୍କଠାରୁ କିଛି ଶ୍ରୀକୃଷ୍ଣ କଥା ଶୁଣିବାକୁ ଚାହୁଁଛି । ଆପଣ ମୋତେ କୁହନ୍ତୁ କି ଏହି ସଂସାରରେ ମନୁଷ୍ୟର ମୁଖ୍ୟ କର୍ତ୍ତବ୍ୟ କ'ଣ ? ଆପଣ ଜ୍ଞାନୀ, ଭଗବଦ୍ ଭକ୍ତ, ଏଣୁ ମୋତେ ସାଧ୍ୟ-ସାଧନର ତତ୍ତ୍ୱ ବୁଝାନ୍ତୁ ।

ରାମାନନ୍ଦ ବିନୀତ ଭାବରେ କହିଲେ, ଆପଣ ମୋ' ଦ୍ୱାରା ଆପଣଙ୍କ ମନୋଗତ ଭାବକୁ ପ୍ରକଟ କାରିବାକୁ ଚାହାଁନ୍ତି । ଭଲକଥା, ଯାହା ମୋର ଅନ୍ତଃକରଣର ପ୍ରେରଣା ହେଉଛି, ତାହାକୁ ମୁଁ ଆପଣଙ୍କ କୃପାରେ ଆପଣଙ୍କ ସମ୍ମୁଖରେ ପ୍ରକଟ କରୁଅଛି । ପ୍ରଥମେ କେଉଁ ବିଷୟକୁ ଯିବା କୁହନ୍ତୁ ।

ପ୍ରଭୁ କହିଲେ- ମନୁଷ୍ୟର ଯାହା କର୍ତ୍ତବ୍ୟ ତାହା ଆଲୋଚନା କରନ୍ତୁ ।

ରାୟ ମହାଶୟ କହିଲେ- ପ୍ରଭୋ ! ମୁଁ ବୁଝୁଛି-

ସ୍ୱେ ସ୍ୱେ କର୍ମଣ୍ୟ ଭିରତଃ ସଂସିଦ୍ଧିଂ ଲଭତେ ନରଃ ।

(ଗୀତା ୧୮/୪୫)

ଅର୍ଥାତ୍ ନିଜ ନିଜର ବର୍ଣ୍ଣାଶ୍ରମ ଧର୍ମର ଅନୁକୂଳ କର୍ମକୁ କରିବା ଦ୍ୱାରା ମନୁଷ୍ୟ ପରମସିଦ୍ଧି ପ୍ରାପ୍ତ କରିପାରେ । ଅତଃ ସେ ଯେଉଁ ବର୍ଣ୍ଣର ହୋଇଥାନ୍ତି, ସେହି କର୍ମକୁ କରି ତାହାଦ୍ୱାରା ବିଷ୍ଣୁ ଭଗବାନଙ୍କ ଆରାଧନା କରି ପାରିଥାଏ । ବର୍ଣ୍ଣାଶ୍ରମ ଧର୍ମକୁ ତ୍ୟାଗକରି ଭଗବାନ୍‌ଙ୍କୁ ପ୍ରସନ୍ନ କରିବାର ଅନ୍ୟ ଉପାୟ ଦେଖୁନାହିଁ । ଏହି କଥା ବିଷ୍ଣୁ ପୁରାଣ (୩/୮/୯)ରେ କୁହାଯାଇଛି-

ବର୍ଣ୍ଣାଶ୍ରମାଚାରବତା ପୁରୁଷେଣ ପରଃ ପୁମାନ୍
ବିଷ୍ଣୁ ରାରାଧ୍ୟତେ ପନ୍ଥା ନାନ୍ୟସ୍ତତ୍ତୋଷ କାରକଃ ॥

ବର୍ଣ୍ଣାଶ୍ରମ ଧର୍ମର କଥାଶୁଣି ଚୈତନ୍ୟ ଦେବ କହିଲେ, ନିଶ୍ଚିତ ଭାବେ ଆପଣ ବଡ଼ ସୁନ୍ଦର କଥା କହିଛନ୍ତି, କିନ୍ତୁ ପାପ ପୁଣ୍ୟ ଅନୁସାରେ ଜୀବକୁ ମାନବ ଶରୀର ପ୍ରାପ୍ତ ହୁଏ । ଏଣୁ ଯେଉଁମାନଙ୍କର ବାସନା ବିଷୟ ଭୋଗରେ ଆପ୍ଳୁତ ହୋଇଛି, ସେମାନଙ୍କ ପାଇଁ (ଧର୍ମ, ଅର୍ଥ, କାମ) ତ୍ରିପୁରୁଷାର୍ଥ ଯୁକ୍ତ କର୍ମ କରିବାର ବିଧାନ କୁହାଯାଇଛି । ମନୁଷ୍ୟ ଯଦି ସ୍ୱେଚ୍ଛାରେ ବିଷୟ ଭୋଗରେ ଲିପ୍ତ ହୋଇଯାଏ, ତେବେ ତ ତାହାର ପତନ ହୋଇଯିବ । ଅତଃ ତାକୁ ଧର୍ମର ଆଶ୍ରୟନେବା ପ୍ରୟୋଜନ । ସେହି ଧାର୍ମିକ କାର୍ଯ୍ୟର ଫଳ ସ୍ୱରୂପ ସେ ସ୍ୱର୍ଗୀୟ ସୁଖ ପ୍ରାପ୍ତ କରିଥାଏ । କିନ୍ତୁ ଏହା ମଧ୍ୟ ସର୍ବଦା ସଂଭବ ନୁହେଁ । ପୁଣ୍ୟ କ୍ଷୀଣ ହେବାପରେ ପୁନଃ ସଂସାରକୁ ଆସିବାକୁ ପଡ଼ିଥାଏ । ଅତଃ ଆପଣ କିଛି ଏପରି ଉପାୟ କୁହନ୍ତୁ ଯଦ୍ୱାରା ପୁନଃ ପତିତ ନ ହେବାକୁ ହେବ ।

ରମାନନ୍ଦ କହିଲେ ତେବେ ତ କର୍ମରେ ଆସକ୍ତି ନହେବା ଉଚିତ । ସକାମ କର୍ମର ଫଳତ ମିଳିଥାଏ । ଭଗବତ୍ ପ୍ରୀତି ଅର୍ଥରେ ଯେଉଁ କର୍ମ କରାଯାଏ, ନିଷ୍କାମ ହେବା କାରଣରୁ ଫଳଦାୟୀ ହୋଇ ନଥାଏ ।

ଏ ପ୍ରସଂଗରେ ଶ୍ରୀଚୈତନ୍ୟ ଦେବ କହିଲେ ଏହା ସତ୍ୟ ଯେ ନିଷ୍କାମ କର୍ମ ତ୍ରୈଲୋକ୍ୟ ସୁଖଠାରୁ ମଧ୍ୟ ଉଚ୍ଚକୁ ଘେନିଯାଏ । କିନ୍ତୁ ଏହାଦ୍ୱାରା କେବଳ ଆତ୍ମଶୁଦ୍ଧି ହୋଇଥାଏ । ଏହା ମୁକ୍ତିର ପ୍ରଧାନ କାରଣ ନହୋଇ ଗୌଣ କାରଣ ହୋଇଥାଏ । ଏହାର ଫଳ ଜ୍ଞାନ ନହୋଇ ଆତ୍ମଶୁଦ୍ଧି ହୋଇଥାଏ । "ଯୋଗିନଃ କର୍ମ କୁର୍ବନ୍ତି ସଂଗଂତ୍ୟକ୍ତ୍ୱାତ୍ମଶୁଦ୍ଧୟେ' (ଗୀତା ୫/୧୧) ଅତଃ ଆପଣ କୃପାକରି ଏହାଠାରୁ ଅଧିକ କିଛି କୁହନ୍ତୁ ।

ରମାନନ୍ଦ କହିଲେ, ଯଦି ଆପଣଙ୍କ ଦୃଷ୍ଟିରେ ନିଷ୍କାମ କର୍ମ ମଧ୍ୟ ଶ୍ରେଷ୍ଠ ନୁହେଁ, ତେବେ ସମସ୍ତ ପ୍ରକାର କର୍ମକୁ ସ୍ୱରୂପତଃ ପରିତ୍ୟାଗ କରି ନିରନ୍ତର ଶ୍ରୀଭଗବାନ୍‌ଙ୍କ ଭଜନରେ ନିଜକୁ ଲଗାଇ ରଖିବା ଉଚିତ୍ । ସତ୍- ଅସତ୍ କୌଣସି କର୍ମ କରିବାପରେ ଏଥିରେ ତ୍ରିପାପର ନିବୃତ୍ତି ହୋଇ ନଥାଏ । ଅତଃ ଶ୍ରୀଭଗବତ୍ ଗୀତାର ଚରମ ଶ୍ଳୋକ ପ୍ରତି ଧ୍ୟାନଦେବା ବିଧେୟ- ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ'- (ଗୀତା-୧୮/୬୬) ଏହା ମନୁଷ୍ୟର ଶ୍ରେଷ୍ଠ କର୍ତ୍ତବ୍ୟ ।

ଚୈତନ୍ୟ ଦେବ କହିଲେ- ସାଧୁ ! ସାଧୁ ! ଶରଣାଗତ ହେବା ସବୁଠାରୁ ଶ୍ରେଷ୍ଠଧର୍ମ, କିନ୍ତୁ ଇଏତ ସେହି ସଂସାରୀମାନଙ୍କ ପାଇଁ ଯାହାଙ୍କର ପାପ ମୋଚନର ଇଚ୍ଛା ହୋଇଥାଏ । କିନ୍ତୁ ଯେଉଁ ସାଧକ ଏହାଠାରୁ ମଧ୍ୟ ଉଚ୍ଚକୋଟୀର ସାଧକ, ସେମାନଙ୍କୁ ତ ସାଂସାରିକ ତାପର ପ୍ରଭାବ ହିଁ ହୋଇ ନଥାଏ । ସେହି ସାଧକମାନଙ୍କ ପାଇଁ କୌଣସି ଉପାୟ ନିର୍ଣ୍ଣୟ ଦିଅନ୍ତୁ ।

ଏହି ପ୍ରଶ୍ନରେ ରାଜା ଚିନ୍ତାରେ ପଡ଼ିଗଲେ । ବୁଝି ବିଚାରି କହିଲେ କି ତେବେ ତ ସମଭାବରେ ଅବସ୍ଥିତ ହୋଇ ନିରନ୍ତର ଭକ୍ତି କରିବା ମନୁଷ୍ୟର ମୁଖ୍ୟ କର୍ତ୍ତବ୍ୟ । ଚୈତନ୍ୟ ଦେବ କହିଲେ ଇଏତ ଅତ୍ୟନ୍ତ ସୁନ୍ଦର ଉପାୟ । କିନ୍ତୁ ଯଦି କାହାକୁ ବାସ୍ତବ ଆନନ୍ଦର ଇଚ୍ଛା ହୁଏ, ତେବେ ତାହାକୁ ଦୁଇ ବସ୍ତୁର ବିଚାର କିପରି ହୋଇ ପାରିବ । ଏଥିରେ ଭୟର କାରଣ କି ଏହା ଦ୍ୱୈଧା ଭାବ ହିଁ ହୋଇଯିବ । ସତ୍ ଏବଂ ଅସତ୍‌ର ବିଚାର ବହୁତ ଉତ୍ତମ, କିନ୍ତୁ ଏଥିରେ ମୋତେ ସରସତା ଦେଖାଯାଉନାହିଁ । ଅନ୍ୟକିଛି ସରସ ଉପାୟ କୁହନ୍ତୁ ।

ରାମାନନ୍ଦ କହିଲେ- ସ୍ୱାମୀଜୀ ତେବେ ତ ଭଗବାନଙ୍କ ବିଶୁଦ୍ଧ ଭକ୍ତି ହିଁ ମନୁଷ୍ୟର ଶ୍ରେଷ୍ଠତମ କର୍ତ୍ତବ୍ୟ । ପିତାମହ ବ୍ରହ୍ମା ଭଗବାନଙ୍କୁ ସ୍ତୁତି କରି କହିଛନ୍ତି-

ଜ୍ଞାନେ ପ୍ରୟାସ ସମୁଦପାସ୍ୟ ନମନ୍ତ ଏବ
ଜୀବନ୍ତି ସନ୍ମୁଖରିତାଂ ଭବଦୀୟବାର୍ତ୍ତାମ୍
ସ୍ଥାନେ ସ୍ଥିତାଃ ଶ୍ରୁତିଗତାଂ ତନୁବାଙ୍ ମନୋଭି-
ର୍ଯେ ପ୍ରାୟଶୋଽଜିତ ଜିତୋଽପ୍ୟସି ତ୍ରୈଲୋକ୍ୟାମ୍ ॥

(ଭା.୧୦/୧୪/୦୩)

ଅର୍ଥାତ୍ ହେ ଅଜିତ ! ଯେଉଁ ମନୁଷ୍ୟ ଜ୍ଞାନରେ କିଛି ମଧ୍ୟ ପ୍ରଯତ୍ନ ନକରି କେବଳ ସାଧୁଙ୍କ ସ୍ଥାନରେ ଉପସ୍ଥିତ ରହି ତାଙ୍କ ମୁଖରୁ ଆପଣଙ୍କ ଗୁଣାନୁବାଦକୁ ହିଁ ଶ୍ରବଣ କରିଥାଏ ଏବଂ ମନ ବଚନ କର୍ମରେ ଆପଣଙ୍କୁ ନମସ୍କାର କରି ଜୀବନ ବ୍ୟତୀତ କରେ ତ୍ରିଲୋକରେ ସେ ହିଁ ଆପଣଙ୍କୁ ପ୍ରାପ୍ତ କରିଥାଏ ।

ଶ୍ରୀରାମାନନ୍ଦଙ୍କ ମୁଖରୁ ଏହି ଶ୍ଳୋକ ଶ୍ରବଣ କରି ଚୈତନ୍ୟଦେବ ପ୍ରସନ୍ନ ହେଲେ । ପୁନଃ କିଛି ସମୟପରେ କହିବାକୁ ଲାଗିଲେ- ଆପଣ ସତ୍ୟ କହୁଛନ୍ତି ଯେ ଭଗବାନ୍‌ଙ୍କର ଅହୈତୁକୀ ଭକ୍ତି କରିବା ମନୁଷ୍ୟର ସର୍ବ ଶ୍ରେଷ୍ଠ ଧର୍ମ ତଥା

ପରମ ପୁରୁଷାର୍ଥ । ଏଠାରେ ପ୍ରଶ୍ନ ଉଠେକି ଭକ୍ତି କିପରି କରାଯିବ କୃପାକରି ଆପଣ ତାହା ପ୍ରକାଶ କରନ୍ତୁ ।

ରାୟ ରାମାନନ୍ଦ କହିଲେ- ହେ ପ୍ରଭୋ ! ପ୍ରେମ ପୂର୍ବକ ଭକ୍ତି କରଣୀୟ, କାରଣ ପ୍ରେମ ହରିଙ୍କ ରୂପ । 'ପ୍ରେମ ଦୂରୀକା ରୂପ ହୈ ତ୍ୟୌଁ ହରି ପ୍ରେମ ସ୍ୱରୂପ' । ସେ ତ 'ରସୋ ବୈସଃ'ର ଅନୁରୂପ ରସ ସିନ୍ଧୁ । ତହିଁରେ ପ୍ରବେଶ କରି ତହିଁରେ ବୁଡ଼ ପକାଇବାର ସୌଭାଗ୍ୟ ମିଳିବା ଅସଂଭବ ନୁହେଁ କିନ୍ତୁ କଠିନ ଅବଶ୍ୟ ।

ମନୁଷ୍ୟକୁ ଶ୍ରୀକୃଷ୍ଣ ଭକ୍ତି ରସରେ ଭାବିତ ମତି ଯେପରି ହେଉ, ପ୍ରାପ୍ତ କରିନେବା ଉଚିତ । ତାହାପ୍ରତି ଲୋଲୁପତା ସଦା ହୃଦୟରେ ସୃଷ୍ଟି ହେବା ହେଉଛି ଏହାର ମୂଲ୍ୟ । ଯହିଁରୁ ସେ ଖରିଦ୍ କରିବା ଉଚିତ୍ । ତଦ୍ୱାରା କୋଟି କୋଟି ଜନ୍ମର ସୁକୃତରେ ମଧ୍ୟ ପ୍ରାପ୍ତ କରିପାରେ ନାହିଁ ।

**କୃଷ୍ଣଭକ୍ତି ରସ ଭାବିତା ମତିଃ**
**କ୍ରିୟତାଂ ଯଦି କୁତୋଽପି ଲଭ୍ୟତେ ।**
**ତତ୍ର ଲୌଲ୍ୟମପି ମୂଲ୍ୟ କେବଲଂ**
**ଜନ୍ମ କୋଟି ସୁକୃତୈର୍ନ ଲଭ୍ୟତେ ।**

ଧନ୍ୟ ! ଧନ୍ୟ ! କୁହାଯାଏ ଶ୍ରୀଚୈତନ୍ୟ ଦେବ ଏହି ବିଷୟକୁ ଆଗକୁ ଚର୍ଚ୍ଚା କରି କହିଲେ ତୈତ୍ତିରୀୟ ଉପନିଷଦ ମତରେ 'ରସଂ ହ୍ୟେବାୟଂ ଲବ୍ଧ୍ୱାନନ୍ଦୀ ଭବତି' । ଭଗବାନ୍ ରସ ସ୍ୱରୂପ ହୋଇଥାନ୍ତି । ସେହି ରସକୁ ପ୍ରାପ୍ତ କରି ଜୀବ ଆନନ୍ଦମୟ ହୋଇଯାଏ । କିନ୍ତୁ ଏଠାରେ ବିଚାରଣୀୟ ଯେ ଏହି ରସର ଆସ୍ୱାଦନ କେଉଁ ସଂବଂଧ ସ୍ଥାପନ ଦ୍ୱାରା ହିଁ କରାଯାଇଥାଏ । ଏହା ଉପରେ ରାମାନନ୍ଦଙ୍କ ଉତ୍ତର ହେଲା- ମୋ ବିଚାରରେ ଦାସ୍ୟଭାବ ଶ୍ରେଷ୍ଠ, ଏହା ବିନା ପ୍ରେମ ହୋଇ ନପାରେ । ଏହିଭାବ ତ ଶାନ୍ତ, ସଖ୍ୟ, ବାତ୍ସଲ୍ୟ, ମଧୁର ଆଦି ସମସ୍ତ ଭାବରେ ଲୁଚି ରହିଥାଏ । ଦାସ୍ୟ ଭାବ ତ ସ୍ନେହର ସ୍ୱାମୀ, ଅତଃ ଏହି ଭାବ ଶ୍ରେଷ୍ଠ ।

ଶ୍ରୀଚୈତନ୍ୟଦେବ ଏହି ମତ ଉପରେ ନିଜର ବିଚାର ପ୍ରକଟ କରି କହିଲେ କି, ଏହି ଭାବ ତ ଶ୍ରେଷ୍ଠ କିନ୍ତୁ ଏଥିରେ କିଛି ସଂକୋଚ ରହିଥାଏ । ସେବକକୁ ନିଜ ସ୍ୱାମୀର ଐଶ୍ୱର୍ଯ୍ୟ, ମାନ ସମ୍ମାନର ସଦା ଧ୍ୟାନ ରହିଥାଏ । ଅତଃ

ନିର୍ଭୟ ହୋଇ ଆନଂଦରସ ପାନ କରିବାରେ କିଛି ସଂକୋଚ ରହିଥାଏ । ଏପରି କୌଣସି ସଂବଂଧ ସୂଚାନ୍ତୁ ଯେଉଁଠି ଲେଶମାତ୍ର ସଂକୋଚ ନଥିବ ।

ଏ ସମସ୍ୟାର ସମାଧାନ କରିବା ପାଇଁ ରାୟ ରାମାନନ୍ଦ କହିଲେ କି, ସଂଖ୍ୟ ଭାବ ତେବେ ଉତ୍ତମ ପ୍ରତୀତ ହୁଏ । ଏହି ଭାବରେ ଐଶ୍ୱର୍ଯ୍ୟ, ଧନ, ମାନ, ସମ୍ମାନ କିଛିର ପରବାୟ ରହେ ନାହିଁ । ଗୋପୀମାନେ ମଧ୍ୟ ଭଗବାନଙ୍କ ଉପରେ ରୁଷ୍ଟ ହୋଇଥାନ୍ତି । ଗାଈମାନଙ୍କ ପିଠି ଉପରେ ଆନନ୍ଦ କରନ୍ତି ଅତଃ ଯଥାର୍ଥ ସଖ୍ୟ ଭାବରେ ହିଁ ରସାସ୍ୱାଦନ ହୋଇଥାଏ ।

ଚୈତନ୍ୟ ମହାପ୍ରଭୁଙ୍କ ସୂକ୍ଷ୍ମ ବିଚାର ହେଲା- ଏହା ସମସ୍ତଙ୍କୁ ପ୍ରାପ୍ତ ହୁଏ ନାହିଁ । ଏଥିରେ ଅନ୍ୟ ପ୍ରେମର ଅପେକ୍ଷା ରହିଥାଏ । ଯଦି ଅଜ୍ଞାନତାରେ ଏହି ଭ୍ରମ ହୋଇଯାଏ କି ଆମର ପ୍ରେମୀ ଆମର ଯେତେ ପ୍ରେମ ସେ କରେନାହିଁ, ତେବେ ତ ସ୍ୱତଃ ଆମ ପ୍ରେମରେ କିଛି ଊଣା ରହିଯାଏ । ଅତଃ ଆପଣ ପ୍ରେମର କୌଣସି ଏପରି ସଂବଂଧ ସୂଚନା ଦିଅନ୍ତୁ, ଯାହା ନିରପେକ୍ଷ ଏବଂ ପ୍ରତ୍ୟେକ ଅବସ୍ଥାରେ ଏକରସ ହୋଇ ରହିବ ।

ଏହାଶୁଣି ଶ୍ରୀରାମାନନ୍ଦ କହିଲେ- ପ୍ରଭୋ ! ଏହା ତ ବାତ୍ସଲ୍ୟ ରସରେ ସଂଭବ । "ପୁତ୍ର କୁପୁତ୍ର ଭଲେ ହୋ ହୋତୀ ନ କୁମାତା ମାତା" । ସନ୍ତାନ ପ୍ରେମ କରୁ କି ନ କରୁ, କିନ୍ତୁ ମାତା ପିତାଙ୍କ ପ୍ରେମ ତା'ପରେ ସେହିପରି ଅତୁଟ ରହିଥାଏ । ଭାଗବତର ବାକ୍ୟ ଦେଖନ୍ତୁ-

ନେମଂ ବିରିଂଚୋ ନଭବୋ ନ ଶ୍ରୀରପ୍ୟଙ୍ଗସଂଶ୍ରୟା ।
ପ୍ରସାଦଂ ଲୋଭିରେ ଗୋପୀ ଯତ୍ତତ୍ ପ୍ରାପ ବିମୁକ୍ତି ଦାତ୍ ॥

(ଭା-୧୦/୦୯/୨୦)

ଅର୍ଥାତ୍ ପ୍ରେମଦାତା ଶ୍ରୀହରିଙ୍କ ଯେପରି କୃପା ଯଶୋଦାଙ୍କ ଉପରେ ହୋଇଥିଲା, ସେହିପରି କୃପା ଶିବ- ବିରଞ୍ଚିଙ୍କ କଥା କ'ଣ ଲକ୍ଷ୍ମୀଙ୍କ ଉପରେ ହୋଇନାହିଁ । ବାତ୍ସଲ୍ୟ ଭାବ ହିଁ ସର୍ବୋତ୍ତମ ହୋଇ ରହେ ।

ଏକଥା ଶୁଣି ଚୈତନ୍ୟଦେବ ପ୍ରସନ୍ନତା ପୂର୍ବକ କହିଲେ, ଆପଣ ତ ରସଜ୍ଞ, ଆପଣଙ୍କୁ କିଛି ଗୋପନ ନାହିଁ । କିନ୍ତୁ ଏହା ଉପରେ ଗୋଟିଏ କଥା ଅବଶ୍ୟ କହିବା ଚାହୁଁଛି କି ଏହି ଭାବ ଶ୍ରେଷ୍ଠ ହେଲା ପରେ ମଧ୍ୟ ମୋ ବିଚାରରେ

ଏଥିରେ ପୂର୍ଣ୍ଣ ନିର୍ଭରତା ପ୍ରତୀତ ହୁଏନାହିଁ । ଛୋଟବଡ଼ ପଣର କିଛି ଭାବ ତ ରହିଯାଏ । ଆପଣ ଏପରି କିଛି ଭାବର ଅବତାରଣା କରନ୍ତୁ ଯହିଁରେ ଏହି ବିଚାରର ଅଭାବ ହୋଇଥିବ । ବହୁ ଚିନ୍ତାକରି ରାୟ ମହୋଦୟ କହିଲେ ପ୍ରଭୋ ! ବସ୍ତୁତଃ ଆଉ ଗୋଟଏ ଭାବ ଶେଷରେ ରହିଯାଇଛି, ତାହା ଅନ୍ତିମଭାବ, ଯାହାକୁ କାନ୍ତାଭାବ କୁହାଯାଏ । ଏହି ଭାବରେ ସମସ୍ତ ଭାବର ସମସ୍ତ ରସର ଏବଂ ସମସ୍ତ ସମ୍ବନ୍ଧର ପରିସମାପ୍ତି ହୋଇଥାଏ ।

ରାୟ ମହାଶୟଙ୍କ ମୁଖରୁ ଏହି ବାକ୍ୟ ଶୁଣି ଶ୍ରୀଚୈତନ୍ୟଦେବଙ୍କ ଶରୀର ପୁଲକିତ ହୋଇଗଲା । ସେ ରାୟ ମହାଶୟଙ୍କୁ ବାହୁପାଶରେ ଆବଦ୍ଧ କଲେ । ପ୍ରେମ ବିହ୍ୱଳ ହୋଇ ଧନ୍ୟ ! ଧନ୍ୟ ! କହି, କହି ପକାଇଲେ- ଆପଣ ସର୍ବଜ୍ଞ । ଆପଣ ମୋର ଉଦ୍ଧାର କରିଦେଲେ । ମୁଁ କୃତାର୍ଥ ହୋଇଗଲି, କିନ୍ତୁ ମୋର ହାର୍ଦ୍ଦିକ ଅଭିଳାଷ କି ଆପଣ ଏହାପରେ କିଛି ସଂକେତ ଦେବାର କୃପା କରନ୍ତୁ । ଅନ୍ତିମ ସାଧ୍ୟତତ୍ତ୍ୱର ଅନଧିକାରୀ ଏବଂ ଶୁଷ୍କ ହୃଦୟ ସନ୍ନ୍ୟାସୀ ବୁଝି ଆପଣ ମୋତେ ବହଲାଇ ଦେବାର ପ୍ରୟାସ ନ କରନ୍ତୁ । କୃପାକରି ମୋତେ ଏହି ତତ୍ତ୍ୱରୁ ବଂଚିତ ନ ରଖନ୍ତୁ । ଏହାଶୁଣି ରାମାନନ୍ଦଜୀ ମହାପ୍ରଭୁଙ୍କ ଚରଣରେ ଲୋଟିଗଲେ-

ଅନୟା ରଧିତୋ ନୂନଂ ଭଗବାନ୍ ହରିରୀଶ୍ୱରଃ
ଯନ୍ନୋ ବିହାୟ ଗୋବିନ୍ଦଃ ପ୍ରୀତୋ ଯାମନୟଦ୍ରହଃ ॥
(ଭା. ୧୦/୩୦/୨୮)

ରାସ ସମୟରେ ଭଗବାନ ଅନ୍ତର୍ଦ୍ଧାନ ହୋଇଯିବା ପରେ, ଗୋପୀମାନେ କହିଲେ କି ନିଶ୍ଚୟ ହିଁ ଶ୍ରୀରାଧା ଭଗବାନ୍ ହରିଙ୍କର ଆରାଧନା କରିଛନ୍ତି, କାରଣ ଯାହାଙ୍କ ପ୍ରେମ ପଛରେ ଭଗବାନ୍ ଆମ ସମସ୍ତଙ୍କୁ ତ୍ୟାଗ କରି ତାହା ସହ ଏକାନ୍ତରେ ଚାଲି ଯାଇଛନ୍ତି ।

ଏତିକି କହି ରାୟ ମହାଶୟ ପ୍ରେମ ବିହ୍ୱଳ ହୋଇଗଲେ । କଣ୍ଠ ଅବରୁଦ୍ଧ ହୋଇଗଲା । ଏହି କଥୋପକଥନର ପ୍ରଭାବ ଏହା ହେଲା କି ପ୍ରେମାତିରେକରେ ଦୁଇ ପ୍ରେମୀ ମୂର୍ଚ୍ଛିତ ହୋଇଗଲେ । ସେହି ଅବସ୍ଥାରେ ଦୁହେଁ କେତେ ସମୟ ପଡ଼ି ରହିଲେ ତାହା ଜଣା ନାହିଁ ॥



# ଭକ୍ତ ନାମଦେବ

ସୋ ଅନନ୍ୟ ଜାକେଁ ଅସି ମତି ଚ ଟରେ ହନୁମନ୍ତ ।
ମୈ ସେବକ ଚରାଚର ରୂପ ସ୍ୱାମୀ ଭଗବଂତ ॥

ହାଇଦରାବାଦ (ଦକ୍ଷିଣ)ର ନରସୀ ବ୍ରାହ୍ମଣୀ ଗ୍ରାମରେ ଜଣେ ଭଗବତ୍ ଭକ୍ତ ଛିପୀ (ଦର୍ଜି) ଦାମାସେଠ ରହୁଥିଲେ । ତାଙ୍କ ପତ୍ନୀଙ୍କ ନାମ ଗୋଣାଈ । ଏହି ଭାଗ୍ୟବାନ୍ ଦମ୍ପତ୍ତିଙ୍କଠାରୁ ୧୩୨୭ ବି.ସଂ. କାର୍ତ୍ତିକ ଶୁକ୍ଳ ପ୍ରତିପଦ ରବିବାର ଦିନ ସୂର୍ଯ୍ୟୋଦୟ ସମୟକୁ ନାମଦେବଙ୍କର ଜନ୍ମ ହୋଇଥିଲା । ଏହି ବଂଶ ଥିଲା ପରମ ଭାଗବତ । ଭଗବାନ ବିଟ୍ଠଲଙ୍କର ଏକନିଷ୍ଠ ଉପାସକ ଯଦୁଶେଠଙ୍କର ପଞ୍ଚମ ପୁରୁଷରେ ଦାମାଜୀଙ୍କ ଜନ୍ମ ହୋଇଥିଲା । ପୂର୍ବଜଙ୍କର ଭଗବତ୍ ନିଷ୍ଠା, ସଦାଚାର, ସରଳପ୍ରକୃତି, ଅତିଥି ପରାୟଣତା ପରି ସମସ୍ତ ଗୁଣ ତାଙ୍କ ଠାରେ ଥିଲା । ନାମଦେବଙ୍କ ଶୈଶବରେ ବିଟ୍ଠଲଙ୍କ ସେବାପୂଜା, ବିଟ୍ଠଲଙ୍କ ଗୁଣଗାନ, ବିଟ୍ଠଲଙ୍କ ନାମଜପ ଆଦି ଦେଖି, ଶୁଣି, ଅନୁଭବ କରି ସେ ସ୍ୱୟଂ ବିଟ୍ଠଲମୟ ହୋଇ ଯାଇଥିଲେ ।

ଏକଦା ଦାମାସେଠ କୌଣସି କାର୍ଯ୍ୟବଶରେ ବାହାରକୁ ଯିବାକୁ ପଡ଼ିଲା । ସେ ନାମଦେବଙ୍କୁ ଘରେ ବିଟ୍ଠଲଙ୍କ ପୂଜାଭାର ନ୍ୟସ୍ତ କରିଦେଲେ । ନାମଦେବ ସରଳ ହୃଦୟରେ ପୂଜା କଲେ ଏବଂ ଭଗବାନଙ୍କ କଟରାରେ ଦୁଧ ନୈବେଦ୍ୟ

ଅର୍ପିତ କରି ନେତ୍ର ବଂଦ କରିଦେଲେ । କିଛି ବିଳମ୍ବରେ ନେତ୍ର ଖୋଲି ଦେଖିଲେ ଦୁଧ ପୂର୍ବ ଭଳି ରହିଛି । ବାଳକ ନାମଦେବ ଭାବିଲେ ମୋର କୌଣସି ଅପରାଧ ହେତୁ ବିଟ୍‌ଠଳ ଦୁଧ ପିଉ ନାହାଁନ୍ତି । ବଡ଼ କାକୁତି ମିନତି ହୋଇ ନାନା ପ୍ରକାର ପ୍ରାର୍ଥନା କଲେ କିନ୍ତୁ କିଛି ଫଳ ହେଲା ନାହିଁ । ତେବେ କାନ୍ଦି କାନ୍ଦି କହିଲେ, 'ବିଠୋବା ! ଯଦି ତୁମେ ଆଜି ଦୁଧ ନ ପିଇବ, ତେବେ ମୁଁ ଜୀବନ ଭରି ଦୁଧ ପିଇବି ନାହିଁ ।' ବାଳକ ନାମଦେବଙ୍କ ପାଇଁ ତାହା ପଥର ମୂର୍ତ୍ତି ନଥିଲା । ସେ ତ ସାକ୍ଷାତ୍ ପଣ୍ଡରୀନାଥ ଥିଲେ । ଯେ ହଠକରି କାହିଁକି ଦୁଧ ପିଉ ନଥିଲେ ଜଣାନାହିଁ । ଶିଶୁର ଏ ପ୍ରତିଜ୍ଞା ଶୁଣି ଦୟାମୟ ସାକ୍ଷାତ୍ ପ୍ରକଟ ହୋଇଗଲେ । ସେ ଦୁଗ୍ଧ ପାନ କଲେ । ସେହିଦିନ ଠାରୁ ନାମଦେବଙ୍କ ହାତରୁ ବରାବର ଦୁଗ୍ଧ ପାନ କରୁଥିଲେ ।

ଅଳ୍ପ ବୟସରୁ ଜାତୀୟ ପ୍ରଥା ଅନୁସାରେ ନାମଦେବଙ୍କ ବିବାହ ଗୋବିନ୍ଦସେଠ ସଦାବର୍ତ୍ତେଙ୍କ କନ୍ୟା ରାଜାଈଙ୍କ ସହ ହୋଇଗଲା । ପିତାଙ୍କର ପରଲୋକ ଗମନ ପରେ ଘର ଦାୟିତ୍ୱ ତାଙ୍କ ଉପରେ ପଡ଼ିଲା । ପତ୍ନୀ ଏବଂ ମାତାଙ୍କ ଲକ୍ଷ୍ୟ ଥିଲା ଯେ ସେ ବ୍ୟାପାରରେ ଲାଗନ୍ତୁ । କିନ୍ତୁ ସେ ତ ହରିକୀର୍ତ୍ତନରେ ମନୋନିବେଶ କରି ଦେଇଥିଲେ । ନନସୀ ବ୍ରାହ୍ମଣୀ ଗାଁ' ଛାଡ଼ି ପଣ୍ଢରପୁରକୁ ଚାଲିଗଲେ । ସେଠାରେ ଗୋରାକୁମ୍ଭାର, ସାଁବତାମାଳୀ ଆଦି ଭକ୍ତଙ୍କ ସହ ତାଙ୍କର ସଦ୍‌ଭାବ ହୋଇଥିଲା । ଚନ୍ଦ୍ରଭାଗା ନଦୀରେ ସ୍ନାନ, ଭକ୍ତ ପୁଣ୍ଡଲିକ ତଥା ତାଙ୍କ ଇଷ୍ଟ ପାଣ୍ଡୁରଂଗଙ୍କ ଦର୍ଶନ, ବିଟ୍‌ଠଲଙ୍କ ଗୁଣ କୀର୍ତ୍ତନ ନାମଦେବଙ୍କ ଦେବ ଉପାସନାରେ ବିଧାନ ଥିଲା । ନାମଦେବଙ୍କ ଅଭଂଗରେ ବିଟ୍‌ଠଲଙ୍କ ମହିମା, ତତ୍ତ୍ୱଜ୍ଞାନ, ଭକ୍ତି ତଥା ବିଟଠଲଙ୍କ ପ୍ରତି ସମର୍ପଣର ଅପାର ଭାବ ନିହିତ ।

ଜ୍ଞାନେଶ୍ୱର ମହାରାଜ ନାମଦେବଙ୍କୁ ତୀର୍ଥ ଯାତ୍ରାରେ ନିଜ ସାଥୀରେ ଘେନି ଯିବାକୁ ଚାହିଁଥିଲେ । ନାମଦେବ କହିଲେ- ଆପଣ ପାଣ୍ଡୁରଂଗଙ୍କଠାରୁ ଆଜ୍ଞା ଆଣନ୍ତୁ ତେବେ ଯିବା । ଭଗବାନ୍ ଜ୍ଞାନେଶ୍ୱରଙ୍କୁ କହିଲେ- 'ନାମଦେବ ମୋର ବଡ଼ପୁଅ । ମୁଁ ତାକୁ ଦଣ୍ଡେ ହେଲେ ଦୂରକୁ ଛାଡ଼େନାହିଁ । ତୁମେ ତାକୁ ତ ସଂଗରେ ନେବ କିନ୍ତୁ ତା'ର ସବୁ ଦାୟିତ୍ୱ ତୁମର ।' ସ୍ୱୟଂ ପାଣ୍ଡୁରଂଗ ଜ୍ଞାନଦେବଙ୍କୁ ନାମଦେବଙ୍କ ହାତ ଧରାଇ ଦେଲେ ।

ନାମଦେବ ଜ୍ଞାନେଶ୍ୱର ମହାରାଜଙ୍କ ସହ ତୀର୍ଥ ଯାତ୍ରାକୁ ବାହାରିଗଲେ । ଭଗବତ୍ ଚର୍ଚ୍ଚା କରି ସେମାନେ ଚାଲୁଥିଲେ । କିନ୍ତୁ ତାଙ୍କ ଚିତ୍ତ ପାଣ୍ଡୁରଂଗଙ୍କ

ବିଚ୍ଛେଦରେ ବ୍ୟାକୁଳ ହେଉଥିଲା । ଜ୍ଞାନେଶ୍ୱର ଭଗବାନ୍‌ଙ୍କ ସର୍ବ ବ୍ୟାପକତା ବୁଝାଇବାକୁ ଚାହୁଁଥିଲେ । ସେ କହିଲେ- ଆପଣଙ୍କ କଥାତ ସତ୍ୟ, କିନ୍ତୁ ପୁଣ୍ଡଲୀକଙ୍କ ପାଖରେ ଦଣ୍ଡାୟମାନ ପାଣ୍ଡୁରଂଗଙ୍କ ଦେଖିବା ବିନା ମୋତେ କାଲି ଦେଖାଯାଏ ନାହିଁ ।

ଜ୍ଞାନେଶ୍ୱର ମହାରାଜ ପ୍ରଶ୍ନର ଉତ୍ତରରେ ନାମଦେବ ଭଜନ ସଂବଂଧରେ କହିଲେ, ମୋ ଭାଗ୍ୟରେ ଜ୍ଞାନ କାହିଁ ? ମୁଁ ଜ୍ଞାନୀ ନୁହେଁ କିମ୍ବା ବହୁଶ୍ରୁତ ନୁହେଁ । ମୋତେ ତ ବିଠୋବାଙ୍କ କୃପା ହିଁ ଭରସା । ମୋତେ ତ ନାମ ସଂକୀର୍ତ୍ତନ ପ୍ରିୟ ଲାଗେ, ଯେଉଁଠି ଭଜନ ହୁଏ ତାହା ମୋର ପ୍ରିୟ । ଗୁଣ- ଦୋଷ ନ ଦେଖି ସମସ୍ତଙ୍କ ସଙ୍ଗ ନମ୍ର ବ୍ୟବହାର କରିବା ହେଉଛି ଜୀବନ । ସମସ୍ତ ବିଶ୍ୱରେ ଏକମାତ୍ର ବିଟ୍‌ଠଲଙ୍କୁ ଦେଖିବା ଏବଂ ହୃଦୟରେ ତାଙ୍କ ଚରଣକୁ ସ୍ମରଣ କରିବା ହେଉଛି ଧ୍ୟାନ । ମୁଖରେ ଉଚ୍ଚାରଣ କରାଯାଉଥିବା ନାମକୁ ମନରେ ଦୃଢ଼ତା ପୂର୍ବକ ଲଗାଇ ରଖି ତଲ୍ଲୀନ ହୋଇଯିବା ହେଉଛି ଶ୍ରବଣ । ଭଗବତ୍ ଚରଣର ଦୃଢ଼ ଅନୁସଂଧାନ, ସର୍ବଭାବରେ ଏକମାତ୍ର ବିଟ୍‌ଠଲଙ୍କ ହିଁ ଧ୍ୟାନ, ସମସ୍ତ ପ୍ରାଣୀଙ୍କଠାରେ ତାଙ୍କ ଦର୍ଶନ, ସବୁ ଦିଗରୁ ଆସକ୍ତି ତୁଟାଇ ତାଙ୍କ ଚିନ୍ତନ ହିଁ ଚିନ୍ତନ ଭକ୍ତି । ଅନୁରାଗରେ ଗୋବିନ୍ଦଙ୍କ ଧ୍ୟାନ କରିବା ବ୍ୟତୀତ ଅନ୍ୟ କାହାରିକୁ ବିଶ୍ୱାସ ନାହିଁ ।

ପ୍ରଭାସ, ଦ୍ୱାରିକା ଆଦି ତୀର୍ଥ ଦର୍ଶନ କରି ଦୁଇ ମହାପୁରୁଷ ଲେଉଟି ଆସୁଥିଲେ । ବିକାନେର ନିକଟରେ କୌଲାୟତ ଗ୍ରାମରେ ପହଂଚିଲାରୁ ଭୀଷଣ ଶୋଷ ହେଲା । ପାଖରେ ଗୋଟିଏ କୂଅ ଥିଲା କିନ୍ତୁ ତାହା ଶୁଖିଲା । ଜ୍ଞାନେଶ୍ୱର ଥିଲେ ସିଦ୍ଧଯୋଗୀ । ସେ ଲଘିମା ସିଦ୍ଧି ବଳରେ କୂଅ ଭିତରେ ସୂକ୍ଷ୍ମରେ ପ୍ରବେଶ କରି ଜଳପାନ କଲେ ଏବଂ ନାମଦେବଙ୍କ ପାଇଁ ଉପରକୁ ଜଳଘେନି ଆସିଥିଲେ । ନାମଦେବ ସେହି ଜଳପାନ କରିବାକୁ ମନା କରିଦେଲେ । ଭାବମଗ୍ନ ହୋଇ କହିଲେ- ମୋ ବିଟଠଲଙ୍କୁ କ'ଣ ମୋର ଚିନ୍ତା ନାହିଁ, ଯେ ମୁଁ ଏ ପ୍ରକାର ଜଳ ପିଇବି ? ସହସା କୂଅ ଆପେ ଆପେ ଜଳରେ ପୂର୍ଣ୍ଣ ହୋଇଗଲା । ଉପରକୁ ଜଳ ପ୍ରବାହିତ ହେଲା । ନାମଦେବ ଏହିପରି ଜଳ ପାନ କରିଥିଲେ ।

କିଛି ଦିନର ଯାତ୍ରା ପରେ ସେମାନେ ପଣ୍ଢରପୁରରେ ପହଞ୍ଚିଗଲେ, ପରମ ସଂପଦ ପାଣ୍ଡୁରଂଗଙ୍କ ଦର୍ଶନ କରି ଆନନ୍ଦମୟ ହୋଇଗଲେ । କହିବାକୁ

ଲାଗିଲେ- ମୋ' ମନରେ ଭ୍ରମଥିଲା, ସେଥିପାଇଁ ତ ଆପଣ ମୋତେ ବୁଲାଇଲେ । ସଂସାରରେ ଅନେକ ତୀର୍ଥ ରହିଛି । କିନ୍ତୁ ମୋର ମନ ତ ଚନ୍ଦ୍ରଭାଗା ଦିଗରେ ଲାଗି ରହିଥିଲା । ଆପଣଙ୍କ ବିନା ଅନ୍ୟ ଦେବଙ୍କ ଆଡ଼କୁ ମୋ' ଚରଣ ଚାଲିବାକୁ ଚାହୁଁ ନଥିଲା । ଯେଉଁଠି ଗରୁଡ଼ ଚିହ୍ନ ଅଂକିତ ଧ୍ୱଜା ନାହିଁ ସେ ସ୍ଥାନ କିପରି ? ଯେଉଁଠି ବୈଷ୍ଣବ ମେଳା ନ ହେଉଛି, ଯେଉଁଠି ଅଖଣ୍ଡ ହରିକଥା ନ ହେଉଛି, ସେ କିପରି କ୍ଷେତ୍ର ?

ଜ୍ଞାନେଶ୍ୱରଙ୍କର ସମାଧି ଗ୍ରହଣ ପରେ ନାମଦେବ ଉତ୍ତର ଭାରତ ଯାତ୍ରା କରିଥିଲେ । ନାମଦେବଙ୍କ ଜୀବନର ପୂର୍ବାର୍ଦ୍ଧ ପଣ୍ଢରପୁର ଏବଂ ଉତ୍ତରାର୍ଦ୍ଧ ପଞ୍ଜାବ ଆଦି କ୍ଷେତ୍ରରେ ଭକ୍ତି ପ୍ରଚାରରେ ବିତିଥିଲା । ବିସୋବା ଖେଚରଙ୍କ ଠାରୁ ତାଙ୍କ ପୂର୍ଣ୍ଣଜ୍ଞାନର ବୋଧ ହୋଇଥିଲା । ଅତଃ ତାଙ୍କୁ ସେ ଗୁରୁ ମାନିଥିଲେ । ଯେଉଁ ବ୍ୟକ୍ତି ସର୍ବତ୍ର ଭଗବାନଙ୍କର ଦର୍ଶନ କରିଥାଏ ସେ ବାସ୍ତବରେ ଧନ୍ୟ । ସେ ପ୍ରକୃତ ଭଗବତ୍ ଭକ୍ତ । ନାମଦେବ ପ୍ରତ୍ୟେକ ପଦାର୍ଥରେ ଭଗବାନ୍‌ଙ୍କୁ ହିଁ ଦେଖୁଥିଲେ । ତାଙ୍କର ଏହି ଦୁର୍ଲଭ ସ୍ଥିତି, ଜୀବନର ଅନେକ ଘଟଣାରୁ ସୂଚିତ ହୋଇଥାଏ ।

ଥରେ ନାମଦେବଙ୍କ କୁଡ଼ିଆର ଗୋଟିଏ ପଟରୁ ନିଆଁ ଲାଗିଗଲା । ନିଜେ ପ୍ରେମରେ ମସ୍ତ ହୋଇ ଅନ୍ୟପଟରେ ଥିବା ଜିନିଷକୁ ଆଣି ନିଆଁରେ ପକାଇ ଦେଉଁ ଦେଉଁ କହିଲେ- ସ୍ୱାମୀ ! ଆଜି ତ ଆପଣ ଲାଲ ଲାଲ ରୂପ ହୋଇ ଆସିଛନ୍ତି । କିନ୍ତୁ ଗୋଟିଏ ପଟରୁ କାହିଁକି ? ଅନ୍ୟପଟର ବସ୍ତୁଗୁଡ଼ିକ କ'ଣ ଅପରାଧ କଲେ ଯେ ଆପଣଙ୍କ କୃପା ତାଙ୍କ ଉପରେ ହେଉ ନାହିଁ । ଆପଣ ତାକୁ ମଧ ସ୍ୱୀକାର କରନ୍ତୁ । କିଛି ସମୟପରେ ଅଗ୍ନି ନିର୍ବାପିତ ହୋଇଗଲା । କୁଡ଼ିଆ ଜଳିଗଲା । ବର୍ଷାଋତୁରେ କିନ୍ତୁ ନାମଦେବଙ୍କର କୌଣସି ଚିନ୍ତା ନାହିଁ । ତାଙ୍କ ଚିନ୍ତା କରିବାବାଲା ବିଟ୍‌ଠଳ ସ୍ୱୟଂ ମୂଲିଆ ହୋଇ ଆସି ପହଞ୍ଚିଲେ । କୁଡ଼ିଆ ନିର୍ମାଣ କରି ଛପର କରିଦେଲେ । ସେବେଠାରୁ ପାଣ୍ଡୁରଂଗ 'ନାମଦେବଙ୍କର ଘର ଛପର କାରୀ' ଭାବରେ ପ୍ରସିଦ୍ଧ ହେଲେ ।

ଅନ୍ୟ ଏକ ଘଟଣାରେ ନାମଦେବ କୌଣସି ଗୋଟିଏ ଗ୍ରାମରେ ଶୂନ୍ୟ ଘରେ ରହିଲେ । ଲୋକମାନେ ବହୁତ ମନା କଲେ, ସେଠାରେ ଭୟଂକର ବ୍ରହ୍ମରାକ୍ଷସ ରହୁଥିଲା । ସେ କହିଲେ, ମୋର ବିଟ୍‌ଠଳ ହିଁ ତ ଭୂତ ହୋଇପାରେ । ନିଶାର୍ଦ୍ଧରେ ଭୂତ ଆସିଗଲା । ତା'ର ଶରୀର ଅତ୍ୟନ୍ତ ଭୟଂକର ଏବଂ ବିଶାଳ

ଥିଲା । ନାମଦେବ ତାକୁ ଦେଖି ଭାବମଗ୍ନ ହୋଇ ନୃତ୍ୟ କରିବାକୁ ଲାଗିଲେ ଏବଂ ଗୀତ ମଧ୍ୟ ଗାଇଲେ ।

ଭଲେ ପଧାରେ ଲଂବକନାଥ ।
ଧରନୀ ପାଁବ ସ୍ୱର୍ଗ ଲୌଁ ମାଥା । ଜୋଜନ ଭରକେ ଲାଁବେ ହାଥ ॥
ସିବ ସନକାଦିକ ପାର ନ ପାବେଁ ଅଗଗିନ ସାଜ ସଜାୟେଁ ସାଥ ॥
ନାମଦେବ କେ ତୁମହୀ ସ୍ୱାମୀ, କୀଜୈ ପ୍ରଭୁଜୀ ମୋହି ସନାଥ ॥

ଏବେ ପ୍ରେତର ପ୍ରେତତ୍ୱ କିପରି ବା ରହିପାରିବ ? ତତ୍‌କାଳ ଶଂଖ, ଚକ୍ର, ଗଦା, ପଦ୍ମଧାରୀ ଶ୍ରୀ ପାଣ୍ଡୁରଂଗ ନାମଦେବଙ୍କ ସମ୍ମୁଖରେ ପ୍ରତ୍ୟକ୍ଷ ଆବିର୍ଭୂତ ହୋଇ ମନ୍ଦ ମନ୍ଦ ହସୁଥିଲେ ।

ଅନ୍ୟଏକ ଘଟଣାରେ ନାମଦେବ ଜଂଗଲରେ ବୃକ୍ଷ ମୂଳରେ ରୁଟି ପ୍ରସ୍ତୁତ କରୁଥିଲେ । ଭୋଜନ ପ୍ରସ୍ତୁତ ହେଲାପରେ ଲଘୁଶଂକା କରିବାକୁ ଚାଲିଗଲେ । ଫେରିଆସି ଦେଖନ୍ତି ତ ଗୋଟେ କୁକୁର ମୁହଁରେ ରୁଟି ଧରି ଦୌଡ଼ି ପଳାଇ ଯାଉଛି । ନିଜେ ଘିଅ ଗିନାଧରି ତା' ପଛେ ପଛେ ଦୌଡ଼ିବାକୁ ଲାଗିଲେ । ବଡ଼ ପାଟିରେ ଡାକି କହିଲେ- 'ପ୍ରଭୋ ! ଏ ରୁଟି ତ ରୁକ୍ଷ । ଆପଣ ରୁକ୍ଷ ରୁଟି ନ ଖାଆନ୍ତୁ । ମୁଁ ତହିଁରେ ଘିଅ ମାରିଦିଏଁ ପୁନଃ ଭୋଗ ଲଗାଇ ଦିଏଁ ।' ଭଗବାନ୍ ସେ କୁକୁର ଶରୀରରୁ ହିଁ ପ୍ରକଟ ହୋଇ ଚତୁର୍ଭୁଜ ରୂପ ଧାରଣ କଲେ । ନାମଦେବ ତାଙ୍କ ଚରଣ ତଳେ ଲୋଟିଗଲେ ।

ମହାରାଷ୍ଟ୍ରର ବାରକରୀ ପନ୍ଥାର ସଂସ୍ଥାପକ ହେଉଛନ୍ତି ନାମଦେବ ।

ଅନେକ ଲୋକ ତାଙ୍କ ପ୍ରେରଣାରେ ଭକ୍ତିର ପାବନ ପଥରେ ପ୍ରବୃତ୍ତ ହୋଇଛନ୍ତି । ୮୦ ବର୍ଷ ବୟସରେ ସଂ ୧୪୦୭ ବି.ସଂ.ରେ ନଶ୍ୱର ଶରୀର ତ୍ୟାଗକରି ପରମଧାମର ଯାତ୍ରୀ ହେଲେ ।



# ସନ୍ଥ ଏକନାଥ

ଭକ୍ତ ଶ୍ରେଷ୍ଠ ଭାନୁଦାସଙ୍କ ପୁତ୍ର ଚକ୍ରପାଣି, ଚକ୍ରପାଣିଙ୍କ ପୁତ୍ର ସୂର୍ଯ୍ୟନାରାୟଣ ଏବଂ ସୂର୍ଯ୍ୟନାରାୟଣଙ୍କ ପୁତ୍ର ଏକନାଥ । ଏହାଙ୍କ ଜନ୍ମ ପ୍ରାୟ ୧୫୯୦ ବି.ସ. ହୋଇଥିଲା । ତାଙ୍କ ଜନ୍ମ ନକ୍ଷତ୍ର ମୂଳା । ଜନ୍ମର ଅଳ୍ପ କାଳପରେ ପିତାଙ୍କ ତଥା ଅଳ୍ପ କିଛି ବ୍ୟବଧାନରେ ମାତାଙ୍କ ବିୟୋଗ ଘଟିଲା । ପିତା ସୂର୍ଯ୍ୟନାରାୟଣ ଅତ୍ୟନ୍ତ ମେଧାବୀ ଏବଂ ମାତା ରୁକ୍ମିଣୀ ବଡ଼ ପ୍ରତିବ୍ରତା ଏବଂ ସୁଶୀଳା ଥିଲେ । ତାଙ୍କ ଲାଳନ ପାଳନ ପିତାମହ ଚକ୍ରପାଣିଙ୍କ ଉପରେ ନ୍ୟସ୍ତ ହେଲା । ଏକନାଥ ଶିଶୁ ଅବସ୍ଥାରୁ ବଡ଼ ବୁଦ୍ଧିମାନ, ଶ୍ରଦ୍ଧାବାନ ଏବଂ ଭଜନାନନ୍ଦୀ ଥିଲେ । ଷଷ୍ଠ ବର୍ଷରେ ତାଙ୍କର ଯଜ୍ଞୋପବୀତ ସଂସ୍କାର ହୋଇଥିଲା । ବ୍ରାହ୍ମକର୍ମରେ ତାଙ୍କର ଉତ୍ତମ ଶିକ୍ଷା ମିଳିଥିଲା । ରାମାୟଣ, ମହାଭାରତ ଏବଂ ପୁରାଣ ବାଲ୍ୟାବସ୍ଥାରୁ ଶୁଣିଥିଲେ । ବାରବର୍ଷ ବୟସରେ ତାଙ୍କର ଏପରି ଆଧ୍ୟାତ୍ମିକ ପିପାସା ହେଲା ଯେ ସେ ସଦ୍‌ଗୁରୁ ସଂଧାନରେ ବ୍ୟାକୁଳିତ ହେଲେ । ଏହିପରି ସ୍ଥିତିରେ କୌଣସି ଶିବମନ୍ଦିରରେ ରାତିର ଚତୁର୍ଥ ପ୍ରହରରେ ହରିଗୁଣ ଗାନ କରୁଥିବା ଅବସ୍ଥାରେ ଶୂନ୍ୟବାଣୀ ହେଲା– 'ଯାଅ, ଦେବଗଡ଼ରେ ଜନାର୍ଦ୍ଦନ ପନ୍ଥଙ୍କ ଦର୍ଶନ କର, ସେ ତୁମକୁ କୃତାର୍ଥ କରିବେ ।' କାହାକୁ କିଛି ନ କହି ଦେବଗଡ଼ରେ ତୃତୀୟ ଦିନ ପ୍ରଭାତରେ ପହଂଚିଗଲେ । ସେଠାରେ ଜନାର୍ଦ୍ଦନ ପନ୍ଥାଙ୍କ ସହ ସାକ୍ଷାତ୍ ହେଲା । ଏ ଗୁରୁ ଶିଷ୍ୟ ସଂଯୋଗ ୧୬୦୨ ବି.ସ.ରେ ହୋଇଥିଲା । ଏକନାଥ ମହାରାଜ ଛ' ବର୍ଷକାଳ ଗୁରୁ ସେବାରେ ବ୍ୟତୀତ କଲେ । ଗୁରୁଙ୍କ

ଶୋଇବା ପରେ ଶୋଉଥିଲେ ଏବଂ ଉଠିବା ପୂର୍ବରୁ ଶଯ୍ୟା ତ୍ୟାଗ କରୁଥିଲେ । ସ୍ନାନ ସମାର୍ଜନରେ ସହାୟତା କରୁଥିଲେ । ପୂଜା ସାମଗ୍ରୀ ପୂର୍ବରୁ ବ୍ୟବସ୍ଥା କରି ରଖୁଥିଲେ । ପୂଜା ସମୟରେ ନିକଟରେ ବସି ଆବଶ୍ୟକ ଦ୍ରବ୍ୟ ଯୋଗାଇ ଦେଉଥିଲେ । ଗୁରୁଙ୍କ ଭୋଜନ ପରେ ପାନ ଭାଙ୍ଗି ଦେଉଥିଲେ । ଗୁରୁ ଶୟନ କଲେ ତାଙ୍କ ପାଦ ସଂଚାଳନ କରୁଥିଲେ । ଗୁରୁ ସେବାକୁ ପରମ କର୍ତ୍ତବ୍ୟ ମନେକରି ନିଷ୍ଠାର ସହ ପାଳନ କରୁଥିଲେ ।

ଜନାର୍ଦ୍ଦନ ସ୍ୱାମୀ କିଛିଦିନ ପର୍ଯ୍ୟନ୍ତ ତାଙ୍କୁ ହିସାବ- କିତାପ କାମ ସମର୍ପଣ କରିଥିଲେ । ଦିନେ ଗୋଟିଏ ପାହିର ହିସାବ ମିଳିଲା ନାହିଁ । ସେ ରାତିରେ ଗୁରୁ ସେବାରୁ ନିବୃତ୍ତ ହୋଇ ଖାତା ଖୋଲି ବସିଗଲେ । ବହୁ ସମୟ ବସି ଚେଷ୍ଟାକରି ଶେଷରେ ହିସାବ ମିଳିଗଲା । ଖୁସିରେ ତାଳି ବଜାଇବା ଆରମ୍ଭ କଲେ । ଏହି ସମୟରେ ସ୍ୱାମୀଜୀ ଶୋଇକରି ଉଠିଥିଲେ । ଝରକାରେ ଯାଇ ଦେଖି ପଚାରିଲେ, ଏକନାଥ ! ଆଜିର ଏ ପ୍ରସନ୍ନତା କାହିଁକି ? ଏକନାଥ ନମ୍ରତାର ସହ ପାହିର ଭୁଲକଥା ପ୍ରକାଶ କଲେ । ଗୁରୁଜୀ କହିଲେ, ଗୋଟିଏ ପାହିର ଭୁଲର ସଂଧାନ ମିଳିବାରୁ ତୁମକୁ ଏତେ ଆନନ୍ଦ ମିଳୁଛି, ତେବେ ଏ ସଂସାରର ବଡ଼ ଭାରି ଭୁଲ ତୁମ ଦ୍ୱାରା ହୋଇଛି, ତା'ର ନିରସନ ହୋଇଗଲେ ତୁମେ କେତେ ଆନନ୍ଦ ହେବ ! ଏହିପରି ତୁମେ ଯଦି ଭଗବାନଙ୍କ ଚିନ୍ତନରେ ଲାଗିଯାଅ ଭଗବାନ କ'ଣ ତୁମଠାରୁ ଦୂରରେ ରହିପାରିବେ କି ? ଏକନାଥ ଏହାକୁ ଗୁରୁଙ୍କର ଆଶୀର୍ବାଦ ବୋଲି ଜାଣିଲେ ଏବଂ କୃତଜ୍ଞତା ସହକାରେ ତାଙ୍କ ଚରଣରେ ମସ୍ତକ ରଖିଦେଲେ । ଏହାର କିଛି ଦିନ ପରେ ଶ୍ରୀଏକନାଥଜୀଙ୍କୁ ଶ୍ରୀଦତ୍ତାତ୍ରେୟ ଭଗବାନଙ୍କ ସାକ୍ଷାତ୍‌କାର ହୋଇଥିଲା । ଏକନାଥ ଦେଖୁଛନ୍ତି- ଗୁରୁ ହିଁ ଦତ୍ତାତ୍ରେୟ ଏବଂ ଦତ୍ତାତ୍ରେୟ ହିଁ ଗୁରୁ । ଏହାପରେ ଦତ୍ତାତ୍ରେୟ ତାଙ୍କୁ ବହୁବାର ଦର୍ଶନ ଦେଇଛନ୍ତି । ଏହାପରେ ଶ୍ରୀଗୁରୁ ଏକନାଥଜୀଙ୍କୁ ଶ୍ରୀକୃଷ୍ଣ ଉପାସନାର ଦୀକ୍ଷା ଦେଇ ଶୂଳଭଂଜନ ପର୍ବତରେ ତପସ୍ୟା କରିବାର ଆଜ୍ଞା ଦେଇଥିଲେ । ଏକନାଥ ସେଠାକୁ ଯାଇ ଘୋର ତପସ୍ୟା କରିଥିଲେ । ତପସ୍ୟା ପୂର୍ଣ୍ଣ ହେବାପରେ ପୁନଃ ଗୁରୁଙ୍କ ନିକଟକୁ ଫେରି ଆସିଲେ । ଅତଃ ପର ତାଙ୍କୁ ସନ୍ଥ ସମାଗମ ଏବଂ ଭାଗବତ୍ ଧର୍ମର ପ୍ରଚାର କରିବା ପାଇଁ ତୀର୍ଥ ଯାତ୍ରାର ଆଜ୍ଞା ଦେଲେ । ଉଭୟ ଗୁରୁଶିଷ୍ୟ ନାସିକର ତ୍ର୍ୟମ୍ବକେଶ୍ୱର ଯାବତ୍ ତାଙ୍କ ସହିତ ଯାତ୍ରା କରିଥିଲେ ।

ଏହି ଯାତ୍ରା କାଳରେ ଏକନାଥଜୀ ଚତୁଃଶ୍ଳୋକୀ ଭାଗବତ ଉପରେ ଓବୀ ଛନ୍ଦରେ ଏକ ଗ୍ରନ୍ଥ ରଚନା କରିଥିଲେ । ଯାହାକୁ ପଞ୍ଚବଟୀରେ ପହଞ୍ଚିବା ପରେ ଶ୍ରୀରାମଚନ୍ଦ୍ରଙ୍କ ସମ୍ମୁଖରେ ଗୁରୁ ଜନାର୍ଦ୍ଦନ ସ୍ୱାମୀଙ୍କୁ ଶୁଣାଇଥିଲେ ।

ତୀର୍ଥ ଯାତ୍ରା ପୂର୍ଣ୍ଣକରି ଏକନାଥ ଆପଣାର ଜନ୍ମଭୂମି ପୈଠଣ ଫେରି ଆସିଲେ । ଘରକୁ ନଯାଇ ପିପ୍ପଳେଶ୍ୱର ମହାଦେବ ମନ୍ଦିରରେ ରହିବାକୁ ଲାଗିଲେ । ତାଙ୍କ ବୃଦ୍ଧ ଜେଜେବାପା- ଜେଜେମା' କିଛି ବର୍ଷ ହେଲା ତାଙ୍କ ଅନୁସଂଧାନରେ ଥିଲେ । ସେମାନେ ଗୁରୁ ଜନାର୍ଦ୍ଦନ ସ୍ୱାମୀଙ୍କଠାରୁ ଗୋଟିଏ ଆଜ୍ଞାପତ୍ର ଘେନି ଆସିଥିଲେ । ଯହିଁରେ ଲେଖାଥିଲା- 'ଏକନାଥ ! ଏବେ ତୁମେ ବିବାହ କରି ଗୃହସ୍ଥାଶ୍ରମରେ ରୁହ' । ବୃଦ୍ଧ ଜେଜେମା'-ବାପା ଯେବେ ତାଙ୍କ ସହ ସାକ୍ଷାତ୍ କରିବାକୁ ଯାଇଥିଲେ ପତ୍ର ଦେଖାଇଲେ । ସେହିଠାରେ ଏକନାଥ ତୀର୍ଥ ଯାତ୍ରା ସମାପ୍ତ କରିଦେଲେ । ଗୁରୁଦେବଙ୍କ ଆଜ୍ଞା ଅନୁସାରେ ତାଙ୍କ ବିବାହ ହେଲା । ତାଙ୍କ ଧର୍ମପତ୍ନୀ ଗିରିଜା ବାଈ ବଡ଼ ଧର୍ମ ପରାୟଣା, ପରମସତୀ ତଥା ଆଦର୍ଶ ଗୃହିଣୀ ଥିଲେ । ଏହି କାରଣରୁ ତାଙ୍କ ସମସ୍ତ ପ୍ରପଞ୍ଚ ମଧ ପରମାର୍ଥ ପରାୟଣ ହିଁ ହୋଇଗଲା । ଗୃହସ୍ଥ ଜୀବନର ଦିନଚର୍ଯ୍ୟା ଏହିପରି ।

ବ୍ରାହ୍ମମୁହୂର୍ତ୍ତରୁ ଶଯ୍ୟା ତ୍ୟାଗ କରି ପ୍ରାତଃ ସ୍ମରଣ- ଗୁରୁ ଚିନ୍ତନ କରିବା । ଶୌଚାଦି ଏବଂ ଗୋଦାବରୀ ସ୍ନାନରୁ ନିବୃତ୍ତ ହୋଇ ସୂର୍ଯ୍ୟୋଦୟ ପୂର୍ବରୁ ସଂଧ୍ୟା-ବନ୍ଦନା କରିବା । ସୂର୍ଯ୍ୟୋଦୟ ପରେ ଘରକୁ ଫେରିଆସି ଦେବପୂଜନ, ଧ୍ୟାନ-ଧାରଣା ଆଦି କରି ଗୀତା- ଭାଗବତ ଗ୍ରନ୍ଥ ସ୍ୱାଧ୍ୟାୟ । ମଧ୍ୟାହ୍ନରେ ପୁନଃ ଗୋଦାବରୀ ଘାଟରେ ସଂଧ୍ୟା-ତର୍ପଣ ବ୍ରହ୍ମଯଜ୍ଞ ଓ ଘରକୁ ଫେରିଆସି ବଳିବୈଶ୍ୱଦେବ ତଥା ଅତିଥି ଅଭ୍ୟାଗତଙ୍କୁ ପୂର୍ଣ୍ଣ ସତ୍କାର ପରେ ସ୍ୱୟଂ ଭୋଜନ କରିବା । ତତ୍‌ପରେ ବିଦ୍ୱାନ, ଭକ୍ତଙ୍କସହ ବସି ଆତ୍ମତତ୍ତ୍ୱ ଚର୍ଚ୍ଚା କରିବା । ତୃତୀୟ ପ୍ରହରରେ ଶ୍ରୀ ଭାନୁଦାସ ଦ୍ୱାରା ସ୍ଥାପିତ ଶ୍ରୀବିଟ୍‌ଠଳ ମୂର୍ତ୍ତି ସମ୍ମୁଖରେ ଭାଗବତ, ରାମାୟଣ ଅଥବା ଜ୍ଞାନେଶ୍ୱର ଗ୍ରନ୍ଥ ପାରାୟଣ କରିବା । ସାୟଂକାଳରେ ପୁନଃ ଗୋଦାବରୀ ତଟକୁ ଯାଇ ସଂଧ୍ୟା- ବଂଦନା କରିବା, ସେଠାରୁ ଘରକୁ ଆସି ଧୂପ, ଦୀପ ସହିତ ଭଗବାନଙ୍କ ଆରତି ଏବଂ ସ୍ତୋତ୍ର ପାଠ କରିବା । ଏହାପରେ ସାମାନ୍ୟ କିଛି ଖାଦ୍ୟ ଗ୍ରହଣ କରି ମଧରାତ୍ର ପର୍ଯ୍ୟନ୍ତ ଭଗବତ୍ କୀର୍ତ୍ତନ କରିବା ଅଥବା ବେଦ ଉପନିଷଦ, ପୁରାଣ ଅଧ୍ୟୟନ କରିବା । ମଧରାତ୍ରିରୁ ଚାରିଟା ପର୍ଯ୍ୟନ୍ତ ଶୟନ ।

ଏକନାଥ ବ୍ରାହ୍ମଣମାନଙ୍କୁ ବଡ଼ ଆଦର କରୁଥିଲେ । ତାଙ୍କ ଘରେ ସଦାବର୍ତ୍ତ ଚାଲିଥିଲା । ରାତି କୀର୍ତ୍ତନ ସମାପ୍ତି ପରେ ଦୂର- ଦୂରାନ୍ତ ଆଗତ ଭକ୍ତମଣ୍ଡଳୀଙ୍କ ଭୋଜନ ବ୍ୟବସ୍ଥା କରାଉଥିଲେ । ଘରେ ପ୍ରତିଦିନ ନୂତନ ଅତିଥିଙ୍କ ଗହଳି ଲାଗି ରହିଥିଲେ ମଧ୍ୟ ସ୍ୱାଭାବିକ ନିତ୍ୟକର୍ମରୁ ବିଚ୍ୟୁତ ହେଉ ନଥିଲେ । ଅନ୍ନଦାନ ଏବଂ ଜ୍ଞାନଦାନର ପ୍ରବାହ ସଦା ଲାଗି ରହିଥିଲା । କ୍ଷମା, ଶାନ୍ତି, ସମତା, ଭୂତଦୟା, ନିରହଂକାରତା, ନିସଂଗତା, ଭକ୍ତି ପରାୟଣତା ଆଦି ସମସ୍ତ ଦୈବୀ ସଂପଦର ନିଧାନ ଶ୍ରୀଏକନାଥ ମହାରାଜଙ୍କ ଦର୍ଶନ ମାତ୍ରେ ଅସଂଖ୍ୟ ନାରୀ ପୁରୁଷଙ୍କ ପାପ, ତାପ, ସଂତାପ ନିତ୍ୟ ନିବାରିତ ହୋଇଥାଏ । ତାହାଙ୍କ ପରୋପକାରମୟ ନିସ୍ପୃହ ସାଧୁଜୀବନର ଏପରି ଅନେକ ଘଟଣା ରହିଛି, ଯଦ୍ୱାରା ତାଙ୍କର ବିବିଧ ଦୈବୀଗୁଣ ପ୍ରକଟ ହୋଇଥାଏ । ତାଙ୍କ ଜୀବନର କେତେକ ରହସ୍ୟମୟ ପ୍ରମୁଖ ଦୈବୀ ଆଖ୍ୟାନ ଉଲ୍ଲେଖ କରାଗଲା ।

(୧) ଏକନାଥ ମହାରାଜ ନିତ୍ୟ ଗୋଦାବରୀ ସ୍ନାନ କରିବାକୁ ଯାଉଥିଲେ । ରାସ୍ତାରେ ଗୋଟିଏ ସରାଇରେ ଜଣେ ମୁସଲ୍‌ମାନ୍ ରହୁଥିଲେ । ସେହି ରାସ୍ତାରେ ଯାତାୟାତ କରୁଥିବା ହିନ୍ଦୁମାନଙ୍କୁ ବହୁତ ହଇରାଣ କରୁଥିଲା । ଏକନାଥଙ୍କୁ ମଧ୍ୟ ବହୁବାର ହଇରାଣ କରିଛି । ସ୍ନାନସାରି ଫେରିଲାବେଳକୁ ତାଙ୍କ ଉପରକୁ କୁଳି ପକାଇ ଦିଏ । ଦିନେ ଶହେ ଆଠ ଥର କୁଳି ପକାଇବାରୁ ଏକନାଥଙ୍କୁ ସମାନଥର ସ୍ନାନ କରିବାକୁ ହେଲା କିନ୍ତୁ ମହାରାଜ ପ୍ରସନ୍ନତା ଭଂଗ ହେଲାନାହିଁ । ଏହା ଦେଖି ସେହି ଯବନ ତାଙ୍କ ପାଦତଳେ ପଡ଼ିଗଲା, ବଡ଼ ଲଜ୍ଜିତ ହେଲା । ସେହିଦିନଠାରୁ ତା'ର ଜୀବନ ପରିବର୍ତ୍ତିତ ହୋଇଗଲା ।

(୨) ଏକନାଥ ମହାରାଜଙ୍କ ପିତୃଶ୍ରାଦ୍ଧ ଥିଲା । ରୋଷେଇ ପ୍ରସ୍ତୁତ ହେଲା । ଆମନ୍ତ୍ରିତ ବ୍ରାହ୍ମଣମାନେ ଆସିଗଲେ । ଅନ୍ୟ ପଟରୁ ଚାରିପାଞ୍ଚଜଣ ସାଧୁ ସେହି ବାଟଦେଇ ଯାଉଥିଲେ । ମିଠାଇର ଆମୋଦ ଗନ୍ଧ ପାଇ ପରସ୍ପର କଥାବାର୍ତ୍ତା ହେଲେ- କେତେ ସୁମଧୁର ଗଂଧ; କ୍ଷୁଧା ନ ଲାଗିଲେ ମଧ୍ୟ ଖାଇବାର ଇଚ୍ଛା ହେଉଛି । ଭୋଜନ ଆମର ଭାଗ୍ୟରେ କାହିଁ ? ଏକନାଥ ଏ କଥା ଶୁଣିଗଲେ । ସାଧୁମାନଙ୍କୁ ଡକାଇ ସେମାନଙ୍କୁ ଭଲ ଭାବରେ ଖୁଆଇଲେ । ଯାହା କିଛି ବଳକା ରହିଲା ଘର ପରିବାରଙ୍କୁ ଭୋଜନ କରାଇଲେ । ସ୍ଥାନକୁ ଉତ୍ତମ ଭାବେ ସଫା-ସୁତୁରା କରି ବ୍ରାହ୍ମଣଙ୍କ ପାଇଁ ରୋଷେଇ ପ୍ରସ୍ତୁତ ହେଲା । କିନ୍ତୁ ନିମନ୍ତ୍ରିତ ବ୍ରାହ୍ମଣମାନେ

ଏକଥା ଜାଣି କ୍ରୋଧିତ ହେଲେ । ସେମାନେ ଏକନାଥଙ୍କୁ ମନଇଚ୍ଛା ବକିଗଲେ । ତୁମପରି ପତିତ ଗୃହରେ ଆମେ ଭୋଜନ କରିବୁ ନାହିଁ ବୋଲି ସିଧା କହିଦେଲେ । ଏକନାଥ ତାଙ୍କୁ ବୁଝାଇଲେ- ସମସ୍ତ ପରିଷ୍କାର ପବିତ୍ର ହୋଇ ରୋଷେଇ ହେବା କହିଲେ । ଆପଣମାନେ ଭୋଜନ କରନ୍ତୁ । କିନ୍ତୁ ବ୍ରାହ୍ମଣମାନେ ମାନିଲେ ନାହିଁ । ଏବେ ଏକନାଥ ଶ୍ରାଦ୍ଧ ସଂକଳ୍ପ କରି ପିତରଙ୍କୁ ଧ୍ୟାନରେ ଆବାହନ କଲେ । ସ୍ୱୟଂ ପିତର ମୂର୍ତ୍ତିମାନ ହୋଇ ଶ୍ରାଦ୍ଧନ୍ନ ଗ୍ରହଣ କଲେ ଏବଂ ପରିତୃପ୍ତ ହୋଇ ଆଶୀର୍ବାଦ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ । ବ୍ରାହ୍ମଣମାନେ ଏ ପ୍ରସଂଗ ଜାଣି ବହୁତ ଲଜ୍ଜିତ ହୋଇଥିଲେ ।

(୩) ଏକଦା ରାତି ଅଧରେ ଚାରି ପ୍ରବାସୀ ବ୍ରାହ୍ମଣ ପୈଠଣରେ ଆସି ପହଞ୍ଚିଲେ । ଖୋଜି ଖୋଜି ଏକନାଥଙ୍କ ଘରେ ଉପସ୍ଥିତ ହେଲେ । ସେ ତାଙ୍କୁ ସ୍ୱାଗତ କଲେ । ଜଣାଗଲା ଯେ ସେମାନେ ଭୋକିଲା ଅଛନ୍ତି । ରୋଷେଇ ପାଇଁ ଗିରିରାଜବାଈ ପ୍ରସ୍ତୁତ ହେଲେ । ଲଗାତାର ବୃଷ୍ଟି କାରଣରୁ ଜାଳେଣି କାଠ ନଥିଲା । ଅଧରାତିରେ ବା ଆଉ କୁଆଡୁ କାଠ ଯୋଗାଡ଼ ହେବ ? ଏକନାଥ ନିଜ ପଲଙ୍କକୁ ଭାଙ୍ଗି ଜାଳେଣି କରିଦେଲେ । ପାଦ ଧୋଇବା ପାଇଁ ଗରମ ପାଣି ଦେଲେ । ଯଥେଷ୍ଟ ଭୋଜନ କରାଇଲେ । ବ୍ରାହ୍ମଣ ତୃପ୍ତ ହୋଇ ଏକନାଥଙ୍କୁ ଧନ୍ୟ ଧନ୍ୟ କହିବାରେ ଲାଗିଲେ ।

(୪) କାଶୀ ଯାତ୍ରା ସମୟରେ ଏକନାଥ ମହାରାଜ ପ୍ରୟାଗରୁ ଗଂଗାଜଳ ଭାରରେ ନେଇ ରାମେଶ୍ୱର ଯାଉଥିଲେ । ରାସ୍ତାରେ ଗୋଟିଏ ପଡ଼ିଆରେ ଗଧଟିଏ ତୃଷାତୁର ହୋଇ ପଡ଼ିଥାଏ । ଏକନାଥ ତୁରନ୍ତ ଭାରରେ ନେଉଥିବା ପାଣି ଆଣି ଗଧ ପାଟିରେ ଦେଲେ । ଗଧ ଜଳ ପାନ କରି ସେଠାରୁ ଚାଲିଗଲା । ଭାର ପାଣି ତ ଗଧ ପିଇଲା କିନ୍ତୁ ତାହା ସିଧା ରାମେଶ୍ୱରଙ୍କ ଶିର ଲାଗି ହୋଇଗଲା । ମହାକବି ମୋରାପନ୍ଥ ଏକନାଥ ମହାରାଜାଙ୍କର ଏହି କୃତ୍ୟକୁ 'ଲକ୍ଷେ ବିପ୍ର ଭୋଜନ' ସମାନ ପୁଣ୍ୟପ୍ରଦ କହିଅଛନ୍ତି ।

(୫) ପୈଠଣରେ ଜଣେ ବେଶ୍ୟା ଥିଲା । ସେ ସୁନ୍ଦର, ଚତୁର ଏବଂ ନୃତ୍ୟ-ଗୀତ କୁଶଳ । ଏକନାଥଙ୍କ କୀର୍ତ୍ତନ ଶୁଣିବା ପାଇଁ କେବେ କେବେ ସେ ଯାଇଥାଏ । ଦିନେ ମହାରାଜ ଭାଗବତର ପିଙ୍ଗଳା ଉପାଖ୍ୟାନ ଚର୍ଚ୍ଚା କଲେ । ତାକୁ ନିଜ ଶରୀରର ଘୃଣା ହୋଇଗଲା । ନବଦ୍ୱାର ଶରୀରରୁ ସର୍ବଦା ମଇଳା ବାହାରୁଛି,

ଏହା ପ୍ରତୀତ ହେଲା । ପଶ୍ଚାତ୍ତାପ କରି ଭାବିଲା ମୁଁ କେଡ଼େ ଅଭାଗିନୀ, ଯିଏ ଚମଡ଼ା ଢାଙ୍କି ହୋଇଥିବା ବିଷ୍ଠା, ମୂତ୍ରକୁ ଆଲିଙ୍ଗନ କରି ଜୀବନ ବିତାଇ ଦେଇଛି । ହୃଦୟରେ ସ୍ଥିତ ଶ୍ରୀ ହରିଙ୍କି କେବେ ବି ମୁଁ ସ୍ୱପ୍ନରେ ସୁଦ୍ଧା ଧ୍ୟାନ କରିନାହିଁ । ଏହାଭାବି ଘରର ଦ୍ୱାର ବନ୍ଦ କରି ଏକାକୀ ରହିବାକୁ ଲାଗିଲା । ବାରମ୍ବାର ଏକନାଥଙ୍କୁ ସ୍ମରଣ କରି ଭାବିଲା ମୋ'ପରି ପାପିନୀକୁ କିପରି ସେହି ମହାପୁରୁଷଙ୍କ ଚରଣ ସ୍ପର୍ଶ କେବେ କାହିଁକି ବା ମିଳିବ ? ସଂଯୋଗ ବଶତଃ ଏକନାଥ ଗୋଦାବରୀ ସ୍ନାନରୁ ସେହି ମାର୍ଗରେ ଆସୁଥାଆନ୍ତି । ଦ୍ୱାର ଖୋଲି ଗଦ୍‌ଗଦ୍ କଣ୍ଠରେ କହିଲା, ମହାରାଜ ! କ'ଣ ଏହି ପାପିନୀ ଘରକୁ ଆପଣଙ୍କ ଚରଣ ସ୍ପର୍ଶରେ କୃପା କରିବେ ନାହିଁ ? ଏକନାଥ କହିଲେ, ଏହା ତ କୌଣସି ଦୁର୍ଲଭ କଥା ନୁହେଁ । ଏହା କହି ଏକନାଥ ତା' ଘରକୁ ଚାଲିଗଲେ । ସୂର୍ଯ୍ୟ ଉଦୟରେ ଅନ୍ଧାକାର ଦୂରହେବା ପରି, ଏକନାଥଙ୍କ ପଦାର୍ପଣ ପରେ ଏହି ପାପ ସଦନ ଭଗବନ୍ନାମ ନିକେତନ ହୋଇଗଲା । ଏବେ ସେ ଆଉ ବେଶ୍ୟା ହୋଇ ରହିଲା ନାହିଁ । ଅନୁତାପରେ ତା'ର ସମସ୍ତ ପାପ ଧୋଇ ହୋଇଗଲା । ଏକନାଥଙ୍କ ଅନୁଗ୍ରହରେ ତା' ଚିତ୍ତ ଉପରେ ଭଗବନ୍ନାମର ମୋହର ବାଜିଗଲା । ରାମ, କୃଷ୍ଣ, ହରି ମନ୍ତ୍ରଦାନ କରି ସତ୍‌କର୍ମର ମାର୍ଗ ବତାଇଲେ । ଏବେ ସେ ଶ୍ରୀକୃଷ୍ଣ ରୂପ ଧ୍ୟାନରେ ସମୟ ବ୍ୟତୀତ କଲା । ମୃତ୍ୟୁ ବେଳକୁ ସେହି ରୂପ ତା'ର ହୃଦୟରେ ସ୍ଥାପିତ ହୋଇଥିଲା ।

(୬) ଥରେ ଏକନାଥଙ୍କ କୀର୍ତ୍ତନ ଶୁଣିବା ପାଇଁ ଚାରିଜଣ ଚୋର ଆସି ଭିଡ଼ ମଧ୍ୟରେ ବସିଗଲେ । କୀର୍ତ୍ତନ ସରିବାପରେ ନିଜନିଜ ଘରକୁ ଅନ୍ୟମାନେ ଚାଲିଗଲେ । ରାତି ଦୁଇଟା ବେଳକୁ ନୀରବ ନିସ୍ତବ୍‌ଧରେ ଚୋରଙ୍କୁ ସୁବିଧା ମିଳିଲା ଚୋରି କରିବା ପାଇଁ । କିଛି ଲୁଗାପଟା- ବାସନ କୁସନ ଘେନି ହାତ ଧୋଇବା ପାଇଁ ଏପଟ- ସେପଟ ହେଲାବେଳେ ଦେବଗୃହ ସମୀପରେ ପହଞ୍ଚିଲେ । ଭିତରେ ଦୀପଟିଏ ମିଞ୍ଜି ମିଞ୍ଜି ଜଳୁଥାଏ । ଏକନାଥ ମହାରାଜ ସମାଧିସ୍ଥ ହୋଇଥାନ୍ତି । ତାଙ୍କୁ ଚୋର ଦେଖିଲା- ଏବଂ ତତ୍‌କାଳ ଦୃଷ୍ଟିଶକ୍ତି ଶେଷ ହୋଇଗଲା । ହାତରେ ଥିବା ବାସନ ତଳେ ପଡ଼ିଗଲା । ଦେବଗୃହରୁ ଏକନାଥ ପଦାକୁ ଆସି ପଚାରିଲେ- କିଏ ? ଚୋର କାନ୍ଦି କାନ୍ଦି ପାଦତଳେ ପଡ଼ି କହିଲା- ମହାରାଜ ! ଆମେ ବଡ଼ ପାପୀ, କ୍ଷମା କରିଦିଅନ୍ତୁ । ମହାରାଜ ତାଙ୍କ ଚକ୍ଷୁରେ ହାତ ମାରିଦେଲେ । ତା'ର ଦୃଷ୍ଟିଶକ୍ତି ପୂର୍ବବତ୍ ହୋଇଗଲା । ଏଥି ସହିତ ତା'ର ବୁଦ୍ଧି

ମଧ ବଦଳିଗଲା । ଏକନାଥ କହିଲେ, ଏ ଲୁଗାପଟା ବାସନ ତୁମେ ନେଇଯାଅ । ଆଉ ଯଦି କିଛି ଇଚ୍ଛା ତ ନେଇଯାଅ । ଏହା କହି ନିଜ ଆଙ୍ଗୁଳିରୁ ମୁଦି କାଢ଼ି ତା' ଆଗରେ ଥୋଇ ଦେଲେ । ଚୋର ବଡ଼ ଲଜ୍ଜିତ ହେଲା । ବାରମ୍ବାର ମହାରାଜଙ୍କ ଚରଣରେ ଲୋଟିଗଲା, ସେହି ସମୟରୁ ଚୋରି ଛାଡ଼ିଦେଲା ।

ଏହିପରି ପରୋପକାରମୟ ନିସ୍ପୃହ ସାଧୁ ଜୀବନରେ, ଉପଦେଶରେ, ଦାନରେ, ସକଳଙ୍କ ଉପକାର କରି ଗୃହସ୍ଥାଶ୍ରମର ଦିବ୍ୟ ଆଦର୍ଶ ସମସ୍ତଙ୍କ ସମ୍ମୁଖରେ ସ୍ଥାପିତ କରି ସଂ-୧୬୫୬ ବି.ସଂ. ଚୈତ୍ର ଷଷ୍ଠୀରେ ଏକନାଥ ମହାରାଜ ଗୋଦାବରୀ ତଟରେ ଆପଣା ଶରୀର ତ୍ୟାଗକଲେ । ନିଜର ପ୍ରୟାଣ ଦିନ ପୂର୍ବରୁ ପ୍ରକାଶ କରିଥିଲେ । ଏଣୁ ପୈଠଣରେ କିଛିଦିନ ପୂର୍ବରୁ ସର୍ବତ୍ର ଭଗବତ୍ ସଂକୀର୍ତ୍ତନ ହେଉଥିଲା । ଦୂର- ଦୂରାନ୍ତରୁ ଭକ୍ତମାନଙ୍କର ସମାଗମ ହେଉଥିଲା । ଷଷ୍ଠୀ ତିଥିରେ ଗୋଦାବରୀ ସ୍ନାନରୁ ବାହାରକୁ ଆସି ସମାଧିସ୍ଥ ହୋଇଗଲେ ସବୁଦିନ ପାଇଁ ।

ଶ୍ରୀ ଏକନାଥଙ୍କ ଗ୍ରନ୍ଥମାନଙ୍କ ମଧ୍ୟରୁ ସର୍ବାଧିକ ଲୋକପ୍ରିୟ ପ୍ରସିଦ୍ଧ ଭାଗବତର ଏକାଦଶ ସ୍କନ୍ଧ, ରୁକ୍ମିଣୀ ସ୍ୱୟଂବର, ଭାବାର୍ଥ ରାମାୟଣ । କୁହାଯାଏ ସ୍ୱୟଂ ରାମଚନ୍ଦ୍ର ଭାବାର୍ଥ ରାମାୟଣ ଲେଖିଛନ୍ତି । ଏହି ସକଳ ଗ୍ରନ୍ଥ ବ୍ୟତୀତ ଚିରଞ୍ଜିବୀ ପଦ, ସ୍ୱାତ୍ମବୋଧ, ଆନନ୍ଦ ଲହରୀ ଆଦି ଅନ୍ୟ କେତେକ ରଚନା ରହିଛି । ଏ ସକଳ ଗ୍ରନ୍ଥ ମରାଠି ଭାଷାରେ ଉପଲବ୍ଧ । ଏକାଦଶ ସ୍କନ୍ଧ ଏକନାଥୀ ଭାଗବତ ପ୍ରଥମ ଅଧ୍ୟାୟରେ ଭଗବାନଙ୍କ ଅବତାର ହେତୁ ନିର୍ଣ୍ଣୟ କରି ଲେଖିଛନ୍ତି-

ଜାଂଚେନି ଅଧର୍ମ ଭାରେଂ କ୍ଷିତି । ସଦା ଆକ୍ରଂନ୍ଦନ ହୋତି ।<br>
ଜିଜ୍ୟା ସାହ୍ୟା ଲାଗିଂ ଶ୍ରୀପତି । ପୂର୍ଣ୍ଣ ବ୍ରହ୍ମ ସ୍ଥିତି ଅବତରଲା ।। (୧)<br>
ଦୁଷ୍ଟ ଦୈତ୍ୟ ଆଣି ଦାନବ । ଧରାଭାର ରାଜେ ସର୍ବ ।<br>
ବିଧିନା ଝାଲା ଶ୍ରୀକୃଷ୍ଣ ଦେବ । ତୋ ଗତକଥା ଭାବ ଶୁକ ସାଂଗେ ।। (୨)<br>
(ଏକନାଥୀ ଭାଗବତ, ପ୍ରଥମ ଅଧ୍ୟାୟ- ୧୦୧,୧୦୨, ପୃଷ୍ଠା-୭)



# ଭକ୍ତ ସୂରଦାସ

ସୂରଦାସ ପୂର୍ଣ୍ଣ ଭଗବତ୍ ଭକ୍ତ, ଅଲୌକିକ କବି ତଥା ମହାମାନବ ଥିଲେ । ତାଙ୍କୁ କୌଣସି ବିଶେଷଣ ବା ଉପାଧିରେ ସମଳଂକୃତ କରାଯିବାରେ ତାଙ୍କ ବ୍ୟକ୍ତିତ୍ୱ ପୂର୍ଣ୍ଣ ପ୍ରକଟ ହୋଇ ପାରିବ ନାହିଁ । ମହାପ୍ରଭୁ ଶ୍ରୀ ବଲ୍ଲଭଚାର୍ଯ୍ୟଙ୍କ ଶବ୍ଦରେ ସେ 'ଭକ୍ତିର ସାଗର' ଏବଂ ଗୋସାଇଁ ବିଟ୍‌ଠଳ ନାଥଙ୍କ ସମ୍ମତିରେ ସେ 'ପୁଷ୍ଟି ମାର୍ଗର ଜାହାଜ' ଥିଲେ । ତାଙ୍କ ସୁର ସାଗର କାବ୍ୟାମୃତର ଅସୀମ ସାଗର । ସେ ମହାନ୍‌ତ୍ୟାଗୀ, ଅନୁପମ ବୈରାଗୀ ଏବଂ ପରମ ପ୍ରେମୀ ଭକ୍ତ ଥିଲେ । ଭଗବାନ୍‌ଙ୍କ ଲୀଳା ହିଁ ତାଙ୍କ ଅପାର, ଅଚଳ ଓ ଅକ୍ଷୁଣ୍ଣ ସଂପତ୍ତି ।

ଦିଲ୍ଲୀଠାରୁ କିଛି ଦୂରବର୍ତ୍ତୀ ସାହି ଗ୍ରାମରେ ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ସଂବତ ୧୫୩୫ ବି.ସ. ବୈଶାଖ ଶୁକ୍ଳ ପଞ୍ଚମୀ ତିଥିରେ ଏକ ଦିବ୍ୟ ଜ୍ୟୋତିରୂପ ସୂରଦାସଙ୍କ ଜନ୍ମ ହୋଇଥିଲା । ମାତା ପିତା ଏବଂ ଗ୍ରାମବାସୀ ଆଶ୍ଚର୍ଯ୍ୟ ଚକିତ ହୋଇଥିଲେ । ଶିଶୁର ନେତ୍ର ବଂଦ ଥିଲା । ଅଂଧ ବାଳକ ପ୍ରତି ମାତା-ପିତା ଉଦାସୀନ ରହୁଥିଲେ । ଅନ୍ୟ ଲୋକମାନେ ମଧ୍ୟ ଉପେକ୍ଷା କରୁଥିଲେ । ଧୀରେ ଧୀରେ ତାଙ୍କର ଅଲୌକିକ ଏବଂ ପବିତ୍ର ସଂସ୍କାର ଜାଗ୍ରତ ହୋଇ ଉଠିଲା ।

ଘର ପ୍ରତି ତାଙ୍କ ମନରେ ବୈରାଗ୍ୟ ଭାବ ଉଦୟ ହେଲା । ଗାଁ ବାହାରେ ଏକାନ୍ତ ସ୍ଥାନରେ ରହିବା ପାଇଁ ନିଶ୍ଚୟ କଲେ । ସୂରଦାସ ଘରୁ ବାହାରି ଆସିଲେ । କିଛି ଦୂରରେ ଏକ ସରୋବର ନିକଟରେ ଅଶ୍ୱତ୍ଥ ବୃକ୍ଷ ମୂଳରେ ନିଜର ନିବାସ ସ୍ଥିର କଲେ । ଲୋକମାନଙ୍କୁ ସେ ଶକୁନ ସୂଚାଉଥିଲେ ଏବଂ ସେ କହୁଥିବା କଥା ସଂପୂର୍ଣ୍ଣ ସତ୍ୟ ତଥା ବାସ୍ତବ ହେଉଥିଲା ।

ଦିନେ ଜମିଦାରଙ୍କ ଗାଇ ହଜିଗଲା । ସୂର ତା'ର ଠିକ ସ୍ଥାନ ନିରୂପଣ କରି କହିଦେଲେ । ଜମିଦାର ଏଥିରେ ଖୁସି ହୋଇ ତାଙ୍କ ପାଇଁ କୁଡ଼ିଆ ନିର୍ମାଣ କରିଦେଲେ । ସୂରଙ୍କ ଯଶ ଦିନକୁ ଦିନ ପ୍ରସାରିତ ହେବାରେ ଲାଗିଲା । ଦୂରରୁ ଲୋକେ ଶକୁନ ପ୍ରଶ୍ନ ପାଇଁ ଆସିବାକୁ ଲାଗିଲେ । ମାନ, ପ୍ରତିଷ୍ଠା ଏବଂ ବୈଭବ କ୍ରମେ ବୃଦ୍ଧି ହେବାରେ ଲାଗିଲା । ଏହି ସମୟକୁ ତାଙ୍କର ବୟସ ଅଠର । ସେ ଚିନ୍ତାକଲେ ଯେଉଁ ମୋହ ମାୟା ପାଇଁ ଘର ଛାଡ଼ିଲି, ସେ ମାୟା ମୋ' ପଛେ ପଛେ ଧାଇଁଛି । ଭଗବାନଙ୍କ ଭଜନରେ ବିଘ୍ନ ହେଉଥିବାର ଦେଖି ସେ ସ୍ଥାନ ପରିତ୍ୟାଗ କଲେ । ସେ ଭଗବାନଙ୍କ ଭଜନ କୀର୍ତ୍ତନ, ଧ୍ୟାନରେ ଅପାର ଆନନ୍ଦ ପାଉଥିଲେ । ସେ ମଥୁରାରେ ପହଂଚିଲେ । ସେଠାରେ ତାଙ୍କ ମନ ଲାଗିଲା ନାହିଁ । ସେ ଗଉଘାଟରେ ରହିବାର ସ୍ଥିରକଲେ । ଗଉଘାଟ ଯିବା ପୂର୍ବରୁ ସେ ରେଣୁକା କ୍ଷେତ୍ରରେ ରହିଥିଲେ । ରେଣୁକା (ରୁନକତା)ରେ ତାଙ୍କୁ ସନ୍ଥ, ମହାତ୍ମାଙ୍କ ସତ୍‌ସଂଗ ମିଳିଥିଲା । କିନ୍ତୁ ଏଠାରେ ଏକାନ୍ତର ବହୁତ ଅଭାବ ଲକ୍ଷ୍ୟକଲେ । ରୁନକତାରୁ ତିନିମାଇଲ ଦୂରବର୍ତ୍ତୀ ପଶ୍ଚିମକୁ ଯମୁନା ତଟରେ ଗଉଘାଟକୁ ଆସି ସେ କାବ୍ୟ, ସଂଗୀତ ଶାସ୍ତ୍ର ଅଭ୍ୟାସ କରିବାରେ ଲାଗିଲେ । ସୂରଦାସ ଜଣେ ମହାତ୍ମା ଏହି ଖ୍ୟାତି ଚତୁର୍ଦ୍ଦିଗକୁ ପ୍ରସରିଗଲା ।

ପୁଷ୍ଟି ସଂପ୍ରଦାରୟର ଆଦି ଆଚାର୍ଯ୍ୟ ମହାପ୍ରଭୁ ଶ୍ରୀ ବଲ୍ଲଭାଚାର୍ଯ୍ୟ ନିଜର ନିବାସ ସ୍ଥାନ ଅଡ଼େଲରୁ ବ୍ରଜଯାତ୍ରା ପାଇଁ ସଂ-୧୫୬୦ ବିଂ ରେ ବାହାରିଲେ । ତାଙ୍କର ଗମ୍ଭୀର ବିଦ୍‌ବତ୍ତା, ଶାସ୍ତ୍ରଜ୍ଞାନ, ଏବଂ ଦିଗ୍‌ବିଜୟର କାହାଣୀ ଉତ୍ତର ଭାରତର ଧାର୍ମିକ ବ୍ୟକ୍ତିଙ୍କ କାନରେ ପୂର୍ବରୁ ପଡ଼ିଥିଲା । ମହାପ୍ରଭୁ ଅସ୍ଥାୟୀ ବିଶ୍ରାମ ପାଇଁ ଗାଉଘାଟକୁ ସ୍ଥିର କଲେ । ସୂରଦାସ ବଲ୍ଲଭାଚାର୍ଯ୍ୟଙ୍କୁ ଦର୍ଶନ ପାଇଁ ଉତ୍ସୁକ ଥିଲେ । ଆଚାର୍ଯ୍ୟ ମଧ୍ୟ ସୂରଙ୍କୁ ସାକ୍ଷାତ କରିବାକୁ ଚାହୁଁଥିଲେ । ଜନ୍ମାନ୍ତର ସଂସ୍କାରକୁ ନେଇ ସୂର ବଲ୍ଲଭାଚାର୍ଯ୍ୟଙ୍କୁ ସାକ୍ଷାତ୍ ପାଇଁ ଚାଲିଲେ । ସେ ଦୂରରୁ ତାଙ୍କ ପଦବଂଦନା

କଲେ । ଆଚାର୍ଯ୍ୟ ତାଙ୍କୁ ଆଦର ପୂର୍ବକ ନିଜ ପାଖରେ ବସାଇଲେ । ତାଙ୍କ ପବିତ୍ର ସ୍ପର୍ଶରେ ସୂରଙ୍କ ଅଗଂ-ଅଂଗରେ ଭଗବତ୍ ଭକ୍ତିର ରସାମୃତ ଲହରୀରେ ନିମଗ୍ନ ହୋଇଗଲା । ସୂର- ବିନୟର ପଦ ଶୁଣାଇଲେ । ଭକ୍ତ ଭଗବାନଙ୍କ ଆଗରେ ନିଜକୁ ନିଜେ ପତିତମାନଙ୍କର ଶ୍ରେଷ୍ଠ ବୋଲି ଘୋଷିତ କରି, ତାଙ୍କର କୃପା ପ୍ରାପ୍ତି କରିବାର ଚାହୁଁଛି । ଏହି ପଦର ଅଭିପ୍ରାୟ ଏହା ଥିଲା । ଆଚାର୍ଯ୍ୟ କହିଲେ, ତୁମେ ସୂର ହୋଇ ଏହିପରି କାହିଁକି ଏତେ କାରୁଣ୍ୟ ସ୍ୱରରେ ପ୍ରାର୍ଥନା କରୁଛ । ଭଗବାନଙ୍କ ଯଶ ଶୁଣାଅ, ତାଙ୍କ ଲୀଳା ବର୍ଣ୍ଣନା କର । ସୂର ଆଚାର୍ଯ୍ୟଙ୍କ ଏହି ଆଦେଶରେ ବହୁ ପ୍ରୋତ୍ସାହିତ ହେଲେ । ବିନମ୍ରତା ସହ କହିଲେ ମୁଁ ଭଗବାନଙ୍କ ଲୀଳାର ରହସ୍ୟ ଜାଣେ ନାହିଁ । ଆଚାର୍ଯ୍ୟ ତାଙ୍କୁ ସୁବୋଧିନୀ ଶୁଣାଇଲେ । ତାଙ୍କୁ ଭଗବାନଙ୍କ ରସ ପ୍ରାପ୍ତି ହେଲା, ସେ ଲୀଳା ସଂବଂଧୀ ପଦ ଗାନ କରିବାରେ ଲାଗିଲେ । ଆଚାର୍ଯ୍ୟ ତାଙ୍କୁ ଦୀକ୍ଷା ଦେଲେ । କିଛିଦିନ ଗଉଘାଟରେ ରହି ଗୋକୁଳ ଚାଲିଗଲେ । ସୂରଦାସ ତାଙ୍କ ସଂଗରେ ଥିଲେ । ସୂରଦାସ ନବନୀତ ପ୍ରିୟଙ୍କ ଦର୍ଶନ ନିତ୍ୟ କରୁଥିଲେ । ଲୀଳାର ସରସ ପଦ ରଚନା କରି ତାଙ୍କୁ ଶୁଣାଉଥିଲେ । ଆଚାର୍ଯ୍ୟ ବଲ୍ଲଭଙ୍କ ଭାଗବତ- ପାରାୟଣ ଅନୁରୂପ ହିଁ ସୂରଦାସ ଲୀଳା ବିଷୟ ପଦମାନ ଗାନ କରୁଥିଲେ । ଆଚାର୍ଯ୍ୟଙ୍କ ସହ ଗୋକୁଳରୁ ଗୋବର୍ଦ୍ଧନ ଚାଲି ଆସିଲେ । ଶ୍ରୀନାଥଙ୍କ ଦର୍ଶନ କଲେ ଏବଂ ଏହିଠାରେ ହିଁ ରହିଯିବାର ଶୁଭ ସଂକଳ୍ପ କରି ନେଲେ । ଶ୍ରୀନାଥଜୀଙ୍କ ପ୍ରତି ତାଙ୍କ ଅପୂର୍ବ ଭକ୍ତି ରହିଥିଲା, ଆଚାର୍ଯ୍ୟଙ୍କ କୃପାରୁ ସେ ପ୍ରଧାନ କୀର୍ତ୍ତନକାର ଭାବେ ନିଯୁକ୍ତ ହେଲେ ।

ଗୋବର୍ଦ୍ଧନ ଚାଲି ଆସିବା ପରେ ସୂର ନିଜର ସ୍ଥାୟୀ ନିବାସ ଚନ୍ଦ୍ର ସରୋବର ନିକଟ ପରାସେଲୀରେ ସ୍ଥିର କଲେ । ସେ ସେଠାରେ ପ୍ରତିଦିନ ଶ୍ରୀନାଥଙ୍କ ଦର୍ଶନ କରିବାକୁ ଯାଉଥିଲେ । ନୂଆ ନୂଆ ପଦରଚନା କରି ବଡ଼ ଶ୍ରଦ୍ଧା-ଭକ୍ତିର ସହ ସମର୍ପିତ କରୁଥିଲେ । ଧୀରେ ଧୀରେ ବ୍ରଜର ଅନ୍ୟ ସିଦ୍ଧ, ମାହାତ୍ମା ଏବଂ ପୁଷ୍ଟି ମାର୍ଗର ଭକ୍ତ କବି ନନ୍ଦଦାସ, କୁମ୍ଭନ ଦାସ, ଗୋବିନ୍ଦ ଦାସ ଆଦିଙ୍କ ସହ ତାଙ୍କ ସଂପର୍କ ବୃଦ୍ଧି ପାଇବାରେ ଲାଗିଲା । ଭଗବତ୍ ଭକ୍ତିର କଳ୍ପଲତା କୁଂଜରେ ରହି ସେ ସୁର ସାଗର ପରି ବିଶାଳ ଗ୍ରନ୍ଥ ରଚନା କରିବାରେ ସମର୍ଥ ହୋଇଥିଲେ । ଆଚାର୍ଯ୍ୟ ବଲ୍ଲଭଙ୍କ ଲୀଳା ପ୍ରବେଶ ପରେ ଗୋସାଇଁ ବିଟ୍ଠଳ ସୂରଦାସଙ୍କୁ ଅଷ୍ଟଛାପରେ ସ୍ଥାପନ କରିଥିଲେ । ସେ ପ୍ରମୁଖ କବି ଘୋଷିତ

ହୋଇଥିଲେ । କେବେ କେବେ ପରାସୋଲିରୁ ନବନୀତ ପ୍ରିୟଙ୍କ ଦର୍ଶନ ପାଇଁ ଗୋକୁଳ ମଧ୍ୟ ଯାଉଥିଲେ ।

ଥରେ ସଂଗୀତ ସମ୍ରାଟ ତାନସେନ୍ ଆକବରଙ୍କ ସମ୍ମୁଖରେ ସୂରଦାସଙ୍କର ଏକ ଅତ୍ୟନ୍ତ ସରସ ଭକ୍ତିପୂତ ଭଜନ ଗାନକଲେ । ବାଦ୍‌ସାହ ପଦର ସରସରେ ମୁଗ୍ଧ ହୋଇଗଲେ । ତେଣୁ ସୂରଦାସଙ୍କ ସହ ସାକ୍ଷାତ୍ କରିବାକୁ ଇଚ୍ଛା ପ୍ରକଟ କଲେ । ରାଜ କାର୍ଯ୍ୟରେ ସେ ମଥୁରା ଯିବାର ଥିଲା । ତାନ୍‌ସେନ୍‌ଙ୍କ ଏବଂ ସମ୍ରାଟ ସୂରଦାସଙ୍କ ସହ ୧୫୨୩ ବି.ସଂ. ରେ ସାକ୍ଷାତ୍ କରିଥିଲେ । ସମ୍ରାଟଙ୍କ ଅନୁରୋଧରେ ପ୍ରସନ୍ନ ହୋଇ ସୂରଦାସ ଗୋଟିଏ ଭକ୍ତିଗୀତ ଗାନ କଲେ । ଯାହର ଅର୍ଥ ହେଉଛି- ହେ ମନ ! ତୁ ମାଧବଙ୍କଠାରେ ପ୍ରୀତିକର । ଆକବର ପରୀକ୍ଷା ନେଲେ, ଆପଣାର ଯଶ ଗାନ କରିବାକୁ କହିଲେ । ସୂର ତ ରାଧା ଚରଣ ଚାରଣ ଚକ୍ରବର୍ତ୍ତୀ ଶ୍ରୀକୃଷ୍ଣଙ୍କର ଗାୟକ ଥିଲେ, ସେ ଗାଇ ଚାଲିଲେ-

ନାହିନ ରହ୍ୟୌ ହିୟ ମହଁଠୌର ।
ନନ୍ଦ ନନ୍ଦନ ଅଛତ କୈସେଁ ଆନିୟେଭର ଔର ।।

ଆକବର ତାଙ୍କ ନିସ୍ପୃହତାରେ ମୌନ ରହିଲେ । ସୂରଙ୍କ ଜୀବନ ତ ରାସେଶ୍ୱର, ଲୀଳାଧାମ ଶ୍ରୀନିକୁଂଜ ନାୟକଙ୍କ ପ୍ରେମ ମାର୍ଗରେ ସଦା ପଥିକ ହୋଇ ଯାଇଥିଲା ।

ସୂରଦାସ ଥରେ ନବନୀତ ପ୍ରିୟଙ୍କ ଦର୍ଶନ କରିବାକୁ ଗୋକୁଳ ଗଲେ । ସେ ତାଙ୍କ ଶୃଂଗାରର ଯଥା ତଥା ବର୍ଣ୍ଣନ କରୁଥିଲେ । ଗୋସାଇଁ ବିଟ୍‌ଠଲନାଥଙ୍କ ପୁତ୍ର ଗିରିଧରଜୀ ଗୋକୁଳନାଥଙ୍କୁ କହି ସେହିଦିନ ସୂରଦାସଙ୍କର ପରୀକ୍ଷା ନେଲେ । ସେ ଭଗବାନଙ୍କର ଅଦ୍‌ଭୁତ ଶୃଂଗାର କଲେ । ବସ୍ତ୍ର ସ୍ଥାନରେ ମୋତି ମାଳା ପିନ୍ଧାଇ ଦେଲେ । ସୂର ନିଜର ଦିବ୍ୟ ଚକ୍ଷୁରେ ଶୃଂଗାରକୁ ଦେଖି ବର୍ଣ୍ଣନା କଲେ । ସେ ଗାନ କରିବାକୁ ଲାଗିଲେ-

ଦେଖେରୀ ହରି ନଂଗମ ନଂଗା
ଜଳସୁତ ଭୂଷଣ ଅଂଗ ବିରାଜିତ, ବସନହୀନ ଛବି ଉଠତ ତରଂଗା ।।
ଅଂଗ ଅଂଗ ପ୍ରତି ଅମିତ ମାଧୁରୀ, ନିରେଖି ଲଜିତ ରତି କୋଟି ଅନଂଗା ।
କିଲକତ ଦଧିସୁତ ମୁଖଲେ ମନଭାରି, ସୂର ହଁସ ତ ବ୍ରଜ ଜୁବତିନ ସଂଗା ।।

ଭକ୍ତିର ପରୀକ୍ଷା ପୂର୍ଣ୍ଣ ହୋଇଗଲା । ଭଗବାନ୍ ଅଂଧ ମହାକବିଙ୍କ ପ୍ରତିଷ୍ଠା ଅକ୍ଷୁଣ୍ଣ ରଖିଲେ । ସେ ହୃଦୟ କମଳରେ ନୃତ୍ୟ କରିବାକୁ ଲାଗିଲେ । ମହାଗାୟକଙ୍କ ସଂଗୀତ ମାଧୁରୀରେ ରସୋନ୍ମତ୍ତ ନନ୍ଦ ନନ୍ଦନ ପ୍ରମତ୍ତ ହୋଇ ଉଠିଲେ । କେତେ ସୁନ୍ଦର ବର୍ଣ୍ଣନା ତାଙ୍କ ସ୍ୱରୂପର ! ସୂରଦାସ ତ୍ୟାଗୀ, ବିରକ୍ତ ଏବଂ ପ୍ରେମୀଭକ୍ତ ଥିଲେ । ବଲ୍ଲଭାଚାର୍ଯ୍ୟଙ୍କ ସିଦ୍ଧାନ୍ତର ପୂର୍ଣ୍ଣଜ୍ଞାତା ଥିଲେ । ସେ ମହା ଭାଗବତ ଥିଲେ । ସେ ନିଜର ଉପାସ୍ୟ ଶ୍ରୀରାଧାରାଣୀ ଏବଂ କୃଷ୍ଣଙ୍କର ଯଶ ବର୍ଣ୍ଣନକୁ ହିଁ ଶ୍ରେୟ ମାର୍ଗ ବୁଝିଥିଲେ । ଗୋପୀ ପ୍ରେମର ଧ୍ୱଜା ଭାରତୀୟ କାବ୍ୟ ସାହିତ୍ୟରେ ଉଡ଼ାଇବାରେ ତାଙ୍କୁ ଅଗ୍ରଗଣ୍ୟ ସ୍ୱୀକାର କରାଯାଏ ।

ସେ ପଚାଶ ବର୍ଷ ବୟସରେ ଗୋଲୋକ ପ୍ରାପ୍ତ କରିଥିଲେ । ଅନ୍ତିମ ସମୟ ନିକଟ ଜାଣି ସୂରଦାସ ଶ୍ରୀନାଥଜୀଙ୍କର କେବଳ ମଂଗଳ ଆଳତୀ ଦର୍ଶନ କରିଥିଲେ । ସେ ପ୍ରତିଦିନ ଶ୍ରୀନାଥଙ୍କର ସମସ୍ତ ବେଶ- ଅବକାଶ ଦର୍ଶନ କରିଥାନ୍ତି । ଗୋସାଇଁ ବିଟ୍‌ଠଳ ନାଥଙ୍କ ଶୃଂଗାର ବେଶରେ ତାଙ୍କ ଅନୁପସ୍ଥିତି ଦେଖି ଆଶ୍ଚର୍ଯ୍ୟ ଚକିତ ହୋଇଗଲେ । ଇଷ୍ଟ ଶ୍ୟାମସୁନ୍ଦରଙ୍କୁ ଦେଖିଲେ, ପ୍ରଭୁ ପରମ ଭକ୍ତଙ୍କ ପଦ ଆଜି ଶୁଣି ନାହାଁନ୍ତି । ସୂରଦାସ ତାଙ୍କୁ ନିତ୍ୟ ପଦ ଶୁଣାଉଥିଲେ କୁମ୍ଭନ ଦାସ, ଗୋବିନ୍ଦ ଦାସ ଆଦି ଚିନ୍ତିତ ହୋଇଗଲେ । ଗୋସାଇଁଜୀ କରୁଣ ସ୍ୱରରେ କହିଲେ 'ଆଜି ପୁଷ୍ଟି ମାର୍ଗର ଜାହାଜ ଚାଲିଯିବ ।' ଯାହାର ଯାହା ନେବା କଥା ନେଇଯାଅ' । କୁମ୍ଭନନ୍ଦନ ଦାସ, ଗୋବିନ୍ଦ ଦାସ, ଚତୁର୍ଭୁଜ ଦାସ ଆଦିଙ୍କ ସହ ସେ ନିକେ ଗଲେ । ଅପର ପକ୍ଷେ ସୂରଦାସଙ୍କ ଦଶା ବିଚିତ୍ର ଥିଲା । ସେ ଶ୍ରୀନାଥଜୀଙ୍କ ଧ୍ୱଜାକୁ ପ୍ରଣାମ କଲେ । ସେହି ଦିଗକୁ ମୁଖକରି ଖଟ ଉପରେ ଶୋଇଯାଇ ଭାବିବାକୁ ଲାଗିଲେ, ଏହି କାୟା ପୂର୍ଣ୍ଣ ରୂପରେ ହରିଙ୍କ ସେବାରେ ପ୍ରଯୁକ୍ତ ହୋଇନାହିଁ । ସେ ନିଜର ଦୈନ୍ୟ ଏବଂ ବିବଶତାକୁ ସ୍ମରଣ କରିବାକୁ ଲାଗିଲେ । ଗୋସାଇଁ ଆସି ପହଞ୍ଚିଗଲେ । ଆସିବା ମାତେ ସୂରଦାସଙ୍କ ହାତକୁ ନିଜ ହାତରେ ଧରି ପକାଇଲେ । ମହାକବି ତାଙ୍କ ଚରଣ ବଂଦନା କଲେ । ସୂର କହିଲେ, ମୁଁ ତ ଆପଣଙ୍କ ପ୍ରତୀକ୍ଷାରେ ଥିଲି । ପଦ ଗାଇବାରେ ଲାଗିଲେ-

ଖଂଜନ ନୟନ ରୂପରସ ମାତେ ।
ଅତିଶୟ ଚାରୁ ଚପଳ ଅନିୟାରେ, ପଳ ପିଂଜରା ନ ସମାତେ ॥
ଚଲି ଚଲି ଜାତ ନିକଟ ସ୍ରବନନିକେ, ଉଲଟି ପଲଟି ତାଟଂକ ଫଁ ଦାତେ ।
ସୂରଦାସ ଅଂଜନ ଗୁନ ଅଟକେ, ନତରୁ ଅବହିଂ ଉଡ଼ି ଜାତେ ॥

ଅନ୍ତ ସମୟରେ ତାଙ୍କ ଧ୍ୟାନ ଯୁଗଳ ସ୍ୱରୂପ ଶ୍ରୀରାଧା- ମନମୋହନରେ ଲାଗି ଯାଇଥିଲା । ଶ୍ରୀବିଟ୍‌ଠଳନାଥଙ୍କୁ ପଚାରିବା ପରେ ସେ କ'ଣ ଚିତ୍ତବୃତ୍ତି କହିଲେ ? ସେ କହିଲେ ଯେ, ମୁଁ ରାଧାରାଣୀଙ୍କ ବଂଦନା କରୁଅଛି । ଯାହାଙ୍କୁ ନନ୍ଦନନ୍ଦନ ପ୍ରେମ କରୁଥିଲେ ।

କବି ଚତୁର୍ଭୁଜ ଦାସ କହିଲେ କି ଆପଣ ଅସଂଖ୍ୟ ପଦ ରଚନା କରିଛନ୍ତି, କିନ୍ତୁ ମହାପ୍ରଭୁଙ୍କ ଯଶ ଆପଣ ବର୍ଣ୍ଣନା କରି ନାହାଁନ୍ତି । ସୂରଙ୍କ ଗୁରୁନିଷ୍ଠା କହି ପକାଇଲେ- ମୁଁ ତ ତାଙ୍କୁ ସାକ୍ଷାତ୍ ଭଗବାନଙ୍କ ରୂପ ବୁଝିଅଛି । ଗୁରୁ ଏବଂ ଭଗବାନଙ୍କ କିଞ୍ଚିତ ମାତ୍ର ଅନ୍ତର ଦେଖିନାହିଁ । ମୁଁ ତ ଆଦିରୁ ଅନ୍ତ ପର୍ଯ୍ୟନ୍ତ ତାଙ୍କରି ଯଶ ଗାନ କରିଛି । ତହୁଁ ସେ ଗୁରୁ ସ୍ତବନ କଲେ-

ଭରସୋ ଦୃଢ଼ ଇନ ଚରନନି କେରୋ ।<br>
ଶ୍ରୀବଲ୍ଲଭ ନଖଚନ୍ଦ୍ର ଛଟା ବିନୁ ସବଜଗ ମାଝ ଅଁ ଧେରୋ<br>
ସାଧନ ନାହିଁ ଔର ଯା କଲି ମେଁ ଜାସୋଁ ହୋୟ ନିବେରୋ ।<br>
ସୁର୍ କହା କହୈ ଦ୍ୱିବିଧି ଆଁଧରୋ ବିନା ମୋଲ କୋ ଚେରୋ ॥

ଚତୁର୍ଭୁଜ ଦାସଙ୍କ ପ୍ରାର୍ଥନାରେ ସେ ଉପସ୍ଥିତ ଭଗବଦୀମାନଙ୍କୁ ପୁଷ୍ଟି ମାର୍ଗର ମୁଖ୍ୟ ସିଦ୍ଧାନ୍ତ ସଂକ୍ଷେପରେ ଶୁଣାଇଲେ । ସେ କହିଲେ ଯେ ଗୋପୀମାନଙ୍କ ଭାବରେ ଭକ୍ତି ଭାବନାରେ ଭଜନରେ ପୁଷ୍ଟି ମାର୍ଗର ରସ ଅନୁଭବ ହୋଇଥାଏ । ଏହି ମାର୍ଗରେ କେବଳ ପ୍ରେମର ହିଁ ମର୍ଯ୍ୟାଦା ଅଛି । ସୂରଦାସ ଶ୍ରୀରାଧାକୃଷ୍ଣଙ୍କର ପ୍ରେମମୟୀ, ରସମୟୀ ଛବିର ଧ୍ୟାନ କଲେ ଏବଂ ସେ ସବୁଦିନ ପାଇଁ ଧ୍ୟାନସ୍ଥ ହୋଇଗଲେ ॥



# ଗୋସାଇଁ ବିଟ୍‌ଠଳନାଥ

ଗୋସାଇଁ ବିଟ୍‌ଠଳ ନାଥଙ୍କର ମହିମା ବ୍ୟାଖ୍ୟାନ ଅସମ୍ଭବ ନୁହେଁ, ଅବଶ୍ୟ କଠିନ । ସେ ଶ୍ରୀବଲ୍ଲଭାଚାର୍ଯ୍ୟଙ୍କ ପୁଷ୍ଟି ସିଦ୍ଧାନ୍ତର ଭାଷ୍ୟକାର ଥିଲେ । ତାଙ୍କର କୀର୍ତ୍ତି ସୁଧାର ଅପାର ପାରାବାରରେ ଅଷ୍ଟଛାପକର ମହାକବି ସୂରଦାସ, କୁମ୍ଭ ଦାସ ଆଦି ଭକ୍ତିଦେବୀଙ୍କ ଅଭିଷେକ କରି ଭାଗବତ ଧର୍ମର ଯେଉଁ ବିଜୟ ବୈଜୟନ୍ତୀ ଉତ୍ତୋଳିତ କରିଥିଲେ, ତାହା ଅନନ୍ତ କାଳ ପର୍ଯ୍ୟନ୍ତ ବ୍ରଜକ୍ଷେତ୍ରରେ ଆନ୍ଦୋଳିତ ହୋଇ ସ୍ୱର୍ଗକୁ ପୃଥିବୀ ଉପରକୁ ଘେନି ଆସିବାକୁ ସଦା ଆହ୍ୱାନ କରୁଥିବ ।

ଶ୍ରୀବିଟ୍‌ଠଳ ନାଥଙ୍କ ଜୀବନ କାଳରେ ଭକ୍ତି ରସମୟ ହୋଇଉଠିଲା । ଶ୍ରୀକୃଷ୍ଣ ପ୍ରେମରେ ସର୍ବଥା ଓତଃପ୍ରୋତ ହୋଇଗଲା । ସେ ମହାପ୍ରଭୁ ବଲ୍ଲଭାଚାର୍ଯ୍ୟଙ୍କ ପ୍ରେମଲକ୍ଷଣା ଭକ୍ତିକୁ ବହୁଗୁଣିତ କରିଥିଲେ । ଅଷ୍ଟାଛାପକ କବିଗଣ ତାଙ୍କ ପ୍ରତି ଯେଉଁ ଅଗାଧ ଶ୍ରଦ୍ଧା ଭକ୍ତି ନିଜ ରଚନାରେ ପ୍ରକଟ କରିଛନ୍ତି, ତାହା ତାଙ୍କ ପରମୋତ୍କୃଷ୍ଟ ଭାଗବତୀୟତାର ପରିଚାୟକ ।

ଗୋସ୍ୱାମୀ ବିଟ୍‌ଠଳ ନାଥ ମହାପ୍ରଭୁ ବଲ୍ଲଭଙ୍କ ଦ୍ୱିତୀୟ ପୁତ୍ର ଥିଲେ । ତାଙ୍କ ଜନ୍ମ ସଂବତ୍ ୧୫୭୨ବିଂ ରେ କାଶୀ ନିକଟବର୍ତ୍ତୀ ଚରଣାଟ (ଚୁନାର)ରେ ହୋଇଥିଲେ । ତାଙ୍କ ପିତା ଶ୍ରୀବଲ୍ଲଭ ନବଜାତ ଶିଶୁକୁ ନିଜ ପୂର୍ବ ନିବାସ ସ୍ଥାନ ଅଢ଼ୈଲ ଘେନି ଆସିଲେ ଏବଂ ସେଠାରେ ଆବଶ୍ୟକୀୟ ସଂସ୍କାର କରାଇଥିଲେ । ଭାଗ୍ୟଶୀଳ ବିଟ୍‌ଠଳ ଜନ୍ମ ହେତୁ ମହାକବି ସୂରଦାସ ମଙ୍ଗଳ ଗୀତ ଗାନ କରିଥିଲେ । ଗୋକୁଳରେ ନନ୍ଦ ମହୋତ୍ସବ ଅନୁଷ୍ଠିତ ହୋଇଥିଲା । କଳିଯୁଗରେ ଜୀବର ଉଦ୍ଧାର ଏବଂ ସନ୍ଥଙ୍କ ପ୍ରତିପାଳନ ନିମିତ୍ତ ତାଙ୍କର ଜନ୍ମ ହୋଇଥିଲା । ୧୫୮୦ବି.ସ.ରେ ଅଢ଼ୈଲରେ ତାଙ୍କ ଯଜ୍ଞୋପବୀତ ସଂସ୍କାର ହୋଇଥିଲା । ପିତାଙ୍କ ତୁଲ୍ୟ ସେ ଗୃହସ୍ଥ ଥିଲେ । ସେ ଦୁଇ ବିବାହ କରିଥିଲେ । ପ୍ରଥମ ନାମ ରୁକ୍ମିଣୀ ଏବଂ ଦ୍ୱିତୀୟର ନାମ ପଦ୍ମାବତୀ ଥିଲା । ତାଙ୍କ ଜୀବନର ଅଧିକାଂଶ ସମୟ ଗୋବର୍ଦ୍ଧନ ଏବଂ ଗୋକୁଳରେ ବ୍ୟତୀତ ହୋଇଥିଲା ।

ସଂବତ୍ ୧୫୮୭ ବିଂ ରେ ଶ୍ରୀବଲ୍ଲଭ ଗୋଲୋକ ପ୍ରୟାଣ ପରେ ତାଙ୍କ ଜ୍ୟେଷ୍ଠ ପୁତ୍ର ଗୋପିନାଥଜୀ ଉତ୍ତରାଧିକାରୀ ହୋଇଥିଲେ । କିନ୍ତୁ କିଛିଦିନ ପରେ ତାଙ୍କର ମହାପ୍ରୟାଣ ହୋଇଥିଲା । ଶ୍ରୀବିଟ୍‌ଠଳ ନାଥଜୀ ପୁଷ୍ଟି ମାର୍ଗର ବିକାଶ ତଥା ପ୍ରଗତିରେ ବହୁତ ବେଶୀ ଯୋଗଦାନ କରିଥିଲେ । ସେ ଶ୍ରୀକୃଷ୍ଣ ଭକ୍ତି ପ୍ରାପ୍ତିରେ ନିଜର କଳା କୁଶଳତା, କାବ୍ୟ ମର୍ମଜ୍ଞତା, ସଂଗୀତ ନୈପୁଣ୍ୟ ଏବଂ ଚିତ୍ର କାରିତାର ସଦୁପଯୋଗ କରି ଅସଂଖ୍ୟ ଜୀବକୁ ଭବସାଗରରୁ ପାରି କରାଇଥିଲେ । ମହାକବି ସୂରଦାସ, ନନ୍ଦଦାସ, କୁମ୍ଭଦାସ, ପରମାନନ୍ଦଦାସ, ଚତୁର୍ଭୁଜଦାସ, ଛିତସ୍ୱାମୀ, ଗୋବିନ୍ଦଦାସ, କୃଷ୍ଣଦାସଙ୍କ କବିତାକୁ ଅଷ୍ଟଛାପକୀ ଗଦୀ ଉପରେ ପ୍ରତିଷ୍ଠିତ କରି ସେ ଭକ୍ତିର ରସରାଜତ୍ୱ ସିଦ୍ଧ କରିଥିଲେ । ଅଷ୍ଟଛାପ ତାଙ୍କର ଅମର କୀର୍ତ୍ତି । ବାଦଶାହ ଆକବର ଏବଂ ତାଙ୍କ ସଭାସଦସ୍ୟ ମାନସିଂହ ବୀରବଲ୍ଲ ଆଦି ତାଙ୍କର ବଡ଼ ସମ୍ମାନ କରୁଥିଲେ । ଆକବର ଗୋକୁଳ ଏବଂ ଗୋବର୍ଦ୍ଧନ ଭୂମି ତାଙ୍କୁ ନିଶୁଳ୍କ ଦେଇଥିଲେ । ବିଟ୍‌ଠଳନାଥ ଗୁଜୁରାଟ ମଧ୍ୟ ଯାତ୍ରା କରିଥିଲେ । ସେଠାରେ ଭାଗବତ ଧର୍ମ ପ୍ରଚାର କରିଥିଲେ । ତାଙ୍କର ୨୫୨ ବୈଷ୍ଣବ ଶିଷ୍ୟ ବହୁ ପ୍ରସିଦ୍ଧ । ବାସ୍ତବରେ ସେ ମଂଗଳରୂପ ନିଧାନ ଥିଲେ । ନନ୍ଦଦାସ ଆଦି କାବ୍ୟ ମହାରଥୀଗଣ ଏକ ସ୍ୱରରେ ତାଙ୍କ ଚରଣ ଧୂଳିର ଅଲୌକିକତା ବଖାଣିଛନ୍ତି ।

ସଂବତ୍ ୧୬୪୨ ବିଂ.ସ.ରେ ଗୋବର୍ଦ୍ଧନର ଏକ କନ୍ଦରାରେ ପ୍ରବେଶ କରି ସେ ନିଜ ଜୀବନ ଲୀଳା ସମାପ୍ତ କରିଥିଲେ । ପ୍ରବେଶ ପୂର୍ବରୁ ଅଷ୍ଟଛାପକର ପ୍ରସିଦ୍ଧ ଭକ୍ତ କବି ଚତୁର୍ଭୁଜ ଦାସଜୀ ଉପସ୍ଥିତ ଥିଲେ । ସେ କରୁଣ ସ୍ୱରରେ ଆଚାର୍ଯ୍ୟଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ପ୍ରକଟ କରିଥିଲେ ।

ଶ୍ରୀ ବିଟ୍ଠଳ ନାଥ ସେ ପ୍ରଭୁ ଭଏ ନ ହ୍ୱେ ହେଁ ।
ପାଛେ ସୁନେ ନଦେଖେ ଆଗେ, ବହ ସଂଗ ଫେରି ନ ବନୈହେଁ ।
× × × × × × ×
କୋ ଫେରି ନନ୍ଦରାୟ କୋ ବୈଭବ ବ୍ରଜବାସିନ ବିନ୍ଦ ସେହେଁ

ଏଥିରେ ବିଟ୍ଠଳ ନାଥଙ୍କର ଯଶ ସ୍ଥାୟିତ୍ୱ ହୋଇ ଯାଇଛି ।

ଗୋସାଇଁ ବିଟ୍ଠଳ ନାଥଙ୍କ ଜୀବନ ଚରିତ ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳା ସୌନ୍ଦର୍ଯ୍ୟର ବୋଧ ହୋଇଥାଏ । ସେ ନିଜ ସମୟର ବହୁତ ବଡ଼ ଭାଗବତ ଓ ଭକ୍ତ ଶିରୋମଣି ଥିଲେ । ତାଙ୍କ ଅବର୍ତ୍ତମାନରେ ତାଙ୍କ ସାତ ପୁଅଙ୍କ ମଧ୍ୟରେ ଭୂମି ଓ ଗଦ୍ଦୀ ବିଭାଜିତ ହୋଇଥିଲା । ଅଷ୍ଟଛାପକଙ୍କ ମଧ୍ୟରୁ କିଛି କବି ଏମାନଙ୍କ ଯଶ ସଂବଂଧରେ ନିଜ ପାଦ ମଧ୍ୟରେ ପ୍ରକାଶ କରିଛନ୍ତି ।

ତାଙ୍କ ରଚନାବଳୀ ମଧ୍ୟରୁ ବିଦ୍ୱନ୍ମଣ୍ଡନ, ନିବନ୍ଧ ପ୍ରକାଶ-ଟୀକା, ଅଣୁଭାଷ୍ୟର ଅନ୍ତିମ ଅଧ୍ୟାୟ, ସୁବୋଧିନୀ ଉପରେ ଟିପ୍‌ପଣୀ, ଭକ୍ତି ହଂସ, ଭକ୍ତିହେତୁ, ଶୃଙ୍ଗାର ମଣ୍ଡନ, ବିଜ୍ଞାପ୍ତି, ଆଦି ଅନେକ ଗ୍ରନ୍ଥ ତାଙ୍କ ଭକ୍ତି ମର୍ମଜ୍ଞତାର କୀର୍ତ୍ତିସ୍ତମ୍ଭ । ସେ ଆଚାର୍ଯ୍ୟ, ଭକ୍ତ ଓ ପଣ୍ଡିତ ତିନିଗୋଟିର ସମୀଚୀନ ସମନ୍ୱୟ ଥିଲେ ॥



# ସମର୍ଥ ଗୁରୁ ରାମଦାସ ସ୍ୱାମୀ

ଭଗବାନ ସୂର୍ଯ୍ୟ ନାରାୟଣଙ୍କ ବରଦାନରୁ ସୂର୍ଯ୍ୟାଜୀ ପଂଥଙ୍କ ଧର୍ମପତ୍ନୀ ରାଣୁବାଈଙ୍କ ଗର୍ଭରୁ ସଂ- ୧୬୬୨ ମାର୍ଗଶୀର ଶୁକ୍ଳ ତ୍ରୟୋଦଶୀରେ ପ୍ରଥମ ପୁତ୍ରର ଜନ୍ମ ହେଲା । ତାଙ୍କ ନାମ ଗଂଗାଧର ରଖାଯାଇଥିଲା । ୯ବର୍ଷ ବୟସରେ ହିଁ ହନୁମାନ ମନ୍ଦିରରେ ଏଗାର ଦିନ ପର୍ଯ୍ୟନ୍ତ ମାରୁତି କବଚ ପାଠକରି ହନୁମାନଙ୍କୁ ପ୍ରସନ୍ନ କରିଥିଲେ ଏବଂ ଶ୍ରୀରାମଚନ୍ଦ୍ର ମଧ ତାଙ୍କୁ ଦର୍ଶନ ଦେଇ ଅନୁଗ୍ରହୀତ କରିଥିଲେ । ସେହି ଗଂଗାଧର ପରବର୍ତ୍ତୀ କାଳରେ 'ଶ୍ରେଷ୍ଠ' ବା 'ରାମୀରାମଦାସ' ନାମରେ ପ୍ରସିଦ୍ଧ ହୋଇଥିଲେ । ଏହାଙ୍କ ଜନ୍ମର ତିନିବର୍ଷ ପରେ ବର୍ତ୍ତମାନର ଦକ୍ଷିଣ ହାଇଦରାବାଦ ଅନ୍ତର୍ଗତ ଔରଂଗାବାଦ ଜିଲ୍ଲାର ଜାମ୍ବ ଗ୍ରାମରେ ସଂ ୧୬୬୫ ଚୈତ୍ର ଶୁକ୍ଳ ନବମୀ ଦିନ ରାଣୁବାଈ ସେହି ମହାପୁରୁଷଙ୍କୁ ଜନ୍ମ ଦେଇଥିଲେ ଯାହାଙ୍କୁ ସମସ୍ତେ ଗୁରୁରାମଦାସ ସ୍ୱାମୀ ଭାବେ ଜାଣନ୍ତି । ପିତା ତାଙ୍କ ନାମ ନାରାୟଣ ରଖିଥିଲେ । ପାଞ୍ଚବର୍ଷ ବୟସରେ ଉପନୟନ ସଂପନ୍ନ ହୋଇଥିଲା । ପିଲାବେଳେ ସେ ଚଞ୍ଚଳ ପ୍ରକୃତିର ଥିଲେ । ଲେଖାପଢ଼ା, ହିସାବ ରଖିବା ଏବଂ ନିତ୍ୟ ବ୍ରହ୍ମକର୍ମ ପ୍ରଭୃତି ବହୁତ କମ୍ ସମୟରେ ଆୟତ୍ତ କରିନେଇଥିଲେ । ସୂର୍ଯ୍ୟଦେବଙ୍କୁ ପ୍ରତିଦିନ ଦୁଇ ହଜାର ନମସ୍କାର କରୁଥିଲେ । ଆଠବର୍ଷ ବୟସରେ ସେ ହନୁମାନଙ୍କୁ ପ୍ରସନ୍ନ କରିଥିଲେ ଏବଂ ଶ୍ରୀରାମଚନ୍ଦ୍ରଙ୍କ ଦର୍ଶନ ପ୍ରାପ୍ତ କରିଥିଲେ । ଭଗବାନ୍ ଶ୍ରୀରାମଚନ୍ଦ୍ର ତାଙ୍କୁ ଦୀକ୍ଷା ଦେଇ ତାଙ୍କ ନାମ ରାମଦାସ ରଖିଲେ । ବାରବର୍ଷ ବୟସରେ ତାଙ୍କ ବିବାହ ସ୍ଥିର ହେଲା । ବିବାହ ମଣ୍ଡପରେ ବର-ବଧୂଙ୍କ ମଧରେ ଅନ୍ତଃପଟ ଦେଇ ବ୍ରାହ୍ମଣ ମଂଗଳାଚରଣ ଶ୍ଳୋକ ପାଠକଲେ । ପ୍ରଥମ ମଂଗଳା ଚରଣ ପରେ ପରେ ଉପସ୍ଥିତ ଲୋକେ 'ଶୁଭଲଗ୍ନ ସାବଧାନ' ବୋଲିଲେ, ତେବେ ରାମଦାସ ଯଥାର୍ଥ ରୂପେ ହିଁ ସାବଧାନ ହୋଇ ସେଠାରୁ ଏପରି ପଳାଇଗଲେ ଯେ ବାର ବର୍ଷ ପର୍ଯ୍ୟନ୍ତ ଘର ଲୋକ ତାଙ୍କ ସଂଧାନ ପାଇ ପାରି ନଥିଲେ । ସେହିଠାରୁ ତିନିକ୍ରୋଶ ଦୂର ଗୋଦାବରୀ ନଦୀ, ତାହା ପାର ହୋଇ କୂଳେ କୂଳେ ପାଦରେ ଚାଲି ଚାଲି ସେ ନାସିକ- ପଞ୍ଚବଟୀରେ ପହଞ୍ଚିଗଲେ ।

ପଞ୍ଚବଟୀରେ ଶ୍ରୀରାମଚନ୍ଦ୍ରଙ୍କ ଦର୍ଶନ ପ୍ରାପ୍ତ କରିଥିଲେ । ଏହି ଅବସରରେ ରାମଦାସ ଏକ କରୁଣାଦଶକ ପାଠକରି ପ୍ରଭୁଙ୍କୁ ବିନୟ ପ୍ରାର୍ଥନା କରିଥିଲେ । ଅତଃପର ନାସିକ ନିକଟବର୍ତ୍ତୀ ଟାଫଲି ଗ୍ରାମକୁ ଯାଇ, ଯେଉଁଠି ଗୋଦାବରୀ ଏବଂ ନନ୍ଦିନୀଙ୍କ ସଂଗମ ହୋଇଛି, ସେଠାରେ ଗୋଟିଏ ଗୁମ୍ଫାରେ ରହିଲେ । ସେ ତ୍ରୟୋଦଶାକ୍ଷର (ଶ୍ରୀରାମ ଜୟରାମ ଜୟ ଜୟ ରାମ) ମନ୍ତ୍ରର ପୁରଶ୍ଚରଣ ଆରମ୍ଭ କରିଥିଲେ । ଦୈନିକ ବିଧି ଅନୁସାରେ ମନ୍ତ୍ରଜପ ପରେ ସମୟାନୁସାରେ ସେ ରାମାୟଣ, ବେଦ, ବେଦାନ୍ତ, ଉପନିଷଦ, ଗୀତା, ଭାଗବତ ଆଦି ଗ୍ରନ୍ଥ ସ୍ୱାଧ୍ୟାୟ କରୁଥିଲେ । ଏହିପରି ତିନିବର୍ଷ ତପସ୍ୟାରେ ବିତିଗଲା । ଦିନେ ରାମଦାସ, ସଂଗମ ସ୍ଥଳରେ ବ୍ରହ୍ମଯଜ୍ଞ କରୁଥାନ୍ତି, ଅନ୍ୟ ଦିଗରୁ ଜଣେ ସଦ୍ୟ ବିଧବାନାରୀ ତାଙ୍କୁ ଆସି ପ୍ରଣାମ କଲା, 'ଅଷ୍ଟପୁତ୍ରା ସୌଭାଗ୍ୟବତୀ ଭବ' ଏହିପରି ଆଶୀର୍ବାଦ ତାଙ୍କ ମୁଖରୁ ବାହାରିଲା । ତହୁଁ ସେହି ବିଧବାନାରୀ କହିଲେ- ଏ ଜନ୍ମରେ ନାଁ ଆର ଜନ୍ମରେ ? କଥା ହେଉଛି- ସେହି ସ୍ତ୍ରୀଲୋକର ପତି ମୃତ ହୋଇ ଯାଇଛନ୍ତି । ତାଙ୍କ ସହିତ ସତୀ ହେବାପାଇଁ ସେ ଯାଉଛି । ସତୀ ହେବା ପୂର୍ବରୁ ସତ୍‌ପୁରୁଷଙ୍କୁ ପ୍ରଣାମ କରିବା ବିଧି ପ୍ରଚଳିତ । ତଦନୁସାରେ ସେ ତାଙ୍କୁ ତପସ୍ୱୀ ମହାତ୍ମା ଜାଣି ପ୍ରଣାମ କରିବାକୁ ଆସିଥିଲା । ରାମଦାସ ତାକୁ କହିଲେ ଶବକୁ ଏଠାକୁ ଘେନିଆସ । ଶବ ସେଠାକୁ ଆସିବାରୁ ରାମଦାସ ଶ୍ରୀରାମନାମ ନେଇ ତା' ଉପରେ ତୀର୍ଥୋଦକ ଛିଞ୍ଚି ଦେଲେ । ସେହି ମୃତ ଶରୀର 'ରାମ ରାମ' କହି ଜୀବିତ ହୋଇଗଲା । ପୁନର୍ଜୀବିତଙ୍କ ନାମ ଗିରିଧର ପନ୍ଥ ଏବଂ ତାଙ୍କ ପତ୍ନୀ ଅନ୍ନପୂର୍ଣ୍ଣା ବାଈ । ରାମଦାସ ତାକୁ କହିଲେ, ପୂର୍ବରୁ ତୋତେ ଆଠ ପୁତ୍ରର ଆଶୀର୍ବାଦ ଦେଇଥିଲି ଏବେ ଆଉ ଦୁଇ ପୁତ୍ରର ଆଶୀର୍ବାଦ ଦେଉଛି । ଆଶୀର୍ବାଦ ଅନୁସାରେ ବ୍ରାହ୍ମଣ ଦମ୍ପତିଙ୍କର ଦଶ ପୁତ୍ର ହେଲେ । ସେମାନେ ତାଙ୍କ ପ୍ରଥମ ପୁତ୍ରକୁ ରାମଦାସଙ୍କ ଚରଣରେ ସମର୍ପଣ କରିଥିଲେ । ସେହି ସମର୍ପିତ ପୁତ୍ର ଉଦ୍ଧବ ଗୋସାଇଁ ନାମରେ ପ୍ରଖ୍ୟାତ ହୋଇଥିଲେ ।

ସେହି ସ୍ଥାନରେ ସଂବତ୍ ୧୬୮୯ରେ ପୁରଶ୍ଚରଣ ସମାପ୍ତ ହେଲା । ଶ୍ରୀରାମଚନ୍ଦ୍ର ସମର୍ଥଗୁରୁ ରାମଦାସଙ୍କୁ ଦର୍ଶନ ଦେଇ ଆଜ୍ଞା ଦେଲେ କି- ଏବେ ତୁମେ ସବୁ ତୀର୍ଥ ଯାତ୍ରା କରି କୃଷ୍ଣାନଦୀର ତଟରେ ରୁହ । ଏବେ ରାମଦାସ ତୀର୍ଥାଟନରେ ବାହାରିଲେ । ପ୍ରଥମେ କାଶୀ ଯାତ୍ରା କଲେ, ସେଠାରୁ ଅଯୋଧ୍ୟା ଯାଇ ରାମମନ୍ଦିରରେ ପରମାରାଧ୍ୟଙ୍କୁ ଦର୍ଶନ କଲେ । ପରେ ପରେ ଗୋକୁଳ,

ବୃନ୍ଦାବନ, ମଥୁରା, ଦ୍ୱାରିକା ହୋଇ ଶ୍ରୀନଗର, ବଦରୀନାରାୟଣ ଏବଂ କେଦାରେଶ୍ୱର ଯାତ୍ରାକଲେ । ସେଠାରେ ପର୍ବତଶିଖରରେ ଧ୍ୟାନରେ ବସିଗଲେ ଏବଂ ଶ୍ୱେତମାରୁତିଙ୍କୁ ଦର୍ଶନ କରିବାକୁ ଗଲେ । ସେଠାରେ ଚାରିମାସ ରହିଲେ । ଶ୍ୱେତମାରୁତି ତାଙ୍କୁ ପ୍ରସାଦ ସ୍ୱରୂପ ଟୋପୀ, ମେଖଳା, ବଲ୍‌କଲ, ବସ୍ତ୍ର, ଜୟମାଳ, ପାଦୁକା ପ୍ରଭୃତି ପ୍ରଦାନ କରିଥିଲେ । ଏଠାରୁ ଉତ୍ତର ମାନସ ଯାତ୍ରାକରି ଶ୍ରୀଜଗନ୍ନାଥ ଧାମ ପୁରୀ ତଥା ପୂର୍ବ ସାଗର ବେଳାରୁ ନେଇ ଦକ୍ଷିଣ ସମୁଦ୍ରତଟ ଶ୍ରୀରାମେଶ୍ୱର ସେତୁବନ୍ଧ ଏବଂ ଲଙ୍କା ଦର୍ଶନ କରି ଗୋକର୍ଣ୍ଣ, ମହାବଳେଶ୍ୱର, ଶେଷାଚଳ, ଶୈଳ ମଲ୍ଲିକାର୍ଜୁନ, ପଞ୍ଚ ମହାଲିଂଗ, କିଷ୍କିନ୍ଧ୍ୟା, ପମ୍ପାସରୋବର, ଋଷ୍ୟମୁନିପର୍ବତ, କରବୀର କ୍ଷେତ୍ର, ପରଶୁରାମ କ୍ଷେତ୍ର, ପଣ୍ଢରପୁର, ଭୀମାଶଂକର ଏବଂ ତ୍ର୍ୟମ୍ବକେଶ୍ୱର ହୋଇ ପଞ୍ଚବଟୀ ଫେରି ଆସିଲେ ।

ତୀର୍ଥଯାତ୍ରା ସମାପ୍ତ କରି ଗୋଦାବରୀ ପରିକ୍ରମା କରିବାକୁ ବାହାରିଲେ । ପୈଠନରେ ଗୋଟିଏ ଦିନ ରହଣିରେ କୀର୍ତ୍ତନ କରୁଥିଲେ, ସେଠାକାର ଲୋକେ ତାଙ୍କୁ ଚିହ୍ନିଗଲେ । ତାଙ୍କ ମାତୃଦେବୀ ତାଙ୍କ ପାଇଁ ଉତ୍କଣ୍ଠିତ ଥିବା ଜଣାଇଲେ । ରାମଦାସ ତୁରନ୍ତ ମାତାଙ୍କ ଦର୍ଶନ ପାଇଁ ଗ୍ରାମରେ ପହଞ୍ଚିଲେ । ତାଙ୍କ ଘର ଦ୍ୱାରଦେଶରେ 'ଜୟ ଜୟ ରଘୁବୀର ସମର୍ଥ' ଡାକ ଶୁଣି ଶ୍ରେଷ୍ଠଜୀଙ୍କ ଧର୍ମପତ୍ନୀ ଭିକ୍ଷାଘେନି ଆସିଲେ, କିନ୍ତୁ ସମର୍ଥ କହିଲେ- ଇଏ ଭିକ୍ଷା ମାଗିଲା କୌଣସି ବୈରାଗୀ ନୁହେଁ । ମାତା ତାଙ୍କ କଣ୍ଠସ୍ୱର ଶୁଣି କହିଲେ, ମୋ ପୁତ୍ର ନାରାୟଣ ? ସମର୍ଥ କହିଲେ ହଁ ମାତାଜୀ । ମାତାଙ୍କ ସମୀପରେ ପହଞ୍ଚି ତାଙ୍କ ଚରଣରେ ମସ୍ତକ ରଖିଦେଲେ । ଚବିଶ ବର୍ଷପରେ ମାତାପୁତ୍ରଙ୍କର ମିଳନ ହୋଇଛି । ସମର୍ଥ ମାତାଙ୍କ ନେତ୍ରରେ ହସ୍ତ ରଖିଦେଲେ, ନଷ୍ଟ ହୋଇଥିବା ଦୃଷ୍ଟିଶକ୍ତି ଫେରିପାଇଲେ । କପିଳ ଗୀତା ମାତାଙ୍କୁ ଶୁଣାଇଲେ । ମାତାଙ୍କ ଆଜ୍ଞାନେଇ ଗୋଦାବରୀ ପରିକ୍ରମା ରାସ୍ତାରେ ଚାଲିଲେ । ତୀର୍ଥଯାତ୍ରା ସମୟରେ ଯେଉଁ ଯେଉଁ ସ୍ଥାନମାନଙ୍କୁ ଯାଇଛନ୍ତି, ସେଠାରେ ଆପଣାର ମଠ ସ୍ଥାପନ କରିଛନ୍ତି । ପ୍ରତ୍ୟେକ ମଠରେ ଜଣେ ଜଣେ ଅଧିକାରୀ ଉଚ୍ଚ ଶିଷ୍ୟ ନିଯୁକ୍ତ କରିଥିଲେ ।

ଶ୍ରୀରାମଚନ୍ଦ୍ର ଆଜ୍ଞାନୁସାରେ ସଂ ୧୭୦୧ ର ବୈଶାଖ ମାସରେ କୃଷ୍ଣାନଦୀର ତଟରେ ଶ୍ରୀସମର୍ଥ ଆସି ପହଞ୍ଚିଗଲେ । ଏଠାରେ ମାହୁଲି କ୍ଷେତ୍ରରେ ରହିବାକୁ ଲାଗିଲେ । ଏବେ ବଡ଼ ବଡ଼ ସଂଥ ଲୋକ ତାଙ୍କ ସାନ୍ନିଧ୍ୟକୁ ଆସି ପହଞ୍ଚିଲେ । ବଡ଼

ଗାଁ'ର ଜୟରାମ ସ୍ୱାମୀ, ନିଗଡ଼ୀର ରଂଗନାଥ ସ୍ୱାମୀ, ବ୍ରହ୍ମନାଳର ଆନନ୍ଦମୂର୍ତ୍ତି ସ୍ୱାମୀ, ଭାଗା ନଗରର କେଶବ ସ୍ୱାମୀ ଏବଂ ସ୍ୱୟଂ ଶ୍ରୀସମର୍ଥ ଏ ପାଞ୍ଚ ଜଣକୁ ମିଶାଇ ଦାସ ପଂଚାୟତନ କୁହାଯାଏ । ଏହିଠାରେ ତୁକାରାମଜୀ ମହାରାଜ ଏବଂ ଚିଂଚବଡ଼ର ଶ୍ରୀସମର୍ଥନ ସାକ୍ଷାତ୍ ପାଇଁ ଆସିଥିଲେ । ଶାହପୁରରେ ଶ୍ରୀ ସମର୍ଥ ପ୍ରତାପ ମାରୁତି ମନ୍ଦିର ସ୍ଥାପନ କଲେ ।

ସଂ ୧୭୦୨ରେ ଶ୍ରୀସମର୍ଥ ରାମନବମୀରେ ଉତ୍ସବ କରିବାକୁ ଲାଗିଲେ । ପ୍ରଥମେ ମସୂରରେ ବଡ଼ ଆନନ୍ଦ ଉତ୍ସାହରେ ସଂପନ୍ନ ହେଲା । ଏହାପରେ ପ୍ରତିବର୍ଷ ଅନ୍ୟ କ୍ଷେତ୍ରମାନଙ୍କରେ ଶ୍ରୀସମର୍ଥ ସଂପ୍ରଦାୟ ଅନୁସାରେ ନବଚୈତନ୍ୟ ସହିତ ଶ୍ରୀରାମ ଜନ୍ମଉତ୍ସବ ପାଳିତ ହେବାକୁ ଲାଗିଲା । ମହାରାଷ୍ଟ୍ରରେ ଶ୍ରୀ ଶିବାଜୀ ମହାରାଜ ହିନ୍ଦୁ ଧର୍ମ ରାଜ୍ୟ ସ୍ଥାପନ କରିବାକୁ ଉଦ୍ୟମ କରିଥିଲେ । ଶ୍ରୀସମର୍ଥ ରାମଦାସଙ୍କ ସତ୍‌କୀର୍ତ୍ତି ଶୁଣି ଶିବାଜୀଙ୍କ ମନ ତାଙ୍କ ପ୍ରତି ଆକର୍ଷିତ ହେଲା ଏବଂ ସେ ସମର୍ଥଙ୍କୁ ଗୁରୁରୂପେ ବରଣ କଲେ । ସଂ ୧୭୦୬ରେ ଚାଫଲ ନିକଟବର୍ତ୍ତୀ ଶିଂଗଣବାଡ଼ିରେ ଶ୍ରୀସମର୍ଥ ତାଙ୍କୁ ଶିଷ୍ୟ ରୂପେ ଗ୍ରହଣ କରିଥିଲେ ଏବଂ ରାମଚନ୍ଦ୍ରଙ୍କ ତ୍ରୟୋଦଶାକ୍ଷର ମନ୍ତ୍ର ଉପଦେଶ ଦେଇଥିଲେ । ସଂ ୧୭୦୭ରେ ଶ୍ରୀସମର୍ଥ ପାର୍ଲିରେ ରହିବାକୁ ଲାଗିଲେ । ସେହି ସମୟରୁ ସଜ୍ଜନଗଡ଼ କୁହାଯାଉଛି, ଏଠାରେ ଅନେକ ସାଧୁ ସଂଥ ଶୋଭିତ ସ୍ଥାନ ହୋଇଥିବାରୁ ଶିବାଜୀ ମହାରାଜ ବାରମ୍ବାର ତାଙ୍କ ଦର୍ଶନ ପାଇଁ ଯାଇଥିଲେ । ସଂ ୧୭୧୨ରେ ଯେବେ ଶିବାଜୀ ସାତରାରେ ରହୁଥିଲେ, ତେବେ ଶ୍ରୀସମର୍ଥ କରଂଜଗାଁରୁ ଚାଲି ଚାଲି ଭିକ୍ଷା ମାଗିବା ପାଇଁ ରାଜଦ୍ୱାରରେ ପହଞ୍ଚିଲେ । ମହାରାଜ ତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ଖଣ୍ଡିଏ ପତ୍ରଲେଖି ତାଙ୍କ ଝୁଲାରେ ପକାଇ ଦେଲେ । ଯହିଁରେ ଏଇୟା ଲେଖାଥିଲା ଯେ 'ଆଜି ପର୍ଯ୍ୟନ୍ତ ମୁଁ ଯାହାକିଛି ଅର୍ଜନ କରିଛି, ତାହା ସବୁ ସ୍ୱାମୀଙ୍କ ଚରଣରେ ସମର୍ପିତ ।' ପରଦିନ ଶ୍ରୀ ଶିବାଜୀ ମହାରାଜ ସ୍ୱାମୀଙ୍କ ସହ ଝୋଲି ନେଇ ଭିକ୍ଷା ମଧ୍ୟ ମାଗିବାକୁ ଗଲେ । କିନ୍ତୁ ତାଙ୍କୁ ସମର୍ଥ ବୁଝାଇଲେ, 'ରାଜ୍ୟ କରିବା ତୁମର ଧର୍ମ' । ଏବେ ଶ୍ରୀ ଶିବାଜୀ ମହାରାଜ ନିଜ ହାତକୁ ପୁଣି ଶାସନ ସୂତ୍ର ଗ୍ରହଣ କଲେ ଏବଂ ସ୍ୱାମୀଙ୍କ ମନ୍ତ୍ରଣା ଅନୁସାରେ ରାଜକାର୍ଯ୍ୟ ସଂଭାଳିଲେ ।

ଶ୍ରୀସମର୍ଥ ତଂଜାବର ଗସ୍ତ ସମୟରେ ସେଠାରେ ଗୋଟିଏ ଅଂଧ କାରିଗରକୁ ନେତ୍ରଦାନ କରି ରାମ, ଲକ୍ଷ୍ମଣ, ସୀତା ଏବଂ ହନୁମାନଙ୍କ ମୂର୍ତ୍ତି

ନିର୍ମାଣର ଦାୟିତ୍ୱ ଅର୍ପଣ କରିଥିଲେ । ସେହି ମୂର୍ତ୍ତି ସଂ ୧୭୩୮ ଫାଲଗୁନ କୃଷ୍ଣ ପଞ୍ଚମୀକୁ ସଜ୍ଜନଗଡ଼ରେ ପହଞ୍ଚିଥିଲା । ସେହି ଦିନ ସେ ମୂର୍ତ୍ତିଗୁଡ଼ିକ ପ୍ରତିଷ୍ଠା ହୋଇଥିଲା । ମାଘ କୃଷ୍ଣ ନବମୀଦିନ ସମସ୍ତଙ୍କୁ କହି ସମର୍ଥଙ୍କ ମହାପ୍ରୟାଣ ପ୍ରସ୍ତୁତି ପାଇଁ ସୂଚାଇ ଦେଲେ । ଶ୍ରୀରାମ ମୂର୍ତ୍ତିଙ୍କ ସମ୍ମୁଖରେ ଆସନ ଲଗାଇ ବସିଗଲେ । ପ୍ରୟାଣ କାଳୀନ ସଂଦେଶ ଶୁଣି ଉଦ୍ଧବ ଆଦି ଶିଷ୍ୟ ବ୍ୟାକୁଳ ହୋଇଉଠିଲେ । ଏ ପ୍ରସଂଗରେ ଶ୍ରୀସମର୍ଥ କହିଲେ- ଅଦ୍ୟାବଧି ଯେଉଁ ଆଧାତ୍ମିକ ଶ୍ରବଣ କରିଅଛ, ତା'ର ଫଳ କ'ଣ ଏହା ? ଶିଷ୍ୟ କହିଲା ସ୍ୱାମୀ ! ଆପଣ ସର୍ବାନ୍ତର୍ଯାମୀ, ଘଟ ଘଟବାସୀ, କିନ୍ତୁ ଆପଣଙ୍କ ପ୍ରତ୍ୟକ୍ଷ ଏବଂ ସଂମ୍ଭାଷଣର ଲାଭ ମିଳିବ ନାହିଁ । ସମର୍ଥ- ଶିଷ୍ୟ ମସ୍ତକରେ ହାତରଖି କହିଲେ- 'ଆତ୍ମାରାମ', 'ଦାସବୋଧ' ଏହି ଦୁଇ ଗ୍ରନ୍ଥର ସେବନ କରୁଥିବା ଭକ୍ତଙ୍କୁ କେବେ ଦୁଃଖ ହେବନାହିଁ । ତା'ପରେ ୨୧ଥର ହରହର ଶବ୍ଦ ଉଚ୍ଚାରଣ କରି ଯେବେ ରାମନାମ ନେଲେ, ତାଙ୍କ ମୁଖରୁ ଏକ ଜ୍ୟୋତି ବାହାରି ଶ୍ରୀରାମଚନ୍ଦ୍ରଙ୍କ ମୂର୍ତ୍ତିରେ ମିଶିଗଲା ।

ଶ୍ରୀସମର୍ଥଙ୍କ ପ୍ରସିଦ୍ଧ ଗ୍ରନ୍ଥାବଳୀ ହେଲା- ଦାସବୋଧ, ମନୋବୋଧ, କରୁଣାଷ୍ଟକ, ପୁରାନାଦାସ ବୋଧ, ଆତ୍ମାରାମ, ରାମାୟଣ, ଓବୀ ଚଉଦ ଶତକ, ସ୍ଫୁଟ ଓ ବିୟାଁ, ଷଡ୍ରିପୁପଞ୍ଜିକରଣ ଯୋଗ, ଚତୁର୍ଥମାନ, ମାନ ପଞ୍ଚକ, ପଞ୍ଚମାନ, ସ୍ଫୁଟ ପ୍ରକାରଣ ଏବଂ ସ୍ଫୁଟଶ୍ଳୋକ ।

ଶ୍ରୀସମର୍ଥଙ୍କ ଦ୍ୱାରା ସ୍ଥାପିତ ଯେଉଁ ସୁପ୍ରସିଦ୍ଧ ଏଗାର ମାରୁତି, ସେମାନଙ୍କ ସ୍ଥାନ- ଯଥା- ଶାହପୁର, ମସୂର, ଚାଫଳରେ ଦୁଇସ୍ଥାନ, ଡଂବ୍ରଜ, ଶିରସପ୍ତ, ମନ ପାଡ଼ଲେଁ, ବାରଗାଁବ, ମାଜଗାଁବ, ଶିଂଗଣବାଡ଼ୀ ଏବଂ ବାହେଁ ।

ଶ୍ରୀସମର୍ଥ ପ୍ରାୟ ସାତଶହ ମଠ ସ୍ଥାପନା କରିଥିଲେ । ତନ୍ମଧ୍ୟରୁ କିଛି ମୁଖ୍ୟ ମଠର ନାମ ହେଲା ଜାଂବ, ଚାଫଲ, ସଜ୍ଜନଗଡ଼, ଟାଫଲୀ, ତଂଜାବର, ଡୋମଗାଁବ, ମନପାଡ଼ଲେ, ମୀରଜ, ରାଶିବଡ଼େ, ପଣ୍ଢରପୁର, ପ୍ରୟାଗ, କାଶୀ, ଅଯୋଧ୍ୟା, ମଥୁରା, ଦ୍ୱାରିକା, ବଦ୍ରୀ-କେଦାର, ରମେଶ୍ୱର, ଗଂଗା-ସାଗର ଆଦି ॥



# ଠାକୁର ନରୋତ୍ତମ ଦାସ

ଲୋକନାଥ ପ୍ରିୟଂ ଧୀରଂ ଲୋକାତୀତଂ ଚ ପ୍ରାମଦମ୍
ଶ୍ରୀ ନରୋତ୍ତମ ନାମାଖ୍ୟଂ ତଂ ବିରକ୍ତଂ ନମାମ୍ୟହମ୍ ॥

(ଶ୍ରୀ ଲୋକନାଥ ଗୋସ୍ୱମୀଙ୍କ ପରମ ପ୍ରିୟଶିଷ୍ୟ, ମହାଧୈର୍ଯ୍ୟବାନ, ଲୋକାତୀତ କର୍ମ କରୁଥିବା ସେହି ନରୋତ୍ତମ ଦାସଙ୍କ ଚରଣରେ ପ୍ରଣାମ କରୁଅଛି, ଯେ ରାଜପାଟକୁ ତ୍ୟାଗକରି ବିରକ୍ତ ହୋଇ ଲୋକଙ୍କୁ ପ୍ରେମ ଦାନ କରୁଅଛନ୍ତି ।)

ପଦ୍ମାନଦୀର ତଟଦେଶରେ ଖେତରୀ ନାମକ ଏକ କ୍ଷୁଦ୍ର ରାଜଧାନୀ । ସେହି ରାଜ୍ୟରେ ସ୍ୱାମୀ କୃଷ୍ଣାନନ୍ଦ ଦତ୍ତ ମଜୁମଦାର ଏବଂ ତାଙ୍କ ଧର୍ମପତ୍ନୀ ନାରାୟଣୀଦେବୀଙ୍କ ଗର୍ଭରୁ ଠାକୁର ନରୋତ୍ତମ ଦାସଙ୍କ ଜନ୍ମ ହୋଇଥିଲା । ସେ ବାଲ୍ୟାବସ୍ଥାରୁ ବିରକ୍ତ ଥିଲେ । ଘରେ ଅତୁଳ ଐଶ୍ୱର୍ଯ୍ୟ ସମସ୍ତ ପ୍ରକାର ସଂସାରୀ ସୁଖ ଥିଲା, କିନ୍ତୁ ତାଙ୍କୁ କିଛି ବି ଭଲ ଲାଗୁ ନଥିଲା । ସେ ବୈଷ୍ଣବଙ୍କ ଦ୍ୱାରା ଶ୍ରୀ ଗୌରାଙ୍ଗଙ୍କ ଲୀଳା ଶ୍ରବଣ କରୁଥିଲେ । ଶ୍ରୀରୂପ, ସନାତନ ଏବଂ ରଘୁନାଥ ଦାସଙ୍କ ତ୍ୟାଗ ଓ ବୈରାଗ୍ୟ ଶୁଣି ଶୁଣି ତାଙ୍କ ମନ ରାଜ୍ୟ- ପରିବାର ସଂପତ୍ତିରୁ ତୁଟିଗଲା । ସେ ଦିନରାତି ଶ୍ରୀଗୌରାଙ୍ଗଙ୍କ ମନୋହର ମୂର୍ତ୍ତି ଧ୍ୟାନ କରି ରହୁଥିଲେ । ସକଳ କାର୍ଯ୍ୟ ମଧ୍ୟରେ ଚୈତନ୍ୟ ଲୀଳା ହିଁ ସ୍ମରଣ ହେବାକୁ ଲାଗିଲା । ଘରେ

କୌଣସିରେ ମନ ଲାଗୁ ନଥାଏ । ଏପରି ସ୍ଥିତିରେ ସେ ଘର ଛାଡ଼ି କୁଆଡ଼େ ପଳାଇ ଯିବାକୁ ଚିନ୍ତା କରୁଥାନ୍ତି । ଗୌରାଙ୍ଗ ମହାପ୍ରଭୁ ତଥା ତାଙ୍କର ବହୁଶିଷ୍ୟ ପାର୍ଷଦ ସଂସାର ତ୍ୟାଗକରି ବୈକୁଣ୍ଠବାସୀ ହୋଇ ସାରିଥିଲେ । ବାଳକ ନରୋତ୍ତମ କାହା ପାଖକୁ ଯିବେ କିଛି ସ୍ଥିର କରି ପାରୁ ନଥାନ୍ତି । ଇତିମଧ୍ୟରେ ପଣ୍ଡିତ ଗୋସ୍ୱାମୀ, ସ୍ୱରୂପ ଦାମୋଦର, ନିତ୍ୟାନନ୍ଦଜୀ, ଅଦ୍ୱୈତାଚାର୍ଯ୍ୟ ତଥା ସନାତନ ଆଦି ବହୁ ପ୍ରଭୁ ପାର୍ଷଦ ଏହି ସଂସାର ତ୍ୟାଗ କରିଥାନ୍ତି । ଏବେ କାହା ପାଖକୁ ଗଲେ ଗୌର ପ୍ରେମର ଉପଲବ୍ଧି ହେବ, ଏହି ଚିନ୍ତାରେ ନିମଗ୍ନ ଥାଆନ୍ତି । ଦିନେ ରାତିରେ ସ୍ୱପ୍ନରେ ଗୌରାଙ୍ଗଙ୍କ ଦର୍ଶନ ମିଳିଲା ଏବଂ ଆଦେଶ ଦେଲେ ଯେ 'ତୁମେ ବୃନ୍ଦାବନ ଯାଇ ଲୋକନାଥ ଗୋସ୍ୱାମୀଙ୍କ ଶିଷ୍ୟ ହୋଇଯାଅ ।' ଦିନେ ଘରୁ ଲୁଚି ବୃନ୍ଦାବନ ପାଇଁ ଚାଲିଗଲେ ଏବଂ ସେଠାରେ ଜୀବ ଗୋସ୍ୱାମୀଙ୍କ ଶରଣାପନ୍ନ ହେଲେ । ସ୍ୱପ୍ନ ବୃତ୍ତାନ୍ତ ତାଙ୍କୁ ଶୁଣାଇଲେ । ସେ ବିପୁଳ ଐଶ୍ୱର୍ଯ୍ୟ ସଂପଦ ତ୍ୟାଗକରି ସନ୍ନ୍ୟାସ ନେବାର ଇଚ୍ଛା କରିଛନ୍ତି ଏଥିପାଇଁ ଖୁସୀ ହେଲେ କିନ୍ତୁ ଲୋକନାଥ ଗୋସ୍ୱାମୀ କାହାରିକୁ ଶିଷ୍ୟ କରନ୍ତି ନାହିଁ, ଏହି କଠୋର ନିୟମ କରିଛନ୍ତି ।

ଶ୍ରୀଲୋକନାଥ ଗୋସ୍ୱାମୀ ଓ ଭୂଗର୍ଭ ଗୋସ୍ୱାମୀ ଦୁହେଁ ସନ୍ନ୍ୟାସ ନେବା ପୂର୍ବରୁ ତାଙ୍କ ଆଜ୍ଞାରେ ବୃନ୍ଦାବନ ଆସି ଚୀରଘାଟରେ ଗୋଟିଏ କୁଂଜ କୁଟୀର ନିର୍ମାଣ କରି ସାଧନ ଭଜନ କରୁଥିଲେ । ଲୋକନାଥ ଗୋସ୍ୱାମୀଙ୍କ ବୈରାଗ୍ୟ ବଡ଼ ଆଲୌକିକ ଥିଲା । ପ୍ରାୟ ସେ ସର୍ବଦା ମୌନ ରହୁଥିଲେ । ଶାନ୍ତ ଏକାନ୍ତ ସ୍ଥାନରେ ଭଜନ କରୁଥାନ୍ତି । ସ୍ୱତଃ ଯାହାକିଛି ମିଳିଲା ତାକୁ ସେବନ କରିଥାନ୍ତି । ନୋହିଲେ କ୍ଷୁଧାରେ ସମୟ କଟିଯାଏ । ଶିଷ୍ୟ କରିବେ ନାହିଁ ବୋଲି ବିଚାରିଥିବାରୁ କାହାରିକୁ ମନ୍ତ୍ର ଦୀକ୍ଷା ଦେଇ ନଥିଲେ । ଶ୍ରୀଜୀବ ଗୋସ୍ୱାମୀ ତାଙ୍କୁ ଲୋକନାଥ ଗୋସ୍ୱାମୀଙ୍କୁ ଆଶ୍ରମରେ ତା'ର ପରିଚୟ ସ୍ୱାମୀଜୀଙ୍କ ସହ କରାଇଲେ । ରାଜକୁମାର ନରୋତ୍ତମ ଦାସଙ୍କର ଏପରି ବୈରାଗ୍ୟ ଦେଖି ଗୋସ୍ୱାମୀ ଲୋକନାଥ ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ଯେବେ ସେ ତାଙ୍କୁ ଦୀକ୍ଷା କଥା କହିଲେ ସେ କହିଲେ, ମୋତେ ତ ଗୌର ଆଜ୍ଞା ଦେଇ ନାହାଁନ୍ତି । ଆମର ତ ଶିଷ୍ୟ କରିବାର ନିୟମ ନାହିଁ । ତୁମେ ଆଉ କେଉଁ ଗୁରୁଙ୍କ ଶରଣକୁ ଯାଅ । ଏହି ଉତ୍ତରରେ ରାଜକୁମାର ନରୋତ୍ତମ ହତାଶ ହୋଇଗଲେ । ମନେମନେ କହିଲେ, ଆପଣ ହିଁ ମୋତେ ଦୀକ୍ଷା ଦେବେ । ଏହା ଭାବି ସେଠାରେ ଲୁଚିକରି ରହିଲେ ।

ଶ୍ରୀଲୋକନାଥ ପ୍ରାତଃକାଳରୁ ଉଠି ଯମୁନାକୁ ସ୍ନାନ ପାଇଁ ଯାଇଥାନ୍ତି । ଦିନମାନ କୁଂଜ କୁଟୀରରେ ବସି ହରିନାମ ଜପ କରିଥାନ୍ତି । ନରୋତ୍ତମ ଲୁଚିଛପି ତାଙ୍କ ସେବା କରିବାରେ ଲାଗିଲେ । ଯେଉଁ କଣ୍ଟକାକୀର୍ଣ୍ଣ କଙ୍କରିଳ ପଥରେ ଯମୁନାକୁ ଯାଆନ୍ତି ବାଟରେ ଥିବା କଣ୍ଟା ଗଛକୁ କାଟି ସଫା କରନ୍ତି । ରାସ୍ତାରେ ସୁନ୍ଦର ବାଲୁକା ପକାଇ ଦିଅନ୍ତି, ହାତ ଧୋଇବା ପାଇଁ ମାଟି ଆଣି ରଖିଥାନ୍ତି । ଦ୍ୱିପ୍ରହରରେ ଭିକ୍ଷା ଆଣି ଯଥା ସ୍ଥାନରେ ରଖିଦିଅନ୍ତି । ସାରାଂଶ ହେଲା ଗୁରୁଙ୍କୁ ଖୁସି କରିବା ପାଇଁ ଯାହା ତାଙ୍କ ଦ୍ୱାରା ସଂଭବ ତାହା କରନ୍ତି । ଏହିପରି ଗୁପ୍ତ ରୀତିରେ ସେବା କରୁକରୁ ବାରମାସ ବିତିଗଲା । ସ୍ୱାମୀଜୀ ସବୁଜ୍ଞାତ ହେଲେ ଏବଂ ତାଙ୍କ ହୃଦୟ ପୂର୍ଣ୍ଣ ହୋଇଗଲା । ସେ ଏବେ ତାଙ୍କ ପ୍ରତିଜ୍ଞା ଭୁଲିଗଲେ । ସେ ନରୋତ୍ତମକୁ ଆଲିଙ୍ଗନ କଲେ ଏବଂ ମନ୍ତ୍ରଦୀକ୍ଷା ପାଇଁ ଉଦ୍ୟୋତ ହେଲେ । ସଂପୂର୍ଣ୍ଣ ବୈଷ୍ଣବ ସମାଜରେ ଏହି ବାର୍ତ୍ତା ପ୍ରସରିଗଲା । ଦୀକ୍ଷା ଦିବସ ଶ୍ରାବଣ ପୂର୍ଣ୍ଣିମା ନିଶ୍ଚିତ ହେଲା । ଶତାଧିକ ବୈଷ୍ଣବ ସାଧୁ ଲୋକନାଥ ଗୋସ୍ୱାମୀଙ୍କ ଆଶ୍ରମକୁ ଆସିଲେ । ଜୀବ ଗୋସ୍ୱାମୀ ମାଳା ପିନ୍ଧାଇ ଗୁରୁ ଚରଣକୁ ପ୍ରେରିତ କଲେ । ଗୁରୁ କହିଲେ- ଜୀବନ ତମାମ ଅବିବାହିତ ରହିବେ । ସାଂସାରିକ ସୁଖକୁ ଜଳାଂଜଳି ଦେବ । ମାଛ-ମାଂସ ଜୀବନରେ କେବେ ଗ୍ରହଣ କରିବ ନାହିଁ । ନରୋତ୍ତମ ସମସ୍ତ ଶୁଣି ସମ୍ମତ ହେଲେ । ଗୋସ୍ୱାମୀ ତାଙ୍କୁ ବିଧିବତ୍ ଦୀକ୍ଷା ଦେଇଥିଲେ । ନରୋତ୍ତମ ଠାକୁରଙ୍କ ଏବେ ପୁନର୍ଜନ୍ମ ହୋଇଗଲା । ସେ ଉପସ୍ଥିତ ବୈଷ୍ଣବ, ସାଧୁମାନଙ୍କର ଚରଣ ବନ୍ଦନା କଲେ । ଗୁରୁଦେବଙ୍କ ପାଦଧୂଳି ମସ୍ତକରେ ଚଢ଼ାଇଲେ ଏବଂ ତାଙ୍କ ଆଜ୍ଞାରେ ଜୀବ ଗୋସ୍ୱାମୀଙ୍କ ସମୀପରେ ରହି ଭକ୍ତିଶାସ୍ତ୍ର ଶିକ୍ଷାପ୍ରାପ୍ତ କରିବାକୁ ଲାଗିଲେ ।

କାଳାନ୍ତରରେ ଜୀବ ଗୋସ୍ୱାମୀ ତାଙ୍କୁ, ଶ୍ୟାମାନନ୍ଦ ଏବଂ ଶ୍ରୀନିବାସାଚାର୍ଯ୍ୟଙ୍କୁ ଭକ୍ତିମାର୍ଗର ପ୍ରଚାର ନିମିତ୍ତ ଗୌଡ଼ଦେଶକୁ ପଠାଇଥିଲେ । ଶ୍ୟାମାନନ୍ଦଜୀ ନିଜର ପ୍ରଖର ପ୍ରତିଭା, ପ୍ରବଳ ପାଣ୍ଡିତ୍ୟ, ଅଲୌକିକ ପ୍ରଭାବ କାରଣରୁ ଓଡ଼ିଶାରେ ଭକ୍ତି ରସାମୃତରେ ପ୍ଲାବିତ କରିଥିଲେ । ଶ୍ରୀନିବାସାଚାର୍ଯ୍ୟ ବୈଷ୍ଣବ ସମାଜରେ ନବୀନ ଜାଗୃତି ସୃଷ୍ଟି କରିଥିଲେ । ନରୋତ୍ତମ ଠାକୁର ବୈଷ୍ଣବ ଧର୍ମର ସଂପ୍ରସାରଣରେ ସହାୟକ ହୋଇଥିଲେ । ପଣ୍ଡିତ ଓ ଭଟ୍ଟାଚାର୍ଯ୍ୟମାନେ ମଧ୍ୟ ନରୋତ୍ତମଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ସକଳ ବର୍ଗର ଲୋକଙ୍କ ଉପରେ

ତାଙ୍କର ପ୍ରଭାବ ପଡ଼ିଥିଲା, ତାଙ୍କ ପିତା ମଧ୍ୟ ତାଙ୍କୁ ପୂଜ୍ୟ ଦୃଷ୍ଟିରେ ଦେଖୁଥିଲେ । ସେ ପୁତ୍ରର ଆଦେଶାନୁସାରେ ଶ୍ରୀଗୌରାଙ୍ଗଙ୍କ ବଡ଼ ମନ୍ଦିର ନିର୍ମାଣ କରି ତହିଁରେ ଶ୍ରୀଗୌରାଙ୍ଗ ଓ ବିଷ୍ଣୁପ୍ରିୟାଙ୍କ ମୂର୍ତ୍ତି ସ୍ଥାପିତ କରିଥିଲେ । ଏତଦୁପଲକ୍ଷେ ବିଶାଳ ଆୟୋଜନ ହୋଇଥିଲା । ବହୁଦିନ ପର୍ଯ୍ୟନ୍ତ ସଂକୀର୍ତ୍ତନ ଓ ସତ୍‌ସଂଗ ଚାଲିଥିଲା ।

ନରୋତ୍ତମ ଠାକୁରଙ୍କ ପ୍ରଭାବ ବହୁତ ବେଶୀ ଥିଲା । ପଣ୍ଡିତ ଏବଂ ରାଜା-ଜମିଦାର ତାଙ୍କ ଶିଷ୍ୟ ହୋଇଥିଲେ । ବିଦ୍ୱାନ୍‌ମାନେ ମଧ୍ୟ ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରୁଥିଲେ । ସେ ବଂଗଳା ଭାଷାର ଜଣେ ସୁକବି । ଗୌର ପ୍ରେମ ଆଧାରିତ ସହସ୍ର ପଦାବଳୀ ରଚନା କରିଛନ୍ତି । ବୈଷ୍ଣବ ସମାଜରେ ଏହାର ବଡ଼ ସମାଦର ରହିଛି । ଶେଷ ସମୟରେ ସେ ଗଂଗା ତୀରରେ ଗମ୍ଭୀରା ନାମକ ଗ୍ରାମରେ ନିଜର ଏକ ଶିଷ୍ୟ ଗଂଗାନାରାୟଣ ପଣ୍ଡିତଙ୍କ ସହ ନିବାସ କରୁଥିଲେ ।

କାର୍ତ୍ତିକ କୃଷ୍ଣ ପଞ୍ଚମୀ ଦିନ ପ୍ରାତ କାଳରୁ ଠାକୁର ମହାଶୟ ଗଂଗା ନାରାୟଣ ପଣ୍ଡିତ ଏବଂ ରାମକୃଷ୍ଣ ସହ ଗଂଗାସ୍ନାନ ପାଇଁ ଗଲେ । କଟୀ ଜଳସ୍ଥିତିରେ ଶିଷ୍ୟଙ୍କୁ କହିଲେ ଶରୀରକୁ କିଛି ସମୟ ମାଲିସ କରିଦିଅ । ଶିଷ୍ୟ ଗୁରୁଙ୍କ ଆଜ୍ଞାପାଳନ କଲେ । ଦେଖୁ ଦେଖୁ ତାଙ୍କ ଶରୀରରୁ ପ୍ରାଣ ବାୟୁ ବାହାରିଗଲା । ମୃତପିଣ୍ଡ ଗଂଗାଜଳରେ ଭାସିବାକୁ ଲାଗିଲା । ନରୋତ୍ତମ ଠାକୁର ଅସାର ସଂସାର ତ୍ୟାଗ କରି ସତ୍ୟ ଏବଂ ନିତ୍ୟଲୋକକୁ ଚାଲିଗଲେ । ବୈଷ୍ଣବମାନଙ୍କ ମଧ୍ୟରେ ଗଂଗାତୀରରେ ହାହାକାର ବ୍ୟାପୀଗଲା ॥



# ରସିକ ଭକ୍ତ ବିଦ୍ୟାପତି

ମହାକବି ବିଦ୍ୟାପତି ଭଗବାନ୍ ଶ୍ରୀକୃଷ୍ଣ ଏବଂ ତାଙ୍କ ହ୍ଲାଦିନୀ ଶକ୍ତି ଶ୍ରୀରାଧାରାଣୀଙ୍କ ରୂପ- ଲାବଣ୍ୟ ଏବଂ ଭକ୍ତି ରସରେ ଓତ-ପ୍ରୋତ ଶୃଙ୍ଗାର ମାଧୁର୍ଯ୍ୟ କୁଶଳ ମର୍ମଜ୍ଞ ଏବଂ ଗାୟକ ଥିଲେ । ସେ ବଂଗଳାର ପ୍ରସିଦ୍ଧ ବୈଷ୍ଣବ କବି ଚଣ୍ଡୀଦାସଙ୍କ ସମକାଳୀନ ଥିଲେ । ଦୁହେଁ ଏକ ଅନ୍ୟକୁ କବିତା ପ୍ରେମ ଏବଂ ଶ୍ରୀକୃଷ୍ଣ ଭକ୍ତିରେ ପ୍ରଭାବିତ ହୋଇଥିଲେ । ପରମପବିତ୍ର ଭାଗୀରଥୀ ତଟରେ ଦୁହିଁଙ୍କର ଏକ ସମୟରେ ସାକ୍ଷାତ୍ ମଧ୍ୟ ହେଉଥିଲା ।

ବିଦ୍ୟାପତି ବି.ସ.୧୫ଶ ଶତାବ୍ଦୀରେ ବିସପୀ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପରିବାର ବିହାରର ତତ୍କାଳୀନ ଶାସକ 'ହିନ୍ଦୁପତି' ମହାରାଜ ଶିବସିଂହଙ୍କ ପୂର୍ବଜଙ୍କ କୃପାପାତ୍ର ଥିଲେ । ବିଦ୍ୟାପତି ଶିବସିଂହ ଏବଂ ତାଙ୍କ ପଟ୍ଟମହିଷୀ ଲକ୍ଷୀ (ଲଖିମା)ଙ୍କ ଆଶ୍ରୟରେ ମିଥିଳାକୁ ନିଜର କୃଷ୍ଣଭକ୍ତି ସୁଧାରେ ବୃନ୍ଦାବନ କରି ଦେଇଥିଲେ । କେବଳ ବିହାର ନୁହେଁ ଉତ୍ତରାପଥର ନଗରେ ନଗରେ, ଉପବନ, ସରୋବର ତଟରେ କାବ୍ୟାମୋଦୀମାନେ ତାଙ୍କ ପଦାବଳୀ ରସାସ୍ୱାଦନ କରି ବିମୁଗ୍ଧ ହୋଇ ଯାଉଥିଲେ । ମହାପ୍ରଭୁ ଶ୍ରୀଚୈତନ୍ୟ ଦେବ ଏବଂ ତାଙ୍କ ଭକ୍ତମଣ୍ଡଳୀ ପାଇଁ ତ କବି କଣ୍ଠହାର ବିଦ୍ୟାପତିଙ୍କ ପଦ ରାଧାକୃଷ୍ଣଙ୍କ ମଧୁର ଭକ୍ତିର ଉଦ୍ଦୀପନ ହୋଇ ଯାଇଥିଲା । ମହାପ୍ରଭୁ ତାଙ୍କ ବିରହ ଏବଂ ପ୍ରେମ ସଂବଂଧି ପଦକୁ ଶ୍ରବଣ କରିବା ସହିତ ନୟନ ଅଶ୍ରୁ ପ୍ଲାବିତ କରୁଥିବାର ଦେଖାଯାଉଥିଲା ।

ବିଦ୍ୟାପତି କେବଳ ପ୍ରତିଭାଶାଳୀ କବି ନୁହଁନ୍ତି, ସଂସ୍କୃତ ଭାଷା, ସାହିତ୍ୟ, ଦର୍ଶନ ଆଦିର ଜଣେ ମୂର୍ଦ୍ଧନ୍ୟ ବିଦ୍ୱାନ । ଶ୍ରୀମଦ୍ ଭାଗବତରେ ତାଙ୍କର ବଡ଼ ଶ୍ରଦ୍ଧା ଥିଲା । ସେ ନିଜେ ପାଠକଙ୍କ ପାଇଁ ଏକ ପ୍ରତିଲିପି ପ୍ରସ୍ତୁତ କରିଥିଲେ । 'ଗଂଗା ବାକ୍ୟାବଳୀ' ଏବଂ 'ଦୁର୍ଗା-ଭକ୍ତି ତରଂଗିଣୀ' ରଚନା କରି ଦେବୀଙ୍କ ପ୍ରତି ଭକ୍ତି ନିବେଦିତ କରିଅଛନ୍ତି । ହିମାଚଳ ନନ୍ଦିନୀ ଭଗବତୀ ପାର୍ବତୀଙ୍କୁ ନିଜ ପଦାବଳୀ ମଧ୍ୟରେ କେଉଁଠି ସାଦର ସ୍ମରଣ କରିଅଛନ୍ତି । ଶିବ ଏବଂ ପାର୍ବତୀଙ୍କଠାରେ ଅଟଳ ନିଷ୍ଠା ଥିଲା ।

ପ୍ରସଙ୍ଗାନୁରୋଧରେ କବିକଳ୍ପନା ଦେଖନ୍ତୁ- ହିମଗିରି କୁଁ ବାରି ଚରନ ହିରଦୟ ଧରି କବି ବିଦ୍ୟାପତି ଭାଖେ ।'

ଭଗବାନ୍ ଆଶୁତୋଷଙ୍କ ସ୍ତୁତିରେ ବହୁ ପଦ ଲେଖିଛନ୍ତି । ବିହାରରେ 'ନିଚାରିୟୋ' ଲୋକମାନେ ବଡ଼ ଉତ୍ସାହର ସହ ଗାନ କରିଥାନ୍ତି । ଏହା କୁହାଯାଇଥାଏ କି ବିଦ୍ୟାପତିଙ୍କ ଶିବ ଭକ୍ତିରେ ପ୍ରସନ୍ନ ହୋଇ ଭଗବାନ ଭୋଲାନାଥ ତାଙ୍କୁ ନିଜର 'ଭଗନା' ନାମଦେଇ ସେବକ ବେଶରେ ଧନ୍ୟ କରିଛନ୍ତି । ଏହା କହିବା ସହଜ ନୁହେଁ ଯେ ବିଦ୍ୟାପତି ଶୈବ ନା ବୈଷ୍ଣବ, କିନ୍ତୁ ତାଙ୍କ ସରସ ପଦାବଳୀ ଶ୍ରୀକୃଷ୍ଣ ଏବଂ ଶ୍ରୀରାଧାଙ୍କ ପ୍ରତି ଭକ୍ତି ଏବଂ ଦୃଢ଼ଆସ୍ଥା ପ୍ରକଟ ହୋଇଛି । ସେ ଭକ୍ତି ଭାବରେ ପ୍ରେମ, ବିରହ, ମିଳନ, ଅଭିସାର ତଥା ମାନ ସଂବଂଧି ଅନେକ ସରସ ପଦ ରଚନା କରି ନିଜ ଶ୍ରୀକୃଷ୍ଣ ଭକ୍ତିର ଉଜ୍ଜ୍ୱଳ ଧ୍ୱଜା ଉତ୍ତୋଳିତ କରିଥିଲେ । ଶ୍ରୀକୃଷ୍ଣ ତାଙ୍କର ଆରାଧ ଇଷ୍ଟଦେବ । ସେହି ପଦମାନଙ୍କରେ ଭକ୍ତି ସୁଲଭ ସରଳତା ଏବଂ ମାଧୁର୍ଯ୍ୟର ମଧୁର ସମନ୍ୱୟ ହୋଇଛି । ଶୃଙ୍ଗାର ଏବଂ ଭକ୍ତିର ଏତେ ମଧୁର ସମାବେଶ ଅନ୍ୟତ୍ର ଦୁର୍ଲଭ । ସେ ତାଙ୍କ ପୂର୍ବବର୍ତ୍ତୀ ମହାକବି ଗୀତ ଗୋବିନ୍ଦକାର ଶ୍ରୀ ଜୟଦେବଙ୍କ ଅନୁସରଣ କରି ନିଜକୁ 'ଅଭିନବ ଜୟଦେବ' ଭାବରେ ପ୍ରତିଷ୍ଠା କରିଅଛନ୍ତି । କବିଶେଖର ବିଦ୍ୟାପତି ନିଜ ଉପାସ୍ୟଙ୍କର ଅଧୋଲିଖିତ ପଦରେ ଯେଉଁ ଧ୍ୟାନ କରିଛନ୍ତି ତହିଁରୁ ତାଙ୍କ ରଂଜିତ ହୃଦୟର ତଥା ରସାଳଭକ୍ତିର ପରିଚୟ ମିଳେ ।

ନନ୍ଦକ ନଁଦନ କଦମ୍ବକତରୁ ତରେ ଧୀରେଧୀରେ ମୁରଲୀବଜାବ
ସମୟ ସଁକେତ ନିକେତନ ବଇସଲ ବୋରି- ବୋରି ବୋଲି ପଠାବ ॥
ସାମରୀ ତୋରା ଲଗି ଅନୁଖନେ ବିକଳ ମୁରାରି
ଜମୁନା କେ ତୀରେ ଉପବନ ଉପବେଗଲ ଫିରି ଫିରି ତତହିଁ ନିହାରି
ଗୋରସ ବିକେ ଅବଇତେ ଜାଇତେ ଜାନି-ଜାନି ପୁଛ ବନମାରି
ତୋହେ ମହିମାନ ସୁମତି ମଧୁସୂଦନ ବଚନ ସୁନହୁ କିଛୁ ମୋରା ।
ଭନଇ ବିଦ୍ୟାପତି ସୁନ ବର ଯୌବତୀ ବନ୍ଦହ ନଂଦ କିସୋରା ॥

ବିଦ୍ୟାପତି ରସିକ ଭକ୍ତ, ମହାକବି ଏବଂ ପ୍ରେମୀ ଥିଲେ । ତାଙ୍କୁ ମୈଥିଳୀ କୋକିଳ ଭାବେ ଅଭିହିତ କରାଯାଇଛି । ତାଙ୍କ କାବ୍ୟ ବିଭା, ଶ୍ରୀକୃଷ୍ଣ ଭକ୍ତିର ସରସତା, ସାହିତ୍ୟ ଜଗତରେ ମହିମା ପ୍ରକଟ କରି ଉତ୍ତରୋତ୍ତର ବିକଶିତ ହେବାରେ ଲାଗିଛି ।



# ଭକ୍ତ ଚଣ୍ଡୀଦାସ

ଭକ୍ତ ଚଣ୍ଡୀଦାସଙ୍କ ଜନ୍ମ ବୀରଭୂମି ଜିଲ୍ଲାର ଛଟନା ଗ୍ରାମରେ ହୋଇଥିଲା । ତାଙ୍କ ବାଲ୍ୟାବସ୍ଥାରେ ବୋଲପୁରରୁ ଦଶ ମାଇଲ ଦୂରବର୍ତ୍ତୀ ନନ୍ନୁରା ଗ୍ରାମରେ ପାରିବାରିକ ଲୋକେ ଯାଇ ରହିଥିଲେ । ଏହି ପ୍ରଦେଶରେ ଏହି ପରିବାରକୁ କଠୋର ବ୍ରାହ୍ମଣ ପର୍ଯ୍ୟାୟରେ ଗ୍ରହଣ କରାଯାଉଥିଲା । ଆଚାର ବିଚାରର ବଡ଼ ଧ୍ୟାନ ରଖୁଥିଲେ । ଚଣ୍ଡୀଦାସ ବାସୁଳୀ ଦେବୀଙ୍କ ମନ୍ଦିରରେ ପୂଜାରୀ ନିଯୁକ୍ତ ହୋଇଥିଲେ । ସେ ଦେବୀଙ୍କ ଉପାସନା ଏବଂ ପ୍ରେମ-ଗୀତ ସାଧନାରେ ନିଜର ମହତୀ ଶକ୍ତିର ଉପଯୋଗ କରିଥିଲେ । ଏହି ସମୟ କୈଶୋର-ଯୌବନର ସଂଧିକାଳ, ତାଙ୍କର ଗୌର ସୌନ୍ଦର୍ଯ୍ୟ ବପୁରେ ଶୃଙ୍ଗାର ରସର ଚିତ୍ର ଯେପରି ପ୍ରକଟିତ ହେବାର ପ୍ରୟାସ କରୁଅଛି । ପ୍ରତ୍ୟେକ କ୍ରିୟାରେ ବିଚିତ୍ରତା, ମୃଦୁଳ ତଥା ପ୍ରେମିଳ ସ୍ୱଭାବର ଥିଲେ । କଣ୍ଠ ଦେଶରେ ସତେ ଯେପରି ବାଗୀଶ୍ୱର ବୀଣାର ମଧୁର ଝଙ୍କାର ।

ଦିନେ ସେ ନଦୀ ଘାଟରେ ସୁନ୍ଦରୀ ରାଜକନ୍ୟାକୁ ଭେଟିଲେ । ତା'ନାମ ରାମୀ । ସେ ସ୍ନାନାନ୍ତେ ବସ୍ତ୍ର ଧୌତ କରୁଥାଏ । ଦୁହେଁ ଦୁହିଁଙ୍କୁ ଦେଖିଲେ । ହୃଦୟରେ ଶୁଦ୍ଧ ପ୍ରେମର ସଂଚାର ହେଲା । ବାସନା ଓ ଆସକ୍ତିର ଗନ୍ଧ ପର୍ଯ୍ୟନ୍ତ ନଥିଲା । ରାମୀ ବ୍ରାହ୍ମଣ ଦେବତାଙ୍କ ଚରଣଧୂଳି ନେଇଥିଲେ । ବ୍ରାହ୍ମଣ ଚଣ୍ଡୀଦାସ ତାକୁ କେବଳ ଆଶୀର୍ବାଦ ଦେଇଥିଲେ । ଚଣ୍ଡୀଦାସ ତାଙ୍କ ପ୍ରତି ଆକୃଷ୍ଟ ହୋଇଗଲେ । ତାଙ୍କ କଣ୍ଠଭାରତୀ ରାମୀର ସୌନ୍ଦର୍ଯ୍ୟରେ ଆଲୌକିକତା, ଦିବ୍ୟତା ଏବଂ ପବିତ୍ର ପ୍ରେମର ଦର୍ଶନ କଲା । ରାମୀ ଚଣ୍ଡୀଦାସ ପାଇଁ ସବୁକିଛି ହୋଇଗଲେ । ଦେବୀଙ୍କ ସେବାରେ ତାଙ୍କର ଆକର୍ଷଣ କମ ହେଲା । ସେ ରାତିଦିନ ପ୍ରେମ ସଂଗୀତାମୃତ- ଲହରୀରେ ସରୋବର ହୋଇ ଶ୍ରୀରାଧା- କୃଷ୍ଣଙ୍କ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ

ଦେଖିବାରେ ଲାଗିଲେ । ଲୋକେ ଏବେ ତାଙ୍କୁ 'ପାଗଳ ଚଣ୍ଡି' କହିବାକୁ ଲାଗିଲେ, ତତ୍କାଳୀନ ବଂଗଳାରେ ପାଗଳ ଉପାଧି ତାକୁ ଦିଆଯାଉଥିଲା, ଯେ ସଦା ପ୍ରେମ ନିମଗ୍ନ ହୋଇ ରହୁଥିଲା । ବସ୍ତୁତଃ ପ୍ରେମ ଭଗବାନଙ୍କର ହିଁ ରୂପ । ପ୍ରେମ ଆତ୍ମାର ସ୍ୱରୂପ ତଥା ହୃଦୟର ପରମ ମୂଲ୍ୟବାନ ଗୋପନ ସଂପଦ । ଯାହାକୁ ଥରେ ମାତ୍ର ପ୍ରେମର ସୁଧାରସ ବିନ୍ଦୁ ମିଳିଯାଏ, ତାକୁ ସଂସାରରେ ଆଉ କିଛି ମଧ ଭଲ ଲାଗେ ନାହିଁ । ଏହି ସ୍ଥିତିରେ ପ୍ରେମୀ ଚଣ୍ଡୀଦାସ ପାର୍ଥିବ ସୌନ୍ଦର୍ଯ୍ୟର ଗୀତଗାନ କରୁ ନଥିଲେ । ଗୋଟିଏ ପଦରେ ଶ୍ରୀବୃଷଭାନୁ ନନ୍ଦିନୀଙ୍କ ପବିତ୍ର ଭାବରେ ଭାବିତ ହୋଇ ସେ ଶ୍ୟାମସୁନ୍ଦରଙ୍କୁ କହୁଛନ୍ତି- ଧରିନିଅନ୍ତୁ- ଶ୍ରୀରାଧା ନିଜର ପ୍ରାଣ ପ୍ରିୟତମ ଶ୍ୟାମସୁନ୍ଦରଙ୍କୁ ସମ୍ମୁଖରେ ଦେଖି ତାଙ୍କୁ ନିଜ ହୃଦୟର ରୋଦନ ଧ୍ୱନି ଶୁଣାଉଛନ୍ତି-

ବଂଧୁ କି ଆର ବଲିବ ଆମି ।
ଜୀବନେ ମରଣେ ଜନମେ ଜନମେ ପ୍ରାଣନାଥ ହୈଓ ତୁମି ॥
ତୋମାର ଚରଣେ ଆମାର ପରାଣେ ବାନ୍ଧିଲ ପ୍ରେମର ଫାଁସୀ
ସବ ସମର୍ପିୟା ଏକମନ ହୈୟା ନିଚୟ ହୈଲାମ ଦାସୀ ॥
ଭାବି ଦେଖି ଲାଭ ଏ ତିନି ଭୁବନେ ଆରକେ ଆମାର ଆଛେ
ରାଧା ବଲି କେହ ସୁଧାଇନେ ନାଇ, ଦାଁଡାବ କାହାର କାଛେ ॥
ଏକୁଲେ ଆକୁଲେ ଦୁକୁଲେ ଗୋକୁଲେ ଆପନା ବଲିବ କାୟା
ଶୀତଲ ବଲିୟା ଶରଣ ଲଇନୁ, ଓ ଦୁଟା କମଳ ପାୟ ॥
ନା ଠେଲିଓ ମୋରେ ଅବଲା ବଲିୟେ, ଯେ ହୟ ଉଚିତ ତୋର
ଭାବିଆ ଦେଖିନୁ ପ୍ରାଣନାଥ ବିନେ ଗତି ଯେ ନାହିକ ମୋର ॥
ଆଁଖିର ନିମିଷେ ଯଦି ନାହି ଦେଖି, ତବେ ସେ ପରାଣେ ମରି
ଚଣ୍ଡୀଦାସ କୟ ପରଶରନତ ଗାଲାୟ ଗାଁଥିୟ ପରି ॥

ମୋର ପ୍ରିୟତମ ! ଆଉ ମୁଁ ତୁମକୁ କ'ଣ କହିବି ? ବାସ୍ ଏତିକି ହିଁ ଚାହୁଁଛି- ଜୀବନରେ ମୃତ୍ୟୁରେ ତୁମେ ମୋର ପ୍ରାଣନାଥ ରହିବ । ତୁମର ଚରଣ ଏବଂ ମୋର ପ୍ରାଣରେ ପ୍ରେମର ଗଣ୍ଠି ପଡ଼ିଯାଇଛି । ମୁଁ ସବୁକିଛି ତୁମକୁ ସମର୍ପିତ କରି ଏକାନ୍ତ ମନରେ ତୁମ ଦାସୀ ହୋଇଯାଇଛି । ମୋ' ପ୍ରାଣେଶ୍ୱର ! ମୁଁ ଚିନ୍ତାକରି ଦେଖୁଛି ଏହି ତ୍ରିଭୁବନରେ ତୁମ ଅତିରିକ୍ତ ମୋର ଆଉ କିଏ ଅଛି । 'ରାଧା' କହି ମୋତେ ଡାକିବା ତୁମ ବ୍ୟତୀତ ଆଉ କେହି ବି ନାହିଁ । ମୁଁ କାହା ପାଖକୁ ଯାଇ

ଠିଆ ହେବି ? ଏ ଗୋକୁଳରେ କିଏ ଅଛି, ଯାହାକୁ ମୁଁ ଆପଣାର କହିବି ? ସର୍ବତ୍ର ଜ୍ୱାଳା, ଏକମାତ୍ର ତୁମର ଯୁଗଳ ଚରଣ ହିଁ ଶୀତଳ । ତାକୁ ଶୀତଳ ଦେଖିକରି ହିଁ ମୁଁ ତୁମ ଶରଣକୁ ଆସିଛି । ତୁମ ପାଇଁ ମଧ୍ୟ ଏହା ଉଚିତ ହେବ ମୋତେ, ଅବଳାକୁ ଚରଣରେ ସ୍ଥାନଦେଇ ଦିଅନ୍ତୁ । ମୋତେ ନିଜର ଶୀଳତ ଚରଣରୁ ଦୂରକୁ ଫିଙ୍ଗି ଦିଅନାହିଁ । ନାଥ ! ଚିନ୍ତାକରି ଦେଖୁଛି, ମୋର ପ୍ରାଣନାଥ ! ତୁମବିନା ଏବେ ମୋର ଅନ୍ୟଗତି ହିଁ କାହିଁ ? ତୁମେ ଫିଙ୍ଗିଦେଲେ ମୁଁ ଅବଳା କେଉଁଠିକି ଯିବି ? ମୋର ପ୍ରିୟତମ ! ଏକ ନିମିଷକ ପାଇଁ ମଧ୍ୟ ଯେବେ ତୁମକୁ ଦେଖି ନ ପାରିବି, ତେବେ ମୋର ପ୍ରାଣ ବାହାରି ଯାଉଛି । ମୋର ସ୍ୱର୍ଣମଣି ! ତୁମକୁ ତ ମୁଁ ଅଂଗର ଭୂଷଣ କରି ଗଳାରେ ଧାରଣ କରିଛି ।

ଭକ୍ତ ଚଣ୍ଡୀଦାସ ଏବଂ ମହାକବି ବିଦ୍ୟାପତି ପରସ୍ପର ଦ୍ୱାରା ପ୍ରଭାବିତ । ପରମ ପବିତ୍ର ଭାଗୀରଥୀ ତଟରେ ଚଣ୍ଡୀଦାସ ଏବଂ ବିଦ୍ୟାପତିଙ୍କ ସମ୍ମେଳନ ହେଉଥିଲା । ପ୍ରେମ ଏବଂ ସୌନ୍ଦର୍ଯ୍ୟ ଦୃଷ୍ଟିରେ ଜଣେ ଅନ୍ୟ ଜଣକୁ ଦେଖୁଥିଲେ । ସେ ଶ୍ରୀକୃଷ୍ଣଙ୍କ ପୂର୍ଣ୍ଣ ଭକ୍ତ ଥିଲେ । ଶ୍ରୀଚୈତନ୍ୟ ମହାପ୍ରଭୁ ତାଙ୍କ ଗୀତରୁ ଉଦ୍ଦୀପନ ତତ୍ତ୍ୱର ଅନୁଭୂତି ପ୍ରାପ୍ତ କରୁଥିଲେ ।

ଚଣ୍ଡୀଦାସ ସୁଖରେ ଦୁଃଖ ଦେଖୁଥିଲେ । ମିଳନ ସୁଖରେ ବିଯୋଗ ଦୁଃଖର ଆଶଙ୍କା ଦେଖି ପାରୁଥିଲେ । ବିରହରେ ସେ ମୂର୍ତ୍ତିମାନ ଅନୁରାଗକୁ ହିଁ ଲକ୍ଷ୍ୟ କରୁଥିଲେ । ତାଙ୍କ ଭଗବତ୍ ପ୍ରେମ ଅଥବା ରାଧା କୃଷ୍ଣଙ୍କର ଭକ୍ତି ଭାବ ସର୍ବଥା ଲୋକୋତ୍ତର ଥିଲା । ଏଥିରେ ମାଧୁର୍ଯ୍ୟ ହିଁ ମାଧୁର୍ଯ୍ୟ ଦେଖାଯାଏ ।

ସଁଇକେବା ଶୁନାଇଲ ଶ୍ୟାମନାମ ।

କାନର ଭିତର ଦିଆ ମରମେ ପଶିଲ ଗୋ ଆକୁଳ କରିଲ ମୋର ପ୍ରାନ ।
ନଜାନି କତେକ ମଧୁଶ୍ୟାମ ନାମେ ଆଛେ ଗୋ ବଦନ ଛାଡ଼ିତେ ନାହିଁ ପାରେ
ଜପିତେ ଜପିତେ ନାମ ଅବଶ କରିଲ ଗୋ କେମନେ ପାଇବ ସଇତାରେ ।।
ନାମ ପରତାପେ ଓର ଏଛନ କରିଲ ଗୋ ଅଂଗେର ପରଶେ କିବା ହୟ
ଯେ ଖାନେ ବସତି ତା'ର ନୟନ ଦେଖିୟା ଗୋ ଯୁବତୀ ଧରମ କୈଛେ ରୟ ।।
ପାଶରିତେ କରି ମନେ ପାଶରା ନଜାୟ ଗୋ କି କରିବୋ କିହବେ ଉପାୟ
କହେ ଦ୍ୱିଜ ଚଣ୍ଡୀଦାସ କୁଳବତୀ କୁଳନାଶେ ଆପନାର ଯୌବନ ଯାଚାୟ ।।

ସଖୀ ! ଏହି ଶ୍ୟାମନାମ କିଏ ଶୁଣାଇଲା, ଏହା କାନଦ୍ୱାରା ମର୍ମ ସ୍ଥାନରେ ପ୍ରବେଶ କରିଗଲା ଏବଂ ମୋର ପ୍ରାଣକୁ ବ୍ୟାକୁଳ କରିଦେଲା । ଶ୍ୟାମନାମରେ କେତେ ମାଧୁରୀ ତାହା କିଏ କହିବ ? ଏଥିରୁ ମୁହଁ କେବେ ଛାଡ଼ି ପାରେ ନାହିଁ । ନାମ ଜପି ଜପି ମୋତେ ଏତେ ଅବଶ କରିଦେଲା ସଖୀ ! ମୁଁ ଏବେ ତାକୁ କିପରି ପାଇବି ? ଯାହାର ନାମରେ ମୋର ଏ ଦଶା, ଏପରି କରିଦେଲ । ତା'ର ଅଂଗ ସ୍ପର୍ଶରେ କ'ଣ ହେବ କହି ହେଉନାହିଁ ? ସେ ଯେଉଁଠି ରହେ, ସେଠାରେ ତା'ର ଚକ୍ଷୁରେ ଦେଖିଦେଲା ପରେ ଯୁବତୀର ଧର୍ମ ରହିବ ବା କିପରି ? ମୁଁ ଭୁଲି ଯିବାକୁ ଚାହୁଁଛି, କିନ୍ତୁ ମନରୁ ତ ଭୁଲି ହେଉନାହିଁ । ଏବେ ମୁଁ କ'ଣ କରିବି ? ମୋ' ପାଇଁ ବା ଉପାୟ କ'ଣ ଅଛି ? ଚଣ୍ଡୀଦାସ ଦ୍ୱିଜ କହୁଛନ୍ତି ଏହାଦ୍ୱାରା କୁଳବତୀଙ୍କର କୁଳନାଶ ହେଉଛି, ଯେ ଆପଣାର ଯୌବନ ଦେଇ ଦେଇଛନ୍ତି ।

ଚଣ୍ଡୀଦାସଙ୍କର ସମସ୍ତ ଜୀବନ ପ୍ରେମ ସାଧନାରେ ପରିପୂର୍ଣ୍ଣ ଥିଲା । ସେ ଆପଣାର ପଦାବଳୀରେ ସର୍ବତ୍ର ଶ୍ରୀରାଧା-କୃଷ୍ଣଙ୍କ ପ୍ରେମର ଗୀତ ଗାନ କରିଛନ୍ତି । ଭଗବଦୀୟ ମାଧୁର୍ଯ୍ୟର ବିଜୟ ବୈଜୟନ୍ତୀ ଉଡ଼ାଇଥିବା ଚଣ୍ଡୀଦାସଙ୍କ ନାମ ଗୌରବପୂର୍ଣ୍ଣ ଏବଂ ବିଶିଷ୍ଟ ସ୍ଥାନରେ ପ୍ରତିଷ୍ଠିତ । ଚଣ୍ଡୀଦାସଙ୍କ ନାମ ଶୁଣିଲେ ହିଁ ନୟନରେ ପ୍ରେମାଶ୍ରୁ ପ୍ଲାବିତ ହୋଇଯାଏ । ହୃଦୟରେ ଭକ୍ତିର ମନ୍ଦାକିନୀ ବେଗଗାମୀ ହୋଇଥାଏ । ଶ୍ରୀରାଧାକୃଷ୍ଣଙ୍କ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ଉତ୍କୂଳୀତ ହୋଇଥାଏ । ଧନ୍ୟ ଚଣ୍ଡୀଦାସ ! ପ୍ରେମମୟ ଲେଖନୀରେ ପ୍ରେମର ଶାଶ୍ୱତ ସ୍ୱରୂପ ପ୍ରକଟିତ ହେବା ସହ ନିଜର ଅଲୌକିକ ଭାବନାର ଭାସ୍ୱର ଦ୍ୟୁତି ଅମର କରି ରଖିବ ଯୁଗଯୁଗକୁ ।।



# ଭକ୍ତ କୃଷ୍ଣଦାସ କବିରାଜ

ଦ୍ରବତି ଶିଖର ବୃନ୍ଦେଽଚଂଚଳେ ବେଣୁନାଦୈ
ର୍ଦିଶି ର୍ଦିଶି ବିସରନ୍ତି ର୍ନିଝରରାପଃ ସମୀକ୍ଷଃ
ତୃଷିତ ଖଳ ମୃଗାଳୀ ଗନ୍ତୁ ମୁତ୍‌କା ଜଡ଼ାଙ୍ଗୈଃ
ସ୍ୱୟମପି ସବିଧାପ୍ତା ନୈବ ପାତୁଂ ସମର୍ଥା ॥
(ଗୋବିନ୍ଦ ଲୀଳାମୃତମ୍)

ନବଦ୍ୱୀପରେ ଶ୍ରୀଚୈତନ୍ୟ ମହାପ୍ରଭୁ ପ୍ରେମର ଯେଉଁ ମହାନ୍ ତରଂଗିଣୀ ପ୍ରବାହିତ କରାଇଲେ, ତା'ର ଦିବ୍ୟପ୍ରେମ ସଲିଳରେ ନିଜକୁ ନିମଜ୍ଜିତ କରି ତହିଁରେ ନିଜକୁ ଆପ୍ଳୁତ କରି ତଥା ତହିଁରେ ଲୟ ହୋଇଯିବା ପାଇଁ ସେହି ସମୟରେ ଅନେକ ମହାପୁରୁଷ ଜନ୍ମ ଗ୍ରହଣ କରିଥିଲେ । ସେହି ପ୍ରେମୀ ମହାପୁରୁଷଙ୍କ ମଧ୍ୟରୁ ଜଣେ ହେଉଛନ୍ତି 'ଚୈତନ୍ୟ ଚରିତାମୃତ'ର ରଚୟିତା ପ୍ରସିଦ୍ଧ ବୈଷ୍ଣବ କବି କୃଷ୍ଣଦାସ କବିରାଜ ମହାଶୟ ।

ବର୍ଦ୍ଧମାନ ଜିଲ୍ଲାର ଝାମଟପୁର ନାମକ ଛୋଟ ଗ୍ରାମରେ ବୈଦ୍ୟ ବଂଶରେ ଜନ୍ମଲାଭ କରିଥିଲେ । ଶୈଶବରୁ ସଂସ୍କୃତ ଶିକ୍ଷାରେ ମନୋନିବେଶ କରି ତହିଁରେ ଧୂରୀଣ ହୋଇଥିଲେ । ଶୈଶବରୁ ସେ ଧର୍ମାନୁରାଗୀ ହୋଇଥିଲେ । ତାଙ୍କ ମାତାପିତା ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଭକ୍ତ ଥିଲେ ଏବଂ ସେ ବାଲ୍ୟକାଳରୁ ଶ୍ରୀଚୈତନ୍ୟଙ୍କ

ଗୁଣ ଶ୍ରବଣ କରି ଶ୍ରୀଚୈତନ୍ୟ ଭକ୍ତ ହୋଇଗଲେ । ବୟସ ବଢ଼ିବା ସହିତ ତାଙ୍କର ଭକ୍ତିଭାବ, ବିଷୟ ବୈରାଗ୍ୟ ବୃଦ୍ଧି ପ୍ରାପ୍ତ ହେବାକୁ ଲାଗିଲା । ଦିନରାତି କୃଷ୍ଣ ଭଜନରେ ନିମଗ୍ନ ରହୁଥିଲେ । ଦିନେ ତାଙ୍କୁ ସ୍ୱପ୍ନରେ ଶ୍ରୀନିତ୍ୟାନନ୍ଦଜୀ ଦର୍ଶନ ଦେଇ ତଥା ସଂସାରାଶ୍ରମ ତ୍ୟାଗ କରିବାର ଅନୁମତି ଦେଇଥିଲେ । ଏବେ କୃଷ୍ଣଦାସ ଭଗବାନଙ୍କ ଲୀଳାସ୍ଥଳୀ ବୃନ୍ଦାବନକୁ ଚାଲିଲେ ।

କୃଷ୍ଣଦାସଙ୍କ ଜନ୍ମ ପୂର୍ବରୁ ଶ୍ରୀଚୈତନ୍ୟ ଲୀଳା ସଂବରଣ କରି ସାରିଥିଲେ । ଏଣୁ ସେ ପରମବୈରାଗୀ ଚୈତନ୍ୟଙ୍କ ପ୍ରିୟଶିଷ୍ୟ ରଘୁନାଥଜୀଙ୍କ ସହ ସାକ୍ଷାତ୍ କଲେ ଏବଂ ତାଙ୍କ ଶରଣାପନ୍ନ ହେଲେ । ରଘୁନାଥଙ୍କଠାରୁ ଦୀକ୍ଷା ଗ୍ରହଣ କରି, ତାଙ୍କ ଅବଶିଷ୍ଟ ଜୀବନ ପ୍ରେମଭକ୍ତି ଶିକ୍ଷା, ଶାସ୍ତ୍ରାଲୋଚନା, ମହାପ୍ରଭୁ ଶ୍ରୀଚୈତନ୍ୟଦେବଙ୍କ ପାବନ ଚରିତ୍ର ଅନୁଶୀଳନ ଏବଂ କୃଷ୍ଣନାମ ଜପରେ ବ୍ୟତୀତ କରିଦେଇଛନ୍ତି ।

ଶ୍ରୀରଘୁନାଥଜୀ ଶ୍ରୀଚୈତନ୍ୟଙ୍କର ଅତ୍ୟନ୍ତ ପ୍ରିୟ ଶିଷ୍ୟ ଥିଲେ । ମହାପ୍ରଭୁଙ୍କ ଅନ୍ତିମ ଅବସ୍ଥାରେ ତାଙ୍କ ପାଖରେ ଶ୍ରୀରୂପ ଗୋସ୍ୱାମୀ ଏବଂ ରଘୁନାଥ ଦାସ ହିଁ ରହିଥିଲେ ଏବଂ ତାଙ୍କ ସେବା ଶୁଶ୍ରୂଷା କରିଥିଲେ । ଏଣୁ ଶ୍ରୀରଘୁନାଥ ଦାସଜୀ ଶ୍ରୀଚୈତନ୍ୟଙ୍କ ପ୍ରେମ ରହସ୍ୟର ଅତ୍ୟନ୍ତ ମର୍ମଜ୍ଞ ଥିଲେ । ସେହି ରଘୁନାଥଜୀ ସେ ସକଳ ପ୍ରେମ ରହସ୍ୟ ନିଜର ପ୍ରିୟଶିଷ୍ୟ କୃଷ୍ଣଦାସଙ୍କୁ ପ୍ରକଟ କରିଥିଲେ । ଏହିପରି ଗୁରୁକୃପାରେ ସେ ପ୍ରେମ ରହସ୍ୟର ଦିବ୍ୟଜ୍ଞାନ ପ୍ରାପ୍ତ କରିଥିଲେ ।

ଶ୍ରୀଚୈତନ୍ୟଦେବଙ୍କ ଅନ୍ତରଂଗ ଲୀଳାର ପ୍ରକାଶ ଶ୍ରୀଚୈତନ୍ୟଙ୍କ ଲୀଳା ସଂବରଣ ପରେ ବୃନ୍ଦାବନରେ କାହାରି କାହାରିକୁ ଥିଲା । ତାଙ୍କର ସମସ୍ତ ଭକ୍ତଙ୍କୁ ଚୈତନ୍ୟ ପ୍ରେମର ଜ୍ଞାନ ହେଉ, ଏଣୁ କୃଷ୍ଣ ଦାସଜୀ ନିଜର ଅନ୍ତିମ ସମୟରେ ବଂଗଳା ଭାଷାରେ ଅତ୍ୟନ୍ତ ସୁଲଳିତ ଛନ୍ଦରେ 'ଚୈତନ୍ୟ ଚରିତାମୃତ' ନାମକ କାବ୍ୟ ଗ୍ରନ୍ଥ ନିର୍ମାଣ କଲେ । କୁହାଯାଏ ସେତେବେଳକୁ ସେ ଅତ୍ୟନ୍ତ ବୃଦ୍ଧ ହୋଇଯାଇଥିଲେ । ତାଙ୍କ ସମସ୍ତ ଅଂଗ ଜର୍ଜର ହୋଇଯାଇ ଥିଲା । ମୁଖରୁ ଉଚ୍ଚାରଣ ମଧ୍ୟ ଠିକ୍ ଭାବରେ ହୋଇ ପାରୁନଥିଲା । ଏହାପରେ ବି ସେ ଗ୍ରନ୍ଥ ରଚନା କରୁଥିଲେ । କେହି ତାଙ୍କୁ ପଚାରିଲେ- ଆପଣ କିପରି ଲେଖୁଛନ୍ତି ସେ ଉତ୍ତର ଦେଲେ- ମୋର ସାମର୍ଥ୍ୟ ବା କ'ଣ ଯେ ମୁଁ ଗ୍ରନ୍ଥ ଲେଖିବି, ଏହାକୁ ତ ସାକ୍ଷାତ୍ ମଦନ ଗୋପାଳ ଲେଖୁଅଛନ୍ତି ।

ଶ୍ରୀ ଚୈତନ୍ୟ ଚରିତାମୃତ ଗ୍ରନ୍ଥରେ ପ୍ରେମ ରହସ୍ୟର ଅତ୍ୟନ୍ତ ଗୋପନୀୟ ତତ୍ତ୍ୱର ସୂକ୍ଷ୍ମାତି ସୂକ୍ଷ୍ମ ବିବେଚନ କରାଯାଇଅଛି । ସତ୍ୟ ଏହା ଯେ ଏହାକୁ ମନ ଲଗାଇ ପଢ଼ିଲେ ଅନ୍ତଃକରଣରେ ଦିବ୍ୟ କୃଷ୍ଣପ୍ରେମର ଉଦୟ ହେବା ସଂଭବ । ଭକ୍ତି ସାହିତ୍ୟର ଏହା ସର୍ବୋତ୍ତମ ଗ୍ରନ୍ଥ । ଉତ୍ତର ଭାରତରେ 'ରାମଚରିତ ମାନସ' ପରି ବଂଗଳାରେ 'ଶ୍ରୀଚୈତନ୍ୟ ଚରିତାମୃତ' ଅତ୍ୟନ୍ତ ଲୋକପ୍ରିୟ ତଥା ମହତ୍ତ୍ୱପୂର୍ଣ୍ଣ ।

ଏହା ବ୍ୟତୀତ ସେ ସଂସ୍କୃତ ଭାଷାରେ ବୈଷ୍ଣବାଷ୍ଟକ, ଗୋବିନ୍ଦ ଲୀଳାମୃତ, କୃଷ୍ଣକର୍ଣ୍ଣାମୃତର ସାରଂଗରଂଗଦା ଟୀକା ରଚନା କରିଛନ୍ତି । ଏହି ଗ୍ରନ୍ଥରୁ ଜଣାଯାଏ ଯେ ସେ ସଂସ୍କୃତର ଅସାଧାରଣ ବିଦ୍ୱାନ୍ ଥିଲେ । ଭାବୁକ ଭକ୍ତମାନଙ୍କ ମଧ୍ୟରେ ଏହା ପ୍ରଚଳିତ ଯେ ସେ ରାଧାରାଣୀଙ୍କ କୌଣସି ମଂଜରୀର ଅବତାର । ସ୍ୱପ୍ନରେ ରାଧାରାଣୀ କହିଲେ- ୟେ ମୋ' ମଂଜରୀର ଅବତାର ।

ୟେ ଅତ୍ୟନ୍ତ ଉଚ୍ଚକୋଟୀର ପ୍ରେମୀ, ଅଦ୍ୱିତୀୟ ବୈରାଗୀ ଏବଂ ମହାନ ଭକ୍ତ ଥିଲେ । ଏହିପରି ଭକ୍ତଙ୍କ ଦ୍ୱାରା ନିଶ୍ଚୟ ଜଗତର କଲ୍ୟାଣ ହେଉଅଛି ଏବଂ ହେଉଥିବ ॥



# ଆସାମର ଭକ୍ତ ପ୍ରବର ଶଙ୍କର ଦେବ

ଆସାମକୁ ପୌରାଣିକ ଯୁଗରେ ପ୍ରାଗ୍‌ଜ୍ୟୋତିଷପୁର କୁହାଯାଇଛି । ମହାଭାରତରେ ଭଗଦତ୍ତଙ୍କୁ କାମରୂପର ରାଜା ନିର୍ଦ୍ଦେଶିତ ହୋଇଛନ୍ତି । କାମରୂପ ହିଁ ଆସାମର ପ୍ରାଚୀନ ନାମ । ତ୍ରୟୋଦଶ ଶତାବ୍ଦୀରେ ବ୍ରହ୍ମଦେଶରୁ ଆହମ ଜାତିର ଲୋକେ ଆସି କାମରୂପ ରାଜ୍ୟ ଉପରେ ଅଧିକାର ସାବ୍ୟସ୍ତ କଲେ । 'ଆହମ' ନାମରୁ କାମରୂପ ଆସାମରେ ପରିଣତ ହୋଇଗଲା ।

ଶକ ୧୩୭୧ (୧୪୪୯ ଖ୍ରୀ.ଅ.)ର କାର୍ତ୍ତିକ ଅମାବାସ୍ୟା ମଧ୍ୟରାତ୍ରରେ ଆସାମର ବଟଦ୍ରବା (ବର୍ତ୍ତମାନ ନାମବରଦୋଆ, ଜି. ନୌଗାଁବ)ରେ ଶ୍ରୀ ଶଙ୍କର ଦେବଙ୍କର ଜନ୍ମ ହୋଇଥିଲା । ପିତା ଶ୍ରୀ କୁସୁମବର ଭୂମାଁ ଏବଂ ମାତା ସତ୍ୟସଂଧାଦେବୀ ଏପରି ଭଗବତ୍ ଭକ୍ତ ପୁତ୍ର ଲାଭ କରି ଧନ୍ୟ ହେଲେ । ଶଙ୍କରଙ୍କ ପ୍ରସାଦରୁ ପୁତ୍ର ଲାଭ ହୋଇଥିବାରୁ ପିତା ତାଙ୍କ ନାମ ଶଙ୍କର ରଖିଥିଲେ । ଶଙ୍କର ବାଲ୍ୟକାଳରୁ ନିଜର ପ୍ରତିଭା ତଥା ଶୁଭ ଲକ୍ଷଣ ତାଙ୍କୁ ଭବିଷ୍ୟତରେ ଜଣେ ଖ୍ୟାତନାମା ବ୍ୟକ୍ତି ହେବାର ସୂଚିତ କରୁଥିଲା । ନିଜର ଅଲୌକିକ ସଦ୍‌ଗୁଣ ପାଇଁ ଲୋକ ଚର୍ଚ୍ଚିତ ହୋଇଥିଲେ ।

ଦିନେ ବିଦ୍ୟାଳୟ ଛୁଟି ହୋଇଯିବା ପରେ ସମସ୍ତ ଛାତ୍ର ଶିକ୍ଷକ ବାହାରକୁ ଚାଲିଗଲେ, ଏକାକୀ ବିଦ୍ୟାଳୟ ପ୍ରାଙ୍ଗଣରେ ନିଦରେ ଶୋଇଗଲେ । ଗ୍ରୀଷ୍ମକାଳର ସୂର୍ଯ୍ୟତାପ ପ୍ରଖର ଥିଲା । ଜଣେ ଶିକ୍ଷକ ସେହି ବାଟ ଦେଇ ଗଲେ ଏବଂ ଦେଖିଲେ ଯେ ଗୋଟିଏ କଳା ନାଗସାପ ଫଣାଟେକି ବାଳକର ମୁଖରେ ପଡୁଥିବା ସୂର୍ଯ୍ୟରଶ୍ମୀକୁ ରୋଧ କରୁଛି । ଶିକ୍ଷକଙ୍କୁ ଦେଖି ସାପ କେଉଁ ଆଡ଼େ ଲୁଚିଗଲା । ସେ ଏ ଘଟଣା ଦେଖି ବିସ୍ମିତ ହେଲେ । ସେ ନିଶ୍ଚୟ କଲେ ଯେ ଏହି ବାଳକ ଏକ ମହାପୁରୁଷ ହେବ । ପରଦିନ ଏହି ବିରଳ ଘଟଣା ସମସ୍ତଙ୍କ ଆଗରେ ପ୍ରକାଶ କଲେ ଏବଂ ଶଙ୍କରଙ୍କୁ 'ଦେବ' ଉପାଧିରେ ଭୂଷିତ କଲେ । ଆପଣାର ତୀକ୍ଷ୍ଣ ବୁଦ୍ଧି ଏବଂ ମେଧା ପ୍ରଭାବରୁ ଅଳ୍ପ କାଳ ମଧ୍ୟରେ ଶାସ୍ତ୍ରାଭ୍ୟାସ କରି ଗୁରୁକୁଳରୁ ବିଦାୟ ନେଲେ ।

ଏହାପରେ ସେ ଯୋଗ ସାଧନରେ ଲାଗିଗଲେ । ନିରନ୍ତର ସାଧନାରେ ତାଙ୍କର ଆଶାନୁରୂପ ଅଗ୍ରଗତି ହେଲା । କିଛି ସିଦ୍ଧି ମଧ୍ୟ ପ୍ରାପ୍ତ କଲେ । କିନ୍ତୁ

ଏଥିରେ ସେ ତୃପ୍ତି ଲାଭ କରିପାରିଲେ ନାହିଁ । ଅତଃ ଯୋଗାଭ୍ୟାସ ଏବଂ ସିଦ୍ଧି ପ୍ରାପ୍ତି ଜନିତ ଲୋକୈଷଣାରୁ ନିବୃତ୍ତ ହୋଇ ଶ୍ରୀମଦ୍ ଭାଗବତ, ଗୀତା, ଉପନିଷଦ, ବେଦାନ୍ତ ଆଦି ଅନୁଶୀଳନ କରିବା ଆରମ୍ଭ କରିଦେଲେ । ଫଳ ସ୍ୱରୂପ ତାଙ୍କର ଆତ୍ମଚିନ୍ତନ ବଢ଼ି ଚାଲିଲା ଏବଂ ତାଙ୍କର ଦୃଢ଼ବିଶ୍ୱାସ ହେଲା ଯେ ଶ୍ରୀକୃଷ୍ଣ ଭକ୍ତି ହିଁ ଜୀବନର ଏକମାତ୍ର ଗତି । ଏବେ ତାଙ୍କ ଜୀବନ ଭକ୍ତି ସ୍ରୋତରେ ପ୍ରବାହିତ ହେବାକୁ ଲାଗିଲା । ସେ ଶ୍ରୀକୃଷ୍ଣ ଭକ୍ତିର ଉପଦେଶ ଦେବାକୁ ଲାଗିଲେ । ତାଙ୍କର ଅନନ୍ୟ ଉପାସ୍ୟ ଦେବ ଏକମାତ୍ର ଦ୍ୱିଭୁଜଧାରୀ ମୁରଲୀ ମନୋହର ଶ୍ରୀକୃଷ୍ଣ ।

ଚତୁର୍ଦ୍ଦିଗରେ ତାଙ୍କ ଖ୍ୟାତି ପରିବ୍ୟାପ୍ତ ହେଲା । ଲୋକେ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରି କୃଷ୍ଣ ଭକ୍ତିର ରସାସ୍ୱାଦନ କରିବାରେ ଲାଗିଲେ । ୩୪ ବର୍ଷ ବୟସରେ ସେ ତୀର୍ଥାଟନ କରିବା ନିମନ୍ତେ ବାହାରିଲେ । କାଶୀ, ଗୟା, ବୃନ୍ଦାବନ, ମଥୁରା, ବଦ୍ରିକାଶ୍ରମ, ଦ୍ୱାରିକା, ରାମେଶ୍ୱର ଆଦି ତୀର୍ଥ ଦର୍ଶନ କରି ତଥା ଅନେକ ବିଦ୍ୱାନ, ଧାର୍ମିକ, ସଂଥଙ୍କ ସହ ଶାସ୍ତ୍ରାଲୋଚନା କରି ଗୃହାଭିମୁଖୀ ହେଲେ ।

ଦିନେ ମାଧବ ନାମକ ଜଣେ ଶାକ୍ତ ପଣ୍ଡିତଙ୍କ ସହ ସାକ୍ଷାତ୍ ହେଲା । ଶଙ୍କର ଦେବଙ୍କ ସହ ତାଙ୍କର ଶାସ୍ତ୍ରାର୍ଥ ହେଲା । ଶଙ୍କର ଦେବ ଶ୍ରୀମଦ୍ ଭାଗବତରୁ ଶ୍ଳୋକ ଉଦ୍ଧାର କରି କହିଲେ- ଯେପରି ବୃକ୍ଷର ମୂଳରେ ଜଳସେଚନ କଲେ ବୃକ୍ଷ ଶାଖା ପ୍ରଶାଖା ସହ ପୂର୍ଣ୍ଣ ବିକଶିତ ହୋଇଥାଏ, ସେହିପରି ଏକମାତ୍ର ଭଗବାନ୍ ଅଚ୍ୟୁତଙ୍କୁ ଭକ୍ତି କରିବା ଦ୍ୱାରା ସମସ୍ତ ଦେବତା ପ୍ରସନ୍ନ ହୋଇଥାନ୍ତି । ଶଙ୍କର ଦେବଙ୍କର ପାଣ୍ଡିତ୍ୟ ତଥା ଭକ୍ତି ଭାବନା ମାଧବଙ୍କ ଉପରେ ଗଭୀର ପ୍ରଭାବ ପକାଇଲା ଏବଂ ସେ ବୈଷ୍ଣବ ଧର୍ମ ସ୍ୱୀକାର କରି ତାଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ପରେ ଦାମୋଦର ନାମକ ଜଣେ ବିଦ୍ୱାନ ବ୍ରାହ୍ମଣ ତାହାଙ୍କ ଶିଷ୍ୟ ହୋଇଥିଲେ । ଏହାଙ୍କ ଦ୍ୱାରା ବୈଷ୍ଣବ ଧର୍ମର ପ୍ରଚାର ହେବାରେ ଲାଗିଲା । ହରିଦେବ ନାମକ ଅନ୍ୟଜଣେ ପ୍ରତିଭାଶାଳୀ ବିଦ୍ୱାନ ବୈଷ୍ଣଧର୍ମ ଗ୍ରହଣ କରି, ଆସାମରେ ଶ୍ରୀକୃଷ୍ଣ ଭକ୍ତିର ପ୍ରଚାର କରିବାରେ ଲାଗିଲେ । ଏହିପରି ଶଙ୍କର ଦେବ ତଥା ତାଙ୍କ ଶିଷ୍ୟ ପ୍ରଶିଷ୍ୟଙ୍କ ଦ୍ୱାରା ଆସାମର ସର୍ବତ୍ର ବୈଷ୍ଣବଧର୍ମର ପ୍ରଚାର ହେବାକୁ ଲାଗିଲା । କୃଷ୍ଣଭକ୍ତି ଦ୍ୱାରା ଆସାମ ଭୂମି ପରିପ୍ଲାବିତ ହୋଇଥିଲା ।

ଦ୍ୱିତୀୟଥର ଶଙ୍କର ଦେବ ଏବଂ ତାଙ୍କ ଶିଷ୍ୟମାନଙ୍କ ସହିତ ତୀର୍ଥାଟନ କରିବାକୁ ବାହାରିଲେ । ଦକ୍ଷିଣ ଭାରତୀୟ ତୀର୍ଥ ପର୍ଯ୍ୟଟନ କରିବା ପରେ ସେମାନେ

ପୁରୁଷୋତ୍ତମ କ୍ଷେତ୍ର ପୁରୀରେ ପହଞ୍ଚିଲେ । ଏଠାରେ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ସହ ତାଙ୍କର ସାକ୍ଷାତ୍ ହୋଇଥିଲା । କିଛି ଦିନ ପୁରୀରେ ନିବାସ କରି ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ସତ୍‌ସଂଗ ଲାଭକରି ଶିଷ୍ୟ ମଣ୍ଡଳୀ ସହ ଆସାମ ଲେଉଟି ଆସିଲେ ।

କୁଚ୍‌ବିହାରର ମହାରାଜା ତାଙ୍କର ସତ୍‌କାର କରିଥିଲେ । ତାଙ୍କୁ ରାଜ ପାରିଷଦ ମଧ୍ୟରେ ଏକ ବିଶିଷ୍ଟ ପଦରେ ନିଯୁକ୍ତ କରିଦେଲେ । ଶଙ୍କରଙ୍କୁ ଏହି ନୂଆ ପ୍ରପଞ୍ଚ କିଛି ଦିନରେ ଅସହ୍ୟ ବୋଧ ହେଲା । ରାଜ ଅନୁଗ୍ରହରୁ ମୁକ୍ତି ପାଇଁ ଚେଷ୍ଟିତ ହେଲେ । ମହାରାଜା ତାଙ୍କଠାରୁ ଦୀକ୍ଷା ଗ୍ରହଣ କରିବାକୁ ଆଗ୍ରହ ପ୍ରକାଶ କଲେ । କିନ୍ତୁ ଶଙ୍କର ଦେବ ତାଙ୍କୁ କହିଲେ- ଆପଣଙ୍କ ରାଜତ୍ୱ ରକ୍ଷାପାଇଁ ଏପରି ବହୁତ କାର୍ଯ୍ୟ କରିବାକୁ ପଡ଼େ, ଯାହା ବୈଷ୍ଣବ ଧର୍ମ ବିରୁଦ୍ଧ । ଏଣୁ ଭକ୍ତିମାର୍ଗ ଆପଣଙ୍କ ପାଇଁ ଉପଯୁକ୍ତ ନୁହେଁ ।

ଏବେ ପ୍ରଚାର କାର୍ଯ୍ୟରେ ଶ୍ରୀଶଙ୍କର ଦେବ ବିରକ୍ତ ହେବାକୁ ଲାଗିଲେ । ସାମ୍ପ୍ରଦାୟିକ କାର୍ଯ୍ୟଭାର ମାଧବ ଦେବଙ୍କୁ ସମର୍ପଣ କରି ସ୍ୱୟଂ ଭଗବାନଙ୍କ ଧ୍ୟାନ ଭଜନରେ ନିମଜ୍ଜିତ ହୋଇଗଲେ । ନିରନ୍ତର ଭଗବାନଙ୍କ ଧ୍ୟାନରେ ସମାହିତ ହୋଇ ରହିଥାନ୍ତି । ରାଜା ପୁନଃ ତାଙ୍କଠାରୁ ଦୀକ୍ଷା ଗ୍ରହଣ କରିବାକୁ ଚାହିଁଲେ । କିନ୍ତୁ ତାଙ୍କୁ ଦୀକ୍ଷା ଦେବାକୁ ଶଙ୍କର ଇଚ୍ଛା କରୁ ନଥିଲେ, ଏଣୁ ରାଜାଙ୍କୁ ଦିନେ ଉପବାସ କରି ପରଦିନ ଆସିବାକୁ କହିଲେ । ପରଦିନ ପ୍ରଭାତରୁ ଶଙ୍କର ଦେବ ସ୍ନାନାଦିରୁ ନିବୃତ୍ତ ହୋଇ, ନବବସ୍ତ୍ର ପରିଧାନ ପୂର୍ବକ ଚନ୍ଦନ ଚର୍ଚ୍ଚିତ ହୋଇ ସମାଧିରେ ବସିଗଲେ । କିଛି ସମୟପରେ ଯୋଗବଳରେ ଦେହତ୍ୟାଗ କଲେ । ରାଜା ଏହି ଘଟଣାରେ ବହୁ ବ୍ୟଥିତ ହେଲେ । ସେ ବିଧି ପୂର୍ବକ ତାଙ୍କର ଔର୍ଦ୍ଧ୍ୱଦୈହିକ ସଂସ୍କାର ସଂପନ୍ନ କଲେ । ଖ୍ରୀ.ଅ ୧୫୬୯ରେ ୧୨୦ ବର୍ଷ ବୟସରେ ଆସାମରେ ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ତଥା ମହାନ୍ ଭକ୍ତ ଶଙ୍କରଦେବ ପରମ ପଦକୁ ପ୍ରାପ୍ତ କଲେ ।

ଏହାଙ୍କ ପରେ ଆସାମର ବୈଷ୍ଣବ ଧର୍ମ ଦୁଇଭାଗରେ ବିଭାଜିତ ହେଲା । ମାଧବଦେବଙ୍କ ଅନୁଯାୟୀ ମହାପୁରୁଷୀୟ ବୈଷ୍ଣବ ଏବଂ ଦାମୋଦର ଦେବଙ୍କ ଅନୁଯାୟୀ 'ଦାମୋଦରୀୟ' ବୈଷ୍ଣବ ନାମରେ ଅଭିହିତ ହୋଇଥିଲେ । ଶଙ୍କର ଦେବଙ୍କ ପୁତ୍ର 'ହରିଦେବୀୟ' ସଂପ୍ରଦାୟ ନାମରେ ଏକ ସଂପ୍ରଦାୟର ପ୍ରଚଳନ କରିଥିଲେ ॥



# ମୀରାବାଈ

ଭାରତୀୟ ନାରୀ ଜାତିକୁ ଧନ୍ୟ କରିଥିବା ଭକ୍ତି ପରାୟଣା ମୀରାବାଈଙ୍କ ଜନ୍ମ ମାରବାଡ଼ର କୁଡ଼କୀ ନାମକ ଗ୍ରାମରେ ସଂବତ୍ ୧୫୫୮-୫୯ରେ ପ୍ରାୟ ହୋଇଥିଲା । ତାଙ୍କ ପିତା ରାଠୋର ଶ୍ରୀ ରତନ୍ ସିଂହଜୀ । ସେ ମେଡ଼ତାର ରାଜା ଦୁଦାଜୀଙ୍କର ଚତୁର୍ଥ ପୁତ୍ର ଥିଲେ । ମୀରା ପିତାମାତାଙ୍କର ଏକମାତ୍ର କନ୍ୟା ଥିଲେ । ତାଙ୍କର ଚିତ୍ତବୃତ୍ତି ବାଲ୍ୟ କାଳରୁ ହିଁ ଈଶ୍ୱରାର୍ପିତ ହୋଇଥିଲା । ଦିନେ ତାଙ୍କ ଘରକୁ ଜଣେ ସାଧୁଙ୍କର ଆଗମନ ହେଲା । ସାଧୁଙ୍କ ପାଖରେ ଭଗବାନଙ୍କର ଏକ ସୁନ୍ଦର ମୂର୍ତ୍ତିଥିଲା । ମୀରା ସାଧୁଙ୍କୁ କହି ସେହି ମୂର୍ତ୍ତିଟିକୁ ଘେନି ଆସିଲେ । ସାଧୁ ମୂର୍ତ୍ତି ଦେଇ କହିଲେ, ଯେ ହେଉଛନ୍ତି ଭଗବାନ । ଏହାଙ୍କ ନାମ ଗିରିଧର ଲାଲାଜୀ, ତୁ ପ୍ରତିଦିନ ପ୍ରେମ ସହକାରେ ଏହାର ପୂଜା କର । ସରଳ ହୃଦୟା ବାଳିକା ମୀରା ସଚ୍ଚା ମନରେ ଭଗବାନ୍‌ଙ୍କର ସେବା କରିବାରେ ଲାଗିଗଲା । ଏହି ସମୟରେ ମୀରା ଦଶ ବର୍ଷିୟା ବାଳିକା । ଦିନଯାକର କାର୍ଯ୍ୟ ପଟ୍ଟା ମଧ୍ୟରେ ମୂର୍ତ୍ତିକୁ ସ୍ନାନ ମାର୍ଜନା କରିବା, ଚନ୍ଦନ ଚର୍ଚ୍ଚିତ କରିବା, ପୁଷ୍ପ, ପୁଷ୍ପମାଳା ପିନ୍ଧାଇବା, ଭୋଗ ଲଗାଇବା, ଆରତି କରିବା ଆଦି କାମରେ ପ୍ରବୃତ୍ତ ରହିଥାଏ ।

ଏହି ସମୟରେ ମୀରା ସ୍ୱୟଂ ପଦ ରଚନା କରିବାରେ ଲାଗିଥାନ୍ତି । ଯେବେ ସେ ସ୍ୱରଚିତ କବିତା ମଧୁର ସ୍ୱରରେ ଗାନ କରିଥାନ୍ତି, ତେବେ ପ୍ରେମ ପ୍ରବାହ ଗତି ମୁଖର ହୋଇଥାଏ । ଶ୍ରୋତା ନର-ନାରୀଙ୍କ ହୃଦୟ ରସାପ୍ଳୁତ ହୋଇଯାଏ । ଏହିପରି ଭାବ ତରଂଗରେ ପାଞ୍ଚବର୍ଷ ଅତିବାହିତ ହୋଇଗଲା । ସଂବତ ୧୫୭୩ରେ ମୀରାଙ୍କ ବିବାହ ଚିତ୍ତୋରର ସୀସୋଦିୟା ବଂଶରେ ମହାରାଣା ସାଁଗାଜୀଙ୍କ ଜ୍ୟେଷ୍ଠ କୁମାର ଭୋଜରାଜାଙ୍କ ସହିତ ସଂପନ୍ନ ହୋଇଥିଲା । ବିବାହ ସମୟରେ ଏକ ଅଦ୍‌ଭୁତ ଘଟଣା ଘଟିତ ହେଲା । ଶ୍ରୀକୃଷ୍ଣ ପ୍ରେମର

ସାକ୍ଷାତ୍ ମୂର୍ତ୍ତିକୁ ମୀରା ନିଜର ଶ୍ୟାମଗିରିଧର ଲାଲଙ୍କୁ ପ୍ରଥମରେ ହିଁ ମଣ୍ଡପରେ ବିରାଜିତ କରାଇଥିଲେ । କୁମାର ଭୋଜରାଜଙ୍କ ସହିତ ଫେରିବା (ସପ୍ତପଦୀ) ସମୟରେ ଶ୍ରୀ ଗିରିଧର ଗୋପାଳଙ୍କୁ ସାଥୀରେ ନେଇ ଆସିଥିଲେ । ମୀରା ବୁଝିଲେ କି ଆଜି ଭଗବାନଙ୍କ ସହିତ ମୀରାର ବିବାହ ହୋଇଗଲା ।

ମୀରାଙ୍କ ମାତାଙ୍କୁ ଏ ଘଟଣାର ଜଣାଥିଲା । ସେ ମୀରାକୁ କହିଲେ ପୁତ୍ରୀ ! ତୁ ଏପରି କ'ଣ ଖେଳ ଖେଳିଲୁ ? ମୀରା ହସିଦେଇ କହିଲା-

**ମାଈ ମ୍ହାଁନେ ସୁପନେ ବରୀ ଗୋପାଳ**
**ରାତୀ ପୀତୀ ଚୁନଡ଼ୀ ଓଢ଼ୀ, ମେହଦୀ ହାଥର ସାଳ**
**କାଁଈ ଔରକୀ ବରୁଁ ଭାଁବରୀ, ମ୍ହାଁକେ ଜଗ ଜଂଜାଲ**
**ମୀରାଁକେ ପ୍ରଭୁ ଗିରିଧର ନାଗର କରୌ ସାଗଈ ହାଲ ।।**

ମୀରାଙ୍କ ଭଗବତ୍ ପ୍ରେମର ଅତୁଟ ଭାବ ଦେଖି ମାତା ବଡ଼ ପ୍ରସନ୍ନ ହୋଇଥିଲେ । ଯେବେ ସଖୀମାନେ ଏହା ଜାଣିବାକୁ ପାଇଲେ- ସେମାନେ ଥଟ୍ଟାରେ ମୀରାଙ୍କୁ- ମୀରାଙ୍କୁ ଗିରିଧର ନାଗରଙ୍କ ସହ ବୁଲିବା (ସପ୍ତପଦୀ)ର କାରଣ ପୁଚ୍ଛାକଲେ । ତହୁଁ ମୀରା କହିଲେ-

**ଐସେ ବରକୋ କେବରୁଁ ଜୋ ଜନମେଁ ଔର ମରଜାୟ**
**ବର ବରିୟେ ଗୋପାଳଜୀ, ମ୍ହାଁରୋ ଚୁଡ଼ଲୋ ଅମର ହୋ ଜାୟ ।।**

ସ୍ନେହାସ୍ପଦ ମୀରାକୁ ଯୌତୁକ ଭାବେ ବହୁଧନରତ୍ନ ଦେଇଥିଲେ । କିନ୍ତୁ ମୀରାର ମନ ଉଦାସ ଥିବାରୁ ମାତା ପୁଚ୍ଛାକଲେ ମା' ତୁ ଆଉ କ'ଣ ଚାହୁଁଛୁ ? ଯାହା ଇଚ୍ଛା କରୁଛୁ ନେଇଯାଅ । ମୀରା ମାତାଙ୍କୁ କହିଲା- 'ଦୋରୀ ମାଈ ଅବ ମ୍ହାଁ କୋ ଗିରିଧର ଲାଲ ।' ଭକ୍ତକୁ ଆପଣାର ଭଗବାନଙ୍କ ଛଡ଼ା ଆଉ କ'ଣ ବା ଚାହିଁଥାନ୍ତା । ମାତା ବଡ଼ ଆଗ୍ରହରେ ଗିରିଧର ଲାଲଜୀଙ୍କ ସିଂହାସନ ମୀରାଙ୍କ ପାଲିଙ୍କିରେ ରଖିଦେଲେ । କୁମାର ଭୋଜରାଜ ନବବଧୂକୁ ନେଇ ରାଜଧାନୀକୁ ଆସିଲେ । ଘର ଘର ମଂଗଳ ବଧାଇ ବାଣ୍ଟିବାରେ ଲାଗିଲେ । ରୂପ, ଗୁଣବତୀ ବଧୂକୁ ଦେଖି ଶାଶୂ ପ୍ରସନ୍ନ ହୋଇଗଲେ । କୁଳାଚାର ଅନୁସାରେ ଦେବପୂଜାର ଆୟୋଜନ ହେଲା । କିନ୍ତୁ ମୀରା କହିଲା, ମୁଁ ଗିରିଧର ନାଗରଙ୍କ ବ୍ୟତୀତ ଅନ୍ୟ କାହାରିକୁ ପୂଜା କରିବି ନାହିଁ । ଶାଶୂ ବିରକ୍ତ ହୋଇ ଦୁଇ ଚାରିପଦ କଡ଼ାକଥା କହିଲେ । କିନ୍ତୁ ମୀରା ଉପରେ ତା'ର କିଛି ପ୍ରଭାବ ପଡ଼ିଲା ନାହିଁ ।

ରାଜ ପୁତନାରେ ପ୍ରତିବର୍ଷ ଗୌରୀ ପୂଜନ ହେଉଥାଏ । ଛୋଟ ଛୋଟ ଝିଅପିଲା, ସୋହାଗିନୀ ସ୍ତ୍ରୀ ସୁନ୍ଦର ଗୁଣସଂପନ୍ନ ବର ଏବଂ ଅଚଳ ସୌଭାଗ୍ୟ ପାଇଁ ବଡ଼ ଆଗ୍ରହରେ 'ଗୌରୀ' ପୂଜା କରିଥାନ୍ତି । ମୀରାକୁ ମଧ୍ୟ ସେହି ପୂଜା କରିବାକୁ କୁହାଗଲା । ମୀରା ସ୍ପଷ୍ଟ ଭାବେ କହିଦେଲା । ସମଗ୍ର ରାଜପ୍ରସାଦ ମୀରା ସହ ନାରାଜ ହୋଇଗଲେ । ଶାଶୂ ନଣନ୍ଦ ମୀରାକୁ ବହୁତ ବୁଝାସୁଝା କଲେ, କିନ୍ତୁ ଏଥର ମଧ୍ୟ ମୀରାର କିଛି ପରିବର୍ତ୍ତନ ହେଲା ନାହିଁ । ସେ କହିଲା–

ନାମ୍ହେ ପୂଜାଁ ଗୌର ଜ୍ୟାଜୀ ନା ପୂଜାଁ ଉନ ଦେବ

ମ୍ହେ ପୂଜାଁ ରଣ ଛୋଡ଼ଜୀ ସାସୁଥେ କାଁଇ ଜାଣୋ ଭେବ ।।

ଶାଶୂ ନାରାଜ ହେଲେ । ସମବୟସ୍କ ସହୀମାନେ ମୀରାକୁ କହିଲେ ଭଉଣୀ ! ଇଏତ ସୁହାଗ (ସୌଭାଗ୍ୟ)ର ପୂଜା, ସମସ୍ତେ କରିବା ଉଚିତ । ମୀରା ଉତ୍ତର ଦେଲେ କି ଭଉଣୀ ! ମୋ' ସୁହାଗ ତ ସଦା ଅଚଳ, ଯାହାର ନିଜ ସୁହାଗରେ ସଂଦେହ, ସେ ଗିରିଧର ଲାଲକୁ ଛାଡ଼ି ଅନ୍ୟର ପୂଜା କରିବ । ମୀରାଙ୍କର ଏହି ଶବ୍ଦର ମର୍ମ ଯିଏ ବୁଝିଲା, ସେ ତ ଧନ୍ୟ ହୋଇଗଲେ କିନ୍ତୁ ଅଧିକାଂଶ ସ୍ତ୍ରୀଲୋକଙ୍କୁ ଏହା ଖରାପ ଲାଗିଲା ।

ମୀରାଙ୍କ ଏହି ଭକ୍ତି ଭାବନାକୁ ଦେଖି କୁମାର ଭୋଜରାଜ ପ୍ରଥମେ ଗ୍ରହଣ କରିପାରୁ ନଥିଲେ । ପରେ ମୀରାଙ୍କର ସରଳ ହୃଦୟର ଶୁଦ୍ଧ ଭକ୍ତିରେ ତାଙ୍କୁ ବଡ଼ ପ୍ରସନ୍ନତା ହେଲା । ସେ ମୀରାଙ୍କ ପାଇଁ ସ୍ୱତନ୍ତ୍ର ରଣଛୋଡ଼ଜୀଙ୍କ ମନ୍ଦିର ନିର୍ମାଣ କଲେ । କୁମାର ଭୋଜରାଜ ଜଣେ ସାହସୀ, ବୀର ଓ ସାହିତ୍ୟ ପ୍ରେମୀ ଯୁବକ ଥିଲେ । ମୀରାଙ୍କ ପଦ ରଚନାରେ ସେ ପ୍ରୀତ ହେଉଥିଲେ ତଥା ଏହାକୁ ନିଜର ଗୌରବ ମାନୁଥିଲେ । ମୀରାଙ୍କ ସୌନ୍ଦର୍ଯ୍ୟ ତଥା ଗୁଣାବଳୀ ତାଙ୍କୁ ମୀରାଙ୍କ ପ୍ରତି ଆକୃଷ୍ଟ କରୁଥିଲା । ନୂତନ କବିତା ରଚନା କରି ତଥା ସୁଲିଳିତ କଣ୍ଠରେ ଗାନକରି ଶୁଣାଇଲା ବେଳେ କୁମାର ଅତ୍ୟନ୍ତ ଆନନ୍ଦିତ ହେଉଥିଲେ ।

ମୀରା ତ ନିଜର ବାସ୍ତବ ପତି କେବଳ ଶ୍ରୀଗିରିଧର ଲାଲକୁ ହିଁ ମାନିଥାନ୍ତି । ସେ ଅଧିକାଂଶ ସମୟ ତାଙ୍କ ସେବାରେ ଲାଗି ରହିଥାନ୍ତି । ପୁନଃ ତାଙ୍କ ଲୌକିକ ପତି କୁମାର ଭୋଜଦେବଙ୍କୁ କେବେ ନାରାଜ ହେବାକୁ ଦିଅନ୍ତି ନାହିଁ । କୁହାଯାଏ କି ମୀରାଙ୍କ ଅନୁମତି ନେଇ କୁମାର ଦ୍ୱିତୀୟ ବିବାହ କରିଥିଲେ । ମୀରା ଏଥିରେ ବଡ଼ ପ୍ରସନ୍ନ ହେଲେ । ସେ ସଂକୋଚରେ ରହୁଥିଲେ ଯେ ମୁଁ ସ୍ୱାମୀଙ୍କ ମନ

କାମନା ପୂର୍ତ୍ତି କରି ପାରୁନାହିଁ । ଏବେ ଦ୍ୱିତୀୟ ରାଣୀ ପତିଙ୍କୁ ପରିତୃପ୍ତି ଦେଇଥିବାରୁ ଖୁସି ହୋଇଥିଲେ । ପତିଙ୍କ ପରମପତି ପରମାତ୍ମାଙ୍କ ସେବାରେ ନିଜର ପୂରା ସମୟ ଲାଗି ରହିବାର ସଂଭାବନା ବୁଝି ମୀରାଙ୍କୁ ବଡ଼ ଆହ୍ଲାଦ ହେଲା ।

ମୀରା ନିଜର ସମଗ୍ର ସମୟ ଏବଂ ସାଧୁ ସଂଗତିରେ ଲାଗି ରହିଥାନ୍ତି । କେବେ ବିରହରେ ବ୍ୟାକୁଳ ହୋଇ ରୋଦନ କରନ୍ତି ତ କେବେ ଧ୍ୟାନରେ ସାକ୍ଷାତ୍କାର କରି ହସିଥାନ୍ତି । କେବେ ପ୍ରେମରେ ନୃତ୍ୟ କରିଥାନ୍ତି । କ୍ଷୁଧା ତୃଷାର ଖବର ତାଙ୍କ ପାଖରେ ନ ଥାଏ । ଲଗାତାର ଭାବେ ଖାଦ୍ୟ- ପାନୀୟ ବିନା ପ୍ରେମ ସମାଧିରେ ମଗ୍ନ ରହିଥାନ୍ତି । କେହି ବୁଝାଇବାକୁ ଆସିଲେ ତାକୁ କେବଳ କୃଷ୍ଣ ପ୍ରେମର କଥା କହିଥାନ୍ତି । ଦ୍ୱିତୀୟ କଥା ହେଲା ସେ ଭଲମନ୍ଦ ଜାଣିପାରୁ ନଥିଲେ । ଘରବାଲା ବୁଝିଲେ ସେ ବ୍ୟାଧିଗ୍ରସ୍ତ ହୋଇ ଯାଇଛନ୍ତି । ଶରୀର ଦୁର୍ବଳ ହୋଇଗଲା, ବୈଦ୍ୟ ଡକାହୋଇ ଆସିଲେ, ମାରବାଡ଼ରୁ ପିତା ମଧ୍ୟ ବୈଦ୍ୟ ଘେନି ଆସିଲେ ।

ବିବାହର ଦଶବର୍ଷ ପର୍ଯ୍ୟନ୍ତ ଭକ୍ତିର ପ୍ରବାହ ବିତିଗଲା । ୧୫୮୦ ସଂବତ୍ ପାଖାପାଖି କୁମାର ଭୋଜରାଜଙ୍କର ଦେହାନ୍ତ ହେଲା । ମହାରାଣା ସାଁଗାଜୀ ମଧ୍ୟ ପରଲୋକ ବାସୀ ହେଲେ । ରାଜଗାଦିରେ ଦ୍ୱିତୀୟ ଦେବର ବିକ୍ରମାଦିତ ଆସୀନ ହେଲେ । ଭଗବତ୍ ପ୍ରେମ କାରଣରୁ ମୀରା ବୈଧବ୍ୟ ଦୁଃଖରେ ଭାଙ୍ଗି ପଡ଼ିଲେ ନାହିଁ । ସାଧୁ ମହାତ୍ମାଙ୍କ ସଂଗ ବୃଦ୍ଧି ପାଇଲା । ମୀରାଙ୍କ ଭକ୍ତି ପ୍ରବାହର ଉତ୍ତରୋତ୍ତର ବୃଦ୍ଧି ପ୍ରାପ୍ତ ହେଲା । ମୀରାଙ୍କୁ ବୁଝାସୁଝା କରିବା ପାଇଁ ଦୁଇଜଣ ସହଚରୀ ଚମ୍ପା, ଚାମେଲୀଙ୍କୁ ନିଯୁକ୍ତି କରାଗଲା । ସେମାନେ କୁଳଧର୍ମ ତଥା ସାଧୁ ସଂଗକୁ ଭଲ ଚକ୍ଷୁରେ ଦେଖୁ ନଥିଲେ । ମୀରାଙ୍କ ଶୁଦ୍ଧ ପ୍ରେମ ଭକ୍ତିକୁ ଦେଖି ସେମାନଙ୍କ ଚିତ୍ତ ମଧ୍ୟ ସେ ଦିଗରେ ଲାଗିଗଲା । ସେମାନେ ନୃତ୍ୟଗୀତ କରିବାରେ ଲାଗିଲେ । ରଣା ବିଷ ପିଆଲା ପଠାଇ ତାହାକୁ ଚରଣାମୃତ କହି ପ୍ରେରଣ କଲେ । ମୀରା ଦୃଢ଼ ବିଶ୍ୱାସର ସହ ପାନ କରିଦେଲା । ସେ ବିଷ ଅମୃତ ହୋଇଗଲା ଭଗବତ୍ କୃପାରେ କ'ଣ ନହୋଇ ପାରେ ! ପାରିବାରିକ ଦ୍ୱେଷ, ସମାଜର ନାନା ଆକ୍ଷେପମୂଳକ ବାକ୍ୟରେ ଅସ୍ଥିର ହୋଇ ତତ୍କାଳୀନ ଭାରତର ବିଖ୍ୟାତ ସନ୍ଥ ତୁଳସୀ ଦାସଙ୍କଠାରୁ କିଛି ମୀମାଂସା ଶୁଣିବାକୁ ଆଶା କରି ତାଙ୍କୁ ପତ୍ର ପ୍ରେରଣ କରିଲେ, ତାହା ଏହିପରି-
"ଗୋପାଳଙ୍କୁ ପ୍ରେମ କରି ଆସିଛି, ମୁଁ ତାଙ୍କ ସହ ନିବିଡ଼ ଭାବେ ସଂଯୁକ୍ତ ହୋଇଯାଇଛି, ସେହି ସଂପୃକ୍ତିକୁ ମୁଁ ଏବେ ଭାଙ୍ଗି ଦେଇ ପାରିବି ନାହିଁ ।"

ଜାକେ ପ୍ରିୟ ନ ରାମ ବୈଦେହୀ
ତଜିୟେ ତାହି କୋଟି ବୈରୀସମ, ଜଦ୍ୟପି ପରମ ସନେହୀ ।।

ତୁଳସୀ ଦାସଙ୍କ ଉତ୍ତର "ଯେ ରାମ-ସୀତାଙ୍କୁ ପୂଜା ନ କରନ୍ତି ତାଙ୍କୁ ଶତ୍ରୁ ତୁଲ୍ୟ ପରିତ୍ୟାଗ କର । ସେ ଯେତେ ତୁମର ଆତ୍ମୀୟ ହୁଅନ୍ତୁନା କାହିଁକି । ପ୍ରହ୍ଲାଦ ତାଙ୍କ ପିତାଙ୍କୁ ତ୍ୟାଗ କରିଥିଲେ, ବିଭୀଷଣ ତାଙ୍କ ଭାଇ ରାବଣକୁ ତ୍ୟାଗ କରିଥିଲେ, ଭରତ ମାତାଙ୍କୁ ତ୍ୟାଗ କରିଥିଲେ, ବଳି ଗୁରୁଙ୍କ ବାକ୍ୟ ଗ୍ରହଣ କରି ନଥିଲେ, ଗୋପୀମାନେ ତାଙ୍କ ସ୍ୱାମୀମାନଙ୍କୁ ତ୍ୟାଗ କରି ପ୍ରଭୁଙ୍କ ପାଖରେ ମିଳିତ ହୋଇଥିଲେ । ସେମାନଙ୍କ ଜୀବନ ପୂର୍ବାପେକ୍ଷା ଆନନ୍ଦିତ ହୋଇଥିଲା । ସନ୍ଥଙ୍କ ଏ ସମ୍ବନ୍ଧୀୟ ମତ ହେଲା- ଈଶ୍ୱରଙ୍କ ସହ ସଂପର୍କ ଏବଂ ଈଶ୍ୱରପ୍ରେମ ଏକମାତ୍ର ସତ୍ୟ, ଅନ୍ୟ ସକଳ ସଂପର୍କ କ୍ଷଣସ୍ଥାୟୀ ଏବଂ ଅବାସ୍ତବ ।"

ଏକଦା ସମ୍ରାଟ ଆକବର ଏବଂ ତାଙ୍କ ଦରବାରୀ ସଂଗୀତଜ୍ଞ ତାନ୍‌ସେନ ଛଦ୍ମବେଶରେ ଚିତ୍ତୋର ଆସି ମୀରାଙ୍କ ଭଜନ ଶ୍ରବଣ କରିବାର ପ୍ରୟାସ କରିଥିଲେ । ଉଭୟ ମନ୍ଦିରକୁ ପ୍ରବେଶ କରି ତାଙ୍କ ଆତ୍ମୀୟତା ଭରା ହୃଦୟସ୍ପର୍ଶୀ ଭଜନ ଶ୍ରବଣ କଲେ । ଆକବର ମୁହ୍ୟମାନ ହୋଇଗଲେ । ଯିବା ପୂର୍ବରୁ ମୀରାଙ୍କ ପବିତ୍ର ପାଦସ୍ପର୍ଶ କରି ସଂଗରେ ଆଣିଥିବା ବହୁମୂଲ୍ୟ ହାରକୁ ବିଗ୍ରହ ସମ୍ମୁଖରେ ପ୍ରସାଦ ଭାବରେ ଥୋଇଦେଲେ । କୌଣସି ପ୍ରକାରେ ଏ ଖବର ରାଣାଙ୍କ ନିକଟରେ ପହଞ୍ଚିଲା ଯେ ଆକବର ଛଦ୍ମବେଶରେ ମନ୍ଦିରରେ ପ୍ରବେଶ କରିଛନ୍ତି । ମୀରା ପାଦ ଛୁଇଁଛନ୍ତି, ଏପରିକି ହାର ଉପହାର ଦେଇଛନ୍ତି । ରାଣା କୋପାନଳ ହୋଇଗଲେ । ମୀରାକୁ କହିଲେ, ତୁ ନଦୀକୁ ଡେଇଁପଡ଼, ମୋତେ ଆଉ ଭବିଷ୍ୟତରେ ତୁ ମୁହଁ ଦେଖାଇବୁ ନାହିଁ, ତୋ'ରି ପାଇଁ ଆମ ପରିବାର ବହୁ ବଦନାମ ହେଲାଣି ।

ମୀରା ପତିଙ୍କ କଥାରେ ନଦୀରେ ଆତ୍ମବିସର୍ଜନ କରିବାକୁ ଚାଲିଲା । ଗୋବିନ୍ଦ, ଗୋପାଳ, ଗିରିଧାରୀ ନାମ ତୁଣ୍ଡରୁ କେବେ ଛୁଟଣ ହେଉନାହିଁ । ଯେତେବେଳେ ମାଟିରୁ ତା' ପାଦ ଦି'ଟା ଡେଇଁବା ଅବସ୍ଥାକୁ ଆସିଗଲା, ପଛରୁ ଗୋଟେ ହାତ ଆସି ତାକୁ କୁଣ୍ଢେଇ ପକେଇଲା । ସେ ବୁଲି ପଡ଼ି ଦେଖିଲା- ସେହି ପ୍ରେମମୟ ଶ୍ରୀକୃଷ୍ଣ ! ମୀରା ସମ୍ମୋହିତ ହୋଇଗଲା, କିଛି କ୍ଷଣ ପରେ ଆଖି ଖୋଲିଲା- ଦେଖିଲା ସ୍ମିତହାସ୍ୟରେ ଶ୍ରୀକୃଷ୍ଣ । ସେ ତାକୁ କହିଲେ- 'ଭକ୍ତ ମୀରା !

ଏବେଠାରୁ ତୁମ ଜୀବନରେ ମରଣଶୀଳ ସ୍ୱାମୀଙ୍କ ସମୟ ସମାପ୍ତ ହୋଇଛି । ଏବେ ତୁମେ ମୁକ୍ତ । ତୁମେ ମୋ(କୃଷ୍ଣ) ପାଇଁ ଆନନ୍ଦିତ ହୋଇ ରୁହ । ଏହି ମୁହୂର୍ତ୍ତରେ ବ୍ରଜଭୂମିର ବୃନ୍ଦାବନକୁ ଯାତ୍ରାକର ଏବଂ ସେଠାରେ ନିବାସ କର ।' ତା'ପରେ କୃଷ୍ଣ ଅନ୍ତର୍ଦ୍ଧାନ ହୋଇଗଲେ ।

ମୀରା ଦୈବ ଆହ୍ୱାନକୁ ତୁରନ୍ତ ପାଳନ କଲେ । ରାଜପୁତନାର ଡହଡହ ବାଲିରେ ଖାଲି ପାଦରେ ଆଗେଇଲେ । ପଥ ମଧ୍ୟରେ ବହୁ ସ୍ଥାନରେ ତାଙ୍କୁ ନର, ନାରୀ, ଶିଶୁ ଭକ୍ତମାନେ ଭବ୍ୟ ଆତିଥ୍ୟ ପ୍ରଦାନ କରିଥିଲେ । ଏବେ ସେ ବୃନ୍ଦାବନରେ ପହଞ୍ଚିଗଲେ ଏବଂ ବଂଶୀଧାରୀଙ୍କୁ ଠାବ କଲେ । ଦୈନିକ ଖାଦ୍ୟ ଭିକ୍ଷା କରୁଥିଲେ ଏବଂ ଗୋବିନ୍ଦ ମନ୍ଦିରରେ ପୂଜାର୍ଚ୍ଚନା କରୁଥିଲେ । ବର୍ତ୍ତମାନ ସୁଦ୍ଧା ତାହା ଭକ୍ତମାନଙ୍କ ଦ୍ୱାରା ପ୍ରସିଦ୍ଧି ଲାଭ କରିଛି ।

ଚିତ୍ତୋରରୁ କେତେକ ଭକ୍ତ ତାଙ୍କୁ ଦେଖିବାକୁ ସେଠାକୁ ଆସିଥିଲେ । ଏପରିକି ରାଣାକୁମ୍ଭା ଭିକାରୀ ବେଶରେ ଆସଥିଲେ । ସେ ଆତ୍ମପ୍ରକାଶ କଲେ ଏବଂ ନିଷ୍ଠୁର ଅପକର୍ମ ପାଇଁ ଅନୁଶୋଚିତ ହେଲେ । ମୀରା ତାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ମୀରା ଜୀବ ଗୋସ୍ୱାମୀଙ୍କୁ ଦର୍ଶନ କରିବାକୁ ଚାହିଁଥିଲେ । ସେ ବୃନ୍ଦାବନରେ ବୈଷ୍ଣବଶିରୋମଣି ଥିଲେ । ସେ ତାଙ୍କୁ ଦର୍ଶନ ଦେବାକୁ ଅସ୍ୱୀକାର କରିଦେଲେ, କାରଣ ତାଙ୍କ ଆଶ୍ରମକୁ ନାରୀମାନଙ୍କ ପ୍ରବେଶ ନଥିଲା । ତହୁଁ ମୀରା କହିଲେ- "ବୃନ୍ଦାବନରେ ପ୍ରତ୍ୟେକ ତ ନାରୀ । କେବଳ ଗିରିଧାରୀ ଗୋପାଳ ହେଉଛନ୍ତି ପୁରୁଷ । ଆଜି ଜାଣିବାକୁ ପାଇଲି ଯେ କୃଷ୍ଣ ବ୍ୟତୀତ ଅନ୍ୟ ଜଣେ ପୁରୁଷ ଅଛନ୍ତି ।"

ଜୀବ ଗୋସ୍ୱାମୀ ସରମୀ ଗଲେ ଏବଂ ମୀରାଙ୍କ ମହାନତା ଉପଲବ୍ଧି କଲେ । ଅବିଳମ୍ବେ ତାଙ୍କୁ ସାକ୍ଷାତ୍ କରି ଯଥା ସମ୍ମାନ ଜ୍ଞାପନ କଲେ । ମୀରାଙ୍କ ଖ୍ୟାତି ଚତୁର୍ଦ୍ଦିଗକୁ ପରିବ୍ୟାପ୍ତ ହୋଇଗଲା । ବହୁ ରାଜକୁମାର, ରାଣୀ ଆସିଛନ୍ତି ଏବଂ ଯାଇଛନ୍ତି । ରାଣୀ, କୁମାରୀ ଏବଂ ମହାରାଣୀ ପୃଥିବୀ ରଂଗମଂଚରେ ଆବିର୍ଭୂତ ହୋଇଛନ୍ତି ଓ ତିରୋହିତ ହୋଇଛନ୍ତି । କାହିଁକି ଚିତ୍ତୋରର ଏକ ମାତ୍ର ରାଣୀ ସ୍ମରଣୀୟ ? ଏହା ତାଙ୍କର ସୌନ୍ଦର୍ଯ୍ୟ କିମ୍ବା ତାଙ୍କ କାବ୍ୟିକ ପ୍ରତିଭା ? ନାଁ ଏହା ତାଙ୍କର ତପସ୍ୟା, କୃଷ୍ଣଙ୍କ ପ୍ରତି ଏକାଗ୍ର ଭକ୍ତିନିଷ୍ଠା ଏବଂ ତାଙ୍କ ଈଶ୍ୱରାନୁଭୂତି

ନିମିତ୍ତ । ସେ ଭଗବାନ କୃଷ୍ଣଙ୍କ ସାମ୍ନା ସାମ୍ନି ହୋଇଥିଲେ, ତାଙ୍କ ସହ ଆଳାପ କରିଥିଲେ ଏବଂ ଏକତ୍ର ଭୋଜନ କରିଥିଲେ, କୃଷ୍ଣ ପ୍ରେମରସରେ ଆପ୍ଲୁତ ହୋଇଥିଲେ । ହୃଦୟ କନ୍ଦର ଆଭ୍ୟନ୍ତର ପ୍ରଦେଶରୁ ସେ ସଂଗୀତ ଗାନ କରୁଥିଲେ ଯାହା ଥିଲା ତାଙ୍କ ଆତ୍ମାର ଝଙ୍କାର ।

ସେ ପରମ ଦିବ୍ୟଦୃଷ୍ଟି ପ୍ରାପ୍ତ ହୋଇଥିଲେ । ସେ ବୃକ୍ଷ, ଲତା, ତରୁ, ତୃଣ, କୁସୁମ, ପାଷାଣରେ, ପଶୁ, ପକ୍ଷୀ ଓ ସମସ୍ତ ଜନ୍ତୁଙ୍କଠାରେ କୃଷ୍ଣ ଦର୍ଶନ କରୁଥିଲେ । ଯେ ଯାବତ କୃଷ୍ଣଙ୍କ ନାମ ଧରାପୃଷ୍ଠରେ ଥିବ, ମୀରାଙ୍କ ନାମ ମଧ୍ୟ ତାଙ୍କ ସହିତ ରହିଥିବ ।

ମୀରା ଜଣେ ସାଧ୍ୱୀ, ଦାର୍ଶନିକ, କବି ଏବଂ ସନ୍ନ୍ୟାସିନୀ । ତାଙ୍କ ସହିତ ଅନ୍ୟ କାହାରିକୁ ତୁଳନା କରିବା ଅତ୍ୟନ୍ତ ଦୁଃସାଧ୍ୟ ବ୍ୟାପାର । ତାଙ୍କ ଜୀବନ ଐକାନ୍ତିକ ମାଧୁର୍ଯ୍ୟମୟ ଏବଂ ଅସାମାନ୍ୟ ସୌନ୍ଦର୍ଯ୍ୟପୂର୍ଣ୍ଣ ତଥା ଅତୁଳନୀୟ । ସେ ଜଣେ ରାଜକୁମାରୀ, ରାଜରାଣୀ ସୁତରାଂ ପ୍ରାଚୁର୍ଯ୍ୟ, ଆନନ୍ଦ, ବିଳାସ ସ୍ୱାଭାବିକ ଭାବେ ତାଙ୍କ ହସ୍ତଗତ ହୋଇଥିଲା, କିନ୍ତୁ ସେ ଦାରିଦ୍ର୍ୟ, ତପସ୍ୟା ଏବଂ ଆବେଗକୁ ବରଣ କରି ନେଇଥିଲେ । ଯଦିଓ ସେ ଜଣେ ସୁଶ୍ରୀ ଯୁବତୀ, ସେ କଠିନ ଆଧ୍ୟାତ୍ମିକ ପଥରେ ବିପଦପୂର୍ଣ୍ଣ ଯାତ୍ରା ଆରମ୍ଭ କରି ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହୋଇ ଅସାମାନ୍ୟ ସାହସିକତାର ପରିଚୟ ଦେଇଥିଲେ । ତାଙ୍କ ଇଚ୍ଛା ଶକ୍ତିର ତୁଳନା କାହିଁ ? ମୀରାଙ୍କ ସଂଗୀତ ଶ୍ରୋତାଙ୍କଠାରେ ସ୍ଥିର ବିଶ୍ୱାସ ଏବଂ ଈଶ୍ୱର ପ୍ରେମର ଧାରାପ୍ରବାହିତ କରାଇଥାଏ । ସେମାନେ ଉତ୍ସାହିତ ତଥା ସେହି ଧାରାରେ ଆଗ୍ରହୀ ହୋଇଥାନ୍ତି । ସେମାନଙ୍କ ହୃଦୟରେ ଈଶ୍ୱରୀୟ ଭାବ କଂପନ ସହ ହୃଦୟ ଦ୍ରବୀଭୂତ ହେଉଥିବା ଲକ୍ଷ୍ୟ କରାଯାଏ ।

ମୀରା ସାଧାରଣ ଲୋକଙ୍କ ସମାଲୋଚନାକୁ ଖାତିର କରୁ ନଥିଲେ । ସେ ମାର୍ଗରେ ମଧ୍ୟ ନୃତ୍ୟରତ ହେଉଥିଲେ । ସେ ଉପଚାର ପୂଜାରେ ବିଶ୍ୱାସୀ ନୁହନ୍ତି । ତାଙ୍କ କୃଷ୍ଣପ୍ରେମ ସ୍ୱେଚ୍ଛାକୃତ ଏବଂ ତାଙ୍କ ବାଲ୍ୟକାଳରୁ ତାଙ୍କ ପ୍ରେମ ରଣାଣିତ । କୃଷ୍ଣ ତାଙ୍କର ସ୍ୱାମୀ, ପିତା, ମାତା, ବଂଧୁ, ଜ୍ଞାତି ଏବଂ ଗୁରୁ । ସେ ତାଙ୍କ ପୂର୍ବଜନ୍ମରେ ପ୍ରାଥମିକ ପୂଜା ପର୍ବ ସମାପ୍ତି କରି ଦେଇଥିଲେ ।

ମୀରା ନିର୍ଭୟ, ଆନନ୍ଦିତ, ମେଳାପି, ତେଜସ୍ୱିନୀ ଏବଂ ବିଦୁଷୀ । ଗିରିଧର ଗୋପାଳଙ୍କ ନାମ ଅତୁଟ ଭାବେ ତାଙ୍କ କଣ୍ଠରେ ଲାଗି ରହିଥିଲା । ସ୍ୱପ୍ନରେ ମଧ୍ୟ ସେ କୃଷ୍ଣଙ୍କୁ ଦେଖୁଥିଲେ । ଆଧ୍ୟାତ୍ମିକ ଚେତନା ତାଙ୍କ ଅନ୍ତସ୍ଥଳରେ ପ୍ରବିଷ୍ଟ ହୋଇଥିବାରୁ ସେ ସର୍ବସାଧାରଣ ସ୍ଥାନରେ ମଧ୍ୟ ନୃତ୍ୟ କରି ପାରୁଥିଲେ । ତାଙ୍କର

ଲିଂଗଗତ ଜ୍ଞାନ ତିରୋହିତ ହୋଇଥିଲା । ସେ ମହାଭାବକୁ ବାଣୀ ପ୍ରକାଶ କରିବ ବା କିପରି ? ପ୍ରେମ ସାଗରରେ ସେ ସଦା ନିମଜ୍ଜିତ ହୋଇ ରହୁଥିଲେ । ଶରୀର ଜ୍ଞାନ ତାଙ୍କର ରହୁ ନଥିଲା । ସେ ମହାଭାବର ଗଭୀରତାକୁ କିଏ ବା କଳିବ ? ତାଙ୍କ ବିସ୍ମୟକର ହୃଦୟର ଶକ୍ତିକୁ କିଏବା ସ୍ଥିର କରି ପାରିବ ?

ମୀରାଙ୍କ ଭକ୍ତିର ମହକ ବହୁ ଦୂରରୁ ପରିବ୍ୟାପ୍ତ ହୋଇଯାଇଥିଲା । ଯେଉଁମାନେ ତାଙ୍କ ସମ୍ପର୍କରେ ଆସୁଥିଲେ, ତାଙ୍କର ପ୍ରବଳ ପ୍ରେମାବେଗରେ ଭାସମାନ ହେଉଥିଲେ । ତାଙ୍କ ହୃଦୟ ପୂଜାର ମନ୍ଦିର ଏବଂ ମୁଖମଣ୍ଡଳ ସ୍ୱର୍ଗୀୟ ପ୍ରେମର ଢଳଢଳ କମଳ । ତାଙ୍କ ଅଭିବ୍ୟକ୍ତିରେ ନିର୍ମମତ୍ୱ, ବାଣୀରେ ପ୍ରେମ, ବ୍ୟବହାରରେ ଆନନ୍ଦ ଏବଂ ପ୍ରିୟ ସଂଗୀତରେ ଥିବା ଅକଳ୍ପନୀୟ ଶକ୍ତି ।

ମୀରାଙ୍କ ରହସ୍ୟମୟ ସଂଗୀତରେ ସଂସାର କ୍ଷତାକ୍ତ ହୃଦୟ ପାଇଁ ଉପଯୁକ୍ତ ଔଷଧୀ, ତାଙ୍କ ମଧୁର ସାଂଗୀତିକ ମାଧୁର୍ଯ୍ୟ ଶ୍ରୋତା ପ୍ରାଣରେ ଗଭୀର ପ୍ରଭାବ ବିସ୍ତାର କରି, ଅସାମଂଯସ୍ୟ ଦୂର କରି ମୁଗ୍ଧ ସ୍ୱପ୍ନିଳ ରାଜ୍ୟକୁ ଘେନିଯାଇଥିଲା । ତାଙ୍କ ସଂଗୀତର ମାଧୁର୍ଯ୍ୟ ଶକ୍ତିର ପ୍ରଭାବ ଆଧ୍ୟାତ୍ମିକ ଏବଂ ନାସ୍ତିକମାନଙ୍କୁ ମଧ ଚହଲାଇ ଦେଉଥିଲା ।

ବୃନ୍ଦାବନରୁ ମୀରା ଦ୍ୱାରିକା ଯାତ୍ରା କଲେ । ସେଠାରେ ରଣଛୋଡ଼ ମନ୍ଦିରସ୍ଥ କୃଷ୍ଣ ବିଗ୍ରହରେ ବିଲୀନ ହୋଇଗଲେ ।

ନରସୀଜୀକା ମାୟରା, ଗୀତ ଗୋବିନ୍ଦ ଟୀକା, ରାଗ ଗୋବିନ୍ଦ, ରାଗ ସୋରଠ ଏହି ଚାରୋଟି ଗ୍ରନ୍ଥ ମୀରାଙ୍କ ରଚିତ ବୋଲି କୁହାଯାଏ । ମୀରାଙ୍କ ରଚିତ ଏକ ମଧୁର ପଦ ଦେଖନ୍ତୁ-

ବସୌ ମେରେ ନୈନମେଁ ନଁଦଲାଲ ।<br>
ମୋହନି ମୂରତି, ସାଁବରି ସୂରତି, ନୈନା ବନେ ରସାଳ ॥<br>
ମୋର-ମୁକୁଟ ମକରାକୃତ କୁଣ୍ଡଳ, ଅରୁନ ତିଳକ ଦିୟେଭାଲ'<br>
ଅଧର ସୁଧାରସ- ମୁରଲୀ ରାଜତି, ଉର ବୈଜଂତୀ ମାଳ ॥<br>
ଛୁଦ୍ରଘଣ୍ଟିକା କଟୀତଟ ଶୋଭତି ନୂପୁର ଶବ୍ଦ ରସାଳ'<br>
ମୀରା ପ୍ରଭୁ ସଂତତ ସୁଖଦାଈ ଭଗତ ବଛଳ ଗୋପାଳ ॥



# ମଧୁସୂଦନ ସରସ୍ୱତୀ

ଧ୍ୟାନାଭ୍ୟାସ ବଶୀକୃତେନ ମନସା ତନ୍ନିର୍ଗୁଣଂ ନିଷ୍କ୍ରିୟଂ
ଜ୍ୟୋତିଃ କିଂଚିନ ଯୋଗିନୋ ଯଦିପରଂ ପଶ୍ୟନ୍ତି ପଶ୍ୟନ୍ତୁ ତେ ।
ଅସ୍ମାକଂ ତୁ ତଦେବ ଲୋଚନ ଚମତ୍କାରାୟ ଭୂୟାଚ୍ଚିରଂ
କାଳନ୍ଦୀ ପୁଳିନୋଦରେ କିମପି ଯନ୍ନୀଳିଂ ମହୋ ଧାବତି”-

ବଂଶୀ ବିଭୂଷିତ କରାନ୍ନବ ନୀରଦାଭାତ୍,
ପୀତାମ୍ବରା ଦରୁଣ ବିମ୍ବଫଂଳାଧରୋଷ୍ଠାତ୍ ।
ପୂର୍ଣ୍ଣେନ୍ଦୁ ସୁନ୍ଦର ମୁଖାଦରବିନ୍ଦନେତ୍ରାତ୍,
କୃଷ୍ଣାତ୍ପରଂ କିମପି ତତ୍ତ୍ୱମହଂ ନ ଜାନେ ।
(ମଧୁସୂଦନ, ଗୀତାଟୀକା- ତେର ଅଧ୍ୟାୟ ପ୍ରାରମ୍ଭରେ)

ଧ୍ୟାନର ଅଭ୍ୟାସରେ ଯାହାର ଚିତ୍ତ ବଶ ହୋଇଯାଇଛି, ସେ ଯୋଗୀ ଯଦି ସେ ନିର୍ଗୁଣ ଏବଂ ସକ୍ରିୟ ପରମ ଜ୍ୟୋତିକୁ ଦେଖିଥାନ୍ତି ତ ଦେଖନ୍ତୁ । ଆମର ନେତ୍ରକୁ ତ ଯମୁନାପୁଳିନ ବିହାରୀ ନୀଳକାନ୍ତିଯୁକ୍ତ ଶ୍ୟାମ ହିଁ ଚିରକାଳ ପର୍ଯ୍ୟନ୍ତ ସୁଖ ପହଞ୍ଚାଇଥାନ୍ତୁ ।

ଯାହାଙ୍କ ହାତରେ ବଂଶୀ ସୁଶୋଭିତ, ଯେ ନବ-ନୀଳ-ନୀରଦ ସୁନ୍ଦର, ପୀତାମ୍ବରଧାରୀ, ଯାହାଙ୍କ ଓଠ ବିମ୍ବଫଳତୁଲ୍ୟ ଲାଲ, ଯାହାଙ୍କ ମୁଖମଣ୍ଡଳ ପୂର୍ଣ୍ଣଚନ୍ଦ୍ର ସଦୃଶ ଏବଂ ଯାହାଙ୍କ ନେତ୍ର କମଳ ତୁଲ୍ୟ, ସେହି ଶ୍ରୀକୃଷ୍ଣଙ୍କ ପରେ ତ କୌଣସି ତତ୍ତ୍ୱ ମୁଁ ଏ ଯାବତ ଜାଣିନାହିଁ ।

ଖ୍ରୀ.ଅ. ଷୋଡ଼ଶ ଶତାବ୍ଦୀ ପାଖାପାଖି ବଂଗଳାର ଫରୀଦ୍‌ପୁର ଜିଲ୍ଲାର କୋଲଟାପାଡ଼ା ଗ୍ରାମରେ ପ୍ରେମୋଦନ ପୁରନ୍ଦର ନାମକ ଜଣେ ବିଦ୍ୱାନ୍ ବ୍ରାହ୍ମଣ ରହୁଥିଲେ । ତାଙ୍କ ତୃତୀୟ ପୁତ୍ର କମଳ ନୟନଜୀ । ସେ ନ୍ୟାୟର ଅଗାଧ ବିଦ୍ୱାନ୍ ଗଦାଧର ଭଟ୍ଟଙ୍କ ପାଖରେ, ନବଦ୍ୱୀପରେ ହରିରାମ ତର୍କବାଗୀଶଙ୍କଠାରୁ ନ୍ୟାୟ ଶାସ୍ତ୍ରର ଅଧ୍ୟୟନ କରିଥିଲେ । କାଶୀ ଆସି ଦଣ୍ଡୀସ୍ୱାମୀ ଶ୍ରୀ ବିଶ୍ୱେଶ୍ୱରାଶ୍ରମଜୀଙ୍କ ଠାରୁ ବେଦାନ୍ତ ଅଧ୍ୟୟନ କରିଥିଲେ । ଏହିଠାରୁ ହିଁ ସନ୍ନ୍ୟାସ ଗ୍ରହଣ କଲେ । ସନ୍ନ୍ୟାସରେ ଏହାଙ୍କ ନାମ ମଧୁସୂଦନ ସରସ୍ୱତୀ ହୋଇଥିଲା ।

ସ୍ୱାମୀ ମଧୁସୂଦନ ସରସ୍ୱତୀଙ୍କର ଶାସ୍ତ୍ରାର୍ଥରେ ସର୍ବଦା ଚିନ୍ତା ରହିଥିଲା । କାଶୀର ବଡ଼ବଡ଼ ବିଦ୍ୱାନ୍‌ଙ୍କୁ ସେ ନିଜ ପ୍ରତିଭା ବଳରେ ହରାଇ ଦେଇଥିଲେ । କିନ୍ତୁ ଯେବେ ଶ୍ରୀକୃଷ୍ଣଙ୍କୁ ଆପଣେଇବା ପାଇଁ ଚାହିଁଲେ, ତେବେ ମାୟାର ଏହି ଭ୍ରମ ପ୍ରଲୋଭନ ଜାଲ କେତେ ବା ଆଉ ରହି ପାରିବ ?

ଦିନେ ଜଣେ ବୃଦ୍ଧ ଦିଗମ୍ବର ପରମହଂସ ତାଙ୍କୁ କହିଲେ- ସ୍ୱାମୀଜୀ ! ସିଦ୍ଧାନ୍ତ କଥା କହିବା ସମୟରେ ତ ଆପଣ ନିଜକୁ ଅସଂଗ, ନିର୍ଲିପ୍ତ, ବ୍ରହ୍ମ କହିଥାନ୍ତି । କିନ୍ତୁ ସତ କୁହନ୍ତୁ କି ବିଦ୍ୱାନଙ୍କୁ ଜିତିବା ପରେ ଆପଣଙ୍କ ମନରେ ଚିନ୍ତା ହୁଏ ନାହିଁ ? ଯଦି ଆପଣ ପରାଜିତ ହୋଇଯାଆନ୍ତି, ତେବେ କ'ଣ ଆପଣ ପୂର୍ବ ଭଳି ପ୍ରସନ୍ନ ରହିପାରନ୍ତି ? ଯଦି ଆପଣଙ୍କ ଅହଂକାର ହୁଏ କି ତ ବ୍ରାହ୍ମଣକୁ ଦୁଃଖୀ କରିବା ଦ୍ୱାରା, ଅପମାନିତ କରିବା ଦ୍ୱାରା ପାପ ମଧ୍ୟ ହୋଇଥାଏ ।' ଅନ୍ୟ କେହି ହୋଇଥିଲେ ମଧୁସୂଦନ ତାକୁ ଭୁଲାଇ ଦେଇଥାନ୍ତେ, କିନ୍ତୁ ସେହି ସନ୍ଥଙ୍କ ବଚନରେ ସେ ଲଜ୍ଜିତ ହୋଇଗଲେ । ତାଙ୍କ ମୁଖ ମଳିନ ହୋଇଗଲା । ପରମହଂସ କହିଲେ- ଭାଇ ! ପୁସ୍ତକର ଏହି ବ୍ୟର୍ଥ ପାଣ୍ଡିତ୍ୟରେ କିଛି ହେଲେ ନାହିଁ । ଗ୍ରନ୍ଥର ବିଦ୍ୟା ଏବଂ ବୁଦ୍ଧି ବଳରେ କେହି ହେଲେ ଏହି ମାୟାର ଦୁସ୍ତର ଜାଲକୁ ପାରି କରିପାରିବ ନାହିଁ । ପ୍ରତିଷ୍ଠା ତ ଦେହର ହୋଇଥାଏ ଏବଂ ଦେହ ନଶ୍ୱର । ଯଶ

ତଥା ମାନ ବଡ଼ିମା ଇଚ୍ଛା ମଧ୍ୟ ଏକ ପ୍ରକାର ଶରୀର ମୋହ ହୋଇଥାଏ । ତୁମେ ଶ୍ରୀକୃଷ୍ଣଙ୍କର ଶରଣ ନିଅ । ଉପାସନା କରି ହୃଦୟରୁ ଏହି ଗର୍ବର ମଳକୁ ଦୂର କରିଦିଅ । ସଚ୍ଚା ଆନନ୍ଦ ତ ତୁମକୁ ଆନନ୍ଦକନ୍ଦ ଶ୍ରୀ ବୃନ୍ଦାବନ ଚନ୍ଦ୍ରଙ୍କର ଚରଣରେ ହିଁ ମିଳିପାରିବ ।

ସ୍ୱାମୀଜୀ ସେହି ମହାତ୍ମାଙ୍କ ପାଦ ଧରି ପକାଇଲେ । ଦୟାଳୁ ସନ୍ଥ ଶ୍ରୀକୃଷ୍ଣ ମନ୍ତ୍ର ଦେଇ ଉପାସନା ବିଧି ସୂଚାଇଲେ । ମଧୁସୂଦନ ତିନିମାସ ପର୍ଯ୍ୟନ୍ତ ଉପାସନା କଲେ । ଏହି ସମୟ ମଧ୍ୟରେ କିଛି ଲାଭ ହେଲା ନାହିଁ । ତେବେ କାଶୀ ଛାଡ଼ି ସେ ଭ୍ରମଣରେ ବାହାରିଲେ । କପିଳାଧାରା ନିକଟରେ ସେହି ସଂଥ ପୁନଃ ସାକ୍ଷାତ୍ ହୋଇଗଲେ । ସେ କହିଲେ ସ୍ୱାମୀଜୀ ! ଲୋକ ତ ଭଗବତ୍ ପ୍ରାପ୍ତି ପାଇଁ ଅନେକ ଜନ୍ମ ପର୍ଯ୍ୟନ୍ତ ସାଧନ, ଭଜନ, ତପ କରିଥାନ୍ତି । ପୁନଶ୍ଚ ବଡ଼ କଷ୍ଟରେ ତାଙ୍କୁ ଭଗବତ୍ ଦର୍ଶନ ହୋଇଥାଏ । ଆପଣ ତିନିମାସରେ ବିଚଳିତ ହୋଇଗଲେ । ଏବେ ସ୍ୱାମୀଜୀ ନିଜ ଭୁଲ ଜାଣି ପାରିଲେ । ସେ ଗୁରୁଦେବଙ୍କ ଚରଣ ଧରି ପଡ଼ିଗଲେ । କାଶୀ ଫେରିଆସି ପୁନଃ ଭଜନରେ ଲାଗିଗଲେ । ପ୍ରସନ୍ନ ହୋଇ ଶ୍ୟାମସୁନ୍ଦର ତାଙ୍କୁ ଦର୍ଶନ ଦେଲେ ।

ଅଦ୍ୱୈତ ସିଦ୍ଧି, ସିଦ୍ଧାନ୍ତ ବିନ୍ଦୁ, ବେଦାନ୍ତ କଳ୍ପ ଲତିକା, ଅଦ୍ୱୈତ ରତ୍ନ ରକ୍ଷଣ, ପ୍ରସ୍ଥାନ ଭେଦ, ଭକ୍ତି ରସାୟନ, ଗୀତାର ଗୂଢ଼ାର୍ଥ ଦୀପିକା ନାମକ ବ୍ୟାଖ୍ୟା ଏବଂ ଶ୍ରୀମଦ୍ ଭାଗବତର ବ୍ୟାଖ୍ୟା ଲେଖି ଅଛନ୍ତି । ଅଦ୍ୱେତ ଜ୍ଞାନନିଷ୍ଠ, ଆତ୍ମତତ୍ତ୍ୱ ଜ୍ଞାନୀ ଶ୍ରୀକୃଷ୍ଣଙ୍କ ପ୍ରୀତିରେ ବଂଧା ହୋଇଥିଲେ ।

ଅଦ୍ୱୈତ ବୀଥି ପଥିକୈ ରୂପାସ୍ୟାଃ ସ୍ୱାରାଜ୍ୟ ସିଂହାସନ ଲବ୍ଧ ଦୀକ୍ଷାଃ ।
ଶଠେନ କେନାପି ବୟଂ ହଠେନ ଦାସୀକୃତା ଗୋପବଧୂ ବିଟେନ ॥



# ଗାୟକ ଭକ୍ତ ତ୍ୟାଗରାଜ

ତ୍ୟାଗରାଜ ଦକ୍ଷିଣ ଭାରତର ସବୁଠାରୁ ମହାନ୍ ଏବଂ ଲୋକପ୍ରିୟ ଗାୟକ ଥିଲେ । ଉତ୍ତର ଭାରତରେ ଯେଉଁ ସ୍ଥାନ ସୁର୍, ତୁଳସୀ ଏବଂ ମୀରାଙ୍କୁ ପ୍ରାପ୍ତ ହୋଇଛି, ସେହି ସ୍ଥାନ ଦକ୍ଷିଣ ଭାରତରେ ତ୍ୟାଗରାଜଙ୍କୁ ହିଁ ପ୍ରାପ୍ତ ହୋଇଛି । ସହସ୍ର ସଂଖ୍ୟାରେ ସେ ଗୀତ ରଚନା କରିଛନ୍ତି । ତହିଁରେ ଈଶ୍ୱର ପ୍ରେମର ସ୍ୱର୍ଗୀୟ ସଂଗୀତରେ ପରିପୂର୍ଣ୍ଣ ହୋଇଛି । ଗୀତ ରଚନା ତାଙ୍କର କେବଳ ଉଦ୍ଦେଶ୍ୟ ନଥିଲା, ସଂଗୀତ ବିଦ୍ୟାର ଉତ୍‌ଥାନ ପାଇଁ ସେ ସତତ ଚେଷ୍ଟିତ ଥିଲେ । ରାଗ ଏବଂ ଲୟର ସେ ମର୍ମଜ୍ଞ ଆଚାର୍ଯ୍ୟ ଥିଲେ । ତାଙ୍କ ପ୍ରାଥମିକ ସଂଗୀତରେ ଶୈଳୀ ଏବଂ ଶବ୍ଦର ପ୍ରଧାନତା ରହିଥିଲା । ଯାହା କବିତାର ବାହ୍ୟ ଅଂଗ ମାତ୍ର । ତା'ର ଅନ୍ତରଂଗତା ତ ପବିତ୍ର ରାଗ ଏବଂ ଲୟ । ଏ ସବୁର ସମାବେଶ କରି ସଂଗୀତ ବିଦ୍ୟାୟ ଅପୂର୍ବ ସୌନ୍ଦର୍ଯ୍ୟ ଏବଂ ଶୋଭା ପ୍ରଦାନ କରିଥିଲେ । ଫଳତଃ ତାଙ୍କୁ 'ସଂଗୀତ ଗୁରୁ' ଉପାଧି ପ୍ରାପ୍ତ ହୋଇଥିଲା ।

ଏପରି ଦେଖାଯାଇ ଥାଏ କି- କୌଣସି ମାନବୀୟ ବିଦ୍ୟା ବା କଳାର ଉତ୍‌ଥାନ ପ୍ରାୟଃ ଭକ୍ତି ବା ଧର୍ମର ଆଶ୍ରୟ ନେଇ ହିଁ ହୋଇଥାଏ । ଏହାର କାରଣ ଏହିକି ଆଧାତ୍ମ ବା ଧର୍ମର ସଚ୍ଚା ଜାଗୃତି ହେବାପରେ ମାନବ ମନ ଏବଂ ବୁଦ୍ଧି ଅତ୍ୟନ୍ତ ବିଶୁଦ୍ଧ ହୋଇଯାଇଥାଏ ଏବଂ ସେହି ଅବସ୍ଥାରେ କରାଯାଇଥିବା ରଚନା ଶୁଦ୍ଧ ଏବଂ ସ୍ୱଚ୍ଛ ହୋଇଥାଏ । ଜୀବନର ସ୍ଥାୟୀ ସୌନ୍ଦର୍ଯ୍ୟ ଦିଗରେ, ଯହିଁରେ ବ୍ୟକ୍ତିଗତ ଲାଭାଲାଭର ବିଚାର ରହି ନଥାଏ, ସମଗ୍ର ଚିତ୍ତବୃତ୍ତି ଉନ୍ମୁଖ ହୋଇଯାଏ । ସେହି ଚିତ୍ତବୃତ୍ତି ସଂଗୀତଗୁରୁ ସଂଥ ତ୍ୟାଗ ରାଜାଙ୍କର ହୋଇଥିଲା ।

ସମଗ୍ର ସଂସାରର ଯାବତୀୟ ପ୍ରଲୋଭନରୁ ଚିତ୍ତକୁ ନିବୃତ୍ତ କରି ପରମାତ୍ମାଙ୍କଠାରେ ସଂଲଗ୍ନ କରିଥାନ୍ତି । ତାଙ୍କର ଅନୁପମ ତ୍ୟାଗର କଥା ପାଇଁ ତାଙ୍କୁ ତ୍ୟାଗରାଜ କୁହାଯାଏ । ଦକ୍ଷିଣରେ ଏବେ ମଧ୍ୟ ସେ ପ୍ରସିଦ୍ଧ । କୁହାଯାଏ

ଥରେ ତାଂଜୋରର ମହାରାଜା ଦୂତ ପଠାଇ ତାଙ୍କୁ ରାଜଦରବାରକୁ ନିମନ୍ତଣ କଲେ । ସେ ନିଜର ଗୁଣ ଗାଥା ଥିବା ଗୀତ ଶୁଣିବାକୁ ଇଚ୍ଛା ପ୍ରକଟ କଲେ । କିନ୍ତୁ ତ୍ୟାଗରାଜ ଏହାକୁ ଅସ୍ୱୀକାର କରିଦେଲେ । ସେ ରାଜଦୂତକୁ କହିଲେ, "ଭୂମି ବା ସ୍ୱର୍ଗାଦି ଦ୍ରବ୍ୟର ଧିକ୍କାର । ଯଦି ମୁଁ ତାହାକୁ ମୂଲ୍ୟବାନ ବୁଝିଥାନ୍ତି ତେବେ ଶ୍ରୀରାମଙ୍କର ସୁନାର ମୂର୍ତ୍ତି ମୁଁ ବିକ୍ରୟ କରି ଧନୀ ହୋଇଥାନ୍ତି । ଦୁନିଆର ସମସ୍ତ ସୁଖଭୋଗ ମୋ କର ତଳ ଗତ ହିଁ ହୋଇଥାନ୍ତା । ମୋ' ମନ ଉପରେ ଦିଶୁଥିବା ସୁନେଲୀ ରଂଗରେ ଲାଗିଯାଏ ନାହିଁ । ସେ ତ ଭିତର ସୌନ୍ଦର୍ଯ୍ୟରେ, ଭିତରର ଦିବ୍ୟ ସ୍ୱରରେ ଲାଖିଥାଏ । ସେହି ପ୍ରେମମୟ ରାମଙ୍କ ମୋହରେ ଫସିଯାଇ ମୁଁ ତାଙ୍କ ସୁନାର ମୂର୍ତ୍ତି ବିକ୍ରୟ କରିନାହିଁ । ତାଙ୍କ ବ୍ୟତୀତ ମୁଁ କୌଣସି ଧନାଭିମାନୀ ରାଜାଙ୍କୁ ପ୍ରସନ୍ନ କରେ ନାହିଁ ।" ଏହା ଶୁଣି ଦୂତ ନିଜ ବାଟରେ ଫେରିଗଲା ।

ରାମଙ୍କ ସୁନାର ପ୍ରତିମା ତ୍ୟାଗରାଜଙ୍କ ଘରେ ବାଣ୍ଟକୁଣ୍ଟରେ ମିଳିଥିଲା । ସେ ପ୍ରସଂଗ ଏହିପରି । ଯେବେ ତ୍ୟାଗରାଜଙ୍କ ଧାର୍ମିକ ପିତାଙ୍କ ଶରୀରାନ୍ତ ହୋଇଗଲା, ତେବେ ସ୍ଥାବର ଅସ୍ଥାବର ସଂପତ୍ତି ଦୁଇ ଭାଇଙ୍କ ମଧ୍ୟରେ ଭାଗ ହୋଇଗଲେ । ତ୍ୟାଗରାଜଙ୍କ ବଡ଼ଭାଇ ଏତେ ମୂର୍ଖ ଏବଂ ଝଗଡ଼ା ଖୋର ଥିଲେ; ଅପର ପକ୍ଷେ ସେ ଶାନ୍ତ ଏବଂ ପ୍ରତିଭାଶାଳୀ ଥିଲେ । ଭାଗବାଣ୍ଟରେ ଶ୍ରୀରାମ (ଯେ ତ୍ୟାଗ ରାଜଙ୍କର ଇଷ୍ଟଦେବତା)ଙ୍କ ସୁନାର ମୂର୍ତ୍ତି ତ୍ୟାଗରାଜଙ୍କୁ ମିଳିଲା, କିନ୍ତୁ ଦ୍ରୋହ ବଶ ହୋଇ ବଡ଼ଭାଇ ଦିନେ ତାକୁ ନେଇ କାବେରୀ ନଦୀରେ ଫୋପାଡ଼ି ଦେଲା । ଏଥିରେ ତ୍ୟାଗରାଜଙ୍କୁ ମାର୍ମିକ କଷ୍ଟ ହେଲା । ବନ୍ୟା ସମୟରେ ମଧ୍ୟ ମୂର୍ତ୍ତିକୁ ଖୋଜିବା ପାଇଁ କାବେରୀକୁ ଡେଇଁ ପଡ଼ିଲେ । ତାଙ୍କ ଜୀବନର ଚିନ୍ତା ନ ଥିଲା, ଚିନ୍ତା ତ ଥିଲା କେବଳ ମୂର୍ତ୍ତିର । ଶେଷରେ ପ୍ରଭୁଙ୍କ ଅପାର କୃପାରୁ ତାହା ପ୍ରାପ୍ତ ହେଲା । ସେ ତାଙ୍କୁ ଇଷ୍ଟଦେବ ସ୍ୱୀକାର କରି ପ୍ରାଣପଣେ ତାଙ୍କ ପୂଜାର୍ଚ୍ଚନା କରୁଥାନ୍ତି ।

ତାଙ୍କ ସ୍ତୁତିରେ, ତାଙ୍କ ପ୍ରେମରେ ବିହ୍ୱଳ ହୋଇ ସେ ଗୀତ ରଚନା କରୁଥାନ୍ତି । ସମଗ୍ର ସଂସାର ମଧ୍ୟ ଭୁଲି ଯାଇଥାନ୍ତି । ଏପରି ଅନନ୍ୟ ପ୍ରେମ ହେବା କାରଣରୁ ତାଙ୍କୁ ଭଗବାନ୍‌ଙ୍କ ଦର୍ଶନ ମିଳିଥିଲା ଏବଂ ସେ ଭଗବାନଙ୍କ ସହ ବାର୍ତ୍ତାଳାପ କରୁଥିଲେ । ଯାହା କିଛି ହୃଦୟରେ ଉତ୍ପନ୍ନ ହୁଏ ତାହା ବାହାରକୁ ଚାଲିଆସେ । ଏହିପରି ଦିବ୍ୟ ସାକ୍ଷାତ୍କାର ତାଙ୍କ ଗାନରେ ସ୍ପଷ୍ଟ ହୋଇଥାଏ ।

କୌଣସି ପ୍ରକାର ସଂକୀର୍ଣ୍ଣତା ବା ଦେଖେଇ ହେବା ପାଇଁ ତାଙ୍କ ମନରେ ସ୍ଥାନ ହିଁ ନଥିଲା । ଭଗବାନଙ୍କ ଅମୃତ ସିନ୍ଧୁରେ ସେ ସର୍ବଦା ବୁଡ଼ ମାରୁଥାନ୍ତି । ଶ୍ରୀମଦ୍ ଭାଗବତ୍, ମହାଭାରତ, ଶ୍ରୀରାମାୟଣ ଆଦି ଗ୍ରନ୍ଥ ଅଧ୍ୟୟନ କରିଥିଲେ । ଅନ୍ୟ ଦେବତାଙ୍କ ସ୍ତୁତି ମଧ୍ୟ ସେ ଗାନ କରୁଥିଲେ ।

'ଯାହାକୁ ମୁଁ ପ୍ରେମକରେ (ଭଲପାଏ), ତା'ର ସର୍ବସ୍ୱ ହରଣ କରି ନେଇଥାଏ' ଶ୍ରୀକୃଷ୍ଣଙ୍କର ଏହି ବାକ୍ୟ ଉପରେ ସେ ମୁଗ୍ଧ ହୋଇ ଯାଇଥିଲେ । ବୈରାଗ୍ୟର ବହ୍ନି ତାଙ୍କ ହୃଦୟର ସକଳ ବିକାରକୁ ଭସ୍ମ କରି ଦେଇଥିଲା । ତେଣୁ ସଂସାରର କୌଣସି ସୁଖ ତାଙ୍କୁ ପ୍ରଲୁବ୍ଧ କରି ପାରିନଥିଲା । ଥରେ ତ୍ରିଭାଙ୍କୋରର ମହାରାଜା ତାଙ୍କୁ ନିଜ ଦରବାରକୁ ଡକାଇ ତାଙ୍କ ରାଜସଭାରେ ସଂଗୀତାଚାର୍ଯ୍ୟ ପଦ ଦେବାପାଇଁ ଇଚ୍ଛା ପ୍ରକଟ କଲେ । କିନ୍ତୁ ସେ କହି ପଠାଇଲେ- ମହାରାଜ ! ପଦବୀ ତ ସଦ୍‌ଭକ୍ତିରେ ହୋଇଥାଏ । ଭଗବାନ୍‌ଙ୍କ ଚରଣରେ ଅନୁରାଗ ହିଁ ପରମ ପଦ । ତାଙ୍କ ଚରଣରେ ଯାହାର ବୁଦ୍ଧି ବିଚଳିତ ନ ହୁଏ, ଯାହାର ମନ ବିକ୍ଷିପ୍ତ ହୁଏ ନାହିଁ, ସେ ହିଁ ପ୍ରଶଂସନୀୟ । ପଦ ଏବଂ ସମ୍ମାନ ତ ତାହାର ହିଁ ହୋଇଥାଏ, ଯାହାର ମନ ପବିତ୍ର ଏବଂ ନିର୍ଲେପ ମନ ଭଗବାନ୍‌ଙ୍କ ଠାରେ ସଂଲଗ୍ନ ହୋଇଅଛି । ଆପଣ ଆପଣଙ୍କ ପଦବୀ ଫେରାଇ ନିଅନ୍ତୁ, ମୋତେ ତା'ର ଚିନ୍ତା ନାହିଁ ।

ତ୍ୟାଗରାଜଙ୍କର ଏହି ତ୍ୟାଗପୂର୍ଣ୍ଣ ଭକ୍ତି ଚିରସ୍ମରଣୀୟ ହୋଇଗଲା । ତାଙ୍କର ଏହି ପଦ ଦକ୍ଷିଣ ଭାରତରେ ଅନେକଙ୍କ କଣ୍ଠରୁ ଶୁଣିବାକୁ ମିଳିଥାଏ । ପଦ୍ୟରେ ସେ ଏହାର ଉତ୍ତର ଦେଇଥିଲେ ।

ଅଠାଅଶୀ ବର୍ଷ ପୂର୍ଣ୍ଣକରି ସେ ପୂର୍ଣ୍ଣ ପ୍ରସନ୍ନତା ସହିତ ଭଗବାନଙ୍କ କୋଳରେ ଯାଇ ବସିଲେ । ଭଗବାନ୍ ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ କହିବାରୁ ସେ ପରିଣତ ବୟସରେ ସନ୍ନ୍ୟାସ ଗ୍ରହଣ କରିଥିଲେ । ଅତ୍ୟନ୍ତ କୃତଜ୍ଞତାପୂର୍ଣ୍ଣ ପଦ ଗାନ କରି ମହାସମାଧିରେ ଲୀନ ହୋଇଗଲେ ॥



# ଭକ୍ତ ନରସୀ ମେହେତା

ନରସୀ ମେହେତା ଗୁଜୁରାଟର ଏକ ମହାନ କୃଷ୍ଣଭକ୍ତ । ତାଙ୍କ ଭଜନ ଆଜି କେବଳ ଗୁଜୁରାଟ ନୁହେଁ ସମଗ୍ର ଭାରତବର୍ଷରେ ବଡ଼ ଶ୍ରଦ୍ଧା ଓ ଆଦରର ସହ ଗାନ କରାଯାଉଛି । ତାଙ୍କର ଜନ୍ମ କାଠିଆବାଡ଼ ସ୍ଥିତ ଜୁନାଗଡ଼ ସହରରେ ହୋଇଥିଲା । ବଡ଼ ନଗରା ଜାତିର ନାଗର ବ୍ରାହ୍ମଣ କୁଳରେ ହୋଇଥିଲା । ଶୈଶବ ଅବସ୍ଥାନରେ କେତେକ ସନ୍ଥ- ମହାତ୍ମାଙ୍କ ସଂପର୍କରେ ଆସିଥିଲେ । ଫଳ ସ୍ୱରୂପ ତାଙ୍କ ହୃଦୟରେ ଶ୍ରୀକୃଷ୍ଣ ଭକ୍ତିର ଉଦୟ ହୋଇଥିଲା । ସେ ସାଧୁମାନଙ୍କ ମେଳରେ ରହି ସର୍ବଦା ଶ୍ରୀକୃଷ୍ଣ ଓ ଗୋପୀଙ୍କ ଲୀଳା ସଂପର୍କୀତ ଗୀତ ଗାନ କରୁଥିଲେ । ଧୀରେଧୀରେ ଭଜନ କୀର୍ତ୍ତନରେ ତାଙ୍କର ପ୍ରମୁଖ ସମୟ ବ୍ୟତୀତ ହେବାକୁ ଲାଗିଲା । ତାଙ୍କ ପରିବାର ଲୋକେ ଏହାକୁ ଗ୍ରହଣ କରି ପାରୁ ନଥିଲେ । ସେମାନେ ତାଙ୍କୁ ବହୁତ ବୁଝାଇଲେ, କିନ୍ତୁ ଲାଭ କିଛି ହେଲା ନାହିଁ । ଦିନେ ତାଙ୍କ ଭାଉଜ ରାଗିଯାଇ କହିଲେ, ଏପରି ଭକ୍ତିର ପ୍ରାବଲ୍ୟ ହେଲେ ତ ଭଗବାନ୍ ଆସୁ ନାହାଁନ୍ତି କାହିଁକି ? ଏପରି ଆକ୍ଷେପପୂର୍ଣ୍ଣ ବାକ୍ୟ ନରସୀଙ୍କ ଉପରେ ଯାଦୁପରି କାମ କଲା । ସେହି ମୁହୂର୍ତ୍ତରେ ଘରୁ ବାହାରିଗଲେ । ଜୁନାଗଡ଼ର କିଛି ଦୂରରେ ଥିବା ଶ୍ରୀ ମହାଦେବଙ୍କ ପୁରୁଣା ମନ୍ଦିରରେ ନିଷ୍ଠାର ସହ ପୂଜା କରିବାକୁ ଲାଗିଲେ । କୁହାଯାଏ ଯେ ପୂଜାରେ ସନ୍ତୁଷ୍ଟ ହୋଇ ଶିବ ପ୍ରକଟ ହେଲେ, ତାଙ୍କୁ ସଂଗରେ ଘେନି ଗୋଲୋକଧାମକୁ ଗଲେ, ଗୋପୀମାନଙ୍କର ଅଦ୍‌ଭୂତ ରାସଲୀଳା ଦୃଶ୍ୟ ଦର୍ଶନ କରାଇଲେ । ସେ ଗୋଲୋକର ଲୀଳା ଦେଖି ମୁଗ୍‌ଧ ହୋଇଗଲେ ।

ତପସ୍ୟା ପୂର୍ଣ୍ଣକରି ସେ ଘରକୁ ଫେରି ଆସିଲେ ଏବଂ ଅଲଗା ରହିଲେ । କେବଳ ଭଜନ କୀର୍ତ୍ତନରେ ଲାଗି ରହିବାରୁ ବଡ଼ କଷ୍ଟରେ ତାଙ୍କ ଗୃହକର୍ମ ପରିଚାଳିତ ହେଉଥିଲା । ସ୍ତ୍ରୀ ତାଙ୍କୁ କିଛି କାମ କରିବା ପାଇଁ କହିଲେ, କିନ୍ତୁ ନାରସୀ ଅନ୍ୟ କିଛି କାମ କରିବା ପସନ୍ଦ କଲେ ନାହିଁ । ତାଙ୍କ ଦୃଢ଼ବିଶ୍ୱାସ ଥିଲା କି ଶ୍ରୀକୃଷ୍ଣ ମୋର ସମସ୍ତ ଦୁଃଖ ଓ ଅଭାବକୁ ଆପେ ଆପେ ଦୂର କରିବେ । ହେଲା ମଧ ସେହିପରି । କୁହାଯାଏ ତାଙ୍କ ପୁତ୍ରୀଙ୍କ ବିବାହରେ ଯେତେ ଅର୍ଥ ତଥା ସାମଗ୍ରୀର ପ୍ରୟୋଜନ ହେଲା, ସବୁ ଭଗବାନ ସେଠାରେ ପହଞ୍ଚାଇ ଦେଲେ ଏବଂ ସ୍ୱୟଂ ମଣ୍ଡପରେ ଉପସ୍ଥିତ ହୋଇ କାର୍ଯ୍ୟସଂପନ୍ନ କଲେ । ସେହିପରି ଭାବେ ପୁତ୍ର ବିବାହ ମଧ ଭଗବତ୍ କୃପାରେ ସଂପନ୍ନ ହେଲା ।

କୁହାଯାଏ ନରସୀ ମେହେତାଙ୍କ ଜାତିଭାଇ ତାଙ୍କୁ ବଡ଼ ହଇରାଣ କରୁଥିଲେ । ଦିନେ ତାଙ୍କ ପିତୃ ଶ୍ରାଦ୍ଧରେ ସମଗ୍ର ଜାତିଭାଇଙ୍କୁ ଭୋଜନ ଦେବାକୁ ହେବ । ନରସୀ ଭଗବାନଙ୍କୁ ପ୍ରାର୍ଥନା କଲେ ଏବଂ ଭଗବାନ ସେଥିପାଇଁ ଯାହା ସବୁ ପ୍ରୟୋଜନ ସକଳ ପଦାର୍ଥ ଯୋଗାଡ଼ କରିଦେଲେ । ଶ୍ରାଦ୍ଧ ଦିନ ଶେଷ ଆଡ଼କୁ ଜାଣିପାରିଲେ ଯେ କିଛି ଘିଅର ଆବଶ୍ୟକତା ଅଛି । ତହୁଁ ସେ ଗୋଟିଏ ପାତ୍ର ନେଇ ବଜାରକୁ ଗଲେ । ଅଧାବାଟରେ ଦେଖିଲେ ଯେ ସଂକୀର୍ତ୍ତନ ମଣ୍ଡଳୀ ବଡ଼ ପ୍ରେମରେ ସଂକୀର୍ତ୍ତନ କରୁଅଛନ୍ତି । ନରସୀ ଦେବ ତହୁଁରେ ସାମିଲ ହୋଇ କୀର୍ତ୍ତନ କଲେ । ଏଣେ ଘିଅ କଥା ସଂପୂର୍ଣ୍ଣ ଭୁଲିଗଲେ । ଘରେ ବ୍ରାହ୍ମଣ ଭୋଜନ ହେଉଛି, ତାଙ୍କ ପତ୍ନୀ ବଡ଼ ଉତ୍ସୁକତାର ସହ ବାଟଚାହିଁ ବସିଛନ୍ତି । ଭକ୍ତବତ୍ସଳ ଭଗବାନ ନରସୀଙ୍କ ରୂପଧାରଣ କରି ଘିଅ ନେଇ ଘରେ ପହଞ୍ଚିଗଲେ । ବ୍ରାହ୍ମଣ ଭୋଜନ ସୂଚାରୁ ରୂପେ ହୋଇଗଲା । ବହୁ ବିଳମ୍ବରେ କୀର୍ତ୍ତନ ବନ୍ଦ ହେବା ପରେ ନରସୀ ଘିଅ ନେଇ ଘରକୁ ଆସିଲେ । ବିଳମ୍ବ ପାଇଁ ପତ୍ନୀଙ୍କୁ କ୍ଷମା ମାଗିଲେ । ପତ୍ନୀ ଆଶ୍ଚର୍ଯ୍ୟ ସାଗରରେ ବୁଡ଼ିଗଲେ ।

ପୁତ୍ର ପୁତ୍ରୀଙ୍କର ବିବାହ ହୋଇଯିବା ପରେ ନରସୀ ବହୁତ କିଛି ନିଶ୍ଚିନ୍ତ ହୋଇଗଲେ । ଅଧିକ ଉତ୍ସାହର ସହ ଭଜନ କୀର୍ତ୍ତନ କରିବାରେ ଲାଗିଲେ । କିଛି ବର୍ଷ ପରେ ଗୋଟିକ ପରେ ଗୋଟିଏ ପୁତ୍ର, ପତ୍ନୀଙ୍କ ମୃତ୍ୟୁ ହୋଇଗଲା । ଏବେ ସେ ସଂପୂର୍ଣ୍ଣ ବିରକ୍ତ ହୋଇ ଲୋକଙ୍କୁ ଭଗବତ୍ ଭକ୍ତିର ଉପଦେଶ ଦେବାରେ ଲାଗିଲେ । ତାଙ୍କର ବାଣୀ ଥିଲା– 'ଭକ୍ତି ତଥା ପ୍ରାଣୀମାତ୍ରକ ସହିତ ବିଶୁଦ୍ଧ ପ୍ରେମ କରିବା ଦ୍ୱାରା ସମସ୍ତଙ୍କର ମୁକ୍ତି ସଂଭବ ।'

କୁହାଯାଏ ଥରେ ଜୁନାଗଡ଼ର ରାବମାଣ୍ଡଳୀ ତାଙ୍କୁ ଡକାଇ କହିଲେ ଯଦି ତୁମେ ସଚ୍ଚାଭକ୍ତ ତେବେ ମନ୍ଦିରକୁ ଯାଇ ମୂର୍ତ୍ତି ଗଳାରେ ଫୁଲହାର ପିନ୍ଧାଅ ଏବଂ ଭଗବାନଙ୍କୁ ପ୍ରାର୍ଥନା କର ଯେ ସେ ତାଙ୍କ ଗଳାର ମାଳାକୁ ତୁମକୁ ପିନ୍ଧାଇ ଦେବେ । ଅନ୍ୟଥା ତୁମକୁ ପ୍ରାଣଦଣ୍ଡ ମିଳିବ । ନରସୀ ରାତିତମାମ ମନ୍ଦିରରେ ବସି ଭଗବାନଙ୍କର ଗୁଣଗାନ କଲେ । ଦ୍ୱିତୀୟ ଦିନ ପ୍ରଭାତରୁ ସମସ୍ତଙ୍କ ସମ୍ମୁଖରେ ମୂର୍ତ୍ତି ଆପଣା ସ୍ଥାନରୁ ଉଠିଆସି ନରସୀଙ୍କୁ ମାଳା ପିନ୍ଧାଇ ଦେଲେ । ନରସୀଙ୍କ ଭକ୍ତିର ପରକାଷ୍ଠା ସର୍ବତ୍ର ପରିବ୍ୟାପ୍ତ ହୋଇଗଲା । କିନ୍ତୁ ଲୋକକଥା ଅନୁସାରେ ଏହି ପାପରେ ରାବମାଣ୍ଡଳୀକଙ୍କ ରାଜ୍ୟନଷ୍ଟ ହୋଇଗଲା ॥



# ଭକ୍ତ ରୈଦାସ

ଜାତି ଭୀ ଓଛୀ, କରମ ଭୀ ଓଛା
ଓଛା କିସବ ହମାରା ।
ନୀଚେ ସେ ପ୍ରଭୁ ଊଁଚ କୀୟା ହୈ,
କହ ରୈଦାସ ଚମାରା ॥

ରୈଦାସଙ୍କ ଜନ୍ମର ନିଶ୍ଚିତ ତିଥି ଏବେ ସୁଦ୍ଧା ଶଂଶୟାଛନ୍ନ । କବୀରଙ୍କ ସମସାମୟିକ ହେବା କାରଣରୁ ଖ୍ରୀ.ଅ.ପଞ୍ଚଦଶ ଶତାବ୍ଦୀ ଅନ୍ତର୍ଗତ କରାଯାଇଥାଏ । ରୈଦାସଙ୍କ ଜନ୍ମ କାଶୀରେ ହୋଇଥିଲା ଏବଂ ସେ ବହୁବାର କବୀରଙ୍କ ସତ୍‌ସଂଗରେ ଯୋଗଦାନ କରିଥିଲେ । ପୂର୍ବଜନ୍ମରେ ସେ ବ୍ରାହ୍ମଣ ଥିଲେ ଏବଂ ସ୍ୱାମୀ ରାମାନନ୍ଦଙ୍କ ଶାପରେ ଚମାର ଘରେ ଉତ୍ପନ୍ନ ହୋଇଥିଲେ । ଶୈଶବରେ ସେ ସାଧୁ ସେବୀ ଥିଲେ । ଏଥିପାଇଁ ପିତା ରଘୁ ତାଙ୍କ ଉପରେ ଖୁସି ନଥିଲେ । କ୍ରୋଧିତ ହୋଇ ତାଙ୍କୁ ଘରୁ ବାହାର କରିଦେଲେ ଏବଂ ଖର୍ଚ୍ଚ ପାଇଁ ପଇସାଟିଏ ସୁଦ୍ଧା ଦେଲେ ନାହିଁ । ଲୋକ ପରଲୋକର ନିନ୍ଦା ସ୍ତୁତି ତାଙ୍କ କାନରେ ପଶେ ନାହିଁ । ଘରେ ତାଙ୍କର ସତୀସାଧ୍ୱୀ ସ୍ତ୍ରୀ ରହିଥାଏ, ଘରେ ଯାହାକିଛି ଥାଏ, ପ୍ରସ୍ତୁତ କରି ପତିଙ୍କ ସେବାରେ ଦେଇଥାଏ । ରୈଦାସ ଅତି ସାଧାରଣ କୁଡ଼ିଆରେ

ରହୁଥାନ୍ତି । ଯୋତା ପ୍ରସ୍ତୁତ କରି ଆପଣା ଜୀବିକା ଚଳାଉଥାନ୍ତି । ପାଖରେ ଠାକୁରଙ୍କର ଚତୁର୍ଭୁଜ ମୂର୍ତ୍ତି ରହିଥାଏ । ଯୋତା ଶିଲାଇ ଚାଲିଥାଏ ଏଣେ ମୁହଁରେ ପ୍ରଭୁଙ୍କର ଭକ୍ତି ସଂଗୀତ-

ପ୍ରଭୁଜୀ! ତୁମ ଚନ୍ଦନ, ହମ ପାନୀ । ଜାକୀ ଅଁଗ ଅଁଗ ବାସ ସମାନୀ ।।
ପ୍ରଭୁଜୀ! ତୁମ ଘନ, ବନ ହମ ମୋରା । ଜୈସେ ଚିତ୍ତବନ ଚଂଦ ଚକୋରା ।।
ପ୍ରଭୁଜୀ! ତୁମ ଦୀପକ, ହମ ବାତୀ । ଜାକୀ ଜୋତି ବରୈ ଦିନ ରାତୀ ।।
ପ୍ରଭୁଜୀ! ତୁମ ମୋତି ହମ ଧାଗା । ଜୈସେ ସୋନହିଂ ବିମଲ ସୁହାଗା ।।
ପ୍ରଭୁଜୀ ତୁମ ସ୍ୱାମୀ, ହମ ଦାସା । ଐସୀ ଭଗତି କରୈ ରୈଦାସା ।।

କୁହାଯାଏ, ତାଙ୍କ ଆର୍ଥିକ ଦୁରବସ୍ଥାକୁ ଦେଖି ପ୍ରଭୁଙ୍କ ଦୟା ହେଲା । ସାଧୁରୂପ ଧରି ରୈଦାସଙ୍କ ପାଖକୁ ଆସି ତାଙ୍କୁ ପରଶମଣି ପଥର ଦେଲେ ଏବଂ ତାଙ୍କ ଜୋତା ସିଲାଇର ଲୁହା ଉପକରଣକୁ ସୁନା କରିଦେଲେ । ରୈଦାସ ସେହି ପଥରକୁ ନେବାକୁ ମନା କରିଦେଲେ । କିନ୍ତୁ ସାଧୁ ତ 'ନଛୋଡ଼ ବନ୍ଧା' । ନାଚାର ହୋଇ ରୈଦାସ କହିଲେ- ଆପଣ ଯଦି ବାଧ କରୁଛନ୍ତି ତେବେ ଚାଳରେ ଗୁଞ୍ଜି ଦେଇ ଯାଆନ୍ତୁ । ତେର ମାସ ପରେ ଯେବେ ସାଧୁ ପୁଣି ଆସି ପହଞ୍ଚିଲେ ଏବଂ ପଥରର ଖବର ପଚାରିଲେ ରୈଦାସ କହିଲେ ଯେଉଁଠି ଆପଣ ଖୋସି ଦେଇଥିଲେ ସେଇଠି ଦେଖନ୍ତୁ, ମୁଁ ତାକୁ ଛୁଇଁ ନାହିଁ ।

ଭକ୍ତମାଳାରେ ରୈଦାସଙ୍କ ସଂମ୍ବନ୍ଧରେ ଅନେକ କିଛି ଉଲ୍ଲେଖ ଅଛି । ତନ୍ମଧ୍ୟରୁ ଗୋଟିକୁ ଦେଖନ୍ତୁ- ଚିତ୍ତୋର ରାଣୀ, ଯେ ଥରେ କାଶୀ ଯାତ୍ରା ପାଇଁ ଯାଇଥିଲେ । ରୈଦାସଙ୍କ ମହିମା ଶୁଣି ତାଙ୍କୁ ନିଜର ଗୁରୁ କରିଥିଲେ । ରୈଦାସଙ୍କ ସମ୍ବନ୍ଧରେ କିଛି ଆଶ୍ଚର୍ଯ୍ୟ କଥା ଶୁଣାଯାଏ, ଯହିଁରୁ ଏହା ସ୍ପଷ୍ଟ ପ୍ରମାଣିତ ହୁଏ କି ଭଗବାନଙ୍କ ଦରବାରରେ ଜାତି ପତିର ଏତେ ମହତ୍ୱ ନାହିଁ, ଯେତେ ଭକ୍ତି ଏବଂ ସଲଗ୍ନତାର ରହିଛି ।

ପୂରା ୧୨୦ ବର୍ଷ ପରମାୟୁ ଭୋଗ କରି ଭଗବଦ୍ଧାମକୁ ପ୍ରାପ୍ତ କରିଥିଲେ । ତାଙ୍କ ଶିଷ୍ୟ ଭକ୍ତମାନଙ୍କର ବିଶ୍ୱାସ ସେ ସ୍ୱଦେହରେ ଗୁପ୍ତ ହୋଇଗଲେ । ଗୁଜୁରାଟ, ବିହାର, ଉତ୍ତରପ୍ରଦେଶ ଆଦି କ୍ଷେତ୍ରରେ ତାଙ୍କ ଅସଂଖ୍ୟ ଶିଷ୍ୟ ରହିଛନ୍ତି । ରୈଦାସ ପ୍ରେମ ଓ ବୈରାଗ୍ୟର ମୂର୍ତ୍ତି ଥିଲେ । ଶ୍ରୀହରି ଚରଣର ଅନନ୍ୟ ଆଶ୍ରୟ ହିଁ ତାଙ୍କ ସାଧନାର ପ୍ରାଣ ।

ଜୋ ତୁମ ତେରୋ ରାମ, ମୈଁ ନହିଂ ତୋରୌଁ
ତୁମ ସୌଁ ତୋରି କବନ ସୌଁ ଜୋରୌଁ ॥
ତୀରଥ ବରତ ନକରୌଁ ଅଂଦେସା
ତୁହ୍ମରେ ଚରଣ କମଲ କ ଭରୋସା ॥
ଜହଁ ଜହଁ ଜାଓଁ ତୁହ୍ମରୀ ପୂଜା
ତୁମ ସା ଦେବ ଔର ନାହିଁ ଦୂଜା ॥

ରୈଦାସଙ୍କ ବିବଶତା ମଧ୍ୟ କେତେ ସରଳ, କେତେ ସ୍ୱାଭାବିକ ।

ନରହରି ! ଚଞ୍ଚଲ ହୈ ମତିମେରୀ, କୈସେ ଭଗତି କରୁଁ ମେ ତେରୀ ॥
ତୂଁ ମୋହି ଦେଖେ, ହୈଁ ତୋହି ଦେଖୁଁ, ପ୍ରୀତି ପରସ ପାର ହୋଇ
ତୂଁ ମୋହି ଦେଖୈ, ତୋହି ନଦେଖୁଁ, ୟହ ମତି ସବବୁଧ୍ୱି ଖୋଇ ॥
ସବଘଟ ଅନ୍ତର ରମାସି ନିରନ୍ତର, ମେଁ ଦେଖନ ନହିଁ ଜାନା ।
ଗୁନ ସବ ତୋର, ମୋର ସବ ଔଗୁନ, କୃତ ଉପକାର ନ ମାନା ॥
ମୈଁ ତୈଁ, ତୋରି ମୋରି ଅସମଝି ସୋଁ, କୈସେ କରି ବିସ୍ତାରା
କହ ରୈଦାସ କୃଷ୍ଣ କରୁନାମୟ ! ଜୈ ଜୈ ଜଗତ ଅଧାରା ॥



# ଗୁରୁ ନାନକ ଦେବଜୀ

ଶ୍ରୀନାନକଜୀ ବିକ୍ରମ ୧୫୨୬ (ସନ୍ ୧୪୬୯)ରେ ପଞ୍ଜାବ ପ୍ରଦେଶ ଅନ୍ତର୍ଗତ ଲାହୋର ଜିଲ୍ଲା ନିକଟବର୍ତ୍ତୀ ଅଞ୍ଚଳରେ ଜନ୍ମ ହୋଇଥିଲେ । ସେହି ସ୍ଥାନ ନାନକାନା ସାହେବଙ୍କ ନାମରେ ପ୍ରସିଦ୍ଧ । ସେହି ସ୍ଥାନରେ ଗୋଟିଏ ସୁନ୍ଦର ପୁଷ୍କରିଣୀ ରହିଛି । ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମାକୁ ବିରାଟ ମେଳା ଅନୁଷ୍ଠିତ ହୁଏ ।

ନାନକଙ୍କ ସଂସ୍କାର ଅତି ଉଚ୍ଚକୋଟୀର ଥିଲା । ସେ ଭାଷାର ପ୍ରକାଣ୍ଡ ପଣ୍ଡିତ ନଥିଲେ କିନ୍ତୁ ଅଧ୍ୟାତ୍ମ ବିଦ୍ୟାର ରହସ୍ୟ ସହ ସୁପରିଚିତ ମେଧାବୀ ପୁରୁଷ ଥିଲେ । ଶୈଶବରୁ ତାଙ୍କ ପ୍ରବୃତ୍ତି ଅନ୍ତର୍ମୁଖୀ ଥିଲା । ଈଶ୍ୱରାଭିମୁଖୀନତା ତାଙ୍କ ସ୍ୱାଭାବିକ ଗୁଣ ଥିଲା । ୧୯ବର୍ଷ ବୟସରେ ତାଙ୍କ ବିବାହ ହୋଇଥିଲା । ଶ୍ରୀଚନ୍ଦ୍ର ଓ ଲକ୍ଷ୍ମୀଦାସ ତାଙ୍କର ଦୁଇ ପୁତ୍ର ଥିଲେ । ଶ୍ରୀଚନ୍ଦ୍ରଜୀ ଉଦାସୀ ପନ୍ଥର ପ୍ରବର୍ତ୍ତକ ଥିଲେ । ବୟସ ବୃଦ୍ଧି ହେବା ସହିତ ଆତ୍ମିକ ଉନ୍ନତି ପରିଲକ୍ଷିତ ହେଉଥିଲା । ପରେ ପରେ ଗୃହସ୍ଥ ଜୀବନରୁ ବିରକ୍ତ ହୋଇଗଲେ । ସାଧୁ ସଂଗରେ ସମୟ ବିତିଲା । ସକଳ ପନ୍ଥାର ସାଧୁମାନଙ୍କୁ ସମାନ ଦୃଷ୍ଟିରେ ବିଚାର କରୁଥିଲେ । ସମସ୍ତଙ୍କୁ ଯଥା ଶକ୍ତି ସେବା କରିଥାନ୍ତି । ସ୍ୱଭାବତଃ ସେ ନମ୍ର, ଦୟାଳୁ, ତେଜସ୍ୱୀ, ବକ୍ତା, ଭଜନ ପ୍ରିୟ ତଥା କବି ହୃଦୟର ମହାତ୍ମା ଥିଲେ । ତାଙ୍କର ଅଧିକ ସମୟ ଈଶ୍ୱର ଆରାଧନାରେ ବ୍ୟତୀତ ହେଉଥିଲା ।

ନାନକଙ୍କ ତେଜ ଶକ୍ତିର ଜ୍ୟୋତି ଚତୁର୍ଦ୍ଦିଗକୁ ବିସ୍ତାରିତ ହୋଇ ପଡ଼ିଲା । ଶ୍ରଦ୍ଧାଳୁଗଣ ତାଙ୍କ କୀର୍ତ୍ତି ଗାନରେ ମୁଖର ହେଲେ । ଯେଉଁ ସବୁ ସ୍ଥାନକୁ ସେ ଭ୍ରମଣ କରିବାକୁ ଯାଉଥିଲେ ସେହି ସ୍ଥାନର ନାମ ସହିତ 'ସାହିବ' ନାମ ସଂଯୁକ୍ତ ହେଉଥିଲା ।

ଭାରତ ବର୍ଷ ବିଶେଷକରି ପଞ୍ଜାବ ପରିଭ୍ରମଣ କରି ସେ ଉପଦେଶ ଦେଇଥିଲେ । ଆତ୍ମୀକ ଅଭ୍ୟୁଦୟ ନିମିତ୍ତ ଜ୍ଞାନ, ଭକ୍ତି, ମାନ, ସାଧନ, ଭଜନ, ସୁରତ- ଶବ୍ଦ ଯୋଗର ଅଭ୍ୟାସ ଆଦି ତାଙ୍କର ପ୍ରମୁଖ ଉପଦେଶ ଥିଲା । ଏହାଦ୍ୱାରା ଭବସାଗରରୁ ନିସ୍ତାର ହେବା ସେ ବିଚାର କରୁଥିଲେ । ସାଂପ୍ରଦାୟିକ ଶଠତା ବା

ଦୁରାଗ୍ରହ ତାଙ୍କର ନଥିଲା । କୌଣସି ନୂତନ ପନ୍ଥା ନିର୍ମାଣ ମଧ୍ୟ ତାଙ୍କ ଉଦ୍ଦେଶ୍ୟ ନଥିଲା । ନାନକ ଦେବଙ୍କ ଶିଷ୍ୟଙ୍କୁ 'ରୁଢ଼ି'ରେ 'ସିଖ' କହିବାକୁ ଲାଗିଲେ । ପନ୍ଥ ସେହି କତିପୟ ଘଟଣାର ପରିଣାମ । ଯାହା ମୁଖ୍ୟତଃ ପଞ୍ଚମ ଗୁରୁ ଅର୍ଜୁନ ସିଂହଙ୍କ ସମୟରେ ଘଟିଥିଲା ଏବଂ ଦଶମ ଗୁରୁ ଗୋବିନ୍ଦ ସିଂହଙ୍କ ସମୟରେ ସମାପ୍ତ ହୋଇଥିଲା ।

ଜନ୍ମତଃ ସେ ପଞ୍ଜାବୀ ଥିଲେ । କିନ୍ତୁ ସେ ପଞ୍ଜାବ, ଭାରତର ନୁହଁନ୍ତି, ସମଗ୍ର ସଂସାରର ଆଦରଣୀୟ ହୋଇ ପାରିଥିଲେ । ମାନବ ଏକତାର ସମର୍ଥକ ଥିଲେ । ଏହାର ପ୍ରଚାର ନିଜ ଜୀବନରେ କରି ଦେଖାଇ ଅଛନ୍ତି-

ଖାଲକ ବସୈ ଖଲକ, ମୈଁ ଖଲକ ବସୈ ରବମାହ
ମଂଦା କିସନୁଂ ଆଖିୟେ, ଜାଂଜିସ ବିନ କୋଇ ନାହ ।।

ଗୁରୁଜୀଙ୍କ ଜନ୍ମ ସମୟରେ ଦେଶରେ (ମୋଗଲ) ବିଦେଶୀ ଶାସନ ପ୍ରଚଳିତ ଥିଲା । ଦେଶ ଲୋକେ ନିର୍ଯାତୀତ ସ୍ଥିତରେ ଥିଲେ । ତତ୍‌କାଳୀନ ଭାରତର ଦୁର୍ଦ୍ଦଶା ତାଙ୍କ ସଜଳ ବାଣୀରେ କିପରି ପ୍ରକାଶିତ, ତାହା ଦେଖନ୍ତୁ-

ଖୁରାସାନ ଖସମାନ କିୟା, ହିନ୍ଦୁସ୍ତାନ ଡରାୟା
ଆପେ ଦୋଷ ନ ଦେଇ କରଦା ଜମକର ମୁଗଲ ପଠାୟା ।।
ଜୈସୀ ମୈଁ ଖତମକୀ ବାଣୀ, ତୈ ସଡ଼ା କରୀବେ,
ଜୈସୀ ମୈଁ ଖତମକୀବାଣୀ ତୈସଡ଼ା କରୀବେ ଜ୍ଞାନେବେ ଲାଲେଁ ।
ପାପକୀ ଜଂଜ ଲୈ କାବଲୋଁ ଧାୟା ଜୋରୋମଂଗୀ ଦାନବୈ ଲାଲୋଁ ।।
ଜିନ୍ ସିର ମୋହନ ପଟ୍ଟିୟାଁ ମାଂଗୀ ପାଏ ସଂଧୂର ।।
ସୋ ସିର କାଲେ ମନିୟନ୍ ଗଲ ବିଚ ଆବେ ଘୂଡ଼ ।।

ସେ ପ୍ରଚଳିତ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ତୀବ୍ର ସ୍ୱର ଉତ୍ତୋଳନ କଲେ । ଏ ନାମାବାଦ, ଯେଉଁଠି ଅଧିକ ଅତ୍ୟାଚାର ହେଉଥିଲା, ସେଠାକୁ ଯାଇଥିଲେ, ସେଠାରେ ହେଉଥିବା ଅନ୍ୟାୟର ତୀବ୍ର ବିରୋଧ କଲେ ଏବଂ ଆକ୍ରମଣକାରୀ ତଥା ଶାସକଙ୍କ ନିନ୍ଦା କଲେ । ଏହି ବିରୋଧ ହେତୁ ମୋଗଲ ଶାସକ ବାବର ତାଙ୍କୁ ବନ୍ଦୀ କଲେ । ମୁକ୍ତ ହେବାପରେ ସେ ଘର, ପରିବାର ଛାଡ଼ି ଦେଶ-ଦେଶାନ୍ତର ଭ୍ରମଣ କଲେ । ଭାରତୀୟ ସାମ୍ୟବାଦର ସଂଦେଶ ପାଇଁ ସେ ଭାରତର

ବିଭିନ୍ନ ପ୍ରାନ୍ତ ପରିଭ୍ରମଣ କରିବା ସହିତ ନେପାଳ, ଭୁଟାନ୍, ସିକ୍କିମ୍, ତିବ୍ବତ, ଚୀନ, ଇରାନ୍, ଆଫଗାନିସ୍ତାନ ଏବଂ ଆରବ ଯାତ୍ରା କରିଥିଲେ ।

ଗୁରୁ ନାନକ ଦେବ ବିଭିନ୍ନ ଧର୍ମାବଲମ୍ବୀଙ୍କ ସହ ପୃଥକ ପୃଥକ ଭାବେ ମିଳିତ ହୋଇଥାନ୍ତି । ବିଭିନ୍ନ ମେଳାକୁ ଯାତ୍ରା କରୁଥିଲେ । ସ୍ଥାନେ ସ୍ଥାନେ ଭେଦାଭେଦ ଶୂନ୍ୟ ସଂସ୍ଥା ସ୍ଥାପିତ କରିଥିଲେ, ଯେଉଁଠି ସବୁ ଧର୍ମର ଲୋକେ ମିଳିମିଶି ବସା- ଉଠା କରିପାରିବେ, ଖାଇବା- ପିଇବା କରି ପାରିବେ ଏବଂ ପ୍ରଭୁ ଚିନ୍ତନ କରି ପରସ୍ପର ମଧ୍ୟରେ ସୁଖଦୁଃଖ ମଧ୍ୟ କଥା ବାର୍ତ୍ତା ହୋଇ ପାରିବେ ।

ଗୁରୁଜୀ ପତିତ ବ୍ୟକ୍ତିଙ୍କୁ ଖୋଜି ଖୋଜି ସେମାନଙ୍କୁ ପ୍ରେମ କରୁଥିଲେ ଏବଂ ତାଙ୍କୁ ସତ୍ୟ ମାର୍ଗରେ ଚାଳିତ କରୁଥିଲେ । ପ୍ରେମ, ତର୍କ ତଥା ମିଠା କଥା ଦ୍ୱାରା ଅନ୍ୟର ହୃଦୟକୁ ଜୟ କରିଥିଲେ । ତାଙ୍କ ମଧୁର ବଚନ ଦ୍ୱାରା ଲୋକମାନେ ଆକୃଷ୍ଟ ହୋଇ ଆସୁଥିଲେ ।

ଗୁରୁଜୀ- 'ଏକ ପିତା ଏକସ କେ ହମ୍ ବାଳକ' (ଆମେ ସମସ୍ତେ ସେହି ବିଶ୍ୱପିତାଙ୍କ ସନ୍ତାନ) ଦେଶର ସମସ୍ତ ସଂପ୍ରଦାୟକୁ ଏକସ୍ତର ଏବଂ ଏକ ମଂଚରେ ଏକତ୍ର କରିବାର ଚେଷ୍ଟାରେ ନିମଗ୍ନ ରହିଥିଲେ । ଭଲଭାବରେ ରୋଜଗାର କରିବାର ଉପଦେଶ ଦେଇଥିଲେ ଏବଂ ବାଣ୍ଟିକରି ଖାଇବା ପାଇଁ ଶିଷ୍ୟମାନଙ୍କୁ ସୂଚାଇ ଥିଲେ ।

ଗୁରୁ ନାନକ ଦେବ ସିଦ୍ଧାନ୍ତ ପ୍ରଚାର ବିଷୟରେ ବିଦ୍ୱାନ କନିଂହାମ୍‌ଙ୍କ ଇତିହାସର ପାଦ ଟିପ୍‌ପଣୀରେ ଲେଖିଛନ୍ତି-

"ଜଗଦୀଶ୍ୱର ହିଁ ସବୁକିଛି, ମାନସିକ ପବିତ୍ରତା ହିଁ ସବୁକିଛି । ମାନସିକ ପବିତ୍ରତା ହିଁ ପ୍ରଥମ ଧର୍ମ ଏବଂ ଶ୍ରେଷ୍ଠ ପ୍ରାର୍ଥନୀୟ ତଥା ସାଧନୀୟ ବସ୍ତୁ । ନାନକଜୀ ଆତ୍ମୋତ୍ସର୍ଗ ଏବଂ ଆରାଧନା ଶିଖିବାର ଉପଦେଶ ଦେଇଛନ୍ତି । ସେ ନିଜକୁ ଅନ୍ୟ ପ୍ରବର୍ତ୍ତକଙ୍କ ଅପେକ୍ଷା ଶ୍ରେଷ୍ଠ ଏବଂ ଅସାଧାରଣ ଗୁଣୀ ଏବଂ ଶକ୍ତିଶାଳୀ ଭାବୁ ନଥିଲେ । ତାଙ୍କ କହିବା କଥା ଅନ୍ୟମାନଙ୍କ ପରି ସେ ମଧ୍ୟ ଏକ ପ୍ରାଣୀ । ନିଜ ଦେଶବାସୀଙ୍କୁ ପବିତ୍ର ଜୀବନ ବିତାଇବା ପାଇଁ ସଦା ଉପଦେଶ ଦେଇଥିଲେ । ଶ୍ରୀ ଗୁରୁନାନକ ଦେବଙ୍କ ନାମ ଭାରତ ବର୍ଷର ଧାର୍ମିକ ଇତିହାସରେ ସନ୍ଥ ଜୀବନ ଅଧ୍ୟାୟରେ ଆଜି ମଧ୍ୟ ଅଙ୍କିତ ହୋଇଛି ଏବଂ ସର୍ବଦା ଅମର ରହିବ ।।"



# ଭକ୍ତ ବିଲ୍ୱମଂଗଳ

ଦାକ୍ଷିଣାତ୍ୟର କୃଷ୍ଣବେଣୀ ନଦୀତଟରେ ଗୋଟିଏ ଗ୍ରାମରେ ରାମଦାସ ନାମକ ଭଗବଦ୍ ଭକ୍ତ ବ୍ରାହ୍ମଣ ନିବାସ କରୁଥିଲେ । ତାଙ୍କ ପୁତ୍ର ନାମ ବିଲ୍ୱମଂଗଳ । ପିତା ପୁତ୍ରଙ୍କୁ ଯଥା ସାଧ ଧର୍ମଶାସ୍ତ୍ର ଶିକ୍ଷା ଦେଇଥିଲେ । ପିତାଙ୍କର ଶିକ୍ଷା ତଥା ଜନ୍ମଗତ ଭକ୍ତିଭାବ ପ୍ରଭାବରେ ବାଲ୍ୟକାଳରେ ଅତି ଶାନ୍ତ, ଶିଷ୍ଟ ତଥା ଶ୍ରଦ୍ଧାବାନ୍ ହୋଇଥିଲେ । ପିତାମାତାଙ୍କ ବିୟୋଗ ହେବା ପରେ ଘର ସଂପତ୍ତି ଉପରେ ଯେବେ ତାଙ୍କର ଅଧିକାର ହୋଇଗଲା, ତେବେ ତାଙ୍କର ଅନେକ କୁସଂଗୀ ମିତ୍ର ସ୍ୱତଃ ମିଳିଗଲେ ।

ସଂଗ ଦୋଷରୁ ବିଲ୍ୱମଂଗଳ ଅନ୍ତଃକରଣ ଅନେକ ଦୋଷରେ ଦୂଷିତ ହୋଇଗଲା । ଏକଦା ସେହି ଗ୍ରାମରେ ଚିନ୍ତାମଣି ନାମକ ବେଶ୍ୟା ଏବଂ ନୃତ୍ୟଦଳ ନୃତ୍ୟ କରିବାରେ ଆୟୋଜନ ହୋଇଥାଏ । ବିଲ୍ୱମଂଗଳ ନିଜ ସାଥୀମାନଙ୍କ ସହ ସେହି ନୃତ୍ୟ ଦେଖିବାକୁ ଗଲା । ବେଶ୍ୟାକୁ ଦେଖିବା ମାତ୍ରେ ବିଲ୍ୱମଂଗଳର ମନ ଚଞ୍ଚଳ ହୋଇଉଠିଲା । ବିବେକଶୂନ୍ୟ ବୁଦ୍ଧିର ପ୍ରଭାବରେ ସେ ବିଚାରଶୂନ୍ୟ ହୋଇଗଲା । ହାଡ଼, ମାଂସର ଶରୀରକୁ, ରୂପ ପାଇଁ ନିଜର ସକଳ ସଂପତ୍ତି ତ୍ୟାଗ କରିଦେବାକୁ ସଂକଳ୍ପିତ ହେଲା । ତନ, ମନ, ଧନ, କୁଳ, ମାନ, ମର୍ଯ୍ୟଦା ଓ ଧର୍ମ ସବୁକୁ ଉତ୍ସର୍ଗ କରିଦେଲା । ବ୍ରାହ୍ମଣ କୁମାରର ପତନ ହୋଇଗଲା । ଖାଇବା, ପିଇବା, ଶୋଇବା, ଚାଲିବା, ବୁଲିବା ସବୁ ସମୟରେ ବିଲ୍ୱମଂଗଳର ଚିନ୍ତନ ବସ୍ତୁ କେବଳ ଗୋଟିଏ 'ଚିନ୍ତା' ହିଁ ହୋଇଗଲା ।

ବିଲ୍ୱମଂଗଳଙ୍କ ପିତୃଶ୍ରାଦ୍ଧ, ତେଣୁ ସେ ନଦୀପାର ହୋଇ ଚିନ୍ତାମଣି ଘରକୁ ଯାଇପାରିବ ନାହିଁ । ଶ୍ରାଦ୍ଧ ବ୍ୟବସ୍ଥା ସମସ୍ତ ହେଉଛି, କୁଳ ପୁରୋହିତ ବିଲ୍ୱମଂଗଳକୁ ଶ୍ରାଦ୍ଧ ମନ୍ତ୍ର ଆବୃତ୍ତି କରୁଥାନ୍ତି, କିନ୍ତୁ ତାଙ୍କ ମନ ଚିନ୍ତାମଣି ଚିନ୍ତାରେ ନିମଗ୍ନ । ତାକୁ କିଛି ମଧ୍ୟ ଭଲ ଲାଗୁ ନଥାଏ । କୌଣସି ପ୍ରକାର ଶ୍ରାଦ୍ଧ ସମାପ୍ତ କରି ଶୀଘ୍ର ବ୍ରାହ୍ମଣ ଭୋଜନ କରାଇ ବିଲ୍ୱମଂଗଳ ଚିନ୍ତାମଣି ଘରକୁ ଯିବାକୁ ବ୍ୟସ୍ତ ହୋଇ ଉଠିଲା । ସଂଧ୍ୟା ଆସି ଯାଉଛି, ଲୋକେ ତାକୁ କହିଲେ ଭାଇ ! ଆଜି ତୁମର ପିତୃ ଶ୍ରାଦ୍ଧ, ବେଶ୍ୟାଳୟକୁ ଯିବା ଉଚିତ ନୁହେଁ । କିନ୍ତୁ ଏସବୁ କାନରେ ପଶିଲା ନାହିଁ । ତା' ହୃଦୟ କେବେଠାରୁ ଧର୍ମ-କର୍ମ ଶୂନ୍ୟ ଥିଲା । ଦୌଡ଼ି ଯାଇ ନଦୀ ତଟରେ ପହଞ୍ଚିଗଲା । ଦୈବ ଦୁର୍ଯୋଗକୁ ଆକସ୍ମାତ୍ ପ୍ରବଳ ତୋଫାନ୍ ଏବଂ ମୂଷଳ ଧାରାରେ ବୃଷ୍ଟି ହେବାରେ ଲାଗିଲା । ଆକାଶରେ ଅଂଧକାର ଛାଇଗଲା । ବାଦଲର ଭୟଙ୍କର ଗର୍ଜନ, ବିଜୁଳିର ଝଟକ ଯେ କୌଣସି ମନୁଷ୍ୟ ପ୍ରାଣରେ ଭୟ ସଂଚାର କରିବାରେ ସକ୍ଷମ । ନାଉରୀ ମଧ୍ୟ କୂଳରେ ନାବ ବାନ୍ଧିଦେଇ ଚାଲିଗଲେ । ଏ ସକଳ ସତ୍ତ୍ୱେ ବିଲ୍ୱମଂଗଳ ଉପରେ ଏହାର କୌଣସି ପ୍ରଭାବ ପଡ଼ିଲା ନାହିଁ । ବିଳମ୍ବ ହୋଇ ଚାଲିଛି, ବିଲ୍ୱମଂଗଳଙ୍କ ଉତ୍କଣ୍ଠା ବଢ଼ି ଚାଲିଛି । ଏପରି ସ୍ଥିତିରେ ଆଗପଛ ବିଚାର ନକରି ନଦୀକୁ ଡେଇଁ ପଡ଼ିଲେ । ଭୟଂକର ଦୁଃସାହସିକ କର୍ମଥିଲା । କିନ୍ତୁ 'କାମାତୁରାଣାଂ ନଭୟଂନ ଲଜ୍ଜା' । ସଂଯୋଗ ବଶତଃ ନଦୀରେ ଗୋଟିଏ ଶବ ଭାସି ଆସୁଥିଲା । ବିଲ୍ୱମଂଗଳ ତ ବେହୋସ ଅବସ୍ଥାରେ ଥିଲା । (ତାକୁ କାଠଗଡ଼ ଭାବି) ତା ସହାୟତାରେ ନଦୀପାର ହେଲା । କଟୀବସ୍ତ୍ର ମଧ୍ୟ ଭାସିଗଲା । ଚାରିଦିଗରେ ଅନ୍ଧକାର । ବଣ୍ୟ ପଶୁଙ୍କ ଭୟଙ୍କର ଶବ୍ଦ ମଧ୍ୟ ଶୁଭୁଥାଏ । କିଛି ଦୂରରେ ଚିନ୍ତାମଣିର ଘର । ଆଜି ଶ୍ରାଦ୍ଧ ହେତୁ ବିଲ୍ୱମଂଗଳ ନ ଆସିବା ନିଶ୍ଚିତ ତେଣୁ ଚିନ୍ତା ଘରର ସମସ୍ତ ଦରଜା ବଂଦକରି ନିଶ୍ଚିନ୍ତ ହୋଇ ଶୋଇ ଯାଇଛି । ବଲ୍ୱମଂଗଳ ବିଜୁଳି ଆଲୁଅରେ ପ୍ରାଚୀର କାନ୍ତରେ ଏକ ରଶି ଝୁଲୁଥିବାର ଦେଖି ତାକୁ ଧରି ଭିତରକୁ ଚାଲି ଆସିଲା । ଚିନ୍ତାକୁ ନିଦରୁ ଉଠାଇଲା । ସେ ବିଲ୍ୱମଂଗଳକୁ ଦେଖି ସ୍ତମ୍ଭୀଭୂତ ହୋଇଗଲା । ବସ୍ତ୍ରହୀନ ଶରୀର, ଦୁର୍ଗନ୍ଧ ହେଉଛି । ସେ କହିଲା 'ତମେ ଏହି ଭୟଙ୍କର ରାତିରେ ନଦୀ ପାର ହୋଇ ବଂଦ ଘରକୁ କିପରି ଆସିଲ ।' ବିଲ୍ୱମଂଗଳ କାଠ ଆଶ୍ରୟରେ ନଦୀପାର ହେବା ଏବଂ ରଶି ସହାୟତାରେ ପ୍ରାଚୀର ପାର ହେବା କଥା ଶୁଣାଇଲା । ବୃଷ୍ଟି ଏବେ କମି

ଯାଇଛି, ଚିନ୍ତାମଣି ଆଲୋକ ଦେଇ ବାହାରକୁ ଆସିଲା ଏବଂ ପ୍ରାଚୀରରେ ଭୟଙ୍କର କଳା ନାଗସାପ ଝୁଲୁଥିବାର ଦେଖିଲା । ନଦୀତୀରରେ ଶବଟିଏ ପଡ଼ିଛି । ବିଲ୍ୱମଂଗଳ ମଧ୍ୟ ଦେଖିଲା ଏବଂ ଭୟରେ କମ୍ପି ଉଠିଲା । ଚିନ୍ତା ଭର୍ତ୍ସନା କରି କହିଲା- ତୁ ବ୍ରାହ୍ମଣ, ଆଜି ପୁଣି ତୋ ପିତୃଶ୍ରାଦ୍ଧ ଥିଲା । ଶ୍ରାଦ୍ଧରେ ନଦୀପାର ମଧ୍ୟ ନିଷେଧ । ସମସ୍ତ ବିଧି ନିଷେଧକୁ ପଛକୁ ପକାଇ, ରକ୍ତ, ମାଂସ, ହାଡ଼ର ପିତୁଳି ପାଇଁ ନିଜକୁ ସଂକଟରେ ପକାଇ ଏଠାକୁ ଧାଇଁ ଆସିଛୁ । ଆଜି ଯାହାକୁ ପରମ ସୁନ୍ଦର ଦେଖାଯାଉଛି ତା'ର ପରିଣତି ଦିନେ ଶବ ହେବ ହିଁ ହେବ । ତୋର ଏହି ନୀଚ ବୃତ୍ତିକୁ ଧିକ୍କାର । ଆରେ ତୁ ଯଦି ଏହିପରି ସେହି ମନମୋହନ ଶ୍ୟାମସୁନ୍ଦରଙ୍କ ପ୍ରତି ଆସକ୍ତ ହୋଇଯାଆନ୍ତା, ଯଦି ତାଙ୍କ ସହ ମିଳିତ ହେବାପାଇଁ ମନ ବ୍ୟାକୁଳ ହୋଇଉଠିଥାନ୍ତା, ତେବେ ଏବେ ମଧ୍ୟ ତାକୁ ପ୍ରାପ୍ତ ହୋଇ ଅବଶ୍ୟ କୃତାର୍ଥ ହୋଇ ସାରନ୍ତୁନି ।

ଜୈସୋ ମନ ମେରେ ହାଡ଼ ଚାମ ସୌଁ ଲଗାୟୋ ତୈ ସୋ ସ୍ୟାମ ସୌଁ
ଲଗାବୋ ତୌ ପୌଜାନିୟେ ସୟାନିକୌ
ମୈଁ ତୋ ଭୟେ ଭୋର ଭଜୌଁ ଯୁଗଳ କିଶୋର ଅବତେରୀ ତୁହୀ
ଜାନୈ ଚାହୈ କରୌ ମନ ମାନିକୈ ॥ (୧୬୮)
(ଭକ୍ତମାଳା- ପ୍ରିୟାଦାସଜୀ)

ବେଶ୍ୟାର ବଚନ ଗଭୀର ପ୍ରଭାବ ପକାଇଲା । ବିଲ୍ୱମଂଗଳ ଏବେ ନିରବରେ ଚିନ୍ତା କରିବାକୁ ଲାଗିଲା । ବାଲ୍ୟକାଳର ସ୍ମୃତି ତା' ମନକୁ ଆନ୍ଦୋଳିତ କରିପକାଇଲା । ପିତାଙ୍କ ଧାର୍ମିକ, ନୈତିକ ବାଣୀ ଯେପରି ମୂର୍ତ୍ତିମାନ ହୋଇ ତା' ସମ୍ମୁଖରେ ନାଚିଯାଉଛି । ବିଲ୍ୱମଂଗଳଙ୍କ ହୃଦୟତନ୍ତ୍ରୀ ନବୀନ ସ୍ୱରରେ ଝଙ୍କୃତ ହୋଇଉଠିଲା । ବିବେକ ଅଗ୍ନିର ପ୍ରାଦୁର୍ଭାବ ହେଲା । ଭଗବତ୍ ପ୍ରେମ ସାଗର ଉଦ୍‌ବେଳିତ ହେଲା ଏବଂ ତାଙ୍କ ଚକ୍ଷୁରୁ ଶ୍ରାବଣର ଧାରା ବହିଗଲା । ବିଲ୍ୱମଂଗଳ ଚିନ୍ତାମଣିର ଚରଣ ଧରି କହିଲା- ମାତା ! ତୁ ଆଜି ମୋତେ ଦିବ୍ୟଦୃଷ୍ଟି ଦେଇ କୃତାର୍ଥ କରି ଦେଇଛୁ । ମନକୁ ମନ ଚିନ୍ତାମଣିକୁ ଗୁରୁ ମାନି ପ୍ରଣାମ କଲା ଏବଂ ସେହି ମୁହୂର୍ତ୍ତରୁ ଜଗତ୍ ଚିନ୍ତାମଣିଙ୍କ ଚାରୁଚିନ୍ତାରେ ନିମଗ୍ନ ହୋଇ ଚିନ୍ତାମଣି ଘରୁ ପଳାଇ ଆସିଲା । ବିଲ୍ୱମଂଗଳ ଜୀବନ ନାଟକର ଯବନିକା ପରିବର୍ତ୍ତନ ହୋଇଗଲା ।

ଶ୍ୟାମସୁନ୍ଦରଙ୍କର ପ୍ରେମମୟୀ ମନୋହର ମୂର୍ତ୍ତିର ଦର୍ଶନ କରିବା ପାଇଁ ବିଲ୍ୱମଂଗଳ ପାଗଳ ପରି ଅତ୍ର ତତ୍ର ବୁଲିବାକୁ ଲାଗିଲେ । କିଛି ଦିନପରେ ଦିନେ ଆକସ୍ମାତ୍ ତା ଚଲାପଥରେ ପରମ ରୂପବତୀ ଯୁବତୀ ଦେଖା ହୋଇଗଲା । ଯୁବତୀର ସୁନ୍ଦର ରୂପ ଦେଖନ୍ତେ ନେତ୍ର ଚଞ୍ଚଳ ହୋଇ ଉଠିଲା, ମନ ମଧ୍ୟ ବ୍ୟାକୁଳିତ ହେଲା । ବିଲ୍ୱମଂଗଳଙ୍କୁ ପୁନଃ ମୋହ ହେଲା । ଭଗବାନଙ୍କୁ ଭୁଲି ପୁନଃ ପତଙ୍ଗ ହୋଇ ବିଷୟାଗ୍ନି ଦିଗରେ ଦୌଡୁଅଛି । ବିଲ୍ୱମଂଗଳ ଯୁବତୀର ପଛେ ପଛେ ତା'ଘର ପର୍ଯ୍ୟନ୍ତ ଗଲା । ଯୁବତୀ ନିଜ ଘର ଭିତରକୁ ଚାଲିଗଲା । ବିଲ୍ୱମଂଗଳ କପଟ ଛାଡ଼ି ସମସ୍ତ ଘଟଣା ଶୁଣାଇ ଦେଲେ ଏବଂ କହିଲେ ମୁଁ ପୁନଃ ସେହି ଯୁବତୀକୁ ପ୍ରାଣଭରି ଦେଖି ନେବାକୁ ଚାହୁଁଛି । ଯୁବତୀ ସେହି ଗୃହସ୍ଥଙ୍କ ଧର୍ମପତ୍ନୀ । ଗୃହସ୍ୱାମୀ ବିଚାର କଲେ ଏଥିରେ ତ କିଛି କ୍ଷତି ନାହିଁ । ଯଦି ଦେଖିବା ଦ୍ୱାରା ଇଏ ତୃପ୍ତ ହୋଇଯିବ ତେବେ ତ ଭଲକଥା । ଅତିଥି ବତ୍ସଳ ଗୃହସ୍ଥ ନିଜ ପତ୍ନୀଙ୍କୁ ଡାକିବା ପାଇଁ ଭିତରକୁ ଗଲେ । ଅନ୍ୟପଟରେ ବିଲ୍ୱମଂଗଳଙ୍କ ମନ ସମୁଦ୍ର ତରଂଗ ତୁଲ୍ୟ ବିବିଧ ଭାବନାର ଝଡ଼ ଦେଖାଦେଲା ।

ଯେ ଥରେ ମାତ୍ର ଅନନ୍ୟ ଚିତ୍ତରେ ସେହି ଅଶରଣ- ଶରଣଙ୍କ ଶରଣକୁ ଆସିଯାଏ, ତା'ର ଯୋଗ-କ୍ଷେମର ସଂପୂର୍ଣ୍ଣ ଭାର ସେ ନିଜ ଉପରକୁ ଉଠାଇ ନିଅନ୍ତି । ଆଜି ବିଲ୍ୱମଂଗଳକୁ ସଂଭାଳିବାର ଚିନ୍ତା ତାଙ୍କ ଉପରେ ପଡ଼ିଲା । ଭଗବାନ ତାକୁ ଦିବ୍ୟଚକ୍ଷୁ ପ୍ରଦାନ କଲେ । ତାକୁ ନିଜର ଆବଶ୍ୟକତାର ଯଥାର୍ଥ ଜ୍ଞାନ ହେଲା । ହୃଦୟ ଶୋକରେ ପୂରିଗଲା । ପୁଣି କ'ଣ ଭାବି ପାଖରେ ଗୋଟିଏ ବେଲ ଗଛରୁ ଦୁଇଟି କଣ୍ଟା ଘେନିଆସିଲେ । ଇତି ମଧ୍ୟରେ ଗୃହସ୍ୱାମୀ ତାଙ୍କ ଧର୍ମପତ୍ନୀକୁ ଘେନିଆସି ପହଞ୍ଚି ଗଲେ । କିନ୍ତୁ ବିଲ୍ୱମଂଗଳ ତାକୁ ଦେଖି ମନକୁ ମନ ନିଜକୁ ଧିକ୍‌କାର କଲା । କହିବାକୁ ଲାଗିଲା- ଅଭାଗୀ ଆଖି ! ତୁ ଯଦି ଦେଖି ନଥାନ୍ତୁ, ଆଜି ମୋର ଏ ଦଶା ହୋଇ ନଥାନ୍ତା, ଆଜି ମୋର ଏ ପତନ ହୋଇ ନଥାନ୍ତା । ତତ୍‌କାଳ ସେ କଣ୍ଟା ଦୁଇଟିକୁ ଦୁଇ ଆଖିରେ ଫୁଟାଇ ଦେଲା । ଆଖିରୁ ରକ୍ତ ପ୍ରବଳ ବହିବାକୁ ଲାଗିଲା । ବିଲ୍ୱମଂଗଳ ହରି ଧ୍ୱନି କରି ସେଠାରୁ ଚାଲିଆସିଲା । ଗୃହସ୍ଥ ଏବଂ ତାଙ୍କ ପତ୍ନୀ ବଡ଼ ଦୁଃଖୀ ହେଲେ । ଏବେ ବିଲ୍ୱମଂଗଳ ମନରୁ ଅବଶେଷ ମଳ ମୁକ୍ତ ହୋଇଗଲା । ଅନାଥରନାଥଙ୍କୁ ପ୍ରାପ୍ତ ହେବା ପାଇଁ ବଡ଼ ବ୍ୟାକୁଳ ହୋଇଉଠିଲା । ତାଙ୍କ ଜୀବନ ନାଟକର ଏହା ଏକ ପ୍ରମୁଖ ପରିବର୍ତ୍ତନ ।

ପରମ ପ୍ରିୟତମ କୃଷ୍ଣଙ୍କୁ ପାଇବା ପାଇଁ ଦିବାରାତ୍ର ବ୍ୟାକୁଳ ହେଉଥାନ୍ତି । ଚକ୍ଷୁର ଦୃଷ୍ଟିଶକ୍ତି ମଧ୍ୟ ନାହିଁ । ଅପର ପକ୍ଷେ କ୍ଷୁଧା-ତୃଷା ମଧ୍ୟ ଭୁଲିଗଲେଣି । କୃଷ୍ଣ ଚିନ୍ତନ ଏକମାତ୍ର ଧ୍ୟେୟ ହୋଇଛି । ଗ୍ରାମ-ନଗର-ଅରଣ୍ୟ ସର୍ବତ୍ର ଘୂରି ବୁଲୁଛି । କେବେ ଇଷ୍ଟଙ୍କ ସହ ସାକ୍ଷାତ୍ ହେବ, କେବେ ସାଧନାର ଅନ୍ତ ହେବ ? ସକଳ ପ୍ରଶ୍ନର ଉତ୍ତର କେବଳ ତାଙ୍କୁ ହିଁ ଜଣା । ଖାଦ୍ୟ ମିଳିବା ତ ଦୁରୂହ, ପୁଣି ନେତ୍ରଶକ୍ତି ନ ଥିବାରୁ ଠିକ୍ ଭାବେ ଚାଲିବା ମଧ୍ୟ ଦୁଃସାଧ୍ୟ । କିନ୍ତୁ ମନ ଅଧିକରୁ ଅଧିକ ଦୃଢ଼ ହେଉଛି । ମନୋବଳ ତାଙ୍କ ଦୟାରୁ ତାଙ୍କଠାରେ ସଦା ଲାଗି ରହୁଛି ।

ଏହିପରି ସ୍ଥିତିରେ ପ୍ରେମମୟ ଶ୍ରୀକୃଷ୍ଣ ଗୋପ ବାଳକ ବେଶରେ ଭଗବାନ୍ ବିଲ୍ୱମଂଗଳ ପାଖକୁ ଆସି କହିଲେ- ସୁରଦାସଜୀ ! ଆପଣଙ୍କୁ ପ୍ରବଳ କ୍ଷୁଧା ହେଉଥିବ । ମୁଁ କିଛି ମିଠାଇ ଏବଂ ଜଳ ଆଣିଛି । ଆପଣ ତାକୁ ଗ୍ରହଣ କରନ୍ତୁ । ପ୍ରସାଦ ହାତରେ ଧରି ବାଳକକୁ ପଚାରୁଛନ୍ତି- ଭାଇ ! ତୁମ ଘର କେଉଁଠି ? ତୁମ ନାମ କ'ଣ ତୁମେ କ'ଣ କରୁଛ ? ବାଳକ କହିଲା, ମୋ' ଘର ଏହି ପାଖରେ, ମୋର କୌଣସି ନିର୍ଦ୍ଦିଷ୍ଟ ନାମ ନାହିଁ, ଯିଏ ମୋତେ ଯେଉଁ ନାଁରେ ଡାକିଲା ମୁଁ ଜବାବ୍ ଦେଇଥାଏ । ମୁଁ ଗାଈ ଚରାଇ ଥାଏ । ମୋତେ ଯିଏ ପ୍ରେମ କରେ ମୁଁ ତାକୁ ମଧ୍ୟ ପ୍ରେମ କରିଥାଏ । ମୁଁ ଦୈନିକ ଆସି ତୁମକୁ ଖାଇବାକୁ ଦେବି । ବିଲ୍ୱମଂଗଳ ଏ ସମସ୍ତ ଶୁଣି ବିମୁଗ୍ଧ ହୋଇଗଲା ଏବଂ ତାକୁ ପ୍ରତିଦିନ ଆସିବାକୁ ଅନୁରୋଧ କଲା । ବାଳକ ଚାଲିଗଲା ଏବଂ ବିଲ୍ୱମଂଗଳ ମନକୁ ସଂଗରେ ନେଇ ଚାଲିଗଲା । 'ମନଚୋର' ତ ତାଙ୍କର ଗୋଟିଏ ନାମ ରହିଛି । ସେହି କୃପାସିନ୍ଧୁ ବିଲ୍ୱମଂଗଳ ପାଇଁ ନିତି ଖାଦ୍ୟ ଆଣି ଭୋଜନ କରାଉଛନ୍ତି । ଧନ୍ୟ ଭକ୍ତ ବତ୍ସଳ !

ଏ ଯାବତ ବିଲ୍ୱମଂଗଳ ଜାଣି ପାରିନାହାଁନ୍ତି ଯେ ଯାହା ପାଇଁ ସଂସାରୀ ଜୀବନ ତ୍ୟାଗକରି କଣ୍ଟକାକୀର୍ଣ୍ଣ ପଥରେ ଚାଲୁଛି, ଇଏ ସେହି ଭଗବାନ । କିନ୍ତୁ ସେ ଗୋପ-ବାଳକ ତା' ହୃଦୟରେ ଏପରି ସ୍ଥାନ ଜମେଇ ରଖିଥିଲା ଯେ ସେ ଅନ୍ୟକିଛି ଭାବନାକୁ ହୃଦୟରେ ସ୍ଥାନ ଦେଇ ପାରୁ ନଥିଲା । ପୁନଶ୍ଚ ଭାବିବାକୁ ଲାଗିଲା, ସଂସାର ମାୟାରୁ ମୁକ୍ତ ହୋଇ ଏବେ ଗୋପ-ବାଳକର ମାୟାରେ ବାନ୍ଧି ହୋଇଛି । ସେ ବାଳକ ଏବେ ଆସି ପଚାରିଲା- ବାବାଜୀ ଚୁପ୍‌ଚାପ ଏଠାରେ ବସି କ'ଣ ଭାବୁଛ ? ବୃନ୍ଦାବନ ଯିବ କି ? ନିଜର ଅକ୍ଷମତା ପ୍ରକାଶ କରି କହିଲା, ମୁଁ ତ ଅନ୍ଧ- ବୃନ୍ଦାବନ ଯିବି କିପରି ? ଏଇ ମୋର ବାଡ଼ି, ଏହାକୁ ଧରି ମୁଁ ତୁମ

ସହିତ ବୃନ୍ଦାବନ ଯିବି । ଭଗବାନ ବାଡ଼ିଧରି ଭକ୍ତର ଆଗେ ଆଗେ ଚାଲିଲେ । କିଛିଦୂର ଯିବାପରେ ବାଳକ କହିଲା- ବୃନ୍ଦାବନ ଆସିଗଲା- ଏବେ ମୁଁ ଯାଉଛି । ବିଲ୍ୱମଂଗଳ ବାଳକର ହାତ ଧରି ପକାଇଲା- ହାତ ସ୍ପର୍ଶ ହେବା ମାତ୍ରେ ସମଗ୍ର ଶରୀରରେ ବିଦ୍ୟୁତ ପ୍ରବାହ ଖେଳିଗଲା । ବିଲ୍ୱମଂଗଳକୁ ଏବେ ଦିବ୍ୟଦୃଷ୍ଟି ମିଳିଗଲା । ସେ ଦେଖୁଛି ସ୍ୱୟଂ ପ୍ରଭୁ, ମୋର ଇଷ୍ଟ ବାଳକ ରୂପରେ ସାକ୍ଷାତ୍ ଶ୍ୟାମସୁନ୍ଦର । କହିଲା ପ୍ରଭୁ! ବହୁଦିନ ପରେ ମୁଁ ଚିହ୍ନି ପାରିଛି, ପ୍ରଭୁ ମୁଁ ଏବେ ଛାଡ଼ିବି ନାହିଁ । ଶରୀର ରୋମାଞ୍ଚ, ନେତ୍ର ଲୋତକାପ୍ଲୁତ, ବାକ୍ୟ ଗଦ୍‌ଗଦ୍- ଇତ୍ୟାଦି । ଏବେ ମୁଁ ଯେ ହାତ କଦାପି ଛାଡ଼ିବି ନାହିଁ । ପ୍ରଭୁ ଯୋର କରି ହାତ ଛଡ଼ାଇ ଦେଲେ । ଏବେ ବିଲ୍ୱମଂଗଳ କହିଲା, ଯାଉଛ ତ ? କିନ୍ତୁ ମନେରଖ-

ହସ୍ତମୁତ୍‌କ୍ଷିପ୍ୟ ଯାତୋଽସି ବାଳକୃଷ୍ଣ କିମଦ୍ ଭୁତମ୍
ହୃଦୟାଦ୍ ଯଦି ନିର୍ଯାସି ପୌରୁଷଂ ଗଣୟା ମିତେ ।।

ଭଗବାନ୍ ହୃଦୟରୁ ଯାଇ ପାରିଲେ ନାହିଁ । ଗୀତାରେ ଏହି ବାକ୍ୟ ସ୍ୱୟଂ ଘୋଷଣା କରିଛନ୍ତି- 'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍' (ଗୀତା-୪-୧୧) ମୋତେ ଯିଏ ଯେଉଁ ପ୍ରକାର ଭଜେ ମୁଁ ତାକୁ ସେହି ପ୍ରକାର ଭଜେ ।

ଭଗବାନ ବିଲ୍ୱମଂଗଳ ଚକ୍ଷୁ ଉପରେ ନିଜର କରସ୍ପର୍ଶ କରିଦେଲେ ନେତ୍ରଜ୍ୟୋତି ଖୋଲିଗଲା । ସମ୍ମୁଖରେ ପ୍ରଭୁଙ୍କୁ ଦେଖି ନିଜକୁ ସଂଭାଳି ପାରିଲା ନାହିଁ । ତାଙ୍କ ପାଦତଳେ ପଡ଼ିଗଲା । ପ୍ରେମାଶ୍ରୁରେ ପ୍ରଭୁଙ୍କ ପାବନ ଚରଣ କମଳ ଧୋଇଦେଲା ।

ଭଗବାନ ତାକୁ ଉଠାଇ ଛାତିରେ ଲଗାଇଲେ । ଦେବଗଣ ଏହି ମୁଗ୍ଧ ଅବସରରେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ହରିନାମ ପବିତ୍ର ଧ୍ୱନିରେ ଆକାଶ ପ୍ରକମ୍ପିତ ହେଲା । ଭକ୍ତ ଓ ଭଗବାନଙ୍କର ଜୟ ଜୟକାର ଶୁଭିଲା ।

ବିଲ୍ୱମଂଗଳ ଜୀବନ ତମାମ ଭକ୍ତିର ପ୍ରଚାର କରି, ଭଗବାନଙ୍କ ମହିମା ପ୍ରଚାରକରି ଶେଷରେ ଗୋଲୋକ ବାସୀ ହୋଇଥିଲେ ।



# ସ୍ୱାମୀ ନାରାୟଣ

ଖ୍ରୀ.ଅ.୧୭୮୧ରେ ଏପ୍ରିଲ ତିନି ତାରିଖ, ବିକ୍ରମ ସଂବତ ୧୮୩୭ ଚୈତ୍ର ଶୁକ୍ଳ ନବମୀ ତିଥିରେ ଅଯୋଧ୍ୟା ନିକଟବର୍ତ୍ତୀ 'ଛପିଆ' ଗ୍ରାମରେ ଗୋଟିଏ ସରବରିୟା ବ୍ରାହ୍ମଣ କୁଳରେ ଭଗବାନ୍ ସ୍ୱାମୀ ନାରାୟଣ ଅବତରିତ ହୋଇଥିଲେ । ପିତାଙ୍କ ନାମ ଧର୍ମଦେବ ଏବଂ ମାତାଙ୍କ ନାମ ଭକ୍ତିଦେବୀ । ମାତା ପିତା ଏହି ଦିବ୍ୟ ବାଳକର ନାମ ଘନଶ୍ୟାମ ରଖିଥିଲେ । ଜନ୍ମହେବା ମାତ୍ରେ ଅଧିବାସୀମାନଙ୍କର ଅତ୍ୟାଚାରରେ ଅତିଷ୍ଠ ହୋଇ ଧର୍ମଦେବ ସପରିବାର ଅଯୋଧ୍ୟାରେ ଆସି ସ୍ଥାୟୀଭାବେ ବସବାସ କରିବାକୁ ଲାଗିଲେ । ଏହିଠାରେ ଘନଶ୍ୟାମର ଯଜ୍ଞୋପବୀତ ସଂସ୍କାର ଏବଂ ଶିକ୍ଷାଲାଭର ବ୍ୟବସ୍ଥା କରାଗଲା । ବାଳକ ଘନଶ୍ୟାମ ସ୍ୱୀୟ ଦୈବୀ ପ୍ରତିଭାରେ ଅଳ୍ପ ବୟସରେ ସକଳ ଶାସ୍ତ୍ର ନିଷ୍ଣାତ ହୋଇଗଲେ । ଏବେ ତାଙ୍କ ବୟସ ମାତ୍ର ଏଗାର ବର୍ଷ । ବୁଲାବୁଲି କରିବାର ବୟସ । କିଛି ଦିନ ଅନ୍ତରରେ ତାଙ୍କ ପିତା ମାତା ସ୍ୱର୍ଗବାସୀ ହେଲେ । ସେ ବି.ସଂ ୧୮୪୯ ଆଷାଢ଼ ଶୁକ୍ଳ ଦଶମୀ ଦିନ ରାମ ପ୍ରସାଦ ଏବଂ ଇଚ୍ଛାରାମ ନାମକ ନିଜର ଦୁଇ ବଡ଼ ଭାଇଙ୍କ ଉପରେ ଘରର ସମସ୍ତ ଭାର ଦେଇ ହଠାତ୍ ଘରୁ

ବାହାରିଗଲେ । ସେହିଦିନଠାରୁ ଲଗାତର ସାତବର୍ଷ କାଳ ଭାରତର ବିଭିନ୍ନ ତୀର୍ଥ ଭ୍ରମଣ କରି ଏବଂ ନିଜ ନାମ ବଦଳାଇ ନୀଳକଣ୍ଠ ବାର୍ଣ୍ଣି ରଖିଥିଲେ । ଏହିପରି ତୀର୍ଥାଟନ କରି ନୀଳକଣ୍ଠବାର୍ଣ୍ଣି ସଂ ୧୮୫୬ ବି.ସଂ ଲୋଜପୁରରେ ଉପଗତ ହେଲେ । ଯେଉଁଠାରେ ସମାଧିରୁ ଶ୍ରୀରାମାନୁଜ ଚାର୍ଯ୍ୟଦ୍ୱାରା ଦୀକ୍ଷା ପ୍ରାପ୍ତ ହୋଇ ଭଗବାନ୍‌ଙ୍କର ଅନନ୍ୟ ଭକ୍ତ ଉଦ୍ଧବାବତାର ଶ୍ରୀରାମାନନ୍ଦ ସ୍ୱାମୀଙ୍କର ଆଶ୍ରମ ଥିଲା । ସେଠାରେ ସେଠାରେ ତାଙ୍କ ଶିଷ୍ୟ ମୁକ୍ତାନନ୍ଦ ସ୍ୱାମୀ, ସୁଖାନନ୍ଦ ସ୍ୱାମୀ ଆଦି ରହୁଥାନ୍ତି । ସେହି ଲୋକମାନଙ୍କ ଦ୍ୱାରା ଶ୍ରୀନୀଳକଣ୍ଠବର୍ଣ୍ଣିଙ୍କ ଆକର୍ଷଣ ଶ୍ରୀରାମାନନ୍ଦ ସ୍ୱାମୀଙ୍କ ଦିଗକୁ ହେଲା । ଏକବର୍ଷ ପରେ ସଂ ୧୮୫୭ବି. କାର୍ତ୍ତିକ ଶୁକ୍ଳ ଏକାଦଶୀ 'ପିପଳଣା' ନାମକ ସ୍ଥାନରେ ତାଙ୍କଠାରୁ ଭଗବତୀ ଦୀକ୍ଷା ନେଇଥିଲେ । ଦୀକ୍ଷା ଗ୍ରହଣ ପରେ ତାଙ୍କ ନାମ ନୀଳକଣ୍ଠ ବର୍ଣ୍ଣିରୁ ଶ୍ରୀନାରାୟଣ ସ୍ୱାମୀରେ ପରିବର୍ତ୍ତିତ ହୋଇଗଲା । ଖୁବ୍ ଅଳ୍ପ କାଳ ମଧ୍ୟରେ ନିଜର ତେଜସ୍ୱୀତା, ତପସ୍ୱୀତା ଆଦି ବିରଳ ଗୁଣ ଦ୍ୱାରା ଶ୍ରୀରାମାନନ୍ଦ ସ୍ୱାମୀ- ସଂ ୧୮୫୮ ବି. କାର୍ତ୍ତିକ ଶୁକ୍ଳ ଏକାଦଶୀରେ ନାରାୟଣ ସ୍ୱାମୀଙ୍କୁ ଜେତପୁର ଗଦିରେ ଅଭିଷିକ୍ତ କରି ପଞ୍ଚଭୌତିକ ଶରୀର ତ୍ୟାଗ କଲେ ।

ଏହାପରେ ସ୍ୱାମୀନାରାୟଣ ଆପଣାର ଦିବ୍ୟଜ୍ୟୋତି ପ୍ରକାଶ କଲେ । ସେ ବିଶିଷ୍ଟାଦ୍ୱୈତ ସ୍ୱାମୀନାରାୟଣ ସଂପ୍ରଦାୟର ସ୍ଥାପନା କରି ଦେଶରେ ଅତି ତୀବ୍ର ବେଗରେ ଏହାର ପ୍ରଚାର କଲେ । ସଂ. ୧୮୮୬ ବିଂ ଜ୍ୟେଷ୍ଠଶୁକ୍ଳ ଦଶମୀ ଦିନ ସ୍ଥୁଳ ଶରୀର ତ୍ୟାଗକଲେ ।

ଶ୍ରୀସ୍ୱାମୀ ନାରାୟଣ ସଂପ୍ରଦାୟ ମଧ୍ୟରେ ତାଙ୍କର ହରି, କୃଷ୍ଣ, ହରିକୃଷ୍ଣ, ଶ୍ରୀହରି, ଘନଶ୍ୟାମ, ସରଜୁଦାସ, ନୀଳକଣ୍ଠବର୍ଣ୍ଣି, ସହଜାନନ୍ଦ ସ୍ୱାମୀ, ଶ୍ରୀଜୀ ମହାରାଜ, ଶ୍ରୀସ୍ୱାମୀ ନାରାୟଣ, ନାରାୟଣ ମୁନି ଆଦି ବହୁ ନାମ ପ୍ରଚଳିତ ।

ଭଗବାନ୍ ସ୍ୱାମୀ ନାରାୟଣ ଜନ ସମାଜର କଲ୍ୟାଣ ପାଇଁ ଶିକ୍ଷାପାତ୍ରୀ ନାମକ ଏକ ଗ୍ରନ୍ଥ ରଚନା କରିଅଛନ୍ତି । ଯହିଁରେ ସଂପୂର୍ଣ୍ଣ ଶାସ୍ତ୍ରର ସାର କଥା ନିହିତ ଅଛି । କିଛି ଶ୍ଳୋକର ଭାବାର୍ଥ ସୂଚନା କ୍ରମେ ପ୍ରଦତ୍ତ ହେଉଛି- କୌଣସି ପ୍ରାଣୀକୁ ହିଂସା କରିବ ନାହିଁ । ଅହିଂସା ମହାନଧର୍ମ, ସମସ୍ତଙ୍କୁ ବର୍ଣ୍ଣାଶ୍ରମ ଧର୍ମ ପାଳନ କରିବା ଉଚିତ୍ । ଯେଉଁ ଗ୍ରନ୍ଥରେ ଈଶ୍ୱରଙ୍କ ସ୍ୱରୂପତା ଖଣ୍ଡନ ହୋଇଛି, ତାହାକୁ ପ୍ରମାଣ ମାନିବା ଠିକ୍ ହେବନାହିଁ । ଶ୍ରୁତି, ସ୍ମୃତି ଏବଂ ସଦାଚାର ଦ୍ୱାରା ହିଁ

ଧର୍ମର ବୋଧ ହୋଇଥାଏ । ପରମାତ୍ମାଙ୍କ ମହାତ୍ମ୍ୟ ଜ୍ଞାନ ଦ୍ୱାରା ଯେଉଁ ଅତ୍ୟନ୍ତ ସ୍ନେହ ହୋଇଥାଏ, ତାହା ହିଁ ଭକ୍ତି । ଭଗବାନଙ୍କ ବ୍ୟତୀତ ଅନ୍ୟାନ୍ୟ ପଦାର୍ଥରେ ଯେଉଁ ପ୍ରୀତିର ଅଭାବ ହୋଇଥାଏ, ତା'ର ନାମ ବୈରାଗ୍ୟ ଜୀବ, ଈଶ୍ୱର ଏବଂ ମାୟା ଏହି ତିନିଗୋଟିକୁ ଯଥାର୍ଥ ଭାବେ ଜାଣିବା ହେଉଛି ଜ୍ଞାନ ଇତ୍ୟାଦି ଇତ୍ୟାଦି । ଏ ସମସ୍ତ ଉପଦେଶ ବ୍ୟତୀତ ଦାର୍ଶନିକ ଉପଦେଶର ସମାହାର 'ଶିକ୍ଷାପତ୍ରୀ'ରେ ହୋଇଅଛି । ଅନେକ ମୂଲ୍ୟବାନ ଉପଦେଶ ଯାହା ଏଠାରେ ସ୍ଥାନିତ କରାଯାଇ ପାରୁନାହିଁ । ତାଙ୍କ ଉପଦେଶର ସଂଗ୍ରହ 'ବଚନାମୃତ' ନାମକ ମନୋଜ୍ଞ ଗ୍ରନ୍ଥରେ ସ୍ଥାନ ପାଇଛି । ଏହା ମୁମୁକ୍ଷୁ ପାଇଁ ବଡ଼ ଉପଯୋଗୀ । ଏଥିରେ ସାଂଖ୍ୟ, ଯୋଗ, ବେଦାନ୍ତ ଏହି ତିନି ଦର୍ଶନ ତତ୍ତ୍ୱର ସମାବେଶ ଘଟିଛି । ସ୍ୱାମୀ ନାରାୟଣଙ୍କ ଉପଦେଶ ଏହିପରି-

ହିଂସା, ମାଂସ, ମଦ୍ୟ, ଆତ୍ମଘାତ, ବିଧବା ସ୍ପର୍ଶ, କାହାରିକୁ ନିନ୍ଦିତ କରିବା, ବ୍ୟଭିଚାର, ଦେବନିନ୍ଦା, ଭଗବତ୍ ବିମୁଖ, ମନୁଷ୍ୟଙ୍କଠାରୁ କୃଷ୍ଣକଥା ଶୁଣିବା, ଚୋରୀ, ଯାହାର ଅନ୍ନ ଜଳ ଗ୍ରହଣୀୟ ନୁହେଁ ତାହାକୁ ସେବନ କରିବା ଏହି ଏଗାରଗୋଟି ଦୋଷକୁ ତ୍ୟାଗକରି ଭଗବାନଙ୍କ ଶରଣ ନେଲେ ଭଗବତ୍ ପ୍ରାପ୍ତି ହୋଇଥାଏ ॥



# ଭକ୍ତ ନାଗରୀ ଦାସ

ବ୍ରହ୍ମେନ୍ଦ୍ର ରୁଦ୍ର ମୁନିଦେବ ସମର୍ଚ୍ଚିତାଙ୍ଘ୍ରିଃ
ସର୍ବେସ୍ୱରୋଽସି ଭଗବାନ ପୁରୁଷୋତ୍ତମୋଽସି ।
କରୁଣ୍ୟ ସାଗର ଉତାମୃଦୟା ବଶାନ୍ମେ
ଭୂୟାସ୍ତ୍ୱମେବ ଶରଣଂ ହ୍ୟଗତେ ର୍ମୁକୁନ୍ଦ ॥

ବିକ୍ରମ ୧୫ଶ ଶତାବ୍ଦୀରେ ଭାରତର ପୁନୀତ ପୁଣ୍ୟସ୍ଥଳ ଶ୍ରୀପୁଷ୍କରାରଣ୍ୟ ଉପରେ ମଧ୍ୟ ଦୁର୍ଦ୍ଧାନ୍ତ ଯବନଙ୍କର ଆକ୍ରମଣ ହେବାରେ ଲାଗିଥାଏ । ଏହି ଅରଣ୍ୟର ଉତ୍ତର ଭାଗରେ ସଲିମ୍‌ଶାହ ଚିସ୍ତି (ଯବନ ଫକୀର) ଏଠାକାର ଯାତ୍ରୀ ତଥା ନିବାସୀଙ୍କୁ ଧର୍ମ ପରିବର୍ତ୍ତନ ପାଇଁ ନାନା ପ୍ରକାର ଦୁଃଖ ଦେବାରେ ଲାଗିଥାଏ । ଆର୍ତ୍ତ ହିନ୍ଦୁ ଜନତାର ପ୍ରାର୍ଥନାରେ ଦ୍ରବିତ ହୋଇ ମଥୁରାର ଶ୍ରୀନାରଦଟିଲରେ ତପଶ୍ଚର୍ଯ୍ୟା ପୂର୍ଣ୍ଣକରି ଶ୍ରୀପରଶୁରାମଦେବଙ୍କ ବି.ସଂ-୧୫୧୫ରେ ଏଠାରେ ପଦାର୍ପଣ କଲେ । ଏହାଙ୍କ ଆଗମନରେ ଯବନ ଆତଙ୍କର ସମାପ୍ତି ଘଟିଲା । ପୁଷ୍କରର ଦକ୍ଷିଣତଟରେ ଗୋଟିଏ କେନ୍ଦ୍ର ନିର୍ମାଣ କଲେ । ଯାହା ଆଜି ମଧ୍ୟ ପରଶୁରାମଘାଟ- ପରଶୁରାମ ଦ୍ୱାର ନାମରେ ବିଖ୍ୟାତ । ଦ୍ୱିତୀୟ କେନ୍ଦ୍ର ପୁଷ୍କରରୁ ତିନି ଯୋଜନ ଦୂର ଉତ୍ତର ଭାଗରେ ସ୍ଥାପିତ କରିଥିଲେ । ଯେଉଁଠି ପୁରାତନ ଜାମଦଗ୍ନ୍ୟ ଶ୍ରୀପରଶୁରାମଙ୍କ ତପସ୍ଥଳୀ ଥିଲା, ସେହି ସ୍ଥଳ ଆଜି ପରଶୁରାମ ପୁରୀ ଏବଂ ନିମ୍ବାର୍କାଚାର୍ଯ୍ୟ ପୀଠ ନାମରେ ବ୍ୟବହୃତ ହେଉଅଛି । ବାତାବରଣ ଶାନ୍ତ ହେବାରୁ ଭକ୍ତମାନେ ଶାନ୍ତିପୂର୍ଣ୍ଣ ଭାବେ ଯାତାୟାତ କଲେ । ସନ୍ନିକଟବର୍ତ୍ତୀ ଭାଟୀ ଏବଂ ରାଠୌଡ଼ ରାଜାମାନେ ପୀଠର ଉନ୍ନତି ପାଇଁ ପ୍ରଯତ୍ନ କରିଥିଲେ । ଏହିପରି ପ୍ରାୟ ପଚିଶବର୍ଷ ବିତିଗଲା । ଆଚାର୍ଯ୍ୟଙ୍କୁ ଏହି ସମୟକୁ ୧୪୦ବର୍ଷ ଆୟୁ ହୋଇଗଲା । ପ୍ରତିଦିନ ପୁଷ୍କର ଯାତାୟତ କରୁଥିଲେ । ଏହି ଅରଣ୍ୟ ପ୍ରଦେଶ ତଥା ଆଚାର୍ଯ୍ୟ ପୀଠର ସୁରକ୍ଷା ପାଇଁ ଏଠାରେ ଏକ ଧାର୍ମିକ ରାଜ୍ୟ ପ୍ରତିଷ୍ଠାର ପ୍ରୟୋଜନ ଥିଲା । ଏଣୁ ଗୁରୁଦେବଙ୍କ

ଆଦେଶ ଅନୁସାରେ ଯୋଧପୁରର ବଡ଼ ରାଜା ଉଦୟ ସିଂହଙ୍କ ଦ୍ୱିତୀୟ ପୁତ୍ର କୁମାର କୃଷ୍ଣ ସିଂହଜୀ ସେବାରେ ଆସି ଉପସ୍ଥିତ ହେଲେ । ଆଚାର୍ଯ୍ୟଙ୍କ ଶୁଭ ଆଶୀର୍ବାଦ ପ୍ରାପ୍ତ କରି ବିକ୍ରମ ସଂ ୧୬୬୪ରେ ସେ କୃଷ୍ଣଗଡ଼ ରାଜ୍ୟ ସ୍ଥାପନ କଲେ । ନିମ୍ବାର୍କଚାର୍ଯ୍ୟଙ୍କ ପୀଠରୁ ଦେଢ଼ ଯୋଜନ ଦୂର ଅଗ୍ନିକୋଣରେ ରାଜଧାନୀର ଭିତ୍ତି ସ୍ଥାପିତ ହେଲା । ଆଚାର୍ଯ୍ୟ ପୀଠରୁ ଭଗବାନ ଶ୍ରୀନୃତ୍ୟ ଗୋପାଳ ପ୍ରତିମା କିଲ୍ଲାରେ ପ୍ରତିଷ୍ଠା କରାଗଲା । ଭଗବାନ୍‌ଙ୍କ ଏହି ପ୍ରତିମା ରାଜ୍ୟର ଇଷ୍ଟଦେବ ପ୍ରତିଷ୍ଠିତ ହୋଇଥିଲେ । ନରେନ୍ଦ୍ର ପ୍ରଧାନମନ୍ତ୍ରୀ ରୂପରେ ନୀତି ପୂର୍ବକ ପ୍ରଜାଙ୍କର ରକ୍ଷା କରିଥାନ୍ତି ।

ରାଜ୍ୟ ସଂସ୍ଥାନକ ମହାରାଜା କୃଷ୍ଣସିଂହଙ୍କ ସମୟରେ ରାଜ୍ୟ ସ୍ଥାପନର ପାଞ୍ଚ ବର୍ଷ ପୂର୍ବରୁ ତାଙ୍କ ସଂରକ୍ଷକ ଗୁରୁ ଶ୍ରୀପରଶୁରାମ ଦେବ ମହାରାଜ ଜୀବନ୍ତ ସମାଧି ନେଇ ଅନ୍ତର୍ହିତ ହୋଇଗଲେ । ଅପରପକ୍ଷେ କୃଷ୍ଣସିଂହ ମଧ୍ୟ ପରମଧାମର ଯାତ୍ରୀହେଲେ । ତାହାଙ୍କ ୧୦୦ବର୍ଷ ପରେ ସେହି ରାଜବଂଶରେ ଆଦର୍ଶ ଭକ୍ତ ରାଜକୁମାର ସାଁବନ୍ତି ସିଂହଙ୍କ ଜନ୍ମହେଲା । ଯେ ପରବର୍ତ୍ତୀ ସମୟରେ ନାଗରୀ ଦାସଜୀ ନାମରେ ବିଖ୍ୟାତ ହୋଇଥିଲେ । ଏହାଙ୍କ ଜନ୍ମ୧୭୫୬ ପୌଷ କୃଷ୍ଣ ତ୍ରୟୋଦଶୀ ରୂପନଗରରେ ହୋଇଥିଲା । ସେହି ସମୟରେ ବୃନ୍ଦାବନ ଦେବାଚାର୍ଯ୍ୟ ମହାରାଜ ପୀଠାଧୀଶ ହୋଇଥିଲେ । ହୋନହର ରାଜକୁମାର ସାଁବନ୍ତ ସିଂହଜୀଙ୍କ ଆଚାର୍ଯ୍ୟ ପୀଠରେ ହେଉଥିବା ସମସ୍ତ ସଂସ୍କାର ମର୍ଯ୍ୟାଦାପୂର୍ବକ କରାଇଲେ । ପାଞ୍ଚବର୍ଷରୁ ବୈଷ୍ଣବଦୀକ୍ଷା ପ୍ରାପ୍ତ କରିଥିଲେ । ଏହା ମଧ୍ୟ ପରଂପରାଗତ ନିୟମ ଥିଲା । ଗୁରୁଦେବଙ୍କ ଆଜ୍ଞାରେ ଆଚାର୍ଯ୍ୟପୀଠ ସନ୍ନିକଟ ଆସିଥିବା ବର୍ବର ସିଂହକୁ ମଲ୍ଲଯୁଦ୍ଧ ଦ୍ୱାରା ହତ୍ୟା କରିଥିଲେ । ଏହି ସମୟର ତାଙ୍କ ଚିତ୍ର କୃଷ୍ଣଗଡ଼ ରାଜମହଲ ଏବଂ ଆଚାର୍ଯ୍ୟ ପୀଠରେ ବିଦ୍ୟମାନ, ଏବଂ 'ସିଂହକୀ ଶିଙ୍ଘାର' ନାମକ ଏକ କାବ୍ୟଗ୍ରନ୍ଥ ରଚିତ ଏବଂ ପ୍ରକାଶିତ ।

ବି.ସଂ ୧୭୭୭ରେ ଭାନାଗଡ଼ ନରେନ୍ଦ୍ର ରାଜକୁମାରୀଙ୍କ ସହିତ ତାଙ୍କର ବିବାହ ସଂପନ୍ନ ହୋଇଥିଲା । ପିତାଙ୍କ ଆଜ୍ଞାନୁସାରେ ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ବସ୍ତୁତଃ ତାଙ୍କ ଚିତ୍ତ ସାଂସାରିକ ପ୍ରପଞ୍ଚରୁ ଦୂରେଇ ଯାଇଥିଲା । ଏହି ସମୟରେ ଗୁରୁଦେବ ତାଙ୍କୁ ଭଗବାନଙ୍କ ଗୁଣାନୁବାଦ କବିତା ରଚନା କରିବାର ଆଜ୍ଞା ଦେଲେ । ଗୁରୁ ଆଜ୍ଞା ଅନୁସାରେ ସର୍ବପ୍ରଥମ ବି.ସଂ ୧୭୮୦ରେ ୪୫

ଛନ୍ଦର 'ମନୋରଥ ମଂଜରୀ' ନାମକ ପୁସ୍ତକ ରଚନା କରିଥିଲେ । ଭକ୍ତି ଗ୍ରନ୍ଥରୁ କବିଙ୍କ ମାନସିକ ଅବସ୍ଥା ସଂପର୍କରେ ସୂଚନା ମିଳିଥାଏ ।

କବ ବୃନ୍ଦାବନ ଧରନି ମେଁ ଚରନ ପରୈଁଗେ ଜାୟ
ଲୋଟି ଧୂରିଧରି ସୀସପର, କଛୁ ମୁଖହୂ ମୈଁଖାୟ
ଜମୁନା ତଟ ନେସି ଚାଁଦନୀ, ସୁଭଗ ପୁଲିନ ମୈଁ ଜାୟ
କବ ଏକାକୀ ହୋୟହୈଁ, ମୌନ ବଦନ ଭରରାୟ ॥

କିପରି ଉତ୍କଟ ଲାଳସା ! ଏହା ମନୋରଥ ମଂଜରୀରୁ ପରବର୍ତ୍ତୀ ଅନେକ ଗ୍ରନ୍ଥରେ ଏହା ପ୍ରତିପାଦିତ ହୋଇଛି । ସେଗୁଡ଼ିକ ଯଥାକ୍ରମେ-୧. ମନୋରଥ ମଂଜରୀ (୧୭୮୦), ରସିକରତ୍ନାବଳୀ (୧୭୮୨), ବିହାର ଚନ୍ଦ୍ରିକା (୧୭୮୮), ନିକୁଂଜବିଳାସ, ବ୍ରଜଯାତ୍ରା, ଭକ୍ତିସାର (୧୭୯୪), ପାରାୟଣ ବିଧି ପ୍ରକାଶ, କଳି ବୈରାଗ୍ୟ ବଲ୍ଲରୀ (୧୭୯୯), ଗୋପୀ ପ୍ରେମ ପ୍ରକାଶ (ବି.ସ. ୧୮୦୦), ବ୍ରଜବୈକୁଣ୍ଠ ତୁଲା (୧୮୦୧), ଭକ୍ତିମଗ ଦୀପିକା-(୧୮୦୨), ଫାଗ ବିହାର ଯୁଗଳଭକ୍ତି ବିନୋଦ (୧୮୦୮), ବାଲ ବିନୋଦ, ବନ ବିନୋଦ (୧୮୦୯), ସୁଜନାନନ୍ଦ, ତୀର୍ଥାନନ୍ଦ (୧୮୧୦) ଏବଂ ବନଜ ପ୍ରଶଂସା (୧୮୧୯) ଏହିପରି ଅଠର ଖଣ୍ଡ ଗ୍ରନ୍ଥର ସୂଚୀ ପ୍ରାପ୍ତ ହୋଇଥାଏ । କିଛି ସମୀକ୍ଷକ ଏହି ଅଠର ଖଣ୍ଡ ଗ୍ରନ୍ଥ ବ୍ୟତୀତ ଅନ୍ୟ ୫୫ଖଣ୍ଡ ଗ୍ରନ୍ଥ ତାଙ୍କ କୃତି ବୋଲି କହିଥାନ୍ତି । 'ବୈନ ବିଳାସ' ଏବବଂ 'ଗୁପ୍ତରସ ପ୍ରକାଶ' ଏହି ଦୁଇଟି ତାଙ୍କର ଅପ୍ରାପ୍ୟ ପୁସ୍ତକକୁ ମିଶାଇ ଗ୍ରନ୍ଥ ସଂଖ୍ୟା ୭୫ ହୋଇଥାଏ । କିନ୍ତୁ ଏପରି ମଧ୍ୟ କୁହାଯାଏ ଯେ ଏହାଙ୍କ ପୂର୍ବରୁ ତିନିଜଣ ନାଗରୀ ଦାସ କବି ଥିଲେ, ସୁତରାଂ କେଉଁନାଗରୀ ଦାସଙ୍କର କେଉଁ ରଚନା ତାହା ନିର୍ଣ୍ଣୟ କରିବା କଠିନ । କିନ୍ତୁ ଉପର୍ଯ୍ୟୁକ୍ତ ସମୟରେ ପ୍ରାପ୍ତ ୧୮ଗ୍ରନ୍ଥ ନିଶ୍ଚିତ ଭାବେ ସେହି ନଗରୀ ଦାସଙ୍କର । ବି.ସଂ ୧୮୦୫ରେ ତାଙ୍କ ପିତା ଶ୍ରୀରାଜସିଂହଙ୍କର ସ୍ୱର୍ଗବାସ ହେଲା । ଏଣୁ ସେ ରାଜ୍ୟ ଶାସନ ଗ୍ରହଣ କଲେ । ୧୮୦୮ ବିଂ.ସ.ରେ ଦୀର୍ଘ ତୀର୍ଥ ଯାତ୍ରା କରି ଶ୍ରୀଗୋବର୍ଦ୍ଧନ, ରାଧାକୁଣ୍ଡରେ ସ୍ନାନକରି ସେଠାରେ ପରମାଚାର୍ଯ୍ୟ ଶ୍ରୀନିବାସାଚାର୍ଯ୍ୟଙ୍କ ବୈଠକ ଦର୍ଶନ କରି ରାତ୍ରି ଯାପନ କରିଥିଲେ । ବଂଶୀ ଦାସଜୀ ସେଠାରେ ପୂଜାରୀ ଥାନ୍ତି । ଶ୍ରୀରୂପରସିକଜୀଙ୍କ ପଦର ସୁନ୍ଦର କୀର୍ତ୍ତନ କରିଥିଲେ । ଶ୍ରୀନାଗରୀ ଦାସଜୀଙ୍କୁ ସେହିପଦ ବଡ଼ ସୁନ୍ଦର ଲାଗିଲା-

ଚାର ଜାମ ବିତଇ ନିସା, ବଂସୀଦାସ ନିକେତ
ରୂପ ରସିକ ରସ କୀରତନ, ଭୟୋ ପ୍ରେମ କୋଖେତ ।।

ଯେ ରୂପ ରସିକଜୀ ୩୫ରେ ଶ୍ରୀନିମ୍ବାର୍କାଚାର୍ଯ୍ୟ ଶ୍ରୀହରି ବ୍ୟାସଦେବାଚାର୍ଯ୍ୟଙ୍କ ଶିଷ୍ୟ ଥିଲେ । ଶ୍ରୀନଗରୀ ଦାସଜୀଙ୍କ କବିତାରେ ଏହି ଦୁଇ ମହାନୁଭବଙ୍କ ସରଣୀ ମିଳିଥାଏ ।

ତୀର୍ଥଯାତ୍ରାରୁ ରାଜଧାନୀକୁ ଫେରି ଆସିଲେ । ଏବେ ବୈରାଗ୍ୟର ତୀବ୍ରତା ତାଙ୍କ ହୃଦୟରେ ଦୃଢ଼ୀଭୂତ ହୋଇଥାଏ । ଏହି ସମୟରେ ତାଙ୍କର ବୟସ ୫୪ବର୍ଷ । ବ୍ରଜେନ୍ଦ୍ର ନନ୍ଦନଙ୍କଠାରେ ତାଙ୍କ ଚିତ୍ତ ଲେଖିଗଲା । ତେଣୁ ସଂସାରରେ ଆଉ ଲାଗନ୍ତା କିପରି ? ଆଶା ପୂର୍ତ୍ତିରେ ବିଳମ୍ବ ହେଉଥିବାରୁ କବି ଚିତ୍ତର ଉଦ୍‌ବେଗ ଲକ୍ଷ୍ୟ କରନ୍ତୁ ।

ଲେତ ନ ମୁଖହରି ଭକ୍ତିକୋ, ସକଲ ସୁଖନ କୋ ସାର ।
କହା ଭୟୋ ନୃପହ ଭୟୋ, ଢୋବତ ଜଗ ବେଗାର ।।

ଏହି ବିକଳତାର ମୁଖ୍ୟ କାରଣ ଥିଲା ଯେ ଏହି ସମୟରେ କୌଣସି କାରଣରୁ ହିଁ ମୋର ମନ ଶ୍ରୀଧାମରେ ଲାଗି ରହିଅଛି । କିନ୍ତୁ ମନ ବଡ଼ ଚଞ୍ଚଳ । ଏହିକ୍ଷଣି ଏଇଠି ଅଛି ପର ମୁହୂର୍ତ୍ତରେ ଅନ୍ୟ ପଟରେ ଲାଗିଯାଉଛି । ଏଣୁ ଯେତେ ଶୀଘ୍ର ପାରାଯାଏ ଶ୍ରୀଧାମକୁ ଚାଲିଯିବା ଉଚିତ ।

ଔର ଭୌନ ଦେଖୁଁ ନଅବ, ଦେଖୋଁ ବୃନ୍ଦା ଭୌନ
ହରି ସେ ସୁଧରୀ ଚାହିୟେ, ସବହୀ ବେଗରୌ କ୍ୟୋଁନା ।।

ଏହିପରି ବ୍ୟଗ୍ରତା ବାସ୍ତତା ମଧ୍ୟରେ ତିନି ଚାରିବର୍ଷ ବ୍ୟତୀତ ହୋଇଗଲା । ନିଜର ବିରକ୍ତ ବେଶ ନେବାର ନିଶ୍ଚୟ କରିନେଲେ । ଏହି ବିରକ୍ତ (ଡୋର-କୌପୀନ) ବେଶ କାହାଠାରୁ ନେବେ ? ଦୀକ୍ଷାଗୁରୁ ଶ୍ରୀବୃନ୍ଦାବନ ଦେବଜୀ ତ ସ୍ୱର୍ଗବାସୀ ହୋଇ ସାରିଥିଲେ । ସେ ଗଦୀରେ ଶ୍ରୀଗୋବିନ୍ଦଦେବଜୀ ତୀର୍ଥାଟନରୁ ଫେରିଥିଲେ । ସେ ଆଚାର୍ଯ୍ୟଶ୍ରୀଙ୍କ ଅଧିକାରୀ ଶ୍ରୀମୋହନଦେବଜୀ ବଡ଼ ଉଚ୍ଚକୋଟୀର ସନ୍ଥ । ସେହି ସମୟରେ ସେ ବ୍ରଜ ଭୂମିରେ ରହୁଥିଲେ । ତାଙ୍କ ଚିନ୍ତାଥିଲା-

ମାନୁଷ ସିରରିନ ଜନମ୍ୟୋତବକୋ, ଦେବ ପିତର ଋଷି ଭୂତନ ସବ୍‌କୋ
ହରିକୋ ଅନନ୍ୟ ସରନ ଜବ ହୋୟ, ଛୁଟେ ରିନ ସଂଦେହ ନ କୋୟ ।।

(ବୈ.ସାର)

କେବେ ଭଗବାନ ମୁକୁନ୍ଦଙ୍କ ଅନନ୍ୟ ଶରଣ ନେଇ ମୁଁ ସମସ୍ତ ଋଣରୁ ମୁକ୍ତ ହେବି ? ଏସବୁ କିଛି ଛାଡ଼ି କେବଳ ପ୍ରେମ ଭକ୍ତିର ପାଥିକ ହେବି ?

କେଉଁ କରେଁ ବିଷ୍ଣୁ ସେବ, କେଉ ପୂଜେଁ ଦେବୀଦେବ
କେଉ ଚାହେଁ ମୁକ୍ତି, କେଉଁ ଉଦର ନିବାସନାଂ ॥
× × × × × ×
ନାଗର ନିହୋରି କରି ଜୋରି ମାଁଗୀ ତିନ ପୈତେଁ
ଦେହୁ ପ୍ରେମଭକ୍ତି ଔ ଛୁଡାୟ ବିଷ ବାସନାଂ ॥

ଏଣୁ ତୁଳସୀ ଗୋପୀ ଚନ୍ଦନଧାରୀ ପ୍ରସିଦ୍ଧ ସନକ ସଂପ୍ରଦାୟ ଅନ୍ତର୍ବର୍ତ୍ତୀ ଯୁଗଳମୂର୍ତ୍ତି ଉପାସକ ଏବଂ ଶ୍ରୀମୁକୁନ୍ଦ ତଥା ଗୋପାଳ ଅଷ୍ଟାଦଶାକ୍ଷର ମନ୍ତ୍ରର ଉପଦେଷ୍ଟା ଶ୍ରୀ ମୋହନଦେବଜୀଙ୍କ ଠାରୁ କଣ୍ଠି କୈପୀନ ନେବା ନିଶ୍ଚିତ କରି ବି.ସଂ-୧୮୧୪ ଆଶ୍ୱିନ ଶୁକ୍ଳ ଦଶମୀକୁ ଆପଣାର ରାଜକୁମାର ଶ୍ରୀସରଦାର ସିଂହଜୀଙ୍କୁ ରାଜ ସିଂହାସନରେ ବସାଇ ଏକାଦଶୀ ଦିନ ବୃନ୍ଦାବନ ଯାତ୍ରା କଲେ । ବୃନ୍ଦାବନର ଯମୁନା ତୀରରେ ସେ ମୋହନ ଦେବଜୀଙ୍କଠାରୁ କଣ୍ଠି କୌପୀନ ବେଶ ଗ୍ରହଣ କଲେ । ଏହି ସମୟର ଚିତ୍ର କୃଷ୍ଣଗଡ଼ର ମହଲ ଭିତରେ ଏବଂ ଆଚାର୍ଯ୍ୟ ପୀଠରେ ବିଦ୍ୟମାନ । ଏହି ସମୟର ମନୋଜ୍ଞ ବର୍ଣ୍ଣନା ମାଧ୍ୟମରେ ହୋଇଛି- ପ୍ରଥମ ପାଦରେ 'ବୃନ୍ଦାବନ' ନାମକ ବଂଦନା ରହିଛି । ବିରକ୍ତବେଶ ନେଲାପରେ 'ଶ୍ରୀ ମୋହନ ଗୁରୁବନ୍ଦୀ'- ବନ୍ଦନା ଦେଖିବାକୁ ମିଳେ ।

ପ୍ରଥମେ ସେ ବୃନ୍ଦାବନ ଯିବା ସମୟରେ ତାଙ୍କୁ ରାଜା ବୋଲି ଭାବି କେହି ସନ୍ଥ ତାଙ୍କ ସହ ସାକ୍ଷାତ୍ କରିବାକୁ ସଂକୋଚ କରୁଥିଲେ । ଏବେ ସେ 'ନାଗରି ଦାସ' ନାମ ଶୁଣି ଦଳ ଦଳ ହୋଇ ତାଙ୍କୁ ସାକ୍ଷାତ୍ କରିବାକୁ ଚାଲିଲେ ।

ସୁନି ବ୍ୟୋହାରିକ ନାମ କୈଁ ଠାଢ଼େ ଦୂର ଉଦାସ
ଦୌଖି ମିଲେଭରି ନୈନ ସୁନି ନାମ ନାଗରୀ ଦାସ ॥

ଶ୍ରୀ ବୃନ୍ଦାବନକୁ ସମାଗତ ସନ୍ଥଙ୍କ ସମ୍ମାନାର୍ଥେ ସେ ଏକ ଆଶ୍ରମ ଏବଂ ଏକ କ୍ଷେତ୍ର ସ୍ଥାପନ କରିଥିଲେ । ଆଜି ମଧ୍ୟ ତାହା ନଗରୀଦାସଜୀଙ୍କ କ୍ଷେତ୍ର ଏବଂ ନଗରୀଦାସଜୀଙ୍କ ଘେରା ନାମରେ ବିଖ୍ୟାତ । ଏ କ୍ଷେତ୍ର ତାଙ୍କ ଦେହାନ୍ତର ୧୭୫ ବର୍ଷ ପର୍ଯ୍ୟନ୍ତ ଚାଲୁ ରହିଥିଲା । ଯେଉଁ ଉପାସନା ଗୃହ ନିର୍ମାଣ କରି ଶ୍ରୀନଗରୀ

ବିହାରୀ ଡାକୁର ପ୍ରତିଷ୍ଠା କରିଥିଲେ ସେହି ମନ୍ଦିର ବୃନ୍ଦାବନରେ ଶ୍ରୀନାଗରୀଦାସଜୀ କୁଂଜ ନାମରେ ପ୍ରସିଦ୍ଧ । ସେବା କୁଂଜ ଦାନ ଲୋକଙ୍କ ଦ୍ୱାରା ହିଁ ହୋଇଛି । ତା'ର ସେବା ପୂଜାବିଧି ବ୍ୟବସ୍ଥା ଆଚାର୍ଯ୍ୟପୀଠର ତରଫରୁ ପରିଚାଳିତ ହେଉଛି । ବି.ସଂ ୧୮୨୧ରେ ବୃନ୍ଦାବନରେ ସେ ଗୋଲାକବାସୀ ହୋଇଥିଲେ ।

ଶ୍ରୀନଗରୀ ଦାସଙ୍କ ପରିବାର- ଶ୍ରୀମହାପୁରୁଷଙ୍କ ପରିବାର ଅନୁପମଭକ୍ତ ଏବଂ ଉଚ୍ଚକୋଟୀର କବି ଥିଲେ ।

୧. ତାଙ୍କ ପିତା- ରାଜସିଂହ- ପରମ ଭାଗବତ, ତାଙ୍କ ରଚିତ ବାହୁବିଳାସ, ରୁକ୍ମିଣୀ ଚରିତ୍ର ବିଖ୍ୟାତ ।

୨. ବିମାତା- ବ୍ରଜକୁମାରୀଜୀ ୧. ଶ୍ରୀମଦ୍ ଭାଗବତର ପଦ୍ୟାନୁବାଦ ୨୫୦୦୦ ଦୋହା ସଂବଳିତ । (୨) ଭଗବତ୍ ଗୀତାର ପଦ୍ୟାନୁବାଦ- ଏକସହସ୍ର ଦୋହାଛନ୍ଦରେ ପୂର୍ଣ୍ଣ ହୋଇଛି ।

୩. ଭଉଣୀ- ନାଗରୀଦାସଜୀଙ୍କ ଭଉଣୀ- ସୁନ୍ଦର କୁମରୀଜୀ- ଉପାସନା ରହସ୍ୟ ନାମରେ ବାରଗୋଟି ଗ୍ରନ୍ଥ ରଚନା କରିଅଛନ୍ତି । ଏହା ବ୍ୟତୀତ 'ମିତ୍ରଶିକ୍ଷା' ନାମକ ଗ୍ରନ୍ଥ ୨୭୫୦ ଦୋହାର ଗ୍ରନ୍ଥ ପ୍ରଣୟନ କରିଛନ୍ତି ।

୪. ପୁତ୍ରୀ- ବାଈ ଗୋପାଳ କୁମରୀ- ଭୌତିକ ସ୍ୱାମୀଙ୍କୁ ଛାଡ଼ି ଭଗବାନଙ୍କୁ ସ୍ୱାମୀଭାବେ ଗ୍ରହଣ କରି ଆମରଣ ନୈଷ୍ଠିକ ବ୍ରତ ରକ୍ଷାକରି ଭଗବାନ୍‌ଙ୍କ ଆରାଧନା କରିଥିଲେ ।

୫. ପୌତ୍ରୀ- ବାଈ ଛତ୍ର କୁମରୀ- ପ୍ରେମ ବିନୋଦ ନାମକ ଏକ ସୁନ୍ଦର ଭାଷାପଦ୍ୟର ଗ୍ରନ୍ଥ ବି.ସଂ ୧୮୪୫ରେ ସମାପ୍ତ କରିଥିଲେ ।

ଏତିକି କହିଲେ ଯଥେଷ୍ଟ ହେବ ଯେ- ଯେପରି ଗୋଟିଏ ଚନ୍ଦନ ବୃକ୍ଷ ସେହି ବନଭୂମିକୁ ସୁରଭିତ କରିଥାଏ, ସେହିପରି ଉକ୍ତ ପାରିକର ଏହି ପ୍ରାନ୍ତର ପ୍ରତ୍ୟେକ ପରିବାରକୁ ଭକ୍ତି ରସର ଆସ୍ୱାଦନରେ ସମସ୍ତଙ୍କ ମାନସ ମନ୍ଦିରକୁ ଶୁଭ୍ର ଭକ୍ତି ଜ୍ୟୋତିରେ ଆଲୋକିତ କରି ଦେଇଥିଲେ ॥



# ଭକ୍ତ କବୀର

ଭାରତୀୟ ସଂଥ ପରଂପରାରେ ଭକ୍ତ କବୀର ଦାସ ସ୍ୱତନ୍ତ୍ର ବାରି ହୋଇ ପଡ଼ନ୍ତି । ଜନଶ୍ରୁତି ଅନୁସାରେ କବୀରଙ୍କର ଆବିର୍ଭାବ ସିକନ୍ଦର ଲୋଦୀଙ୍କ ରାଜତ୍ୱ କାଳରେ ହୋଇଥିଲା । ସେ ବାଲ୍ୟକାଳରେ ସ୍ୱାମୀ ରାମାନନ୍ଦଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଥିଲେ ଏବଂ ମୃତ୍ୟୁ ବେଳକୁ କାଶୀ ଛାଡ଼ି ମଗହର ଚାଲି ଯାଇଥିଲେ । ସେ ଅଧିକାଂଶ ସମୟ କାଶୀରେ ଅତିବାହିତ କରିଥିଲେ । ସାଂପ୍ରଦାୟିକ ପ୍ରବାଦ ଅନୁସାରେ ସେ କୌଣସି ବିଧବା ବ୍ରାହ୍ମଣୀର ପୁତ୍ର ଥିଲେ । ସାମାଜିକ ପ୍ରତିବଂଧକ ହେତୁ ତାଙ୍କ ମାତା ନବଜାତ ଶିଶୁକୁ ଲହରତାଲା ପୋଖରୀ ପାଖରେ ଫିଙ୍ଗି ଦେଇଥିଲେ । ଦୈବ ଯୋଗକୁ ନୀରୁ ନାମକ ଜଣେ ତନ୍ତୀ ସେ ରାସ୍ତାରେ ଯିବା ସମୟରେ ଶିଶୁଟିକୁ ଦେଖି ତାକୁ ଘରକୁ ଆଣି ଲାଳନ-ପାଳନ କଲା । ବିଶ୍ୱାସ କରାଯାଏ ଯେ କାଶୀରେ ମରିବା ଲୋକ ମୁକ୍ତି ପାଇଥାନ୍ତି ଏବଂ ମଗହରରେ ମରିବା ଲୋକର ନରକବାସ ହୁଏ । କବୀର ଏହି ଲୋକ ବିଶ୍ୱାସ ବିରୁଦ୍ଧରେ ଅନ୍ତିମ ପର୍ଯ୍ୟାୟରେ ବିରୋଧ କରି ମରିବା ବେଳକୁ ମଗହର ଚାଲି ଯାଇଥିଲେ । ତାଙ୍କ ତିରୋଧାନ ସମୟ ସମ୍ବତ୍- ୧୫୭୫ ମାର୍ଗଶୀର ଶୁକ୍ଳ ଏକାଦଶୀ ତାଙ୍କ ଜନ୍ମ ସଂ ୧୪୫୫ (୧୩୯୪ ଖ୍ରୀ.ଅ)ରେ ହିଁ ହୋଇଥିଲା । ସଂପୂର୍ଣ୍ଣ ପଞ୍ଚଦଶ ଶତାବ୍ଦୀ ଏବଂ ତାପରେ କିଛି ବର୍ଷ ଜୀବିତ ଥିଲେ ।

ଏହି ସମୟ ଭାରତୀୟ ଇତିହାସରେ ଧାର୍ମିକ ବିପର୍ଯ୍ୟୟ ଏବଂ ଆଦାନ ପ୍ରଦାନର ଯୁଗଥିଲା । ଭାରତୀୟ ପ୍ରଚଳିତ ଧର୍ମଧାରା- ସାମାଜିକ ମୂଲ୍ୟବୋଧ ପ୍ରଭୃତି କ୍ଷେତ୍ରରେ ଘୋର ପରିବର୍ତ୍ତନର ସମୟ ଥିଲା । ଏହିପରି ଏକ ସାଂସ୍କୃତିକ ସଂକଟ ସମୟରେ କବୀରଙ୍କର ଆବିର୍ଭାବ ହୋଇଛି । ସେ ଉପର ସ୍ତରର ସାମାଜିକ ବ୍ୟବସ୍ଥା ଦେଖି ବୁଝିଲେ ଏବଂ ସେହି ମୂଳତତ୍ତ୍ୱ ପ୍ରତି ଦୃଷ୍ଟି ଆକର୍ଷଣ କଲେ । ଅନ୍ୟ ଏକ ଅଂଶ ଯେଉଁମାନେ ବାହ୍ୟାଚାର ଉପରେ ଗରୁତ୍ୱ ଦେଉଥିବା ହେତୁ ଆଧ୍ୟାତ୍ମିକ ଦୃଷ୍ଟି ଅସ୍ୱଷ୍ଟ ହୋଇ ଯାଇଥିଲା । ସେ ମୁକ୍ତ କଣ୍ଠରେ ଘୋଷଣା କଲେ-

'ଆରେ, ଇନ ଦୋଉନ ରାହ ନ ପାଈ' (ଆରେ ଏ ଉଭୟ ବାଟ ପାଇନାହାଁନ୍ତି) ପୁଣି କହୁଛନ୍ତି-

'ହମରେ, ରାମ ରହୀମ କରୀମା କେସୋ ଅସହ ରାମ ସତିସୋଈ
ବିସ୍ମିଲ ମେଟ ବିମମ୍ଭର ଏକୈ ଔରନ ଦୂଜା କୋଈ ।'

ଆମ ମତରେ ରାମ, ରହିମ, କରିମ- କେଶବ ଓ ସତ୍ୟ ଏକାପରି । ବିସ୍ମିଲା ଓ ବିଶ୍ୱମ୍ଭର ମଧ୍ୟ ଏକା, ଏଥିରେ ଦ୍ୱୈତଭାବ କେଉଁଠି ହେଲେ ନାହିଁ । କାରଣ ଏ ଦୁହେଁ ଏକ ତତ୍ତ୍ୱ ଅଟନ୍ତି । କାଶୀର ଯେଉଁ ତନ୍ତୀ ପରିବାରରେ କବୀର ଦାସଙ୍କ ଲାଳନ ପାଳନ ହୋଇଥିଲା, ସେ ପରିବାର ତ ମୁସଲମାନ୍ ହୋଇ ସାରିଥିଲା କିନ୍ତୁ ତହିଁରେ ନାଥପନ୍ଥୀ ଯୋଗୀଙ୍କର ପ୍ରଭାବ ବିଦ୍ୟମାନ ଥିଲା । ବାଲ୍ୟକାଳରୁ କବୀର ଦାସଙ୍କର ନିର୍ଗୁଣମାର୍ଗୀ ଯୋଗ ସାଧନାର ପ୍ରତ୍ୟକ୍ଷ ପରିଚୟ ହୋଇ ଯାଇଥିଲା । ମୁସଲମାନ୍ ଧର୍ମର ପ୍ରଭାବରେ ତାଙ୍କ ବ୍ୟକ୍ତିତ୍ୱରେ ଅପୂର୍ବ ସାହସ ଓ ଆତ୍ମବିଶ୍ୱାସର ସଂଚାର କରିଥିଲା । ଆଚାର୍ଯ୍ୟ ରମାନନ୍ଦଙ୍କ ସଂପର୍କରେ ଆସିବା ପରେ ସେ ଯୋଗ ମାର୍ଗର ନୀରସତା ଓ ଭକ୍ତିମାର୍ଗର ସରସତା ଅନୁଭବ କଲେ ।

ସଂସାରରେ ଭ୍ରମୁଥିବା ଜୀବଙ୍କୁ ଦେଖି ସେ କରୁଣା ଅଶ୍ରୁରେ କାତର ହୋଇଯାଉ ନଥିଲେ ବରଂ ଅଧିକ କଠୋର ହୋଇ ଭର୍ତ୍ସନା କରୁଥିଲେ । ସେ ଯେତେବେଳେ ଅବଧୂତ ବା ଯୋଗୀଙ୍କୁ ସଂବୋଧନ କରନ୍ତି, ସେତେବେଳେ ତାଙ୍କ ଉଦ୍ଦଣ୍ଡତା ପୂର୍ଣ୍ଣମାତ୍ରାରେ ରହେ । କିନ୍ତୁ ଉଦ୍ଦଣ୍ଡତା କବୀର ଦାସଙ୍କର ସର୍ବ ପ୍ରଧାନ ଗୁଣ ନୁହେଁ । ଯେବେ ସେ ଯୋଗର ବିକଟ ରୂପକମାନଙ୍କର ଅବତାରଣା କରନ୍ତି, ଗଗନ ଓ ପବନର ସମସ୍ୟା ବୁଝାଉଥାନ୍ତି, ଶୂନ୍ୟ, ସହଜର ରହସ୍ୟ ପଚାରୁଥାନ୍ତି, ଦ୍ୱୈତ-ଅଦ୍ୱୈତର ଚର୍ଚ୍ଚା କରୁଥାନ୍ତି ଏବଂ ଅବଧୂତ ଅଜ୍ଞାନତା ପ୍ରତି କୁଟୀଳ ହାସ୍ୟ ପ୍ରକାଶ କରନ୍ତି ।

କିନ୍ତୁ ସେ ସ୍ୱଭାବତଃ ସର୍ବହରା ହେଲେ । ଭଲ ହେଉ ବା ମନ୍ଦ ହେଉ, ଯାହା ସହିତ ଥରେ ସଂପର୍କ ସ୍ଥାପିତ ହେଲା, ତହିଁରେ ଚିରକାଳ ପର୍ଯ୍ୟନ୍ତ ଲାଗିଥାଅ- ଏ ସିଦ୍ଧାନ୍ତ ସେ ସ୍ୱୀକାର କରୁ ନଥିଲେ । ସେ ସତ୍ୟର ଜିଜ୍ଞାସୁ ଥିଲେ । କୌଣସି ମାୟା ମମତା ତାଙ୍କୁ ନିଜ ମାର୍ଗରୁ ବିଚ୍ୟୁତ କରି ପାରୁ ନଥିଲା । ସେ ନିଜ ଘର ଜାଳି- ହାତରେ ନିଆଁ ହୁଳା ଧରି ବାହାରି ପଡ଼ିଲେ ଏବଂ ଯେ ନିଜ ହାତରେ ନିଜ ଘର ଜାଳିଦେଇ ପାରିବ, ତାକୁ ହିଁ ନିଜର ସାଥୀ କରିବା ପାଇଁ ପ୍ରସ୍ତୁତ ଥିଲେ ।

ହମ ଘର ଜାରା ଅପନା, ଲିୟା ସୁରାଡ଼ା ହାଥ
ଅବ ଘର ଜାରୈଂ ତାସୁକା ଜୋ ଚଲେ ହମାରେ ସାଥ ।।

ମୁଁ ନିଜେ ମୋ' ଘର ଜାଳି ଦେଇ ସାରି ହାତରେ ନିଆଁ ହୁଲା ଧରି ଆସିଛି, ଏବେ ମୋ' ସାଥୀରେ ଯେ ଆସିବା ପାଇଁ ଚାହାଁନ୍ତି, ତାଙ୍କ ଘର ମଧ୍ୟ ଜାଳି ଦେଇ ଯିବି ।

ଯେ ଅତୀତର କାର୍ଯ୍ୟର ହିସାବ ନରଖେ, ବର୍ତ୍ତମାନର କାର୍ଯ୍ୟକୁ ସର୍ବସ୍ୱ ବୋଲି ମନେ ନକରେ ଏବଂ ଭବିଷ୍ୟତରେ ସବୁ ଝାଡ଼ିଝୁଡ଼ି ଦେଇ ଚାଲିଯାଏ, ସେହି ଏକା ନିଶ୍ଚିନ୍ତ ହୋଇପାରେ । ଯେ ସାଂସାରିକ କ୍ରିୟା କଳାପର ହିସାବ ରଖେ ସେ ନିଶ୍ଚିନ୍ତ ରହି ନପାରେ । ଯେ ଅତୀତର ଚିଠା ଖୋଲି ବସିଥାଏ ସେ କ୍ରାନ୍ତଦର୍ଶୀ ହୋଇ ନପାରେ । ପ୍ରେମୋନ୍ମତ୍ତ ସିଏ, ଯେ ସାଂସାରିକ କାର୍ଯ୍ୟକଳାପରୁ ନିଜ ସଫଳତାର ହିସାବ କରେ ନାହିଁ । କବୀରଙ୍କ ପରି ଫକ୍‌କଡ଼ଙ୍କୁ ସାଂସାରିକ ସାବଧାନତା ସହ ବା କି ସଂପର୍କ ।

କବୀର ଦାସ ଭକ୍ତ ଓ ପବିତ୍ରତାକୁ ଏକ ଶ୍ରେଣୀରେ ଦେଖୁଥିଲେ । ଉଭୟଙ୍କର ଧର୍ମ କଠୋର ଓ ବୃତ୍ତି କୋମଳ । ଉଭୟେ କାଞ୍ଚନା ପଦ୍ମଧର୍ମୀ ଅଟନ୍ତି । ଅର୍ଥାତ୍ ବାହାରେ ମୃଦୁ ଭିତରେ କଠୋର । ବାହାରେ କୋମଳ, ଭିତରେ ରୁକ୍ଷ ବା କର୍କଶ । ସମସ୍ତଙ୍କ ସେବାରେ ବ୍ୟସ୍ତ, କିନ୍ତୁ ଜଣକର ଆରାଧିକା ପବିତ୍ରତା ହିଁ ଭକ୍ତ ସହ ତୁଳନୀୟ ହୋଇପାରେ । ସତୀର ସିନ୍ଦୂର ରେଖା ବଦଳରେ କଜ୍ୱଳ ଦିଆଯାଇ ନପାରେ ଏବଂ କବୀର ନୟନରେ ରାମବ୍ୟାପ୍ତ ହୋଇଯାଇଛନ୍ତି, ଅନ୍ୟ କେହି ତହିଁରେ ବିଳାସ କରି ନପାରେ–

କବୀର ରେଖ ସିନ୍ଦୂର କୀ କାଜଲ ଦିୟା ନଜାଇ
ନୈନୁ ରମୟା ରମିରହା, ଦୂଜା କାହାଁ ସମାଇ ।।

ଥରେ ତ ମୁଣ୍ଡରେ ପ୍ରେମର ସିନ୍ଦୂର ଲଗାଇ ନେଇଛି । ଆଖିରେ ପ୍ରେମର ଲାଲିମା ବ୍ୟାପି ଯାଇଛି । ଏବେ ସେଥିରେ ପୁଣି କଜ୍ୱଳର ଅନ୍ୟ ରଂଗ ଲାଗିବ କେଉଁଠି ? ଆଖିରେ ଗୋଟିଏ ରାମ ରମଣ କରୁଥିବା ବେଳେ ତହିଁରେ ଅନ୍ୟପାଇଁ ସ୍ଥାନ କାହିଁ !

ମୋର୍ ବୋଲି କ'ଣ ବା ଅଛି ? ଯାହା ତ ଦେଖୁଛି ସେ ସବୁ ତୁମର । ତୁମ ଜିନିଷ ତୁମକୁ ଦେବାରେ ମୋ' ହାତରୁ କ'ଣ ଲାଗିବ ?

ମେରା ମୁଝମେଂ କୁଛନହୀଂ, ଜୋକୁଛୁ ହୈ ସୋ ତେରା
ତେରା ତୁଝକୋ ସୋଂପନାକ୍ୟା ଲଗ୍‌ମେ ହୈ ମେରା ।।

ତାଙ୍କଠାରେ ଏ ଯେଉଁ ନିଜପ୍ରତି ଓ ନିଜର ପ୍ରିୟଙ୍କ ପ୍ରତି ଏକ ଅଖଣ୍ଡ, ଅବିଚଳିତ ବିଶ୍ୱାସ ଥିଲା, ତାହା ହିଁ ତାଙ୍କ କବିତାରେ ଅଖଣ୍ଡ ଶକ୍ତି ଭରିଦେଇଛି । ତାଙ୍କ ଭାବ ଅନାବୃତ୍ତ ଭାବେ ସିଧା ହୃଦୟରୁ ବାହାରି ଶ୍ରୋତାଙ୍କ ଉପରେ ପ୍ରଭାବ ପକାଏ ।

କବୀର ଏକ ପକ୍ଷରେ ଯେଉଁଠି ଅବଧୂତ ଅଥବା ସିଦ୍ଧ ଯୋଗୀଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ କରନ୍ତି ଏବଂ ତା'ର ଶୁଷ୍କ ଜ୍ଞାନକୁ ଉପହାସ କରନ୍ତି, ସେଠି ଅନ୍ୟପକ୍ଷରେ ପଣ୍ଡିତ, ଶେଖ ଓ କାଜୀଙ୍କ ଉପରେ ଜବରଦସ୍ତ ଆଘାତ କରନ୍ତି ।

× × × × × ×

କବୀରଙ୍କର ଅନ୍ୟ ଏକ ବିଲକ୍ଷଣ ଶୈଳୀ ହେଉଛି ବ୍ୟଙ୍ଗ । ବ୍ୟଙ୍ଗ ହେଉଛି ଯେ, ଯେଉଁଠି କହୁଥିବା ଲୋକର ଓଠରେ ହସଥିବ ଓ ଶୁଣୁଥିବା ଲୋକ ହଠାତ୍ ଆକ୍ରମଣ ଫଳରେ ବିକଳ ହୋଇ ଉଠୁଥିବ; ପୁଣି ଉତ୍ତର ଦେଲା ବେଳକୁ ନିଜକୁ ଅଧିକ ଉପହାସ୍ୟାସ୍ପଦ କରି ପକାଉଥିବ । କବୀର ଏହିପରି ବ୍ୟଂଗକାର ଥିଲେ-

ନାଜାନେ ତେରା ସାହେବ କୈସାହୈ
ମସ୍‌ଜିଦ୍ ଭିତରେ ମୁଲ୍ଲା ପୁକାରେ କ୍ୟା ସଭବ ତେରା ବହିରିହୈ

× × × × × ×

କହତ କବୀର ସୁନୋ ଭାଇ ସାଧୋ ହରି ଜୈସେ କୋ ତୈସାହୈ ।

ତୁମ ପ୍ରଭୁ କିପରି ଜାଣି ହେଉ ନାହିଁ । ମସ୍‌ଜିଦ୍ ଭିତରେ ତୁମ ମୁଲ୍ଲାସାହେବ ଯେ ରଡ଼ିଛାଡ଼ନ୍ତି, ତୁମ ଆଲ୍ଲା କ'ଣ କାଲ କି ? ଆରେ ପିମ୍ପୁଡ଼ି ଚାଲିବାର ଶବ୍ଦ ଯେଉଁ ଈଶ୍ୱର ଶୁଣି ପାରନ୍ତି । ପଣ୍ଡିତ ହୋଇ ଆସନରେ ବସି ଲମ୍ବା ମାଳ ଜପୁଛି; ଏଣେ ଭିତରେ ଛନ୍ଦ କପଟର ଯେଉଁ କତୁରୀ ରଖିଛ, ଭଗବାନ୍ ତାହା ମଧ୍ୟ ଦେଖୁଛନ୍ତି । ଖୁବ୍ ଗହୀରେ ନିଅଁ ପକେଇ କୋଠା ତୋଳିଛ, ସେଥିରେ ରହିବାକୁ ତୁମର ଭାରି ଇଚ୍ଛା । କିନ୍ତୁ ସେଠାରୁ ବାହାରି ତୁମ ନିଜ ଘରକୁ ଯିବାପାଇଁ ତୁମ ମନବଳୁ ନାହିଁ । କଉଡ଼ିର ମାୟା ସଂଗ୍ରହ କରି ତୁମେ ଭୂଇଁରେ ପୋତି ରଖିଛ,

ଯାହା ଭାଗ୍ୟରେ ଏ ଧନ ଭୋଗ କରିବାର ଥିବ ସେ ହିଁ ଭୋଗ କରିବ । ଆରେ ମୂର୍ଖ ପାପୀ ! ତୁ ଏ ଧନକୁ ବୃଥାରେ ବୋହି ବୋହି ମରୁଛୁ । ଯେଉଁ ଘରେ ସତ୍ୟବାଦୀ କୁଳବତୀ ସ୍ତ୍ରୀଙ୍କ ଲଜ୍ଜା ନିବାରଣ ପାଇଁ ଗଜେ କନା ମିଳିନି ସେଠି ବେଶ୍ୟାମାନେ ପାଟ ପିତାମ୍ବରୀ ପିନ୍ଧି ଛଇଡି ମଇଡି ହେଉଛନ୍ତି । ଯେଉଁ ଘରେ ସାଧୁଙ୍କୁ ମୁଠେ ଭିକ୍ଷା ମିଳୁନାହିଁ, ସେ ଘରେ ଭାଡୁଆମାନେ ଫେଣୀ ମାଲପୁଆ ଉଡ଼ାଉଛନ୍ତି । ହୀରା ମିଳିଲେ ତୁମେ ତାକୁ ଚିହ୍ନୁ ନାହିଁ, ଆଉ କଉଡ଼ି ପରି ଅସାର ପଦାର୍ଥ ମିଳିଲେ ତାକୁ ଯତ୍ନରେ ସାଇତି ରଖୁଛ । କବୀର ଦାସ କହୁଛନ୍ତି ହେ ସାଧୁ ! ଭଗବାନ୍ ଯେପରି, ଲୋକପ୍ରତି ଯେପରି ବ୍ୟବହାର କରିଥାନ୍ତି ।

ଏ ଭାଷା ବିଚଳିତ କରିଦେବ । ଭାଷା ଯେତିକି ସରଳ ସେତିକି ଉଗ୍ର । କବୀର ଦାସଙ୍କ ସର୍ବସ୍ୱ ହେଉଛି ଭଗବତ୍ ପ୍ରେମ । ବେଦ ନାହିଁ, ଶାସ୍ତ୍ର ନାହିଁ, କୋରାନ୍ ନାହିଁ, ଜପ ନାହିଁ, ମାଳା ନାହିଁ, ମନ୍ଦିର ନାହିଁ, ମସଜିଦ୍ ନାହିଁ, ଅବତାର ନାହିଁ, ନବୀ (ଈଶ୍ୱର ଦୂତ) ନାହିଁ, ପୀର (ମହାତ୍ମା) ନାହିଁ, ପୈଗମ୍ବର (ଦେବଦୂତ) ନାହିଁ । ଏ ପ୍ରେମ ସମସ୍ତ ବାହ୍ୟାଚାରର ଊର୍ଦ୍ଧ୍ୱରେ, ସମସ୍ତ ସଂସ୍କାରର ପ୍ରତିପାଦ୍ୟ ଅପେକ୍ଷା ଅଧିକ ଶ୍ରେଷ୍ଠ ।

କବୀରଙ୍କ ରଚନାବଳୀ ଅନେକ ରୂପରେ ପ୍ରାପ୍ତ ହୁଏ । ସେ ନିଜେ ଲେଖା ପଢ଼ା ଜାଣି ନଥିଲେ ତାଙ୍କ ରଚନା ସବୁ ପ୍ରାୟ ଭକ୍ତ ଜନଙ୍କ କଣ୍ଠରେ ଶୋଭାପାଏ । ତାଙ୍କ ନାମରେ ପ୍ରଚଳିତ ସବୁ ଗ୍ରନ୍ଥମାନଙ୍କର ସଂଖ୍ୟା କିଛି ଡଜନ୍ ହେବ । କବୀର ଗ୍ରନ୍ଥାବଳୀ ନାମରେ ଏକ ସଂସ୍କରଣ ନାଗରୀ ପ୍ରଚାରିଣୀ ସଭା ପକ୍ଷରୁ ପ୍ରକାଶିତ । ପଣ୍ଡିତ ଅଯୋଧ୍ୟା ସିଂହ ଉପାଧ୍ୟାୟ 'ହରିଔଧ' 'କବୀର ରଚନାବଳୀର' ସଂଗ୍ରହ କରିଥିଲେ ।

କବୀରଙ୍କ ଭଜନଗୁଡ଼ିକ ସମଗ୍ର ସଂସାରର ମନୀଷୀମାନଙ୍କର ଦୃଷ୍ଟି ଆକର୍ଷଣ କରିଛି । ତାଙ୍କର ଜାତିଧର୍ମ ନିର୍ବିଶେଷ ସତ୍ୟପରକ ବାଣୀ ସଂସାରକୁ ନବୀନ ଆଲୋକ ପ୍ରଦାନ କରିଛି । ଯେଉଁ ଲୋକମାନେ ବାସ୍ତବ ଧର୍ମର ସଂଧାନରେ ଲାଗିଛନ୍ତି, ପ୍ରସ୍ତୁତ ସଂଗ୍ରହ ସେହିପରି ସହୃଦୟମାନଙ୍କର ପ୍ରୀତିର ବିଷୟ ହେବ, ଏଥିରେ ସନ୍ଦେହ ନାହିଁ ।।



# ଭକ୍ତବର ଶ୍ରୀଦାଦୂଜୀ

ସଂ ୧୬୦୧ ବିଂ ଚୈତ୍ର ଶୁକ୍ଳ ଅଷ୍ଟମୀ ଗୁରୁବାର ଦିନ ଅହମଦାବାଦର ଲୋଦିରାମ ବ୍ରାହ୍ମଣ ଘରେ ଶ୍ରୀ ଦାଦୂଜୀଙ୍କ ପ୍ରକଟ ହୋଇଥିଲା । ସେ ନାଗର ବ୍ରାହ୍ମଣ, ଲୋଦୀରାମଙ୍କର ସଂତାନ ନ ଥିଲେ । ଦିନେ ଇଶ୍ୱରଙ୍କ ଦୟାରେ ସାବରମତୀ ନଦୀରେ ଭାସିଆସୁଥିବା ଏକ ସିନ୍ଦୁକ ଦେଖିଲେ । ନଦୀରୁ ସିନ୍ଦୁକକୁ କୂଳକୁ ଆଣି ଦେଖନ୍ତି ତ ତହିଁରେ ଏକ ଜ୍ୟୋତିର୍ମୟ ଶିଶୁ ହସୁଅଛି । ସେହି ଶିଶୁକୁ ଆଣି ନିଜ ଧର୍ମପତ୍ନୀଙ୍କୁ ଦେଲା । ତାଙ୍କ ପତ୍ନୀ ମଧ ଏହାକୁ ଈଶ୍ୱରଙ୍କ କୃପାପୂର୍ଣ୍ଣ ଦାନ ବୁଝି ବଡ଼ ଆନନ୍ଦରେ ଲାଳନ ପାଳନ କରିବାକୁ ଲାଗିଲେ । ଈଶ୍ୱରୀୟ କୃପାରେ ତାଙ୍କ ସ୍ତନରୁ ଦୁଧର କ୍ଷରଣ ହେଲା । କ୍ରମଶଃ ପିତାମାତାଙ୍କ ସ୍ନେହ ସୋହାଗରେ ଦାଦୂଜୀ ଚନ୍ଦ୍ରକଳା ପରି ବଢ଼ିବାକୁ ଲାଗିଲେ । ଏଗାର ବର୍ଷ ବୟସରେ ଭଗବାନ ଶ୍ରୀକୃଷ୍ଣ ବୃଦ୍ଧ ରୂପରେ ଦେଖା ଦେଇ ତାଙ୍କୁ ତତ୍ତ୍ୱଜ୍ଞାନର ଉପଦେଶ ଦେଇଥିଲେ । ଦାଦୂଜୀ ବିରକ୍ତ, ଜ୍ଞାନୀ ଏବଂ ଭକ୍ତ ହୋଇଗଲେ ।

କିଛି ସମୟ ପରେ ସେ ସତ୍‌ସଂଗ ପାଇଁ ଘରୁ ବାହାରିଗଲେ । କିନ୍ତୁ ମାତାପିତା ତାଙ୍କୁ ଧରି ନେଇଗଲେ ଏବଂ ବଡ଼ ନଗରରେ ତାଙ୍କ ବିବାହ କରିଦେଲେ । କିନ୍ତୁ ସାଂସାରିକ ବଂଧନ ତାଙ୍କୁ କିଛି କାଳ ପାଇଁ ବାଂଧିଦେଇଥିଲା, ଊଣେଇଶ ବର୍ଷରେ ସେ ପୁନଃ ଘରୁ ବାହାରି ଆସିଲେ । ବୁଲୁବୁଲୁ ଜୟପୁର ରାଜ୍ୟ ଅନ୍ତର୍ଗତ ସାଁଭର ଗ୍ରାମରେ ଯାଇ ପହଞ୍ଚିଗଲେ । ଏଠାରେ ଦାଦୂଜୀ ନିଜକୁ ଗୋପନ କରି ଶରୀର ଯାତ୍ରାପାଇଁ ତୁଳାଭିଣିବା କାର୍ଯ୍ୟକଲେ ।

ତା'ପରେ ବାରବର୍ଷ ପର୍ଯ୍ୟନ୍ତ କଠିନ ତପସ୍ୟା କରି ପୂର୍ଣ୍ଣ ସିଦ୍ଧିପ୍ରାପ୍ତ କଲେ । ତାଙ୍କର ବଚନ ସିଦ୍ଧି ମଧ ପ୍ରାପ୍ତ ହୋଇଥିଲା । ହାତ ଦେଖିବା ପାପ ବୋଲି ବିଚାରୁଥିଲେ । ଅନ୍ତର୍ମୁଖୀ ହୋଇ ଅନ୍ତର୍ଜ୍ୟୋତିର ଧ୍ୟାନ, ଅଭ୍ୟାସ, ସ୍ମରଣ ଏବଂ ସହଜ ଯୋଗରେ ଈଶ୍ୱରଙ୍କଠାରେ ଲୟ ହେବାର ସର୍ବୋତ୍ତମ ସାଧନା ମାନିଥାନ୍ତି । ଅହିଂସା, ସତ୍ୟ, ଅସ୍ତେୟ, ଶୌଚ, ଶାନ୍ତି, ଅପରିଗ୍ରହ, ବୈରାଗ୍ୟ, ତିତିକ୍ଷା, କ୍ଷମା, ଦୟା, ସମତା, ନିରଭିମାନିତା ଏବଂ ଆର୍ଜବ ଆଦି ସାତ୍ତ୍ୱିକ ଗୁଣର ପ୍ରାପ୍ତି ପାଇଁ ସାଧନକାରୀକୁ ହିଁ ସାଧୁ ମାନିଥାନ୍ତି ।

ସେ ଆପଣାର ମତକୁ କୌଣସି ସଂପ୍ରଦାୟ ରୂପ ଦେଇ ନଥିଲେ । ଏହାଙ୍କ ଜୀବନକାଳ ଏବଂ ପରେ ପରେ ଏକ ସଂପ୍ରଦାୟ ହୋଇଗଲା । ଶିଷ୍ୟମାନେ ପରେ ପରେ 'ବହ୍ମ ସଂପ୍ରଦାୟ' ନାମ ରଖିଥିଲେ । ସୁନ୍ଦରଦାସ ନିଜ ଗ୍ରନ୍ଥରେ 'ସଂପ୍ରଦାୟ ପରଂବ୍ରହ୍ମକା' ଉଲ୍ଲେଖ କରି ଅଛନ୍ତି । ସାଧାରଣରେ ଏହି ନାମ ପ୍ରଚଳିତ ନଥିଲା । ଏହି ସଂପ୍ରଦାୟ ଦାଦୂପନ୍ଥ ବା ଦାଦୂ ସଂପ୍ରଦାୟ ନାମରେ ପ୍ରସିଦ୍ଧ । ତାଙ୍କର ଅନେକ ଶିଷ୍ୟ ମଧ୍ୟରୁ ୧୫୨ ଶିଷ୍ୟ ପ୍ରଧାନ । ଏଥି ମଧ୍ୟରୁ ୧୦୦ ଜଣ ବିରକ୍ତ ହୋଇ ଶିଷ୍ୟ ମଠ କରି ନଥିଲେ । ଅବଶିଷ୍ଟ ୫୨ ଶିଷ୍ୟ ଆଶ୍ରମ କଲେ ଏବଂ ଶିଷ୍ୟ-ସଂପ୍ରଦାୟ ବୃଦ୍ଧି କଲେ ଏବଂ ଥାଁମଧାରୀ ମହନ୍ତ ଭାବେ ପରିଚିତ ହେଲେ ।

ଦାଦୂଜୀ ବିବାହ କଲେ । ତାଙ୍କର ଦୁଇ ପୁତ୍ର ଏବଂ ଦୁଇ କନ୍ୟା ଥିଲେ । ନାରାୟଣା ନାମକ ସ୍ଥାନରେ ବି.ସ.୧୬୬୦ରେ ପରମ ପଦ ପ୍ରୟାଣ ହୋଇଥିଲେ । ଏହା ଦାଦୂପଂଥର ପ୍ରଧାନ ସ୍ଥାନ । ଏହିଠାରେ ତାଙ୍କ ମୁଖ୍ୟ ମହନ୍ତ ଅବସ୍ଥାନ କରିଥାନ୍ତି । ଏଠାରେ ବହୁ ଦର୍ଶନୀୟ ନିର୍ମିତ ହୋଇଛି । ଦାଦୂଙ୍କ ଦ୍ୱାରା ଧଳାପଥର ଦ୍ୱାରା ଦାଦୂଦ୍ୱାର ଏହିଠାରେ ନିର୍ମିତ । ବାଉନ ମହନ୍ତଙ୍କ ପୀଠରେ ଦାଦୂଦ୍ୱାର ମଧ୍ୟ ରହିଛି । ଦାଦୂପନ୍ଥ ସାଧୁ ଭାରତର ସର୍ବତ୍ର ରହିଛନ୍ତି । ଜୟପୁର ରାଜ୍ୟରେ ଏକ ଦାଦୂପନ୍ଥୀ 'ନାଗା ଜମାତ' ବଡ଼ ସଂଖ୍ୟାରେ ରହିଛି । ଜମାତ୍‌ର ସାଧୁମାନେ ବଡ଼ ବୀର ମଧ୍ୟ । ନାଗା ସାଧୁ ଧଳା ଲୁଗା ପିନ୍ଧିଥାନ୍ତି । କେହି କେହି ନୀଳ ବସ୍ତ୍ର ପରିଧାନ କରିଥାନ୍ତି ।

ଦାଦୂ ସଂପ୍ରଦାୟ ସାଧୁ ସଦାଚାରୀ ହୋଇଥାନ୍ତି । ଏମାନଙ୍କ ମଧ୍ୟରୁ କେହି କେହି ବଡ଼ ବିଦ୍ୱାନ୍, ଜ୍ଞାନୀ, ବୀର, ଗୁଣୀ, ବିଦ୍ୱାନ୍ ଏବଂ କଳାକାର ଭକ୍ତ ସନ୍ଥ ହୋଇଥାନ୍ତି । ଏବେ ମଧ୍ୟ ରହିଛନ୍ତି ।

ଦାଦୂଜୀ ପ୍ରଧାନ ୫୨ ଶିଷ୍ୟଙ୍କ ମଧ୍ୟରୁ ମହାତ୍ମା ଗରିବଦାସଜୀ, ବଡ଼ସୁନ୍ଦରଦାସଜୀ, ରଜ୍ଜବଜୀ, ଜଗଜୀବନଦାସଜୀ, ବାବା ବନବାସୀ ଦାସଜୀ, ଚତୁର୍ଭୁଜଜୀ, ମୋହନ ଦାସଜୀ, ମେବାଡ଼ା, ବଷନାଜୀ, ଜୈମଲଜୀ, କଛବାହା, ଜୈମଲଜୀ, ଚୌହାନ୍, ଜନ ଗୋପାଳଜୀ, ଜଗ୍‌ଗାଜୀ, ଜଗନ୍ନାଥଜୀ କାୟସ୍ଥ, ସୁନ୍ଦରଦାସଜୀ ଦୂସର (ଯାହାଙ୍କର ସୁନ୍ଦରବିଳାସ ଆଦି ଗ୍ରନ୍ଥ ରହିଛି) ଇତ୍ୟାଦି ।

ତାଙ୍କ ଗଦ୍ଦୀ ତାଙ୍କ ଜ୍ୟେଷ୍ଠ ପୁତ୍ର ଗରୀବ ଦାସ ମହାରାଜଙ୍କୁ ପ୍ରାପ୍ତ ହୋଇଥିଲା ॥



# ଭକ୍ତ ହରିଦାସ ଯବନ

ଭଗବାନ୍! ମୁଝେ ମାରନେବାଲେ ଇନ ଭୂଲେ ହୁଏ ଜୀବୋଂକୋ
ଅପରାଧ ସେ ମୁକ୍ତକରେ, ଇନପର କ୍ଷମା
କରୋ, ଦୟା କରୋ- (ହରିଦାସ)

ହରିଦାସଜୀ ଯଶୋହର ଜିଲ୍ଲାର ବୂଢ଼ନ୍ ଗ୍ରାମରେ ଏକ ଗରିବ ମୁସଲମାନ ଘରେ ଜନ୍ମ ହୋଇଥିଲେ । ପୂର୍ବ ସଂସ୍କାର ହେତୁ ଯୁଦ୍ଧ ଅପେକ୍ଷା ହରିନାମରେ ଅନୁରାଗ ଥିଲା । ସେ ଘରଦ୍ୱାର ଛାଡ଼ି ବନଗ୍ରାମ ପାଖରେ ବେନାପୋଲର ନିର୍ଜନ ବନରେ କୁଟୀର ନିର୍ମାଣ କରି ରହିବାକୁ ଲାଗିଲେ । ହରିଦାସ ବଡ଼ କ୍ଷମାଶୀଳ, ଶାନ୍ତ, ନିର୍ଭୟ ଏବଂ ହରିନାମରେ ଦୃଢ଼ ବିଶ୍ୱାସୀ ସାଧୁଥିଲେ । କୁହାଯାଏ ହରିଦାସ ପ୍ରତିଦିନ ତିନିଲକ୍ଷ ହରିନାମ ଜପ ଯୋର୍‌ରେ କରିଥାନ୍ତି । ଯୋର୍‌ରେ ଜପ କରିବାର କାରଣ ହେଲା ଯଦି ଆଉ କାହା କାନରେ ପଡ଼ିଲା ତ ଶୁଣିଲା ଲୋକର ପରମ ଉପକାର ହେବ । କେତେ ଭକ୍ତ ଲୋକେ ପ୍ରତିଦିନ ହରିଦାସଙ୍କ ଦର୍ଶନକୁ ଆସିଥାନ୍ତି । ତାଙ୍କ ଚରଣ ସ୍ପର୍ଶ କରି ଧନ୍ୟ ହୋଇଥାନ୍ତି । ସେ ସମସ୍ତଙ୍କୁ ହରିନାମ ନେବାକୁ ଉପଦେଶ ଦେଇଥାନ୍ତି । କହିଥାନ୍ତି କି ହରିନାମ ନ ନେଲେ ବ୍ୟକ୍ତିର ଉଦ୍ଧାର ହୁଏ ନାହିଁ । ଶରୀର ନିର୍ବାହ ପାଇଁ ଭୀକ୍ଷାବୃତ୍ତି ଉପରେ ନିର୍ଭର କରୁଥିଲେ । କୌଣସି ଦିନ କିଛି ଅଧିକ ମିଳିଗଲେ ତାକୁ ବାଳକ ବା ଗରିବଙ୍କ ମଧ୍ୟରେ ବାଣ୍ଟି ଦିଅନ୍ତି । ଆସନ୍ତା କାଲି ପାଇଁ ସଂଚୟ ରଖନ୍ତି ନାହିଁ । ତାଙ୍କ ଜୀବନର କେତେକ ପ୍ରମୁଖ ଘଟଣା-

ଥରେ ବନଗ୍ରାମର ରାମଚନ୍ଦ୍ର ଖାଁ ନାମକ ଜଣେ ଦୁଷ୍ଟବୁଦ୍ଧିର ଜମିଦାର ହରିଦାସଙ୍କ ସାଧନା ନଷ୍ଟ କରିବା ପାଇଁ ଧନର୍ର ପ୍ରଲୋଭନ ଦେଖାଇ ଜଣେ ସୁନ୍ଦରୀ ବେଶ୍ୟାକୁ ପ୍ରେରଣ କରିଥିଲେ । ବେଶ୍ୟା ହରିଦାସଙ୍କ କୁଟୀରରେ ପହଞ୍ଚିଗଲେ । ସେ ନାମ ସଂକୀର୍ତ୍ତନରେ ମଗ୍ନ ଥିଲେ । ହରିଦାସଙ୍କର ମନୋହର ରୂପ ଦେଖି ବେଶ୍ୟା ମନରେ ବିକାର ଆସିଗଲା ଏବଂ ବିଭିନ୍ନ ପ୍ରକାର କୁଚେଷ୍ଟା

କରିବାରେ ଲାଗିଲା । ହରିଦାସ ରାତିତମାମ ଜପ କରିବାରେ ଲାଗିଥାନ୍ତି, କିଛି କହିଲେ ନାହିଁ । ପ୍ରାତଃ କାଳରେ ସେ କହିଲେ- ନାମ ଜପ ପୂରା ନ ହେବାରୁ ମୁଁ ତୁମ ସହ କଥା ହୋଇ ପାରିଲି ନାହିଁ ।

ତିନିରାତି ପାର୍ଯ୍ୟନ୍ତ ଲଗାତର ହରିଦାସଙ୍କ କୁଟୀରକୁ ଆସି ଅନେକ ଚେଷ୍ଟା କରି ହାରିଗଲା । ହରିଦାସଜୀଙ୍କ ନାମ କୀର୍ତ୍ତନ କ୍ଷଣକ ପାଇଁ ବନ୍ଦ ହେଲା ନାହିଁ । ଚତୁର୍ଥ ଦିନ ରାତିକୁ ସେ ହରିଦାସଙ୍କ କୁଡ଼ିଆକୁ ଆସି ଦେଖେ ତ ବଡ଼ ପ୍ରେମରେ ନାମ କୀର୍ତ୍ତନ କରୁଛନ୍ତି । ଆଖିରୁ ଅଶ୍ରୁଧାରା ବୁହାଇ ବକ୍ଷସ୍ଥଳକୁ ଆଦ୍ର କରୁଅଛନ୍ତି । ବେଶ୍ୟା ତିନିରାତି ହରିନାମ ଶୁଣିଥିଲା ତା'ର ଅନ୍ତଃକରଣ ବହୁତ ଶୁଦ୍ଧ ହୋଇଯାଇଥିଲା । ସେ ଭାବିବାକୁ ଲାଗିଲା, ଯେଉଁ ବ୍ୟକ୍ତି ମୋ' ପରି ସୁନ୍ଦରୀ ପ୍ରତି ଭୃକ୍ଷେପ ନକରି ହରିନାମରେ ଏତେ ସଂଲଗ୍ନ ହୋଇ ରହୁଛନ୍ତି, ସେ କୌଣସି ସାଧାରଣ ବ୍ୟକ୍ତି ନୁହଁନ୍ତି । ଅବଶ୍ୟ ସେ ଏପରି କିଛି ସୁନ୍ଦର ବସ୍ତୁ ପ୍ରାପ୍ତ ହୋଇଛନ୍ତି, ଯାହା ତୁଳନାରେ ଜଗତର ସମସ୍ତ ରୂପ ତୁଚ୍ଛ । ବେଶ୍ୟାର ହୃଦୟ ପରିବର୍ତ୍ତିତ ହୋଇଗଲା । ଭୁଲାଇବାକୁ ଆସିଥିଲା ସ୍ୱୟଂ ଭୁଲିଗଲା । ସାଧୁ ଅବଜ୍ଞାର ଅନୁତାପରେ ରୋଦନ କରି କରି ହରିଦାସଙ୍କ ଚରଣରେ ଲୋଟିଗଲା । କହିବାକୁ ଲାଗିଲା, ସ୍ୱାମୀ ! ମୁଁ ମହାପାପୀ, ମୋର ଉଦ୍ଧାର କର । ହରିଦାସ ତାଙ୍କୁ ହରିନାମ ଦାନରେ କୃତାର୍ଥ କରି ସେଠାରୁ ଚାଲିଲେ । ବେଶ୍ୟା ନିଜର ସର୍ବସ୍ୱ ଦୀନ ଦୁଃଖୀଙ୍କୁ ବିତରଣ କରି ତପସ୍ୱିନୀ ହୋଇଗଲେ । ସେହି କୁଡ଼ିଆରେ ରହି ସାଧନ ଭଜନ କରିବାରେ ଲାଗିଲେ । ପରବର୍ତ୍ତୀ କାଳରେ ସେ ମହାନ ଭକ୍ତ ହୋଇଯାଇଥିଲେ । ଏହା ସାଧୁସଂଗ ଓ ନାମ ଶ୍ରବଣରେ ପ୍ରତ୍ୟକ୍ଷ ପ୍ରମାଣ ।

ଏହିପରି ବେଶ୍ୟାର ଉଦ୍ଧାର କରି ହରିଦାସ ଶାନ୍ତିପୁର ଯାଇଥିଲେ । ଅଦ୍ୱୈତାଚାର୍ଯ୍ୟ ନାମରେ ଜଣେ ବିଶିଷ୍ଟ ଆଧ୍ୟାତ୍ମବାଦୀ ବିଦ୍ୱାନ ବୈଷ୍ଣବ ସେଠାରେ ରହୁଥିଲେ । ସେ ହରିଦାସଜୀଙ୍କୁ ବଡ଼ ଆଗ୍ରହରେ ନିଜ ଘରେ ରଖାଇଲେ । ଉଭୟ ମହାତ୍ମା ବଡ଼ ଆନନ୍ଦରେ ହରିକଥା ଚର୍ଚ୍ଚା କରିବାରେ ଲାଗିଲେ । ଅଦ୍ୱୈତାଚାର୍ଯ୍ୟ ଭାଗବତାଦି ଗ୍ରନ୍ଥ ପଢ଼ି ହରିଦାସଙ୍କୁ ଶୁଣାଉଥାନ୍ତି । ସେ ତାଙ୍କ ଗ୍ରାମ ନିକଟରେ ହରିଦାସଙ୍କ ପାଇଁ ଗୋଟିଏ ଗୁମ୍ଫା ନିର୍ମାଣ କରିଥିଲେ । ହରିଦାସ ସେଠାରେ ରହି ହରି ଭଜନ କରୁଥାନ୍ତି । ଦ୍ୱିପ୍ରହରରେ ଅଦ୍ୱୈତାଚାର୍ଯ୍ୟଙ୍କ ଘରେ ପ୍ରସାଦ ସେବନ କରିବାକୁ ଆସୁଥାନ୍ତି ।

ଶାନ୍ତିପୁର ନିକଟରେ ଫୁଲିଆ ଗାଁ' । ବ୍ରାହ୍ମଣ ଶାସନ । ଯଦ୍ୟପି ହରିଦାସ ଯବନ, ସେ ପ୍ରଭୁଙ୍କର ସେବାପୂଜା ଯେପରି କରୁଥାନ୍ତି, ତାହା ଦେଖି ତାଙ୍କୁ ସମସ୍ତେ ଆଦର କରୁଥାନ୍ତି । ସେ ନିତ୍ୟ ଗଂଗାସ୍ନାନ କରି ହରିନାମ ଉଚ୍ଚାରଣ କରୁଥିଲେ ।

ସେହି ସମୟରେ ମୁସଲମାନ୍ ରାଜତ୍ୱ ଚାଲିଥାଏ । ହିନ୍ଦୁମାନେ ନିଜ ଧର୍ମାନୁକୂଳ ବିଷୟ ଆଚରଣ କରିବା କଠିନ ହୋଇ ପଡୁଥିଲା । ଏହିପରି ସମୟରେ ହରିଦାସ ମୁସଲମାନ୍ ହୋଇ ମଧ୍ୟ ହିନ୍ଦୁ ଆଚରଣ କରିବା ଅଧିକାରୀମାନଙ୍କୁ ବିଷମୟ ବୋଧ ହେଉଥିଲା । ଏଥିପାଇଁ ଗୋରାକାଜୀ ମୁଲକପତି ଅଦାଲତରେ ନାଲିସ୍ କଲେ ଯେ ହରିଦାସଙ୍କୁ ରାଜଦଣ୍ଡ ମିଳିବା ଉଚିତ୍ । ଏଣୁ ମୁଲକ୍‌ପତିଙ୍କ ଅନୁସାରେ ହରିଦସଙ୍କୁ ଧରିନେଇ ଜେଲରେ ରଖାଇଲେ । ଏହି ଗିରଫଦାରୀ ପାଇଁ ତାଙ୍କ ଭକ୍ତମାନଙ୍କ ହୃଦୟରେ ଦାରୁଣ ଆଘାତ ହୋଇଥିଲା । ଏଣେ ଜେଲ୍‌ଖାନାରେ କଏଦୀମାନେ ହରିଦାସଙ୍କ ପ୍ରତି ବଡ଼ ଭକ୍ତିଭାବର ପରିଚୟ ଦେଇଥିଲେ । ହରିଦାସ କହିଲେ, ଯେପରି ଭଗବାନଙ୍କ ପ୍ରତି ତୁମର ମନ ଏ ସମୟରେ ହେଉଛି, ସେହିପରି ସଦା ଭଗବାନଙ୍କଠାରେ ଲଗାଇ ରଖ । ଆମକୁ ଦୁଇ ତିନି ଦିନରେ ଛାଡ଼ି ଦିଆଯିବ । ତାହାଙ୍କ କହିବା କଥା ସତରେ ପରିଣତ ହୋଇଥିଲା । ତାଙ୍କୁ ଦୁଇ ତିନି ଦିନରେ ଛାଡ଼ି ଦିଆଗଲା ।

ଏବେ ହରିଦାସଙ୍କ ମକଦ୍ଦମା ଅଦାଲତରେ ଚାଲିଲା । ଦର୍ଶକମାନଙ୍କର ଅହେତୁକ ଭୀଡ଼ ମଧ୍ୟ ଦେଖିବାକୁ ମିଳିଲା । ନାୟାଧୀଶ ହରିଦାସଙ୍କୁ ସମ୍ମାନ କରି ବସିବା ପାଇଁ ସ୍ୱତନ୍ତ୍ର ଆସନ ବ୍ୟବସ୍ଥା କରିଥିଲେ । ନାୟାଧୀଶ ହରିଦାସଙ୍କୁ କହିଲେ, ଆପଣ ବଡ଼ ଭାଗ୍ୟରେ ମୁସଲମାନ୍ ହୋଇଛନ୍ତି, ପୁଣି କାଫେରଙ୍କ ଦେବତାଙ୍କୁ କାହିଁକି ଭଜନ କରୁଛନ୍ତି । ତାଙ୍କ ବିଧି ଆଚରଣ କାହିଁକି କରୁଛନ୍ତି । ମୁଁ ତ ହିନ୍ଦୁଙ୍କ ଭୋଜନ ମଧ୍ୟ କରେ ନାହିଁ । ଏହି ପାପରୁ ମୃତ୍ୟୁ ପରେ ମଧ୍ୟ ଆପଣଙ୍କର ଉଦ୍ଧାର ହେବ ନାହିଁ । ଏବେ ଆପଣ 'କଲମା' ପଢ଼ିଲେ ଆପଣଙ୍କର ଉଦ୍ଧାର ହୋଇଯିବ । ହରିଦାସ ବିନୟ ପୂର୍ବକ ଉତ୍ତର ଦେଲେ, ହେ ପୂଜ୍ୟ ନ୍ୟାୟାଧୀଶ ! ଏ ସଂସାରର ମାଲିକ ହିଁ ଜଣେ । ହିନ୍ଦୁ ଏବଂ ମୁସଲମାନ ତାକୁ ପୃଥକ ପୃଥକ ନାମରେ ଡାକିଥାନ୍ତି । ମୋତେ ଯେପରି ରୁଚୁଛି ମୁଁ ସେହିପରି ତାଙ୍କୁ ପୂଜାର୍ଚ୍ଚନା କରୁଅଛି ।

ଯଦି କୌଣସି ହିନ୍ଦୁ ମୁସଲମାନ ହେଇଯାଏ, ତେବେ ହିନ୍ଦୁ ତା' ଉପରେ ଅତ୍ୟାଚାର କରନ୍ତି ନାହିଁ । ମୋତେ ଆଉ କିଛି କହିବା ଠିକ୍ ହେବ ନାହିଁ ।

ହରିଦାସଙ୍କର ବିନୟ ପୂର୍ଣ୍ଣ ଏବଂ ଯଥାର୍ଥ ଉତ୍ତର ଶୁଣି ସମସ୍ତେ ପ୍ରସନ୍ନ ହେଲେ । ନ୍ୟାୟାଧୀଶ ମୁଲକପତି ମଧ୍ୟ ପ୍ରସନ୍ନ ହେଲେ । କିନ୍ତୁ ଗୋରାଇକାଜି କୌଣସି ପ୍ରକାରେ ସନ୍ତୁଷ୍ଟ ହୋଇପାରିଲେ ନାହିଁ ଏବଂ ତାଙ୍କ ହୃଦୟରେ ଦୟାଭାବ ନଥିଲା । ନ୍ୟାୟାଧୀଶଙ୍କୁ କହିଲା 'କାନୁନ୍' ଅନୁସାରେ ହରିଦାସଙ୍କୁ କଠୋର ଦଣ୍ଡ ହେବା ଦରକାର । ନୋହିଲେ ତ ତାଙ୍କ ଦେଖାଦେଖି ଅନେକ ମୁସଲମାନ୍ ହିନ୍ଦୁ ହୋଇଯିବେ । ଏହାଦ୍ୱାରା ଇସଲାମ୍‌ର ବଡ଼ କ୍ଷତି ହେବ । ଏବେ ଅଦାଲତ ହରିଦାସଙ୍କୁ କହିଲା ଏ ପରିସ୍ଥିତିରେ ଆପଣ ହରିନାମ ଜପ ଛାଡ଼ି ଦିଅନ୍ତୁ, ନୋହିଲେ ଶକ୍ତ ଦଣ୍ଡ ମିଳିବ ।

ହରିଦାସ ଉତ୍ତର ଦେଲେ-

**ଖଣ୍ଡ ଖଣ୍ଡ କରେ ଦେହ ଯଦି ଯାୟା ପ୍ରାନ ।**
**ତବୁ ଆମି ବଦନେ ନା ଛାଡ଼ିବ ହରିନାମ ॥**

- ଅର୍ଥାତ୍ ମୋ' ଦେହକୁ ଖଣ୍ଡ ଖଣ୍ଡ କରିଦିଅ କିମ୍ୱା ପ୍ରାଣ ଚାଲିଯାଉ, ତେବେ ବି ମୁଁ ମୁହଁରୁ ହରିନାମ କହିବା ଛାଡ଼ିବି ନାହିଁ ।

ଏହାଶୁଣି ନ୍ୟାୟାଧୀଶ କାଜୀଙ୍କ କଥାରେ ତାଙ୍କୁ ଏପରି କଠୋର ଦଣ୍ଡ ଦେଲେ ଯେ- ଖୋଲା ବଜାରରେ ତାଙ୍କ ପିଠିରେ ଏପରି ବେତ୍ରାଘାତ କରିବ, ଯା' ଫଳରେ ତା' ପ୍ରାଣ ଛାଡ଼ିଯିବ । ପାଷାଣ ହୃଦୟ ସିପାହୀ ହୃଦୟ ବିଦାରକ ସାଧୁ ନିପୀଡ଼ନ ଆରମ୍ଭ କରିଦେଲେ । ସିପାହୀ ପ୍ରହାର ସହ ହରିନାମ ଛାଡ଼ିଦେବାକୁ କହୁଥିଲେ । ହରିଦାସ କହିଲେ, ମୁଁ ପୁଣିଥରେ ହରିନାମ ନେଉଛି, ମୋତେ ମାର । ସିପାହୀଙ୍କ ଦଶା ଉପରେ ଦୟା କରି ହରିଦାସ ଅଶ୍ରୁପୂର୍ଣ୍ଣ ନେତ୍ରରେ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ- ଭଗବାନ ! ମୋତେ ଏମାନେ ଭୁଲରେ ପିଟୁଛନ୍ତି, ଏମାନଙ୍କୁ ଏ ଅପରାଧରୁ ମୁକ୍ତ କରିଦିଅ । ଏହାଙ୍କୁ କ୍ଷମା କର, କୃପାକର । ଏହିପରି କହି କହି ହରିଦାସ ବେହୋସ୍ ହୋଇଗଲେ । ସେ ମରିଯିବା ବିଚାର କରି ଗଂଗାରେ ଭସାଇ ଦେଲେ । କିଛି ସମୟ ପରେ ହରିଦାସ ଚେତା ପାଇ କୂଳରେ ଲାଗିଲେ । ସେଠାରୁ ଉପରକୁ ଚାଲି ଆସିଲେ । ଏହି ଘଟଣା ମାୟାଧୀଶ

ମୁଲକପତି ଏବଂ କାଜୀ ଦୁହିଁଙ୍କ ଉପରେ ଗଭୀର ପ୍ରଭାବ ପଡ଼ିଲା । ସେ ଦୁହେଁ ହରିଦାସଙ୍କ ଚରଣାଶ୍ରିତ ହୋଇ ତାଙ୍କର ଅନୁଗାମୀ ହୋଇଗଲେ । ଏବେ ସେମାନେ ମଧ୍ୟ ହରିନାମ ଜପ, ଭଜନ କଲେ । ତାଙ୍କର ସଚ୍ଚା ଶୁଦ୍ଧି ହୋଇଗଲା ।

ଥରେ ହରିଦାସଜୀ ସପ୍ତଗ୍ରାମରେ ହିରଣ୍ୟ ମଜୁମଦାର ନାମକ ଜମିଦାର ସଭାରେ ହରିନାମ ମହାତ୍ମ୍ୟ ବର୍ଣ୍ଣନ କରୁ କରୁ କହିଲେ, ଯେ ଭକ୍ତି ପୂର୍ବକ ହରିନାମ ନେବା ଦ୍ୱାରା ଜୀବ ହୃଦୟରେ ଯେଉଁ ଭକ୍ତି ପ୍ରେମର ସଂଚାର ହୁଏ, ତାହା ହିଁ ହରିନାମ ନେବାର ଫଳ । ଏହି କଥା ଉପରେ ଜମିଦାରଙ୍କର ଗୋପାଳ ଚକ୍ରବର୍ତ୍ତୀ ନାମକ ଜଣେ କର୍ମଚାରୀ ହରି ନାମକୁ ନିନ୍ଦା କରି କହିଲା- ଏ ସବୁ ଭାବୁକତାର କଥା । ଯଦି ହରିନାମରେ ହିଁ ମନୁଷ୍ୟର ନୀଚତା ଚାଲିଯିବ- ତେବେ ମୁଁ ମୋ' ନାକ କାଟି ଦେବି । ହରିଦାସ ବଡ଼ ଦୃଢ଼ତାରେ କହିଲେ, "ଭାଇ ! ହରିନାମ ସ୍ମରଣ ଏବଂ ଜପରେ ଯଦି ମନୁଷ୍ୟର ମୁକ୍ତି ନମିଳେ ତେବେ ମୁଁ ମୋର ନାକ କାଟି ଦେବି ।" କୁହାଯାଏ ଦୁଇ ତିନିମାସ ମଧ୍ୟରେ ଗୋପାଳର ନାକ କୁଷ୍ଠରୋଗ ହେତୁ ଛିଡ଼ିପଡ଼ିଲା । ହରିନାମ- ନିନ୍ଦାର ଫଳ ଏହାଠାରୁ ମଧ୍ୟ ଖରାପ ହୋଇପାରେ । ଏହି ସମୟରେ ଚୈତନ୍ୟ ମହାପ୍ରଭୁ ହରିନାମ ସଂକୀର୍ତ୍ତନ କରୁଥାନ୍ତି । ହରିଦାସଜୀ ସେଠାକୁ ଆସି ରହିଲେ ଏବଂ ରହି କୀର୍ତ୍ତନରେ ଆନନ୍ଦ ନେଲେ । ଶ୍ରୀଚୈତନ୍ୟ ଦେବଙ୍କ ଆଜ୍ଞାରେ ହରିନାମ ମତୁଆଲ ହରିଦାସ ଏବଂ ଶ୍ରୀନିତ୍ୟାନନ୍ଦଜୀ ଦୁହେଁ ନାମ ସଂକୀର୍ତ୍ତନ ଏବଂ ନୃତ୍ୟ କରି ନଗରର ଚତୁର୍ଦ୍ଦିଗରେ ଭ୍ରମଣ କରି ନର-ନାରୀଙ୍କୁ ହରିନାମ ବିତରଣ କରିବାରେ ଲାଗିଲେ ।

ଶେଷରେ ଚୈତନ୍ୟ ସନ୍ନ୍ୟାସୀ ହେବା ପରେ ହରିଦାସ ପୁରୀ ଆସି ଚୈତନ୍ୟଙ୍କ ଆଜ୍ଞାରେ କାଶୀମିଶ୍ରଙ୍କ ବିଗିଚାରେ କୁଟୀର ନିର୍ମାଣ କରି ରହିବାକୁ ଲାଗିଲେ । ସେହିଠାରେ ତାଙ୍କର ମୃତ୍ୟୁ ହୋଇଥିଲା । ମୃତ୍ୟୁ ସମୟରେ ଚୈତନ୍ୟ ମହାପ୍ରଭୁ ନିଜ ଭକ୍ତମଣ୍ଡଳୀ ସହିତ ହରିଦାସଙ୍କ ପାଖକୁ ଯାଇଥିଲେ । ହରିଦାସଙ୍କ ମୃତ ଶରୀରକୁ ଉଠାଇ ଚୈତନ୍ୟ ନାଚିବାକୁ ଲାଗିଲେ । ଶେଷକୁ ମୃତଶରୀରକୁ ଗୋଟିଏ ବିମାନରେ ରଖାଗଲା । ଚୈତନ୍ୟ ସ୍ୱୟଂ କୀର୍ତ୍ତନ କରି ଆଗେ ଆଗେ ଚାଲିଲେ । ଶ୍ରୀଚୈତନ୍ୟ ହରିନାମ ଧ୍ୱନିରେ ନଭୋମଣ୍ଡଳ ନିନାଦିତ କରି ନିଜ ହାତରେ ଶବକୁ ସମାଧିସ୍ଥ କଲେ ॥



# ମହାନ ଭକ୍ତ ବିଷ୍ଣୁ ସ୍ୱାମୀ (ଆଚାର୍ଯ୍ୟ)

ଶ୍ରୀ ରାମାନୁଜ ଉଦାର ସୁଧାନିଧି ଅବନି କଳ୍ପତରୁ ।
ବିଷ୍ଣୁ ସ୍ୱାମୀ ବୋହିତ୍ଥ ସିନ୍ଧୁ ସଂସାର ପାର କରୁ ॥୨୮॥
(ଭକ୍ତମାଳା)

ଧର୍ମରାଜ ଯୁଧିଷ୍ଠିରଙ୍କ ସଂବତ୍ ୨୫୦୦ ବ୍ୟତୀତ ହେବା ପରେ ଅର୍ଥାତ୍ ବିକ୍ରମ ସଂବତ୍‌ଠାରୁ ୬୦୦ ବର୍ଷ ପୂର୍ବେ ଦ୍ରାବିଡ଼ ଦେଶ (ଦାକ୍ଷିଣାତ୍ୟ)ର ଜଣେ କ୍ଷତ୍ରିୟ ରାଜାଙ୍କ ମନ୍ତ୍ରୀ ଭକ୍ତ ବ୍ରାହ୍ମଣ ଭଗବାନଙ୍କୁ ନିଷ୍ଠାର ସହ ଆରାଧନା କରି ବିଷ୍ଣୁ ସ୍ୱାମୀଙ୍କୁ ପୁତ୍ର ରୂପେ ପ୍ରାପ୍ତ କରିଥିଲା । କେହି ବିଦ୍ୱାନ ତାଙ୍କୁ ବିକ୍ରମ ପର ବୋଲି ମଧ୍ୟ କହିଥାନ୍ତି । ଭଗବତ୍ ବିଭୂତି ସ୍ୱରୂପ ହୋଇଥିବାରୁ ଶିଶୁ ଅବସ୍ଥାରୁ ତାଙ୍କଠାରେ ଅଲୌକିକ ଗୁଣ ପ୍ରକଟ ହୋଇଥିଲା । ତାଙ୍କର ଯେପରି ଅଦ୍ଭୁତ ପ୍ରତିଭା ସେହିପରି ସେ ସୁଦର୍ଶନ ମଧ୍ୟ ଥିଲେ । ଯଜ୍ଞୋପବୀତ ସଂସ୍କାର ପରେ ଅଳ୍ପକାଳ ମଧ୍ୟରେ ବେଦ, ବେଦାଙ୍ଗ ତଥା ପୁରାଣାଦିର ଜ୍ଞାନ ପ୍ରାପ୍ତ କରିଥିଲେ । 'ଯୋ ଯଦଂଶଃ ସ ତଂ ଭଜେତ୍'ର ନିୟମ ଅନୁସାରେ ଏବେ ସେ ପରମ ସୁଖର ଅନ୍ୱେଷଣ ଦିଗରେ ଅଗ୍ରସର ହେଲେ । ସେ ମର୍ତ୍ତ୍ୟଲୋକରୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ବିଚାର କରିଥିଲେ । କିନ୍ତୁ ତାଙ୍କ ଅଭୀଷ୍ଟ ବସ୍ତୁ ଦର୍ଶନ ମିଳିଲା ନାହିଁ ।

ଅନ୍ତତଃ ସେ ଉପନିଷଦର ଶରଣ ନେଲେ । ବୃହଦାରଣ୍ୟକ ଉପନିଷଦ ଅଧ୍ୟାୟଃର ବ୍ରାହ୍ମଣ ୪ରେ 'ସ ବା ଏବ ମହାନଜ ଆତ୍ମା ସର୍ବସ୍ୱ ବଶୀ'ରୁ ଆରମ୍ଭ କରି 'ଏଷ ସେତୁ ବିଂଧାରଣ ଏଷାଂ ଲୋକାନାମ ସଂଭେଦାୟ' ପର୍ଯ୍ୟନ୍ତ ଯାହା ବର୍ଣ୍ଣନା ହୋଇଛି ତଦନୁସାରେ ଈଶ୍ୱରଙ୍କୁ ନିଶ୍ଚୟ କରି ସେ ଉପାସନା ଆରମ୍ଭ କରିଦେଲେ । ପ୍ରଭୁଙ୍କ ସାକ୍ଷାତ୍‌କାର ଉପରେ ତାଙ୍କର ପୂର୍ଣ୍ଣବିଶ୍ୱାସ ରହିଥିଲା । ଉପାସନା ବହୁତ ଦିନ ପର୍ଯ୍ୟନ୍ତ ନିଷ୍ଠାର ସହ ଚାଲୁ ରଖିଲେ ମଧ୍ୟ ଲାଭର କୌଣସି ସୂଚନା ଦେଖିବାକୁ ପାଇଲେ ନାହିଁ ।

ଭଗବତ୍ ଅଭାବରେ ଅନ୍ନଜଳ ମଧ ତ୍ୟାଗ କରିଦେଲେ । ଭଗବତ୍ ସେବା ପୂର୍ବବତ୍ ଚାଲୁରହିଲା । ଛ'ଦିନ ଗତ ହୋଇଗଲା । ଅଂଗ ଶିଥିଳ ହୋଇଗଲା, କିନ୍ତୁ ଉତ୍ସାହ କମିନାହିଁ । ସପ୍ତମ ଦିନ ତାଙ୍କ ବିରହ ବ୍ୟଥା ଏତେ ତୀବ୍ର ହେଲା ଯେ, ଗୋଟିଏ କ୍ଷଣ ଗୋଟିଏ ଯୁଗ ପରି ବୋଧ ହେଲା । ବଞ୍ଚିବା ଭାର ସ୍ୱରୂପ ହୋଇଗଲା । ତାଙ୍କ ଶରୀରକୁ ବିରହାଗ୍ନିରେ ଜାଳି ଦେବାକୁ ନିଶ୍ଚୟ କଲେ । ଏହି ସମୟରେ ତାଙ୍କ ହୃଦୟରେ ଆଲୋକ ଜ୍ୟୋତି ଖେଳିଗଲା । ଭଗବତ୍ ପ୍ରେରଣାରେ ଆଖି ଖୋଲିବା ପରେ ସେ 'ସନ୍ତଂ ବୟସି କୈଶୋରେ' ଆଦି ଶ୍ଳୋକରେ ବର୍ଣ୍ଣିତ କିଶୋରାକୃତି, ବେଣୁବାଦନ ତତ୍ପର ଶୃଂଗାର ରସ ମୂର୍ତ୍ତି, ପୀତାମ୍ବରଧାରୀ, ସଖୀଦ୍ୱୟ ସେବିତ, ତ୍ରିଭଂଗ ଲଳିତ ଭଗବାନ୍ ଶ୍ୟାମସୁନ୍ଦରଙ୍କର ସୁର ମୁନି ଦୁର୍ଲଭ ଦର୍ଶନ ପ୍ରାପ୍ତ କଲେ । ସେହି ସମୟରେ ତାଙ୍କର ଯେଉଁ ଅବସ୍ଥା ତାହା ସର୍ବଥା ଅବର୍ଣ୍ଣନୀୟ । ଆନନ୍ଦପୂର୍ଣ୍ଣ ହୃଦୟରେ ସେ ଭଗବାନଙ୍କ ଚରଣ କମଳରେ ଶିର ରଖିଦେଲେ ଏବଂ ପୁଲକିତ ଶରୀରରେ ଅଶ୍ରୁ ସଜଳନେତ୍ରରେ ସେହିଠାରେ ଲୋଟିଗଲେ । ଭଗବାନ୍ ତାଙ୍କୁ ଟେକି ନେଲେ । ଶିରୋପରି ହସ୍ତ ନ୍ୟସ୍ତ କରି ଆଶୀର୍ବାଦ ଦେଲେ । କିଛି ସମୟପରେ ପ୍ରକୃତିସ୍ଥ ହୋଇ ବଦ୍ଧାଂଜଳିରେ ସ୍ତୁତି କରିବାକୁ ଲାଗିଲେ ।

ତାଙ୍କ ମନରେ ଉପନିଷଦର ଅଭିପ୍ରାୟ ସଂବଂଧରେ କିଛି ସଂଶୟ ଥିଲା ଅତଃ ଏହାର ନିବାରଣ କରିବା ପାଇଁ ଭଗବାନ୍ ତାଙ୍କୁ ଗୁହ୍ୟତମ ତତ୍ତ୍ୱର ରହସ୍ୟ ସୂଚାଇ ଥିଲେ । ଭଗବାନ୍ କହିଲେ- ତୁମ ମନରେ ଏହି ସଂଦେହକୁ ସ୍ଥାନ ଦିଅ ନାହିଁ ଯେ ମୁଁ ପୁରୁଷୋତ୍ତମ ଭଗବାନ, ଯେ ତୁମ ସମ୍ମୁଖରେ ସାକାର ରୂପରେ ସାକ୍ଷାତ୍ ପ୍ରତ୍ୟକ୍ଷ ହୋଇ କଥା କହୁଅଛି, ଏହା ବ୍ୟତୀତ ଅନ୍ୟକିଛି ତତ୍ତ୍ୱ ମଧ ଅଛି । ଏହି ସାକାର ରୂପରେ ଏକ, ଅଦ୍ୱିତୀୟ, ତ୍ରିବିଧ ଭେଦଶୂନ୍ୟ, ଅନିର୍ବଚନୀୟ ପରମତତ୍ତ୍ୱ ମୁଁ ହିଁ ହୋଇଥାଏ । ମାୟା, ଜଗତ୍ ଆଦି କିଛି ନାହିଁ । ସବୁରେ ମୁଁ ହିଁ ରହିଛି । ଯେତେ ବିରୁଦ୍ଧ ଧର୍ମ ଦେଖୁଛ, ସମସ୍ତ ମୋ'ଠାରେ ରହିଛି । ମୁଁ ହିଁ ସଗୁଣ-ନିର୍ଗୁଣ, ସାକାର-ନିରାକାର, ସବିଶେଷ-ନିର୍ବିଶେଷ ସବୁକିଛି ମୁଁ । ଅତଃ ଏହି ଶଂକା ଛାଡ଼ି ସର୍ବ ଭାବରେ ମୋର ଭଜନ କର ।

ଏହାପରେ ବିଷ୍ଣୁସ୍ୱାମୀ ଭଗବାନ୍‌ଙ୍କ ସହିତ କିଛି ସମୟ ପର୍ଯ୍ୟନ୍ତ କଥାବାର୍ତ୍ତା ହେଲେ । ସେ ଆଗ୍ରହ ପ୍ରକାଶ କଲେ କି ଏବେ ଆପଣ ଅନ୍ତର୍ଦ୍ଧାନ ନ ହୁଅନ୍ତୁ ।

ସର୍ବଦା ମୋତେ ଦର୍ଶନ ଦେଉଥାନ୍ତୁ କିମ୍ବା ମୋତେ ସାଥୀରେ ନେଇ ଚାଲନ୍ତୁ । ଭଗବାନଙ୍କର ତାଙ୍କ ଦ୍ୱାରା ଭକ୍ତି- ପ୍ରଚାର କରିବାର ଥିଲା । ଏଣୁ ଜଣେ ମୂର୍ତ୍ତି ନିର୍ମାଣକାରୀ କାରିଗରକୁ ଡକାଇ ଦର୍ଶନ ଦେଲେ । ସେହିପରି ମୂର୍ତ୍ତି ନିର୍ମାଣ କରି ସ୍ଥାପିତ କରି ଅର୍ଚ୍ଚା ସେବା କରିବାର ଆଦେଶ ଦେଲେ । ସ୍ୱୟଂ ପ୍ରଭୁ ତହିଁରେ ପ୍ରବେଶ କରିଗଲେ । ବିଷ୍ଣୁସ୍ୱାମୀ ସେହି ବିଗ୍ରହକୁ ସାକ୍ଷାତ ଭଗବତ୍ ରୂପ ମାନି ଅର୍ଚ୍ଚାପୂଜା କରି ଆନନ୍ଦରେ ଜୀବନ ଅତିବାହିତ କରିବାରେ ଲାଗିଲେ । ସେ 'ଶ୍ରୀକୃଷ୍ଣ ତବାସ୍ମି' ଏହି ମନ୍ତ୍ର ଜପ କରୁଥିଲେ ।

ଭଗବତ୍ ପ୍ରେରଣାରେ ଭକ୍ତିର ସଂବର୍ଦ୍ଧନା କରି କରି ତାଙ୍କର ପରିଣତ ଅବସ୍ଥା ଆସିଗଲା । ତେବେ ଶାସ୍ତ୍ର- ମର୍ଯ୍ୟଦା ଆଧାରରେ ତ୍ରିଦଣ୍ଡ ସନ୍ନ୍ୟାସ ଗ୍ରହଣ କଲେ ଓ ଭଗବତ୍ ଚିନ୍ତନ କରି କରି ଭଗବାନ୍‌ଙ୍କ ନିତ୍ୟଧାମରେ ପ୍ରବେଶ କଲେ ।

ତାଙ୍କ ସଂପ୍ରଦାୟରେ ସାତଶହ ଆଚାର୍ଯ୍ୟ ହୋଇଥିଲେ । ତନ୍ମଧ୍ୟରେ ଜଣେ ବିଲ୍ୱମଂଗଳ ମଧ୍ୟ ଥିଲେ । ଏ ତିନି ଚାରି ବିଲ୍ୱମଂଗଳଠାରୁ ଭିନ୍ନ । ଯେବେ ଏହାଙ୍କ ଉପଦେଶରେ ଅନଧିକାରୀ ମଧ୍ୟ ଭକ୍ତି ରାଜ୍ୟରେ ପ୍ରବେଶ କଲେ । ତେବେ ତାଙ୍କୁ ସଂସାର ବ୍ୟବସ୍ଥା ଠିକ୍ କରିବା ପାଇଁ ଅନ୍ତର୍ଦ୍ଧାନ ହୋଇ ରହିବାର ଆଜ୍ଞା ହେଲା । ଯେଉଁ ସମୟରେ ଆଚାର୍ଯ୍ୟ ବଲ୍ଲଭ ଏକ ଦ୍ୱିତୀୟ ମତରେ ମିଶିବାକୁ ଯାଉଥିଲେ, ତେବେ ସ୍ୱପ୍ନରେ ପ୍ରକଟ ହୋଇ ବିଲ୍ୱମଂଗଳ ତାଙ୍କୁ ଭଗବାନ୍‌ଙ୍କ ଆଦେଶ ସୂଚାଇ ଥିଲେ ଏବଂ ଶୁଦ୍ଧା ଦ୍ୱୈତ ଅଥବା ପୁଷ୍ଟି ମାର୍ଗର ଉପଦେଶ ଦେଇଥିଲେ ।

ଏହି ବିଷ୍ଣୁସ୍ୱାମୀଙ୍କ ସିଦ୍ଧାନ୍ତ- ଆଧାରରେ ଆଚାର୍ଯ୍ୟ ବଲ୍ଲଭ ନିଜର ସିଦ୍ଧାନ୍ତ ସ୍ଥିର କରିଥିଲେ ଏବଂ ସମୟ ସମୟରେ ଭଗବାନ୍ ତାଙ୍କ ସମ୍ମୁଖରେ ପ୍ରକଟ ହୋଇ ତାଙ୍କୁ ଉଚିତ୍ ମାର୍ଗ ପ୍ରଦର୍ଶିତ କରିଥିଲେ ॥



# ସନ୍ଥ ଶିରୋମଣି ଗୋସ୍ୱାମୀ ତୁଳସୀ ଦାସ

ଗୋସ୍ୱାମୀ ତୁଳସୀ ଦାସଙ୍କ ଆବିର୍ଭାବ ଯେଉଁ ସମୟରେ ହୋଇଥିଲା, ସେହି ସମୟ ହିନ୍ଦୁଧର୍ମ ପାଇଁ ଘୋର ନୈରାଶ୍ୟର କାଳ । ଚତୁର୍ଦ୍ଦିଗରୁ ଯେପରି ଅନ୍ଧକାର ଘେରି ରହିଥିଲା । କୌଣସି ସ୍ପଷ୍ଟ ମାର୍ଗ ଦୃଶ୍ୟ ହେଉ ନଥିଲା । ତୁଳସୀ ଦାସ ଭଗବାନଙ୍କର ଲୋକ ମଂଗଳ ରୂପ ଦେଖାଇ ହିନ୍ଦୁ ଜାତିକୁ ବଂଚାଇ ଦେଲେ ଏବଂ ବ୍ୟକ୍ତି ଜୀବନରେ ଆଶାର ଉଦୟ ହେଲା । ଆମେ ଭଗବାନ୍ ଶ୍ରୀରାମଙ୍କ ଭକ୍ତିର ଆଶ୍ରୟ ନେବା ଏବଂ ସେହି ଶକ୍ତି ଦ୍ୱାରା ଆମର ରକ୍ଷା ହେବ । ଗୋସ୍ୱାମୀ ଆମରି ବୁଝିଲା ଭଳି ଭାଷାରେ ଆମକୁ ବୁଝାଇଛନ୍ତି କି ଭଗବାନ୍ ଆମ ଠାରୁ ଦୂରରେ ନାହାଁନ୍ତି, ସେ ଆମ ଜୀବନ ସହ ଜଡ଼ିତ ଅଛନ୍ତି ।

ହିନ୍ଦୀର ରାଜାଶ୍ରିତ କବି ନିଜର ତଥା ତାଙ୍କ ଆଶ୍ରୟଦାତା ରାଜାଙ୍କ ସଂପର୍କରେ ଲେଖିଥାନ୍ତି । କିନ୍ତୁ ଗୋସ୍ୱାମୀ ସ୍ୱତନ୍ତ୍ର ହେବା ହେତୁ ଏହାର ଆବଶ୍ୟକତା ବୁଝୁନଥିଲେ । ତାଙ୍କ ଗ୍ରନ୍ଥମାନଙ୍କରେ ତାଙ୍କ ଜୀବନ ସଂପର୍କରେ କିଛି ହେଲେ ଉଲ୍ଲେଖ ନାହିଁ । ତାଙ୍କର ଭକ୍ତି ଏବଂ ଦୀନତା ସର୍ବତ୍ର ପ୍ରତିଫଳିତ ।

ଗୋସ୍ୱାମୀଙ୍କୁ ବାଲ୍ମିକୀଙ୍କ ଅବତାର ଭାବେ ଗ୍ରହଣ କରାଯାଏ । ତାଙ୍କ ଆବିର୍ଭାବ- ବିଂ.ସଂ ୧୫୫୪ ଶ୍ରାବଣ ଶୁକ୍ଳ ସପ୍ତମୀ । ବାନ୍ଦା ଜିଲାର ରାଜାପୁର ଅନ୍ୟଏକ ମତ ଅନୁସାରେ 'ସୋରୋଁ' (ସୁକରକ୍ଷେତ୍ର)ଠାରେ ଏକ ବ୍ରାହ୍ମଣ ପରିବାରରେ ହୋଇଥିଲା ।

**ପନ୍ଦରହ ସୈ ଚଉବନ ବିଷୈ, କାଳିଦୀ କେ ତୀର**
**ଶ୍ରାବନ ସୁକ୍ଲା ସପ୍ତମୀ, ତୁଳସୀ ଧରେଉ ଶରୀର ।।**

ମାତାଙ୍କ ନାମ ତୁଳସୀ ଏବଂ ପିତାଙ୍କ ନାମ ଆତ୍ମାରାମ ଦୁବେ । ଜନ୍ମ ସମୟରେ ସାମାନ୍ୟ ରୋଦନ କରି ନଥିଲେ ଏବଂ ସମସ୍ତ ଦାନ୍ତ ଉଠିଥିଲା । ଅଭକ୍ତ ବୃକ୍ଷ ମୂଳରେ ଜନ୍ମ ହୋଇଥିବାରୁ ମାତା- ପିତା ଅନିଷ୍ଟ ଆଶଂକା କରିଥିଲେ । ବାଲ୍ୟକାଳରେ ନାମ ଥିଲା ତୁଳାରାମ ।

ବି.ସଂ ୧୫୮୩ର ଜ୍ୟେଷ୍ଠ ଶୁକ୍ଳ ତ୍ରୟୋଦଶୀରେ ବୁଦ୍ଧିମତୀ (ରତ୍ନାବଳୀ)ଙ୍କ ସହ ବିବାହ ସଂପନ୍ନ ହୋଇଥିଲା । ପତ୍ନୀପ୍ରତି ତାଙ୍କର ଗଭୀର ଆସକ୍ତି ଥିଲା । ଦିନେ ସେ ତାଙ୍କ ପିତ୍ରାଳୟକୁ ଚାଲିଗଲେ । ତୁଳସୀ ସେଠାକୁ ଛପି ରାତିରେ ପହଁଚିଗଲେ । ତାଙ୍କ ପତ୍ନୀ ଏଥିରେ ବଡ଼ ଲଜ୍ଜିତ ହେଲେ ଏବଂ ଗୋଟିଏ ଦୋହା କହିଲେ-

**ହାଡ଼ ମାଂସ କୋ ଦେହ ମମ, ତାପର ଜିତନୀ ପ୍ରୀତି**
**ତିସୁ ଆଧୋ ଜୋ ରାମପ୍ରତି, ଅବସି ମିଟିହି ଭବଭୀତି ।।**

ଏ ବାକ୍ୟ ତାଙ୍କ ମନରେ ଖୁବ୍ ପ୍ରଭାବ ପକାଇଥିଲା । ବିଶ୍ରାମ ନ ନେଇ ସେଠାରୁ ଚାଲିଆସିଲେ । ସେଠାରୁ ସିଧା ପ୍ରୟାଗ ଗଲେ ଏବଂ ବିରକ୍ତ ହୋଇଗଲେ । ଶ୍ରୀଜଗନ୍ନାଥ ଧାମ ପୁରୀ, ରାମେଶ୍ୱର, ଦ୍ୱାରିକା ଏବଂ ବଦ୍ରିନାରାୟଣ ପାଦରେ ଚାଲିଚାଲି ତୀର୍ଥାଟନ ଦ୍ୱାରା ବୈରାଗ୍ୟ ଏବଂ ତିତିକ୍ଷା ବୃଦ୍ଧି ପ୍ରାପ୍ତ ହେଲା । ତୀର୍ଥାଟନରେ ଚଉଦବର୍ଷ ଅତିକ୍ରାନ୍ତ ହୋଇଗଲା । ଶ୍ରୀନର ହର୍ଯ୍ୟାନନ୍ଦଙ୍କୁ ଗୁରୁ ରୂପରେ ବରଣ କରିଥିଲେ ।

ଘର ଛାଡ଼ିବା ପରେ ପତ୍ନୀ ଥରେ ଗୋଟିଏ ଦୋହା ଲେଖି ତାଙ୍କୁ ପ୍ରେରଣ କରିଥିଲେ-

କଟିକୀ ଖୀନୀ କନକ ସୀ, ରହତି ସଖିନ ସଁଗ ସୋଇ ।
ମୋହି ଫଟେକୋ ଡରୁ ନହିଁ, ଅନତ କଟେ ଡର ହୋଇ ॥

ଏହାର ଉତ୍ତରରେ ଗୋସ୍ୱାମୀ ଲେଖିଲେ-

କଟେ ଏକ ରଘୁନାଥ ସଁଗ, ବାଁଧି ଜଟା ସିର କେସ ।
ହମ ତୋ ଚାଖା ପ୍ରେମରସ, ପତ୍ନୀ କେ ଉପଦେଶ ॥

ବହୁତ ଦିନ ପରେ ବୃଦ୍ଧାବସ୍ଥାରେ ଚିତ୍ରକୂଟରୁ ଫେରିବା ସମୟରେ ଅଜ୍ଞାତରେ ଶ୍ୱଶୁର ଘରେ ପହଞ୍ଚିଗଲେ । ପତ୍ନୀ ମଧ୍ୟ ବୃଦ୍ଧା ହୋଇ ଯାଇଥିଲେ । ବହୁ ଡେରିରେ ତାଙ୍କୁ ସେ ଚିହ୍ନିଲେ । ତାଙ୍କ ଇଚ୍ଛା ହେଲା ତାଙ୍କ ସହିତ ରାମ ଭଜନ ଏବଂ ପତିଙ୍କ ସେବା ଦୁଇଟିକୁ ଏକ ସମୟରେ କରି ଜନ୍ମ ସୁଧାରି ନେବେ । ପରଦିନ ସକାଳୁ ଗୋସ୍ୱାମୀଙ୍କ ସମ୍ମୁଖରେ ନିଜର ଇଚ୍ଛା ପ୍ରକାଶ କଲେ, କିନ୍ତୁ ଗୋସ୍ୱାମୀ ତୁରନ୍ତ ସେଠାରୁ ପଳାଇ ଆସିଲେ ।

କୁହାଯାଏ ଶୌଚ ହେବାପାଇଁ ଗୋସାଇଁ ନିତ୍ୟ ଗଂଗା ପାର ହୋଇ ଯାଉଥିଲେ । ଫେରିବା ସମୟରେ ଲୋଟାରେ ଅବଶିଷ୍ଟ ଜଳ ଗୋଟିଏ ଗଛମୂଳରେ ଢାଳି ଦିଅନ୍ତି । ସେହି ଗଛରେ ଗୋଟିଏ ପ୍ରେତ ରହୁଥିଲା । ଜଳରେ ତୃପ୍ତ ହୋଇ ଦିନେ ଗୋସାଇଁଙ୍କ ସମ୍ମୁଖରେ ପ୍ରକଟ ହେଲା ଏବଂ କହିଲା ମୋତେ କିଛି ବର ମାଗ । ଗୋସାଇଁ ରାମଚନ୍ଦ୍ରଙ୍କ ଦର୍ଶନ ଲାଳସା ପ୍ରକଟ କଲେ । ତହୁଁ ପ୍ରେତ କହିଲା ଅମୁକ ମନ୍ଦିରରେ ନିତ୍ୟସାୟଂକାଳରେ ରାମାୟଣ ଆଲୋଚନା ହେଉଛି । ସେଠାରେ କୁଷ୍ଠରୋଗୀ ବେଶରେ ନିତ୍ୟ ହନୁମାନ କଥା ଶୁଣିବାକୁ ଆସୁଛନ୍ତି । ସବା ଆଗେ ଆସନ୍ତି ଏବଂ ସର୍ବଶେଷରେ ଯାଇଥାନ୍ତି । ତାଙ୍କୁ ଦୃଢ଼ ଭାବେ ଧରିନିଅ । ଗୋସାଇଁ ତାହା ହିଁ କଲେ । ହନୁମାନଙ୍କ ପାଦଧରି ଜୋର୍‌ରେ କାନ୍ଦିବାକୁ ଲାଗିଲେ । ଶେଷରେ ହନୁମାନ କହିଲେ 'ଯାଅ, ଚିତ୍ରକୂଟରେ ଦର୍ଶନ ହେବ' । ଆଦେଶାନୁସାରେ ଗୋସ୍ୱାମୀ ଚିତ୍ରକୂଟ ଗଲେ । ଦିନେ ବଣରେ ବୁଲୁଛନ୍ତି ଦୁଇଜଣ ସୁନ୍ଦର ରାଜକୁମାର ଜଣେ ଶ୍ୟାମଳ ଅନ୍ୟ ଜଣକ ଗୌର ଗୋଟିଏ ହରିଣ ପଛରେ ଘୋଡ଼ା ଉପରେ ଧନୁଶର ଧରି ଦୌଡ଼ିଯିବାର ଦୃଶ୍ୟ ଦେଖିବାକୁ ପାଇଲେ । ରୂପ ଦେଖି ଗୋସ୍ୱାମୀ ମୋହିତ ହୋଲେ । ଇତି ମଧ୍ୟରେ ହନୁମାନଜୀ ଆସି ପଚାରିଲେ, କ'ଣ କିଛି ଦେଖିଲ ? ହଁ, ଦୁଇ ସୁନ୍ଦର ରାଜକୁମାର ଏହି ରାସ୍ତାରେ ଘୋଡ଼ା ଉପରେ ଗଲେ । ହନୁମାନଜୀ କହିଲେ, ସେ ହିଁ ରାମ ଲକ୍ଷ୍ମଣ ।

ବି.ସଂ. ୧୬୦୭ର ମୌନୀ ଅମାବାସ୍ୟା ବୁଧବାର ଦିନ ଚିତ୍ରକୂଟ ଘାଟରେ ବସି ତୁଳସୀ ଦାସ ଚନ୍ଦନ ଘୋରୁଛନ୍ତି । ଏହି ସମୟରେ ଭଗବାନ୍ ସମ୍ମୁଖରୁ ଆସିଗଲେ ଏବଂ ତାଙ୍କୁ ଚନ୍ଦନ ମାଗିଲେ । ଦୃଷ୍ଟି ଉପରକୁ ଉଠାଇ ଦେଖନ୍ତେ ତ ସେହି ଅପୂର୍ବ ରୂପରାଶିକୁ ଦେଖି ନେତ୍ର ମୁଗ୍ଧ ହୋଇଗଲା । ସମଗ୍ର ଶରୀର ରୋମାଞ୍ଚିତ ହୋଇଗଲା ।

ବି.ସଂ ୧୬୩୧ର ରାମନବମୀ ମଂଗଳବାର ଦିନ ହନୁମାନଙ୍କର ଆଜ୍ଞା ଓ ପ୍ରେରଣାରେ ତୁଳସୀ ରାମଚରିତ ମାନସର ପ୍ରାରମ୍ଭ କଲେ । ଦୁଇବର୍ଷ ସାତ ମାସ ଛବିଶ ଦିନରେ ତାହା ସଂପୂର୍ଣ୍ଣ ହୋଇଥିଲା । ପୂର୍ଣ୍ଣ ହେବାପରେ ହନୁମାନଜୀ ପୁନଃ ପ୍ରକଟ ହେଲେ । ପୂରା ରାମାୟଣ ଶୁଣିଲେ ଏବଂ ଆଶୀର୍ବାଦ ଦେଲେ କି ଏହିକୃତି ତୁମର କୀର୍ତ୍ତିକୁ ଅମର କରିଦେବ । ଦିନେ ଚୋର ତୁଳସୀ ଦାସଙ୍କ ଘରୁ ଚୋରି କରିବାକୁ ଗଲା ଏବଂ ଦେଖିଲା ଜଣେ ଶ୍ୟାମସୁନ୍ଦର ବାଳକ ଧନୁ-ତୀର ଧରି ପ୍ରହରା ଦେଉଛି । ଚୋର ଲେଉଟି ଗଲା । ପୁଣି ଆଉଦିନେ ଆସିଲା ସେହି ପ୍ରହରୀକୁ ଦେଖିଲା । ସକାଳୁ ଆସି ଗୋସ୍ୱାମୀଙ୍କୁ ପଚାରିଲା ଆପଣଙ୍କର ଏଠାରେ ଶ୍ୟାମସୁନ୍ଦର ବାଳକ ଜଣେ ପ୍ରହରା ଦେଉଛି, ସିଏ କିଏ ? ଗୋସାଇଁ ବୁଝିଗଲେ ମୋ' କାରଣରୁ ପ୍ରଭୁଙ୍କୁ ଏତେ କଷ୍ଟ କରିବାକୁ ହେଉଛି । ଅତଏବ ତାଙ୍କ ପାଖରେ ଯାହା କିଛି ଥିଲା । ସବୁ ବିତରଣ କରିଦେଲେ ।

ଗୋସ୍ୱାମୀଙ୍କ ଆଶୀର୍ବାଦରୁ ଜଣେ ସଦ୍ୟ ବିଧବାର ପତି ପୁନଃ ଜୀବିତ ହୋଇଗଲା । ଏ ଖବର ବାଦଶାହଙ୍କ ନିକଟରେ ପହଞ୍ଚିଗଲା । ସେ ତାଙ୍କୁ ଡକାଇ କିଛି ଚମତ୍କାର ଦେଖାଇବା ପାଇଁ କହିଲେ । ତହୁଁ ତୁଳସୀ କହିଲେ ରାମନାମ ବ୍ୟତୀତ ମୋତେ କୌଣସି ଚମତ୍କାର ଜଣା ନାହିଁ । ବାଦ୍‌ଶାହା ତାଙ୍କୁ ବଂଦୀ କଲେ ଏବଂ କହିଲେ ତୁମେ କିଛି ଅଦ୍‌ଭୁତ ନ ଦେଖାଇଲା ପର୍ଯ୍ୟନ୍ତ ବଂଦୀ ହୋଇ ରହିବ । ତୁଳସୀ ଦାସ ହନୁମାନଙ୍କୁ ସ୍ତୁତି କଲେ । ହନୁମାନଜୀ ମର୍କଟ ସେନାକୁ ନେଇ ଦୁର୍ଗକୁ ବିଧ୍ୱଂସ କରିବାରେ ଲାଗିଲେ । ବାଦ୍‌ଶାହା ଗୋସ୍ୱାମୀଙ୍କ ପାଦତଳେ ପଡ଼ି କ୍ଷମା ମାଗିଲେ ।

ଗୋସ୍ୱାମୀ ଥରେ ବୃନ୍ଦାବନ ଯାଇଥିଲେ । ସେଠାରେ ଗୋଟିଏ ମନ୍ଦିରକୁ ଗଲେ । ଶ୍ରୀକୃଷ୍ଣ ମୂର୍ତ୍ତିକୁ ଦର୍ଶନ କରି ଏକ ଦୋହା ପାଠ କରିଥିଲେ ।

କା ବରନଉଁ ଛବି ଆଜକୀ, ଭଲେ ବନେ ହୋ ନାଥ ।
ତୁଲସୀ ମସ୍ତକ ତବ ନବୈ (ଜବ) ଧନୁଷ ବାନ ଲେଓ ହାଥ ।।

ଭଗବାନ ତାଙ୍କୁ ରାମଚନ୍ଦ୍ରଙ୍କ ସ୍ୱରୂପରେ ଦର୍ଶନ ଦେଇଥିଲେ ।

ଦୋହାବଲୀ, କବି ରାମାୟଣ, ଗୀତାବଲୀ, ରାମଚରିତ ମାନସ, ରାମଲୀଳା, ପାର୍ବତୀ ମଂଗଳ, ଜାନକୀ ମଂଗଳ, ବରବୈ ରାମାୟଣ, ରାମାଜ୍ଞା, ବିନୟ ପତ୍ରିକା, ବୈରାଗ୍ୟ ସଂଦିପନୀ, କୃଷ୍ଣଗୀତାବଳୀ, ଏହା ବ୍ୟତୀତ ରାମସତ ନଇ, ସଂକଟ ମୋଚନ, ହନୁମାନ ବାହୁକ, ରାମନାମ ମଣି- କୋଷମଂଜୁଷା, ରାମଶଳାକା, ହନୁମାନ ଚାଳିଶା ଆଦି ଅନେକ ଗ୍ରନ୍ଥ ତୁଳସୀଙ୍କ ନାମରେ ପ୍ରତିଷ୍ଠିତ ।

ଗୋସ୍ୱାମୀ ତୁଳସୀ ଦାସଙ୍କ ରାମାୟଣ ଭାରତର ଘରେ ଘରେ ଆଦର ଓ ଭକ୍ତି ସହକାରେ ପଠିତ ଓ ପୂଜିତ ହୋଇ ଆସୁଅଛି । ମାନସ କେତେ ବିଗିଡ଼ି ଯାଇଥିବାକୁ ସଜାଡ଼ି ଦେଇଛନ୍ତି । କେତେ ମୁମୁକ୍ଷୁଙ୍କୁ ମୋକ୍ଷ ପ୍ରାପ୍ତି କରାଇଛି । କେତେ ଭଗବତ୍ ପ୍ରେମୀକୁ ଭଗବାନ୍‌ଙ୍କ ସହ ଯୁକ୍ତି କରାଇଛି, ଏହାର କୌଣସି ସଂଖ୍ୟା ନାହିଁ । ଏହା ତରତା- ତାରତା ଗ୍ରନ୍ଥ । କୌଣସି ହିନ୍ଦୁ ଏହାସହ ଅପରିଚିତ ନୁହଁନ୍ତି ।

୧୨୬ ବର୍ଷର ଆୟୁରେ ସଂବତ୍ ୧୬୮୦ରେ ଶ୍ରାବଣ ଶୁକ୍ଳ ସପ୍ତମୀ ଶନିବାର ଦିନ ଅସ୍ସୀଘାଟରେ ଶରୀର ତ୍ୟାଗ କରି ସାକେତ ଲୋକକୁ ପ୍ରୟାଣ କଲେ ।

**ସଂବତ ସୋଳହ ସୈ ଅସୀ, ଅସୀ ଗଂଗକେ ତୀର ।**
**ଶ୍ରାବନ ସୁକ୍ଳା ସପ୍ତମୀ, ତୁଲସୀ ତଜ୍ୟୋ ସରୀର ।।**

ତୁଳସୀ ଦାସଙ୍କ କୃତିରେ ପୁରୁଷାର୍ଥ ଚତୁଷ୍ଟୟ (ଧର୍ମ, ଅର୍ଥ, କାମ, ମୋକ୍ଷ) ପ୍ରାପ୍ତିକରି ପରମାତ୍ମାଙ୍କ ସହ ଏକାକାର ହେବାର ଲକ୍ଷ୍ୟ ନେଇ ଅଜସ୍ର ମାନବକୁ ଆଲୌକିକ ବର୍ତ୍ତିକା ହୋଇଅଛି । ତାଙ୍କ କୃତି ମଧ୍ୟରେ କୌଣସି ଏକ ଧର୍ମ, ପନ୍ଥ, ମତ ଏବଂ ସଂପ୍ରଦାୟକ ସହ ସଂଯୁକ୍ତ ନହୋଇ ସଂପୂର୍ଣ୍ଣ ବିଶ୍ୱ ମାନବିକତା ସହ ସଂଯୁକ୍ତ ହୋଇଅଛି । ରାମ (ପରମପୁରୁଷ)ଙ୍କୁ ଏବଂ ମା' ଜଗଦମ୍ବା ସୀତା ତାଙ୍କ ଆଦିଶକ୍ତି ମାୟା (ପ୍ରକୃତ)ର ପ୍ରତୀକ । ତାଙ୍କଠାରୁ ସମଗ୍ର ବ୍ରହ୍ମାଣ୍ଡ ଉଦ୍‌ଭୁତ ହୋଇ ତାଙ୍କ ସହ ଓତ-ପ୍ରୋତ । ସର୍ବତ୍ର ସମସ୍ତଙ୍କଠାରେ ଯେଉଁ ରାମ ରହିଛନ୍ତି ସେ ହେଉଛନ୍ତି ପରମ ସତ୍ତା ଏବଂ ଶକ୍ତି ପରଂବ୍ରହ୍ମ ପରମେଶ୍ୱର

'ରାମ' । ତାଙ୍କ ଠାରୁ ସୃଷ୍ଟି କ୍ରମ ସତତ ଗତିଶୀଳ ।

ଏହିପରି ତୁଳସୀ ସ୍ୱୟଂ ନିଜ ମାଧ୍ୟମରେ ସମସ୍ତଙ୍କୁ ଜାଗ୍ରତ କରି ଏବଂ ବୋଧ କରାଇବା ହେତୁ ହିଁ ନିଜ ରଚନା ସ୍ୱାନ୍ତ ସୁଖାୟ ରଚିତ କରିଥିଲେ ।

ନାନା ପୁରାଣ ନିଗମା ଚାମ ସମ୍ମତଂ ଯତ୍,
ରାମାୟଣେ ନିଦଦିତଂ କ୍ୱଚିଦ୍ ନ୍ୟତୋଽପି
ସ୍ୱାନ୍ତଃ ସୁଖାୟ ତୁଳସୀ ରଘୁନାଥ ଗାଥା-
ଭାଷା ନିବନ୍ଧ ମତି ମଂଜୁଳ ମାତନୋତି ॥
(ବାଲକାଣ୍ଡ- ମ.୭)

ତୁଳସୀ ଏହାକୁ ସୁନ୍ଦର ଶବ୍ଦରେ ପ୍ରକାଶ କରି ଅଛନ୍ତି-
ବେଦ ମତ ସୋଧି, ସୋଧି-ସୋଧି କୈ ପୁରାନ ସର୍ବେ
ସଂତ ଔ ଅସଂତନ କୋ ଭେଦ କୋ ବତାବତୋ
କପଟୀ କୁରାହୀ କୂର କଳିକକୁ ଚାଳୀଜୀବ
କୌନ ରାମନାମହୂ କୀ ଚରଚା ଚଲାବତୋ ॥
ବେନୀ କବି କହୈ ମାନୋ-ମାନୋ ହୋ ପ୍ରତୀତି ଯହ
ପାହନ-ହିୟେ ମେଁ କୌନ ପ୍ରେମ ଉପଜାବତୋ
ଭାରୀ ଭବସାଗର ଉତାରଣେ କବନ ପାର
ଜୋ ପୈ ଯହ ରାମାୟନ ତୁଳସୀ ନ ଗାବତୋ ॥



# ଯାମୁନାଚାର୍ଯ୍ୟ

ଭାରତରେ ଭକ୍ତିର ଆଚାର୍ଯ୍ୟ ଏବଂ ଦାର୍ଶନିକ ଗଣ ଯେପରି ଭାରତୀୟ ସଂସ୍କୃତି ତଥା ଧର୍ମ ସମାଜ- ଶିଷ୍ଟାଚାରର ରକ୍ଷା କରି ଅଛନ୍ତି, ଏହା ଇତିହାସର ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା । ଶ୍ରୀ ଶଙ୍କରାଚାର୍ଯ୍ୟ, ଶ୍ରୀଯାମୁନାଚାର୍ଯ୍ୟ, ଶ୍ରୀରାମାନୁଜାଚାର୍ଯ୍ୟ, ଶ୍ରୀମଧ୍ୱ, ଶ୍ରୀବଲ୍ଲଭ, ଶ୍ରୀଚୈତନ୍ୟ ଆଦି ମହାପୁରୁଷ ଗଣ ଏହି ମହତ୍ କାର୍ଯ୍ୟରେ ମାର୍ଗ ଦର୍ଶନ କରି ଯୁଗ ଯୁଗକୁ ଦିବ୍ୟ ଚେତନା ସଂପ୍ରସାରଣରେ ମାନବ ସମାଜର ମହୋପକାର ସାଧନ କରି ଅଛନ୍ତି । ଭକ୍ତିର ଆଦିଭୂମି ଦକ୍ଷିଣ ଭାରତରେ ହିଁ ଜନ୍ମ ନେଇଥିଲା । ଶ୍ରୀ ଯାମୁନାଚାର୍ଯ୍ୟ ମହାନ୍ ଭକ୍ତ, ଅଖଣ୍ଡ ଈଶ୍ୱର ବିଶ୍ୱାସୀ ଏବଂ ବିଶିଷ୍ଟାଦ୍ୱୈତ ସିଦ୍ଧାନ୍ତର ପ୍ରଚାରକ ଥିଲେ । ଭଗବତ୍ ଭକ୍ତିର ପ୍ରଚାରରେ ସେ ପୂର୍ଣ୍ଣ ସାଫଲ୍ୟ ପ୍ରାପ୍ତ ହୋଇଥିଲେ ।

ଯାମୁନାଚାର୍ଯ୍ୟଙ୍କ ଜନ୍ମ ସଂବତ୍ ୧୦୧୦ ବି.ରେ ମଦୁରାରେ ହୋଇଥିଲା । ସେ ବୈଷ୍ଣବ ସଂପ୍ରଦାୟର ଆଚାର୍ଯ୍ୟ ନାଥ ମୁନିଙ୍କର ପୁତ୍ର ଈଶ୍ୱର ମୁନି ତାଙ୍କ ପିତା ଥିଲେ । ପିତାଙ୍କ ମୃତ୍ୟୁବେଳକୁ ତାଙ୍କୁ ଦଶବର୍ଷ ବୟସ ହୋଇଥିଲା । ପିତାମହଙ୍କ ସନ୍ନ୍ୟାସ ଗ୍ରହଣ ପରେ ତାଙ୍କ ଲାଳନ ପାଳନ ମାତା ଏବଂ ମାତାମହୀ ଉପରେ ପଡ଼ିଥିଲା । ସେ ବାଲ୍ୟାବସ୍ଥାରେ ଅତ୍ୟନ୍ତ ଅଦ୍‌ଭୁତ ପ୍ରତିଭାଶାଳୀ ଏବଂ ବିଦ୍ୱାନ ଥିଲେ । ତାଙ୍କ ସ୍ୱଭାବ ବହୁତ ମଧୁର, ପ୍ରେମମୟ ଏବଂ ଉଦାର ଥିଲା । ପାଣ୍ଡ୍ୟ ରାଜ୍ୟର ବିଖ୍ୟାତ ପଣ୍ଡିତ କୋଳାହଙ୍କୁ ଶାସ୍ତ୍ରାର୍ଥରେ ପରାସ୍ତ କରିବା ଉପଲକ୍ଷ୍ୟରେ ମହାରାଣୀ ତାଙ୍କୁ ଅଧେ ରାଜ୍ୟ ସମର୍ପଣ କରିଥିଲେ ଏବଂ 'ଆଳବନ୍ଦାର' ଉପାଧିରେ ବିଭୂଷିତ କରିଥିଲେ ।

ଯାମୁନାଚାର୍ଯ୍ୟଙ୍କୁ ଯେବେ ପଇଁତିରିଶ ବର୍ଷ ହୋଇଥିଲା, ସେହି ସମୟରେ ନାଥମୁନି ତାଙ୍କ ଅନ୍ତିମ କାଳରେ ତାଙ୍କ ଶିଷ୍ୟଙ୍କୁ କହିଥିବା - ଭବିଷ୍ୟବାଣୀ "ଏପରି ନ ହେଉ ଯାମୁନ ରାଜକାର୍ଯ୍ୟରେ ହିଁ ଆପଣାର ଅମୂଲ୍ୟ ସମୟ ବିତାଇ ଦେଉ; ବିଷୟ ଭୋଗରେ ତା'ର ଆୟୁ ବିତିଯାଉ ।" ନାଥମୁନିଙ୍କ ଦେହାବସାନ ପରେ ରାମମିଶ୍ର ଯାମୁନଙ୍କ ତାଙ୍କ ସଂପତ୍ତିର ଅଧିକାର ସମର୍ପଣ ନିମିତ୍ତ ଯାଉଥିଲେ । ରାସ୍ତାରେ ଶ୍ରୀରଂଗ ମନ୍ଦିରରେ ଦର୍ଶନ ନିମିତ୍ତ ଆସିବା ପରେ ଯାମୁନଙ୍କ ହୃଦୟ ସହସା ଭକ୍ତିର ସ୍ରୋତ ଉତ୍କୂଳିତ ହେଲା । ତାଙ୍କ ହୃଦୟରେ ପୂର୍ଣ୍ଣ ଏବଂ ଅଖଣ୍ଡ ବୈରାଗ୍ୟର ଉଦୟ ହେଲା । ମାୟା ଏବଂ ରାଜ୍ୟ ଭୋଗ ପ୍ରବୃତ୍ତିର ବିନାଶ ହେଲା । ସେ ବିମଳ ହୃଦୟରେ ଶ୍ରୀରଂଗଙ୍କ ସ୍ତୁତି କଲେ ।

ପରମ ପୁରୁଷ ! ମୋତେ ଅପବିତ୍ର, ଉଦ୍ଦଣ୍ଡ, ନିଷ୍ଠୁର ଏବଂ ନିଲର୍ଜ୍ଜକୁ ଧିକ୍କାର, ଯେ ସ୍ୱେଚ୍ଛାଚାରୀ ହୋଇ ମଧ୍ୟ ଆପଣଙ୍କ ପାର୍ଷଦ ହେବାର ଇଚ୍ଛା କରିଥାଏ । ଆପଣଙ୍କ ପାର୍ଷଦ ଭାବକୁ ବଡ଼ ବଡ଼ ଯୋଗୀଶ୍ୱରଙ୍କୁ ଅଗ୍ରଗଣ୍ୟ ତଥା ବ୍ରହ୍ମା, ଶିବ ଏବଂ ସନକାଦି ମଧ୍ୟ ପାଇବାରୁ ଦୂରରେ ରହିଛନ୍ତି, ମନରେ ସ୍ଥାନ ମଧ୍ୟ ଦେଇ ପାରନ୍ତି ନାହିଁ । ସେ ଅତି ନମ୍ରତାର ସହ କହିଲେ କି ଆପଣଙ୍କ ଦାସ୍ୟ ଭାବ ସୁଖ ଅନୁଭବ କରୁଥିବା ସଜ୍ଜନଙ୍କ ଘରେ ମୋତେ କୀଟ ଯୋନି ମଧ୍ୟ ମିଳୁ । ଅପର ପକ୍ଷେ ଅନ୍ୟ ଘରେ ବ୍ରହ୍ମଯୋନି ମିଳିବା ଇଚ୍ଛା କରେ ନାହିଁ । ସେ ଶ୍ରୀରଂଗଙ୍କର ପୂର୍ଣ୍ଣ ଭକ୍ତ ହୋଇଗଲେ । ତାଙ୍କ ଅଧରରେ ଭକ୍ତିର ରସମୟବାଣୀ ବିହାର କରିବାକୁ ଲାଗିଲା ।

ଶ୍ରୀ ଯାମୁନାଚାର୍ଯ୍ୟ ଭଗବାନ୍‌ଙ୍କୁ ପୂର୍ଣ୍ଣ ପୁରୁଷୋତ୍ତମ ସ୍ୱୀକାର କରିଛନ୍ତି । ଜୀବକୁ ଅଂଶ ଏବଂ ଈଶ୍ୱରଙ୍କୁ ଅଂଶୀ ରୂପେ ନିରୂପିତ କରି ଅଛନ୍ତି । ଜୀବ ଏବଂ ଈଶ୍ୱର ନିତ୍ୟ ପୃଥକ । ତାଙ୍କ ବକ୍ତବ୍ୟ ଅନୁସାରେ ଜଗତ ହେଉଛି ବ୍ରହ୍ମଙ୍କର ପରିଣାମ । ବ୍ରହ୍ମ ହିଁ ଜଗତ ରୂପରେ ପରିଣତ ହୋଇଛି । ବ୍ରହ୍ମ ସବିଶେଷ, ସଗୁଣ, ଅଶେଷ କଲ୍ୟାଣଗୁଣ ଗୁଣ ସାଗର ସର୍ବନିୟନ୍ତା, ଜୀବ ସ୍ୱଭାବତଃ ତାଙ୍କ ଦାସ ଓ ଭକ୍ତ । ଭକ୍ତି ଜୀବର ସ୍ୱଧର୍ମ, ଆତ୍ମଧର୍ମ । ଭକ୍ତି ଶରଣାଗତି ପର୍ଯ୍ୟାୟର । ଭଗବାନ୍ ହେଉଛନ୍ତି ଅଶରଣ ଶରଣ ।

ଯାମୁନାଚାର୍ଯ୍ୟ ରାମାନୁଚାର୍ଯ୍ୟଙ୍କର ପରମ ଗୁରୁଥିଲେ । ଏହାଙ୍କ ରଚିତ ପ୍ରସିଦ୍ଧ ଗ୍ରନ୍ଥ- ୧. ଗୀତାର୍ଥ ସଂଗ୍ରହ, ୨. ଶ୍ରୀଚତୁଶ୍ଲୋକୀ (ଲକ୍ଷ୍ମୀସ୍ତୁତି), ୩.

ସିଦ୍ଧତ୍ରୟ, (ଆତ୍ମସିଦ୍ଧି, ଈଶ୍ୱର ସିଦ୍ଧି, ମାୟାଖଣ୍ଡନ ତଥା ଆତ୍ମ ବିଷୟ ସଂବଂଧ ପ୍ରତିପାଦନ, ସଂବବିତ୍ ସିଦ୍ଧି), ୪. ମହାପୁରୁଷ ନିର୍ଣ୍ଣୟ (ବିଷ୍ଣୁଙ୍କ ଶ୍ରେଷ୍ଠତା ପ୍ରତିପାଦନ) ୫. ଆଗମ ପ୍ରାମାଣ୍ୟ (ପାଞ୍ଚ ରାତ୍ରର ପ୍ରାମାଣିକ ବିବେଚନ) ୬. ଆଳବନ୍ଦାର ସ୍ତୋତ୍ର (ସ୍ତୋତ୍ରରତ୍ନ) । ଯାମୁନାଙ୍କର ଗ୍ରନ୍ଥମାନଙ୍କ ମଧ୍ୟରେ ସବୁଠାରୁ ଲୋକପ୍ରିୟ ଏହି ସ୍ତୋତ୍ରର ୭୦ ପଦ୍ୟମାନଙ୍କରେ ଆତ୍ମସମର୍ପଣ ସିଦ୍ଧାନ୍ତର ମନୋରମ ବର୍ଣ୍ଣନା ରହିଛି । କବି ହୃଦୟର ଭକ୍ତି ଭାବନା ଏହି ସରସ ପଦ୍ୟମାନଙ୍କରେ ଫୁଟି ବାହାରୁଛି ।

ଯମୁନାଚାର୍ଯ୍ୟ ଆଜୀବନ ଭଗବାନଙ୍କଠାରୁ ଅନନ୍ୟ ଭକ୍ତିର ହିଁ ବରଦାନ ମାଗିଥିଲେ । ତାଙ୍କ ପାଇଁ ଭଗବାନ୍ ହିଁ ପରମାଶ୍ରୟ । ତାଙ୍କ ଚରଣରେ ଶରଣ ନେଲେ ସେ ବଂଧନରୁ ମୁକ୍ତି ଦେଇଥାନ୍ତି । ସେ ତାଙ୍କ ସମୟର ମହାନ୍ ଦାର୍ଶନିକ ଅନନ୍ୟ ଭକ୍ତ ଏବଂ ବିଚାରକ ଥିଲେ । ଯାମୁନାଚାର୍ଯ୍ୟଙ୍କ ମହାପ୍ରୟାଣ କାଳରେ ରାମାନୁଜାଚାର୍ଯ୍ୟଙ୍କୁ ସ୍ମରଣ କଲେ । କିନ୍ତୁ ତାଙ୍କ ପହଞ୍ଚିବା ପୂର୍ବରୁ ସେ ପରମଧାମର ଯାତ୍ରୀ ହେଲେ । ମୃତ୍ୟୁବେଳକୁ ତାଙ୍କର ତିନି ଆଙ୍ଗୁଳି ସିଧା ହୋଇଥିଲା । ତାଙ୍କ ମନର ତିନିଗୋଟି କାମନା ଥିବା ସୂଚାଉଥିଲା । ଶ୍ରୀରାମାନୁଜ ସେ ସବୁକୁ ପୂରଣ କରିଥିଲେ ॥



# ଶ୍ରୀ ମଧ୍ୱାଚାର୍ଯ୍ୟ

ଶ୍ରୀଭଗବାନ ନାରାୟଣଙ୍କ ଆଜ୍ଞାରେ ସ୍ୱୟଂ ବାୟୁଦେବ ହିଁ ଭକ୍ତି ସିଦ୍ଧାନ୍ତର ରକ୍ଷା ପାଇଁ ମାଡ୍ରାସ ପ୍ରାନ୍ତରେ ମଂଗଲୁର ଜିଲ୍ଲା ଅନ୍ତର୍ଗତ ଉଡୁପା କ୍ଷେତ୍ରରୁ ଦୁଇ ତିନି ମାଇଲ ଦୂରବର୍ତ୍ତୀ ବେଲଲୀ ଗ୍ରାମରେ ଜନ୍ମ ହୋଇଥିଲେ । ମାତାଙ୍କ ନାମ ବେଦବତୀ ଏବଂ ପିତା ଭାର୍ଗବ ଗୋତ୍ରୀୟ ନାରାୟଣ ଭଟ୍ଟ । ବିକ୍ରମ ସଂବତ୍- ୧୨୯୫ର ମାଘ ଶୁକ୍ଳ ସପ୍ତମୀ ଦିନ ଆଚାର୍ଯ୍ୟ ମଧ୍ୱ ରୂପରେ ଅବତାର ଗ୍ରହଣ କରିଥିଲେ । କେହି ଆଶ୍ୱିନ ଶୁକ୍ଳ ଦଶମୀକୁ ତାଙ୍କ ଜନ୍ମ ଦିବସ କହିଥାନ୍ତି । କିନ୍ତୁ ଏହା ତାଙ୍କ ବେଦାନ୍ତ ସାମ୍ରାଜ୍ୟର ଅଭିଷେକ ଦିବସ, ଜନ୍ମର ନୁହେଁ । ଜନ୍ମ ପୂର୍ବରୁ ମାତା- ପିତାଙ୍କୁ ବଡ଼ ତପସ୍ୟା କରିବାକୁ ହୋଇଥିଲା । ବାଲ୍ୟକାଳରୁ ତାଙ୍କଠାରେ ଅଲୌକିକ ଶକ୍ତି ପ୍ରକାଶିତ ହୋଇଥିଲା । ଲେଖା ପଢ଼ାରେ ତାଙ୍କ ମନ ଲାଗେ ନାହିଁ । ଯଜ୍ଞୋପବୀତ ସଂସ୍କାର ପରେ ମଧ୍ୟ ଦୌଡ଼, କୁଦ, କୁସ୍ତୀ ଆଦି ଶରୀରିକ ବ୍ୟାୟାମରେ ଲାଗି ରହିଥିଲେ । କିଛି ଲୋକ ତାଙ୍କ ପିତୃଦତ୍ତ ନାମ ବାସୁଦେବ ପରିବର୍ତ୍ତେ ଭୀମ ଡାକୁଥିଲେ । ସେ ବାୟୁଦେବଙ୍କ ଅବତାର ଥିଲେ, ତେଣୁ ଏହି ନାମ ମଧ୍ୟ ସାର୍ଥକ ।

ଯେବେ ବେଦ ଶାସ୍ତ୍ର ଅଧ୍ୟୟନରେ ତାଙ୍କ ରୁଚି ହେଲା, ଅଳ୍ପ ସମୟ ମଧ୍ୟରେ ସଂପୂର୍ଣ୍ଣ ବିଦ୍ୟା ଅନାୟାସରେ ପ୍ରାପ୍ତ କରିନେଲେ । ଯେବେ ସେ ସନ୍ନ୍ୟାସ ହେବାର ଇଚ୍ଛା ପ୍ରକଟ କଲେ, ତେବେ ମୋହ ବଶ ମାତାପିତା ତାଙ୍କୁ ବଡ଼ ଅସୁବିଧା ସୃଷ୍ଟିକଲେ, କିନ୍ତୁ ତାଙ୍କ ଇଚ୍ଛା ଅନୁସାରେ ତାଙ୍କୁ କୌଣସି ଚମତ୍କାର ଦେଖାଇ, ଯାହା ଅଦ୍ୟାପି ତାଙ୍କ ଜନ୍ମଭୂମିରେ ଏକ ସରୋବର ଏବଂ ବୃକ୍ଷ ରୂପରେ ବିଦ୍ୟମାନ । ଛୋଟ ଭାଇଙ୍କ ଜନ୍ମ କାହାଣୀ କହି ଏଗାର ବର୍ଷ ବୟସରେ ଅଦ୍ୱୈତ ମତର ସନ୍ନ୍ୟାସୀ ଅଚ୍ୟୁତ ପକ୍ଷାଚାର୍ଯ୍ୟଜୀଙ୍କଠାରୁ ସନ୍ନ୍ୟାସ ଗ୍ରହଣ କଲେ । ତାଙ୍କର ସନ୍ନ୍ୟାସୀ ନାମ ପୂର୍ଣ୍ଣବ୍ରହ୍ମ ହେଲା । ସନ୍ନ୍ୟାସ ପରେ ସେ ବେଦାନ୍ତ ଅଧ୍ୟୟନ କରିଥିଲେ । କିଛି ଦିନ ମଧ୍ୟରେ ଗୁରୁଜୀଙ୍କ ବ୍ୟାଖ୍ୟାନର ପ୍ରତିବାଦ କରିଥିଲେ । ସମଗ୍ର ଦକ୍ଷିଣ ଭାରତରେ ତାଙ୍କ ବିଦ୍‌ବତ୍ତା ପ୍ରସାରିତ ହୋଇଗଲା ।

ଦିନେ ସେ ନିଜ ଗୁରୁଙ୍କୁ ଗଂଗାସ୍ନାନ ଏବଂ ଦିଗ୍‌ବିଜୟ କରିବାର ଆଜ୍ଞା ମାଗିଲେ । ଏପରି ସୁଯୋଗ୍ୟ ଶିଷ୍ୟ ବିରହର ସଂଭାବନାରେ ଗୁରୁଦେବ ବ୍ୟାକୁଳ ହୋଇଗଲେ । ତାଙ୍କ ବ୍ୟାକୁଳତା ଦେଖି ଅନନ୍ତେଶ୍ୱରଜୀ କହିଲେ କି ଭକ୍ତଙ୍କ ଉଦ୍ଧାର ଅର୍ଥେ ଗଂଗାମାତା ସ୍ୱୟଂ ସାମନା ସରୋବରରେ ବିରାଜିତ ହେବେ । ଏଣୁ ସେ ଯାତ୍ରା କରନ୍ତୁ ନାହିଁ । ସତକୁସତ ତୃତୀୟ ଦିନ ପୋଖରୀର ନୀଳଜଳ ସ୍ଥାନରେ ଧଳା- ପାଣି ଆସିଗଲା ଏବଂ ତରଂଗ ମଧ୍ୟ ଦେଖାଗଲା । ଏଣୁ ତାଙ୍କ ଯାତ୍ରା ହୋଇ ପାରିଲା ନାହିଁ । ଏବେ ମଧ୍ୟ ପ୍ରତିବାର ବର୍ଷରେ ଥରେ ଗଂଗାଙ୍କ ଆବିର୍ଭାବ ହୋଇଥାଏ । ଏକ ମନ୍ଦିର ମଧ୍ୟ ସେଠାରେ ରହିଛି ।

କିଛିଦିନ ପରେ ଆଚାର୍ଯ୍ୟ ଯାତ୍ରାକଲେ ଏବଂ ସ୍ଥାନେ ସ୍ଥାନେ ବିଦ୍ୱାନଙ୍କ ସହିତ ଶାସ୍ତ୍ରାର୍ଥ କଲେ । ତାଙ୍କ ଶାସ୍ତ୍ରାର୍ଥର ଉଦ୍ଦେଶ୍ୟ ଥିଲା ଭଗବତ୍ ଭକ୍ତିର ପ୍ରଚାର, ବେଦର ପ୍ରମାଣିକତା ସ୍ଥାପନ, ମାୟାବାଦର ଖଣ୍ଡନ ଏବଂ ମର୍ଯ୍ୟାଦାର ସଂରକ୍ଷଣ । ଏକ ସ୍ଥାନରେ ସେ ବେଦ, ମହାଭାରତ, ବିଷ୍ଣୁ ସହସ୍ର ନାମର କ୍ରମଶଃ ତିନି, ଦଶ ଏବଂ ଶହେ ଅର୍ଥ ରହିଛି, ଏହିପରି ପ୍ରତିଜ୍ଞା କରି ଓ ବ୍ୟାଖ୍ୟାକରି ପଣ୍ଡିତମଣ୍ଡଳୀକୁ ଆଶ୍ଚର୍ଯ୍ୟ ଚକିତ କରି ଦେଇଥିଲେ । ଗୀତାଭାଷ୍ୟର ନିର୍ମାଣ ପରେ ସେ ବଦ୍ରୀ ନାରାୟଣ ଯାତ୍ରା କରିଥିଲେ । ସେଠାରେ ବେଦବ୍ୟାସଙ୍କୁ ଆପଣାଭାଷ୍ୟ ଦେଖାଇଲେ । କୁହାଯାଏ- ଦୁଃଖୀ ଜନତାର ଉଦ୍ଧାର କରିବା ପାଇଁ ଉପଦେଶ, ଗ୍ରନ୍ଥ ନିର୍ମାଣ ଆଦିର ଆଜ୍ଞା ପ୍ରାପ୍ତ କରିଥିଲେ । ବହୁ ନୃପତିଗଣ ତାଙ୍କ ଶିଷ୍ୟ ହୋଇଥିଲେ । ଅନେକ ବିଦ୍ୱାନ୍ ପରାଜିତ ହୋଇ ତାଙ୍କ ମତର ସ୍ୱୀକାର କରିଥିଲେ । ସେ ଅନେକ ପ୍ରକାର ଯୋଗ ସିଦ୍ଧି ପ୍ରାପ୍ତ କରିଥିଲେ । ତାଙ୍କ ଜୀବନରେ ସମୟ ସମୟରେ ତାହା ପ୍ରକଟ ହୋଇଥାଏ । ସେ ଅନେକ ଗୁଡ଼ିଏ ମୂର୍ତ୍ତି ସ୍ଥାପନ କରିଥିଲେ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ବିଗ୍ରହ ଆଜି ମଧ୍ୟ ବିଦ୍ୟମାନ । ବଦରୀ ନାରାୟଣରେ ଶ୍ରୀବ୍ୟାସଦେବ ତାଙ୍କୁ ଶାଳଗ୍ରାମଙ୍କର ତିନୋଟି ମୂର୍ତ୍ତି ଦେଇଥିଲେ । ଯାହାକୁ ସେ ସୁବ୍ରାହ୍ମଣ୍ୟ, ଉଡ଼ୁଣୀ ଏବଂ ମଧ୍ୟତଳରେ ପ୍ରତିଷ୍ଠା କରିଥିଲେ । ଏକଦା ଜଣେ ସୌଦାଗରର ଜାହାଜ ଦ୍ୱାରିକାରୁ ସାଲବାର ଯାଉଥିଲା, ତୁଳୁବ ନିକଟରେ ବୁଡ଼ିଗଲା । ଏଥିରେ ଗୋପୀଚନ୍ଦନ ଲାଗି ହୋଇଥିବା ଶ୍ରୀକୃଷ୍ଣଙ୍କ ସୁନ୍ଦର ମୂର୍ତ୍ତି ଥିଲା । ମାଧ୍ୱାଚାର୍ଯ୍ୟଙ୍କୁ ଭଗବାନଙ୍କ ଆଜ୍ଞା ମିଳିଲା, ସେ ମୂର୍ତ୍ତିକୁ ଜଳରୁ ଉଦ୍ଧାର କରି ଉଡ଼ୁପୀରେ ତାହାର ସ୍ଥାପନ କରିଥିଲେ । ସେହି କାଳରୁ ରାଜତପୀଠପୁର

ଅଥବା ଉଡୁପୀ ମଧ୍ୱମତାନୁଯାୟୀମାନଙ୍କର ତୀର୍ଥ ହୋଇଗଲା । ଅନ୍ୟ ଏକ ଘଟଣାରେ ଜଣେ ବ୍ୟାପାରୀର ବୁଡ଼ି ଯାଉଥିବା ଜାହାଜକୁ ରକ୍ଷା କରିଦେଲେ । ତହିଁରେ ପ୍ରଭାବିତ ହୋଇ ସେ ନିଜର ଅର୍ଦ୍ଧେକ ସଂପତ୍ତି ତାଙ୍କୁ ଦେଇଦେଲେ । କିନ୍ତୁ ଭଗବତ୍ ଅନୁରାଗୀ ତଥା ସଂସାର ବିରାଗୀ, ତେଣୁ ସେ ସଂପତ୍ତିକୁ ଗ୍ରହଣ କଲେ ନାହିଁ । ତାଙ୍କ ଜୀବନରେ ଏହିପରି ଅସାମାନ୍ୟ ତ୍ୟାଗର ଦୃଷ୍ଟାନ୍ତ ଊଣା ନାହିଁ ।

କେତେଥର ଲୋକେ ଅନିଷ୍ଟ ଚାହିଁଥିଲେ । ତାଙ୍କ ଲିଖିତ ପୋଥି ମଧ୍ୟ ଚୋରାଇ ନେଇଗଲେ । କିନ୍ତୁ ଆଚାର୍ଯ୍ୟ ଏଥିରେ ତିଳେମାତ୍ର ବିଚଳିତ ହେଲେ ନାହିଁ । ପରେ ଧରାଯିବାରୁ ତାକୁ କ୍ଷମା କରିଦେଲେ ଏବଂ ବଡ଼ ଆନନ୍ଦରେ ତା' ସହ ବ୍ୟବହାର କରିଥିଲେ । ସେ ନିରନ୍ତର ଭଗବତ୍ ଚିନ୍ତନରେ ସଂଲଗ୍ନ ରହୁଥିଲେ । ବାହାର କାର୍ଯ୍ୟ ଭଗବତ୍ ସଂବଂଧରେ ହିଁ କରୁଥିଲେ । ସେ ଉଡୁପୀରେ ଆଉ ଆଠଗୋଟି ମନ୍ଦିର ସ୍ଥାପିତ କରିଥିଲେ । ତନ୍ମଧ୍ୟରେ ଶ୍ରୀ ସୀତାରାମ, ଦ୍ୱିଭୁଜ କାଳୀୟ ଦଳନ, ଚତୁର୍ଭୁଜ କାଳୀୟ ଦଳନ, ବିଟ୍ଠଳ ଆଦି ଆଠମୂର୍ତ୍ତି ଅବସ୍ଥାପିତ । ଆଜି ମଧ୍ୟ ଭକ୍ତବୃନ୍ଦ ସେ ସକଳ ବିଗ୍ରହାଦି ଦର୍ଶନ କରି ଅଶେଷ ମାନସିକ ଶାନ୍ତିଲାଭ କରୁଛନ୍ତି । ସେ ନିଜର ଅନ୍ତିମ ସମୟରେ ସରିଦନ୍ତର ନାମକ ସ୍ଥାନରେ ରହୁଥିଲେ । ସେହିଠାରୁ ସେ ପରମଧାମର ଯାତ୍ରୀ ହୋଇଥିଲେ । ଦେହତ୍ୟାଗ ଅବସରରେ ପୂର୍ବାଶ୍ରମର ମୋହନ ଭଟ୍ଟ ଏବେ ଯାହା ନାମ ପଦ୍ମନାଭ ତୀର୍ଥ ହୋଇଛି- ଶ୍ରୀରାମଙ୍କ ମୂର୍ତ୍ତି ଏବଂ ବ୍ୟାସଙ୍କ ପ୍ରଦତ୍ତ ଶାଳଗ୍ରାମ ଶିଳା ଦେଇ ଆପଣା ମତର ପ୍ରଚାର ଆଜ୍ଞା କରିଥିଲେ । ତାଙ୍କ ଶିଷ୍ୟଙ୍କ ଦ୍ୱାରା ଅନେକ ମଠ ସ୍ଥାପିତ ହୋଇଥିଲା । ତାଙ୍କ ବିରଚିତ ଗ୍ରନ୍ଥ ପ୍ରଚାର ମଧ୍ୟ ହୋଇଥିଲା । ତାଙ୍କ ମତର ପରିଚୟ ସଂକ୍ଷିପ୍ତ ପରିସରରେ ଦେବା ସଂଭବ ନୁହେଁ ।

**ଶ୍ରୀ ମଧ୍ୱାଚାର୍ଯ୍ୟଙ୍କ ଉପଦେଶ-**

୧. ଶ୍ରୀ ଭଗବାନଙ୍କ ନିତ୍ୟ ନିରନ୍ତର ସ୍ମରଣ ରଖିବା ଉଚିତ । ଯଦ୍ୱାରା ଅନ୍ତକାଳରେ ତା'ର ବିସ୍ମୃତି ହେବନାହିଁ । ଶତାଧିକ ବୃଶ୍ଚିକ ଦଂଶନରେ ଯେଉଁ ପୀଡ଼ା ହୁଏ, ମୃତ୍ୟୁକାଳରେ ମନୁଷ୍ୟକୁ ସେହିପରି ପୀଡ଼ା ହୋଇଥାଏ । ବାତ, ପିତ୍ତ, କଫରେ କଣ୍ଠ ଅବରୁଦ୍ଧ ହୋଇଯାଏ, ନାନା ପ୍ରକାର ସାଂସାରିକ ପାଶରେ ଛନ୍ଦି ହେବା କାରଣରୁ ମନୁଷ୍ୟ ଘାବରା ହୋଇଯାଏ । ଏହି ସମୟରେ ଭଗବାନଙ୍କ ସ୍ମୃତିକୁ ଜୀବିତ ରଖିବା ବଡ଼ କଠିନ । (ଦ୍ୱା.ସ୍ତୋତ୍ର ୧/୧୨)

୨. ସୁଖ ଦୁଃଖର ସ୍ଥିତି କର୍ମାନୁସାରେ ହୋଇଥିବାରୁ ଏହାର ଅନୁଭବ ସମସ୍ତଙ୍କ ପାଇଁ ଅନିବାର୍ଯ୍ୟ । ଏଣୁ ସୁଖ ଅନୁଭବ ସମୟରେ ଈଶ୍ୱରଙ୍କୁ ଭୁଲ ନାହିଁ, କିମ୍ବା ଦୁଃଖ ସମୟରେ ତାଙ୍କର ନିନ୍ଦା କର ନାହିଁ । ବେଦ ଶାସ୍ତ୍ର ସମ୍ମତ କର୍ମ ମାର୍ଗରେ ଅଟଳ ରୁହ । କୌଣସି କର୍ମ କରିବା ସମୟରେ ବଡ଼ ଦୀନ ଭାବରେ ଭଗବାନଙ୍କୁ ସ୍ମରଣ କର । ଭଗବାନ୍ ସବୁଠୁଁ ବଡ଼, ସମସ୍ତଙ୍କର ଗୁରୁ ତଥା ଜଗତର ମାତାପିତା । ଏଣୁ ନିଜର ସମସ୍ତ କର୍ମ ତାଙ୍କୁ ସମର୍ପଣ କରିବା ଉଚିତ ।(ଦ୍ୱା.ସ୍ତୋତ୍ର-୩/ ୧)

୩. ବ୍ୟର୍ଥ ସାଂସାରିକ ଝିନ୍‌ଝଟ୍ ଚିନ୍ତନରେ ଆପଣାର ଅମୂଲ୍ୟ ସମୟ ନଷ୍ଟ ନକର । ଭଗବାନଙ୍କଠାରେ ଆପଣାର ଅନ୍ତଃକରଣକୁ ଲୀନ କରିଦିଅ । ବିଚାର, ଶ୍ରବଣ, ଧ୍ୟାନ, ସ୍ତବନରୁ ବଡ଼ ହୋଇ ସଂସାରରେ ଅନ୍ୟ କୌଣସି ପଦାର୍ଥ ନାହିଁ । (ଦ୍ୱା.ସ୍ତୋତ୍ର ୩/ ୨)

୪. ଭଗବାନଙ୍କ ଚରଣ କମଳର ସ୍ମରଣ କରିବାର ଚେଷ୍ଟା କରିବାମାତ୍ରେ ହିଁ ତୁମର ପର୍ବତ ପ୍ରାୟ ପାପରାଶି ନଷ୍ଟ ହୋଇଯିବ । ପୁନଃ ସ୍ମରଣରେ ତ ମୋକ୍ଷ ହିଁ ହେବ; ଏହା ସ୍ୱଷ୍ଟ । ଏହି ସ୍ମରଣକୁ ପରିତ୍ୟାଗ କାହିଁକି କରୁଛ । (ଦ୍ୱା.ସ୍ତୋ.୩/୩)

୫. ସଜ୍ଜନ ! ଆମର ନିର୍ମଳବାଣୀ ଶୁଣ । ଦୁଇହାତ ଉର୍ଦ୍ଧ୍ୱକୁ ତୋଳି ଶପଥ କରି କୁହ, ମୁଁ କହୁଛି, ଭଗବାନଙ୍କ ସମାନ କେହି (ବ୍ୟକ୍ତି) ଏହି ଚରାଚର ଜଗତରେ କେହି ନାହାଁନ୍ତି । ପୁନଃ ତାଙ୍କଠାରୁ ଶ୍ରେଷ୍ଠ ବା କିପରି କିଏ ହେବ ! ସେ ହିଁ ସର୍ବଶ୍ରେଷ୍ଠ । (ଦ୍ୱା.ସ୍ତୋ.୩/୪)

୬. ଯଦି ଭଗବାନ୍ ସର୍ବଶ୍ରେଷ୍ଠ ନ ହୁଅନ୍ତି, ତେବେ ସମଗ୍ର ସଂସାର ତାଙ୍କ ଅଧୀନରେ କିପରି ରହିଛି । ଯଦି ସମଗ୍ର ସଂସାର ତାଙ୍କ ଅଧୀନ ନହୁଅନ୍ତା, ତେବେ ସମସ୍ତ ପ୍ରାଣୀ ସଦା ସର୍ବଦା ସୁଖର ଅନୁଭୂତି ହେବା ଚାହିଁଥାନ୍ତା ।

ହନୁମାନ ଓ ଭୀମଙ୍କ ପରେ ବାୟୁଙ୍କର ତୃତୀୟ ଅବତାର ଭୂତ ମଧ୍ୱାଚାର୍ଯ୍ୟଙ୍କ ମତର ସଂକ୍ଷିପ୍ତ ପରିଚୟ ଆଧୋ ଲିଖିତ ଶ୍ଳୋକରୁ ଜଣାଯାଏ ।

ଶ୍ରୀମନ୍ମଧ୍ୱମତେ ହରିଃ ପରତମଃ, ସତ୍ୟଂ ଜଗତ୍ ତତ୍ତ୍ୱତୋ
ଭେଦୋ ଜୀବଗଣା ହରେ ରନୁଚରା ନୀଚୋଚ୍ଚ ଭାବଂଗତାଃ
ମୁକ୍ତି ର୍ନୈଜ ସୁଖାନୁଭୂତି ରମଳା ଭକ୍ତିଶ୍ଚ ତତ୍ସାଧନ-
ମକ୍ଷାଦି ତ୍ରିତୟଂ ପ୍ରମାଣ ମଖିଳା ମ୍ନାୟୈକବେଦ୍ୟୋ ହରିଃ ॥



# ଶ୍ରୀ ନିମ୍ବାର୍କାଚାର୍ଯ୍ୟ

ନିମ୍ବାଦିତ୍ୟ ଆଦିତ୍ୟ କୁହର ଅଜ୍ଞାନ କୁ ହରିୟା
ଜନମ କରମ ଭାଗବତ ଧରମ ସଂପ୍ରଦାୟ ଥାପୀ ଅଘଟ ।
ଚୌବୀସ ପ୍ରଥମ ହରିବପୁ ଧରେ (ତ୍ୟୋଂ) ଚତୁର୍ବ୍ୟୂହ କଲିଯୁଗ ପ୍ରଘଟ ॥
(୨୮// ଭକ୍ତମାଳା)

ବୈଷ୍ଣବମାନଙ୍କର ପ୍ରମୁଖ ଚାରି ସଂପ୍ରଦାୟରୁ ଦ୍ୱୈତାଦ୍ୱୈତ ବା ନିମ୍ବାର୍କ ସଂପ୍ରଦାନ ଏକ ପ୍ରମୁଖ । ପ୍ରାଚୀନ କାଳରୁ ଏହି ସଂପ୍ରଦାୟ (ମତ) ପ୍ରଚଳିତ ହୋଇ ଆସୁଅଛି । ନିମ୍ବାର୍କାଚାର୍ଯ୍ୟ ପରଂପରା ପ୍ରାପ୍ତ ଏହି ମତକୁ ସ୍ୱୀୟ ପ୍ରତିଭାରେ ଉଜ୍ଜ୍ୱଳ କରି ଲୋକ ପ୍ରଚଳିତ କରିଥିଲେ । ଏହା ଦ୍ୱାରା ଏହି ଦ୍ୱୈତାଦ୍ୱୈତ ମତ ନିମ୍ବାର୍କ ସଂପ୍ରଦାୟ ନାମରେ ପ୍ରସିଦ୍ଧ ହୋଇଥିଲା ।

ବ୍ରହ୍ମ ସର୍ବ ଶକ୍ତିମାନ ଏବଂ ଏହାଙ୍କ ସଗୁଣଭାବ ହିଁ ମୁଖ୍ୟ । ଏହି ଜଗତ ରୂପରେ ହେବାପରେ ମଧ୍ୟ ସେ ନିର୍ବିକାର । ଜଗତରୁ ଉର୍ଦ୍ଧ୍ୱରେ ସେ ହେଉଛନ୍ତି ନିର୍ଗୁଣ । ଜଗତର ସୃଷ୍ଟି ସ୍ଥିତି ଏବଂ ଲୟ ତାଙ୍କରି ଦ୍ୱାରା ହିଁ ହୋଇଥାଏ । ସେ ଜଗତର ନିମିତ୍ତ ଏବଂ ଉପାଦାନ କାରଣ ହୋଇଥାନ୍ତି । ଜଗତ ଏହାଙ୍କ ପରିଣାମ ଏବଂ ସେ ଅବିକୃତ ପରିଣାମୀ । ଜୀବ ହେଉଛି ଅଣୁ (ତୁଲ୍ୟ) ଏବଂ ବ୍ରହ୍ମଙ୍କର ଅଂଶ । ବ୍ରହ୍ମ ଜୀବ ତଥା ଜଡ଼ଠାରୁ ପୃଥକ ଏବଂ ଅପୃଥକ ମଧ୍ୟ । ଜୀବ ମଧ୍ୟ ବ୍ରହ୍ମର ପରିଣାମ ଏବଂ ନିତ୍ୟ ।

ଏହି ସୃଷ୍ଟି ଚକ୍ରର ପ୍ରୟୋଜନ ହିଁ ଏହିକି ଜୀବ ଭଗବାନଙ୍କ ପ୍ରସନ୍ନତା ଏବଂ ତାଙ୍କ ଦର୍ଶନ ପ୍ରାପ୍ତ କରୁ । ଜୀବକୁ ସମସ୍ତ କ୍ଲେଶରୁ ନିବୃତ୍ତି ଏବଂ ପରମାନନ୍ଦ ପ୍ରାପ୍ତି ଭଗବାନଙ୍କ ପ୍ରାପ୍ତିରୁ ହିଁ ହେବ । ବ୍ରହ୍ମଙ୍କ ସହିତ ନିଜର ତଥା ଜଗତର ଅଭିନ୍ନତା ଅନୁଭବ ହିଁ ଜୀବର ମୁକ୍ତାବସ୍ଥା । ଏହା ଭଗବତ୍ ପ୍ରାପ୍ତିରେ ହିଁ ସଂପନ୍ନ ହୋଇଥାଏ । ଉପାସନା ଦ୍ୱାରା ବ୍ରହ୍ମପ୍ରାପ୍ତି ସଂଭବ । ବ୍ରହ୍ମଙ୍କର ସଗୁଣ ଏବଂ ନିର୍ଗୁଣ ଦୁଇ ରୂପରେ ବିଚାର କରାଯାଇଥାଏ । ଜୀବର ମୁକ୍ତି ସାଧନ ଭକ୍ତି ହିଁ ହୋଇଥାଏ । ଭକ୍ତିରେ ହିଁ ଭଗବତ୍ ପ୍ରାପ୍ତି ହୁଏ । ସଦାଚାର ଦ୍ୱାରା ଶୁଦ୍ଧ ଚିତ୍ତରେ ଯେବେ ଭଗବତ କଥା ଏବଂ ଭଗବାନଙ୍କ ଗୁଣ – ଲୀଳା ଶ୍ରବଣ ଦ୍ୱାରା ଶୁଦ୍ଧ ଭଗବାନଙ୍କର ପ୍ରସନ୍ନତା ପ୍ରାପ୍ତ କରିବାର ଇଚ୍ଛା ଜାଗ୍ରତ ହୋଇଥାଏ, ତେବେ ମୁମୁକ୍ଷୁ ପୁରୁଷ ସଦ୍‌ଗୁରୁଙ୍କ ଆଶ୍ରୟ ଗ୍ରହଣ କରିଥାଏ ।

ଗୁରୁଙ୍କ ଦ୍ୱାରା ଉପଦିଷ୍ଟ ଉପାସନା ମାର୍ଗ ଦ୍ୱାରା ଶୁଦ୍ଧ ଚିତ୍ତରେ ଭକ୍ତିର ପ୍ରାକଟ୍ୟ ହୋଇଥାଏ । ଏହି ଭକ୍ତି ଜୀବକୁ ଭଗବତ ପ୍ରାପ୍ତି କରାଇ ମୁକ୍ତି ଦେଇଥାଏ ।

ସଂକ୍ଷେପରେ ଦ୍ୱୈତାଦ୍ୱୈତ ମତର ସାର ହେଉଛି ଏହିପରି । ଭଗବାନ ଶ୍ରୀନାରାୟଣ ହଂସ ରୂପରେ ବ୍ରହ୍ମାଙ୍କ ପୁତ୍ର ସନକ, ସନନ୍ଦନ, ସନାତନ ଏବଂ ସନତ୍‌କୁମାରଙ୍କୁ ଏହି ଉପଦେଶ ଦେଇଥିଲେ । ସନକାଦି କୁମାରଙ୍କଠାରୁ ଦେବର୍ଷି ନାରଦ ଏହା ପ୍ରାପ୍ତ କଲେ ଏବଂ ଦେବର୍ଷି ନାରଦ ଏହି ଉପଦେଶ ଶ୍ରୀନିମ୍ବାର୍କାଚାର୍ଯ୍ୟଙ୍କୁ ଦେଇଥିଲେ । ଏହା ଏହି ସଂପ୍ରଦାୟର ଗୁରୁ ପରଂପରା । ଶ୍ରୀନିମ୍ବାର୍କାଚାର୍ଯ୍ୟ ତାଙ୍କ ବ୍ରହ୍ମସୂତ୍ର ଭାଷ୍ୟରେ 'ଅସ୍ମଦ୍ ଗୁରବେ ନାରଦାୟ' କହି ଅଛନ୍ତି । ସେହି ଗ୍ରନ୍ଥରେ ଦେବର୍ଷି ନାରଦ ଶ୍ରୀନିମ୍ବାର୍କଙ୍କୁ 'ଗୋପାଳମନ୍ତ୍ର' ଦୀକ୍ଷା ଦେଇଥିବା ସୂଚନା ଦେଇଛନ୍ତି ।

ତାଙ୍କ ସଂପ୍ରଦାୟ ଭକ୍ତ ମତରେ ଏବଂ କିଛି ତଦ୍‌ବିଦ୍‌ଙ୍କ ମତରେ ବିକ୍ରମ ସଂବତ ପଞ୍ଚମ ଶତାବ୍ଦୀରେ ନିମ୍ବାର୍କଙ୍କର ଆବିର୍ଭାବ ହୋଇଥିଲା । ଦକ୍ଷିଣ ଭାରତରେ ବୈଦୁର୍ଯ୍ୟ ପତ୍ତନ ପରମ ପବିତ୍ର ତୀର୍ଥ । ଏହାକୁ ଦକ୍ଷିଣ କାଶୀ ମଧ କୁହାଯାଏ । ଏହି ସ୍ଥାନ ଏକନାଥ ସ୍ୱାମୀଙ୍କର ଜନ୍ମଭୂମି । ଏହିଠାରେ ଅରୁଣ ମୁନିଙ୍କର ଆଶ୍ରମ ଥିଲା । ଶ୍ରୀ ଅରୁଣ ମୁନିଙ୍କର ପତ୍ନୀ ଜୟନ୍ତୀ ଦେବୀଙ୍କ କୋଳରେ ଯେଉଁ ଦିବ୍ୟ କୁମାରଙ୍କର ଆବିର୍ଭାବ ହେଲା, ତାହାର ବାଲ୍ୟକାଳର ନାମ ନିତ୍ୟାନନ୍ଦ ଏବଂ ପରବର୍ତ୍ତୀ କାଳରେ ସେ ହିଁ ନିମ୍ବାର୍କାଚାର୍ଯ୍ୟ ନାମରେ ବିଖ୍ୟାତ ହେଲେ ।

ନିମ୍ବାର୍କାଚାର୍ଯ୍ୟଙ୍କ ଜୀବନୀ ସଂବଂଧରେ ଅଧିକ କିଛି ଜଣାନାହିଁ । ସେ କେବେ ଗୃହତ୍ୟାଗୀ ହେଲେ, କେବେ ବ୍ରଜବାସୀ ହେଲେ ଏ ସମସ୍ତ ବିଷୟ ଅଜ୍ଞାତ । ବ୍ରଜରେ ଗିରିରାଜ ଗୋବର୍ଦ୍ଧନ ସମୀପରେ ଧ୍ରୁବକ୍ଷେତ୍ର ଏହାଙ୍କ ସାଧନା ଭୂମି । ଦିନେ ଜଣେ ଦଣ୍ଡୀ ସାଧୁ ସେଠାରେ ପହଞ୍ଚିଲେ । ଦୁଇ ଶାସ୍ତ୍ରଜ୍ଞ ଏକାଠି ହେଲେ ତ ଶାସ୍ତ୍ର କଥା ଆଲୋଚନା ହୋଇଥାଏ । ଉଭୟଙ୍କର ସମୟ ପ୍ରତି ଧ୍ୟାନ ରହିଲା ନାହିଁ । ସାୟଂକାଳ ପୂର୍ବରୁ ଅତିଥିଙ୍କୁ ଭୋଜନ ପାଇଁ ନିବେଦନ କଲେ । ସୂର୍ଯ୍ୟାସ୍ତ ପରେ ସେମାନେ ଭୋଜନ ଗ୍ରହଣ କରନ୍ତି ନାହିଁ । ଅତିଥି ଏଥିରେ ସମ୍ମତ ହେଲେ ନାହିଁ । କିନ୍ତୁ ଆଚାର୍ଯ୍ୟ କେବେହେଲେ ଚାହୁଁ ନଥିଲେ କି ଅତିଥି ଉପବାସରେ ରହନ୍ତୁ । ଆଶ୍ରମ ସମୀପରେ ନିମ୍ବବୃକ୍ଷ ଥିଲା ସହସା ତା'ର ଚାରିପାଖ ଆଲୋକିତ ହୋଇଗଲା । ସତେ ଯେପରି ସୂର୍ଯ୍ୟନାରାୟଣ ସେହିଠାରେ ପ୍ରକଟ ହୋଇଗଲେ । ଯୋଗବଳରେ ସୂର୍ଯ୍ୟଙ୍କ ପ୍ରକଟ କିମ୍ବା ଶ୍ରୀକୃଷ୍ଣଙ୍କ ସୁଦର୍ଶନ ଚକ୍ର, ଯାହାର ମୂର୍ତ୍ତି ଅବତାର ଆଚାର୍ଯ୍ୟଶ୍ରୀ ହୋଇଥିଲେ, ପ୍ରକଟ ହୋଇଗଲେ । ଏବେ ଅତିଥି ଭୋଜନ ଗ୍ରହଣ କଲେ ଏବଂ ପ୍ରସାଦ ଗ୍ରହଣ ପରେ ସୂର୍ଯ୍ୟ ମଣ୍ଡଳ ଅଦୃଶ୍ୟ ହୋଇଗଲା । ଏହି ଘଟଣା ପରଠାରୁ ସେ ଆଚାର୍ଯ୍ୟ

ନିମ୍ବାଦିତ୍ୟ ବା ନିମ୍ବାର୍କ ନାମରେ ବିଖ୍ୟାତ ହୋଇଥିଲେ । ଆଚାର୍ଯ୍ୟଙ୍କର ଏହି ଆଶ୍ରମ 'ନିମ୍ବଗ୍ରାମ' କୁହାଯାଇଥାଏ । ଏହା ଗୋବର୍ଦ୍ଧନ ସମୀପ ନିମ୍ବଗ୍ରାମ, ମାଟ ନିକଟବର୍ତ୍ତୀ ନିମ୍ବଗ୍ରାମ ନୁହେଁ । ସେ ଯଦି ସେ ସମୟରେ ଯେଉଁଠି ଆଶ୍ରମ କରିଥିଲେ ତାହା ଏବେ 'ଯତିପୁରା' ନାମକ ଗ୍ରାମ ଭାବେ ପରିଚିତ । ଶ୍ରୀ ନିମ୍ବାର୍କାଚାର୍ଯ୍ୟଙ୍କର ବେଦାନ୍ତ ସୂତ୍ର ଉପରେ ଭାଷ୍ୟ 'ବେଦାନ୍ତ ସୌରଭ' ଏବଂ 'ବେଦାନ୍ତ କାମଧେନୁ ଦଶଶ୍ଳୋକ' ଏହି ଦୁଇଟି ଗ୍ରନ୍ଥ ଉପଲବ୍ଧ । ଏ ଦୁଇଟି ଅତ୍ୟନ୍ତ ସଂକ୍ଷିପ୍ତ । ଏହା ବ୍ୟତୀତ ଗୀତାଭାଷ୍ୟ, କୃଷ୍ଣସ୍ତବରାଜ, ଗୁରୁ ପରଂପରା, ବେଦାନ୍ତ ତତ୍ତ୍ୱବୋଧ, ବେଦାନ୍ତ ସିଦ୍ଧାନ୍ତ ପ୍ରଦୀପ, ସ୍ୱଧର୍ମାଧ୍ୱବୋଧ, ଅତିହ୍ୟତତ୍ତ୍ୱ ସିଦ୍ଧାନ୍ତ, ରାଧାଷ୍ଟକଂ ଆଦି ଗ୍ରନ୍ଥ ଆଚାର୍ଯ୍ୟଙ୍କ ବିରଚିତ ।

ନିମ୍ବାର୍କାଚାର୍ଯ୍ୟଙ୍କ ଶିଷ୍ୟ ହେଉଛନ୍ତି ଶ୍ରୀନିବାସାଚାର୍ଯ୍ୟ । ସେ ଆଚାର୍ଯ୍ୟଙ୍କ ବ୍ରହ୍ମସୂତ୍ର ଭାଷ୍ୟ ଉପରେ ବେଦାନ୍ତ କୌସ୍ତୁଭ ନାମକ ଗ୍ରନ୍ଥ ଲେଖିଛନ୍ତି । ଏହି ବେଦାନ୍ତ କୌସ୍ତୁଭର ଟୀକା ପରବର୍ତ୍ତୀକାଳରେ କାଶ୍ମୀର କେଶବ ଭଟ୍ଟାଚାର୍ଯ୍ୟ କରିଥିଲେ । ଶ୍ରୀ ନିବାସାଚାର୍ଯ୍ୟଙ୍କ ପରେ ଶିଷ୍ୟ ପରଂପରାରେ ଏଗାର ଜଣ ଆଚାର୍ଯ୍ୟ ହୋଇଥିଲେ । ତନ୍ମଧ୍ୟରୁ ଶ୍ରୀଦେବାଚାର୍ଯ୍ୟ 'ବେଦାନ୍ତ ଜାହ୍ନବୀ' ଏବଂ 'ଭକ୍ତି ରତ୍ନାବଳୀ' ନାମକୁ ଦୁଇଗ୍ରନ୍ଥ ଲେଖିଥିଲେ । ସଂପ୍ରଦାୟ ମଧ୍ୟରେ ତାଙ୍କର ବିଶେଷ ସମ୍ମାନ ଥିଲା । ଶ୍ରୀଦେବାଚାର୍ଯ୍ୟଙ୍କର ଦୁଇ ଶିଷ୍ୟ ଥିଲେ- ଶ୍ରୀ ସୁନ୍ଦର ଭଟ୍ଟାଚାର୍ଯ୍ୟ ଏବଂ ବ୍ରଜଭୂଷଣ ଦେବାଚାର୍ଯ୍ୟ । ଦୁଇ ଆଚାର୍ଯ୍ୟଙ୍କ ପରଂପରା ପରେ ବିସ୍ତୃତ ହୋଇଅଛି ।

ଶ୍ରୀଦେବାଚାର୍ଯ୍ୟଙ୍କ ଦ୍ୱିତୀୟ ଶିଷ୍ୟ ଶ୍ରୀବ୍ରଜଭୂଷଣ ଦେବାଚାର୍ଯ୍ୟଙ୍କ ପରଂପରାରେ ଶ୍ରୀରସିକ ଦେବଜୀ ଏବଂ ଶ୍ରୀ ହରିଦାସଜୀ ପ୍ରମୁଖ । ଶ୍ରୀହରିଦାସଜୀଙ୍କ ଗୋଟିଏ ପରଂପରା ଭକ୍ତ ନିଜକୁ 'ହରିଦାସୀ' କହିଥାନ୍ତି । ଏହିପରି 'କୃଷ୍ଣପ୍ରଣାମୀ' ପରମ୍ପରା ମଧ୍ୟ ନିମ୍ବାର୍କ ସଂପ୍ରଦାୟ ହରିଦାସଙ୍କ ପରଂପରାର ଏକ ଶାଖା । ଏହି ପ୍ରଣାମୀ ସଂପ୍ରଦାୟର ମୁଖ୍ୟ ପୀଠ ପନ୍ନା (ବୁନ୍ଦେଲ ଖଣ୍ଡ)ରେ ରହିଛି ।

ଶ୍ରୀନିମ୍ବାର୍କାଚାର୍ଯ୍ୟ ତଥା ତାଙ୍କ ପରଂପରାର ଅଧିକାଂଶ ଆଚାର୍ଯ୍ୟଙ୍କ ଏହା ପ୍ରଧାନ ବିଶେଷତ୍ୱ ଯେ ଏମାନେ ଅନ୍ୟ ଆଚାର୍ଯ୍ୟଙ୍କ ମତର ଖଣ୍ଡନ କରି ନାହାଁନ୍ତି । ଶ୍ରୀଦେବାଚାର୍ଯ୍ୟ ହିଁ ନିଜ ଗ୍ରନ୍ଥରେ ଅଦ୍ୱୈତ ମତର ଖଣ୍ଡନ କରିଛନ୍ତି । ଶ୍ରୀନିମ୍ବାର୍କାଚାର୍ଯ୍ୟ ପ୍ରସ୍ଥାନତ୍ରୟୀ ସ୍ଥାନରେ ପ୍ରସ୍ଥାନ ଚତୁଷ୍ଟୟକୁ ପ୍ରମାଣ ମାନିଛନ୍ତି । ସେ ତହିଁରେ ଚତୁର୍ଥ ପ୍ରସ୍ଥାନ ଶ୍ରୀମଦ୍ ଭାଗବତକୁ ପ୍ରମାଣ ମାନିଛନ୍ତି । ଅନେକ ବିତରାଗ, ଭାବୁକ, ଭଗବତ୍ ଭକ୍ତ ଏହି ପରଂପରାରେ ସଦା ମଗ୍ନ ହୋଇ ରହିଥାନ୍ତି ॥



# ମହାପ୍ରଭୁ ବଲ୍ଲଭାଚାର୍ଯ୍ୟ

ପାଞ୍ଚଶହ ବର୍ଷ ପୂର୍ବର ଘଟଣା ୧୫୩୫ ବି.ସଂରେ ଦକ୍ଷିଣ ଭାରତର ଏକ ତୈଲଂଗ ବ୍ରାହ୍ମଣ ଲକ୍ଷ୍ମଣଭଟ୍ଟ ତୀର୍ଥଯାତ୍ରା ନିମିତ୍ତ ଉତ୍ତର ଭାରତ ଭ୍ରମଣ କରୁଥିଲେ । ବୈଶାଖ ମାସ ଥିଲା । ସେ ନିଜ ଧର୍ମପତ୍ନୀ ଇଲ୍ଲମ୍ମାଗାରୁଙ୍କ ସହିତ କାଶୀରେ ରହିଥାନ୍ତି । ଆକସ୍ମାତ୍ ଶୁଣାହେଲା ଯେ କାଶୀ ଉପରେ ଯବନଙ୍କ ଆକ୍ରମଣ ହେବ, ତେଣୁ ସେମାନେ ଦକ୍ଷିଣ ଦିଗକୁ ଚାଲିଲେ । ରାସ୍ତାରେ ଚମ୍ପାରଣ ନାମକ ବଣରେ ଇଲ୍ଲମ୍ମା ଏକ ପୁତ୍ର ରତ୍ନ ଜନ୍ମଦେଲେ । ବୈଶାଖକୃଷ୍ଣ ଏକାଦଶୀ ତିଥି, ମାତା ମହାନଦୀର ନିର୍ଜନ ତଟରେ ନବଜାତ ବାଳକକୁ ଛାଡ଼ିଦେଲେ । କିନ୍ତୁ ମାତାର ମମତା କିପରି ତାକୁ ଛାଡ଼ି ପାରନ୍ତା ! ଲକ୍ଷ୍ମଣ ଏବଂ ଇଲ୍ଲମ୍ମା ବାଳକକୁ ନେଇ କାଶୀ ଲେଉଟି ଆସିଲେ । ହନୁମାନ ଘାଟରେ ରହିବାକୁ ଲାଗିଲେ । ବାଳକ ଅଦ୍ଭୁତ ପ୍ରତିଭା ଏବଂ ସୌନ୍ଦର୍ଯ୍ୟ ସଂପନ୍ନ ହୋଇଥିବାରୁ ସମସ୍ତଙ୍କର ପ୍ରିୟପାତ୍ର ଥିଲା । ବାଲ୍ୟାବସ୍ଥାରେ ଲୋକେ ତାକୁ 'ବାଳ ସରସ୍ୱତୀ ବାକ୍‌ପତି' କହିବା ଆରମ୍ଭ କରିଦେଲେ । ବିଷ୍ଣୁଚିତ୍, ତରୁମଲ୍ଲ ଏବଂ ମାଧବ ଯତୀନ୍ଦ୍ରଙ୍କ ଶିକ୍ଷାରେ ବାଲ୍ୟାବସ୍ଥାରେ ହିଁ ବଲ୍ଲଭ ସମସ୍ତ ବୈଷ୍ଣବ ଶାସ୍ତ୍ରରେ ପାରଂଗମ ହୋଇଗଲେ । ତାଙ୍କ ମଧ୍ୟରେ ଭଗବତ୍ ଆରାଧନାରେ ତାଙ୍କ ସମୟ ଅତିବାହିତ ହେବାରେ ଲାଗିଲା । ତୁଳସୀ ମାଳା, ଏକାଦଶୀ, ବିଷ୍ଣୁବ୍ରତ ଏବଂ ଭଗବତ୍ ଆରାଧନାରେ ତାଙ୍କ ସମୟ ଅତିବାହିତ ହେବାରେ ଲାଗିଲା । ତେର ବର୍ଷ ବୟସରେ ସେ ବେଦ- ବେଦାଙ୍ଗ, ପୁରାଣ ଧର୍ମଶାସ୍ତ୍ର ଆଦିରେ ପୂର୍ଣ୍ଣ ନିଷ୍ଣାତ ହୋଇଗଲେ ।

ଧୀରେଧୀରେ ତାଙ୍କ କୀର୍ତ୍ତି ବିସ୍ତାରିତ ହେବାରେ ଲାଗିଲା । ଲୋକ ତାଙ୍କ ଭଗବତ୍ ଭକ୍ତିର ପ୍ରଶଂସା କରିବାରେ ଲାଗିଲେ । ଶ୍ରୀ ବଲ୍ଲଭାଚାର୍ଯ୍ୟଙ୍କ ଚରିତ୍ର ବିକାଶ ଉପରେ ବିଷ୍ଣୁସ୍ୱାମୀ ସଂପ୍ରଦାୟର ଭକ୍ତି ସିଦ୍ଧାନ୍ତର ପ୍ରଭାବ ଅଧିକ ମାତ୍ରାରେ ପଡ଼ିଥିଲା । ସେ ବିଜୟ ନଗର ରାଜ ସଭାରେ ଶଙ୍କରଙ୍କ ଦାର୍ଶନିକ ସିଦ୍ଧାନ୍ତ, ବେଦାନ୍ତ ଏବଂ ମାୟାବାଦର ଖଣ୍ଡନ କରି ଭଗବାନଙ୍କ ଶୁଦ୍ଧ ଭକ୍ତିର ମର୍ଯ୍ୟଦା ସ୍ଥାପିତ କରିଥିଲେ । ରାଜା ତାଙ୍କର କନକାଭିଷେକ କରିଥିଲେ । ସେ ଜଗତ୍‌ଗୁରୁ ମହାପ୍ରଭୁ ଶ୍ରୀମଦାଚାର୍ଯ୍ୟ ଉପାଧିରେ ସମ୍ମାନୀତ ହୋଇଥିଲେ । ଏହାପରେ ସେ ଉତ୍ତର ଭାରତରେ ଭଗବତ୍ ଧର୍ମ ପ୍ରଚାର ପାଇଁ ଯାତ୍ରା କରିଥିଲେ । ଅଠେଇଶ ବର୍ଷ ବୟସରେ ସେ ବିବାହ ସଂସ୍କାର ସଂପନ୍ନ କଲେ । ତାଙ୍କ ପତ୍ନୀ ସାଧ୍ୱୀ ମହାଲକ୍ଷ୍ମୀ ତାଙ୍କ ଜୀବନକୁ ସୁଖମୟ ଏବଂ ଭଗବଦୀୟ କରିବା ପାଇଁ ସତତ ଚେଷ୍ଟିତ ଥିଲେ । ତାଙ୍କ ଗୃହସ୍ଥ ଜୀବନ ବହୁ ଆନନ୍ଦପ୍ରଦ ଥିଲା । ଏହି ସମୟରେ ସେ ଯମୁନା ତଟ ପ୍ରୟାଗ ସନ୍ନିକଟ ଅଡ଼ୈଲରେ ରହୁଥାନ୍ତି । ସେ ଆଚାର୍ଯ୍ୟ ପଦ ଗ୍ରହଣ କରି ସାରିଥାନ୍ତି । ଦାକ୍ଷିଣାତ୍ୟ ଏବଂ ଉତ୍ତରଭାରତ ଦୁଇ ପ୍ରାନ୍ତରେ ତାଙ୍କର ପାଣ୍ଡିତ୍ୟ ଭକ୍ତି ସିଦ୍ଧାନ୍ତ ଏବଂ ଆଚାର୍ଯ୍ୟତ୍ୱ ସମ୍ମୁଖରେ ନତମସ୍ତକ ହୋଇଥାନ୍ତି । ଆଚାର୍ଯ୍ୟ ଶ୍ରୀ ପୁଷ୍ଟିମାର୍ଗର ସଂସ୍ଥାପକ ଥିଲେ । ଭାଗବତରେ ବର୍ଣ୍ଣିତ ଭଗବାନ ଶ୍ରୀକୃଷ୍ଣଙ୍କର ଲୀଳାରେ ପୂର୍ଣ୍ଣ ଓ ଅଖଣ୍ଡ ଆସ୍ଥା ପ୍ରକଟ କରିଥିଲେ । ତାଙ୍କ ମହତୀ ପ୍ରେରଣାରେ ସ୍ଥାନେ ସ୍ଥାନେ ଶ୍ରୀଭଗବତ୍ ପାରାୟଣ ହେବାରେ ଲାଗିଲା । ସେ ନିଜେ ଭଗବତ ସପ୍ତାହ ଶ୍ରବଣରେ ବଡ଼ ଅଭିରୁଚି ରଖିଥାନ୍ତି । ସମଗ୍ର ଭାଗବତ ଧର୍ମାବଲମ୍ବୀଙ୍କ ସେ ଆଶ୍ରୟ ହୋଇଥିଲେ । ତାଙ୍କ ସମକାଳୀନ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ସହ ତାଙ୍କର ଶ୍ରୀକ୍ଷେତ୍ର ପୁରୀଠାରେ ସାକ୍ଷାତ୍ ହୋଇଥିଲା । ସାକ୍ଷାତ୍‌କାରରେ ଉଭୟ ପରସ୍ପରକୁ ପ୍ରଭାବିତ କରିଥିଲେ । ସେ ବ୍ରହ୍ମସୂତ୍ର, ଶ୍ରୀମଦ୍ ଭାଗବତ ଓ ଶ୍ରୀମଦ୍ ଭାଗବତ ଗୀତାକୁ ଆପଣା ପୁଷ୍ଟିମାର୍ଗର ପ୍ରଧାନ ସାହିତ୍ୟ ଭାବେ ଘୋଷିତ କରିଥିଲେ । ପ୍ରେମ ଲକ୍ଷଣା ଭକ୍ତି ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ । ପୁଷ୍ଟି ଭଗବଦାନୁଗ୍ରହ ବା କୃପାର ପ୍ରତୀକ । ସେ ବାତ୍ସଲ୍ୟ ରସରେ ଓତଃପ୍ରୋତ ଭକ୍ତି ସିଦ୍ଧାନ୍ତ ଶିକ୍ଷା କରିଥିଲେ । ଭଗବାନଙ୍କ ଯଶ ଲୀଳା ଗାନକୁ ସେ ଆପାଣାର ପୁଷ୍ଟିମାର୍ଗର ଶ୍ରେୟ ମାନିଥାନ୍ତି । ଶଙ୍କରଙ୍କ ମାୟାବାଦର ବିରୋଧ କରି ଜୀବ ଯେପରି ସତ୍ୟ ବ୍ରହ୍ମ ସେହିପରି ସତ୍ୟ । ପୁନଃ ଜୀବ ବ୍ରହ୍ମର ଅଂଶ ଏବଂ

ସେବକ ହିଁ ହୋଇଥାଏ । ଅତଏବ ତାହାର ବ୍ରହ୍ମପ୍ରାପ୍ତି ଦାସ୍ୟ, ସଖ୍ୟ, ମାଧୁର୍ଯ୍ୟ, କାନ୍ତାଭାବ ଦ୍ୱାରା ସହଜ ସିଦ୍ଧ । ଭଗବାନଙ୍କ ଭକ୍ତି ବିନା ଜୀବ ମୁକ୍ତିପ୍ରାପ୍ତ କରି ପାରେ ନାହିଁ । ଜୀବର ଅଣୁତ୍ୱକୁ ସେ ସମର୍ଥନ କରିଥାନ୍ତି । ବ୍ରହ୍ମଙ୍କଠାରୁ ଜଗତର ସୃଷ୍ଟି ହେତୁ ଜଗତ ମଧ୍ୟ ବ୍ରହ୍ମତୁଲ୍ୟ ସତ୍ୟ । ପରମାତ୍ମାଙ୍କୁ ସାକାର ଗ୍ରହଣ କଲାପରେ ଶ୍ରୀବଲ୍ଲଭ ଜୀବାତ୍ମକ ଓ ଜଡ଼ାତ୍ମକ ସୃଷ୍ଟି ନିର୍ଦ୍ଧାରଣ କରିଅଛନ୍ତି । ଶ୍ରୀଶଙ୍କରଙ୍କ ପରି ଅଦ୍ୱୈତ ବ୍ରହ୍ମଙ୍କର ସମର୍ଥନ କରିବା ପରେ ମଧ୍ୟ ଜୀବ ଏବଂ ବ୍ରହ୍ମଙ୍କ ଶୁଦ୍ଧ ଅଦ୍ୱୈତ ଭାବର ସେ ପ୍ରତିପାଦନ କରି ଭଗବାନଙ୍କ ଭକ୍ତି- ପ୍ରାପ୍ତି ପାଇଁ ଜୀବକୁ ପ୍ରେରିତ କରିଥାନ୍ତି । ଭଗବାନ୍‌ଙ୍କ ଅନୁଗ୍ରହରେ ଜୀବର ପୋଷଣ ହୋଇଥାଏ । ଲୌକିକ ଏବଂ ବୈଦିକ କର୍ମଫଳର ତ୍ୟାଗ ଅନିବାର୍ଯ୍ୟ । ଭଗବାନ ଶ୍ରୀକୃଷ୍ଣ ହିଁ ପରଂବ୍ରହ୍ମ । ତାଙ୍କ ସେବା ହିଁ ଜୀବର ପରମ କର୍ତ୍ତବ୍ୟ । ସଂସାରର ଅହଂତା ଓ ମମତା ତ୍ୟାଗକରି ଶ୍ରୀକୃଷ୍ଣଙ୍କ ଚରଣରେ ସର୍ବସ୍ୱ ସମର୍ପଣ କରି ଭକ୍ତି ଦ୍ୱାରା ଅନୁଗ୍ରହ ପାଇବା ହିଁ ବ୍ରହ୍ମ ସଂବଂଧ ।

ଏହି ଭାବକୁ ବ୍ୟକ୍ତ କରୁଥିବା ଗୋଟିଏ ମନ୍ତ୍ର ରହିଛି, ଯାହା ଆତ୍ମନିବେଦନ ମନ୍ତ୍ର ଭାବରେ ସୁପରିଚିତ । କୁହାଯାଏ ଆଚାର୍ଯ୍ୟ ଚରଣଙ୍କର ଉପାସ୍ୟ ଶ୍ରୀନାଥଜୀ ହିଁ ଏହି ମନ୍ତ୍ର ଆଚାର୍ଯ୍ୟଙ୍କୁ କଳିମଳ ଗ୍ରସିତ ଜୀବକୁ ଉଦ୍ଧାର ପାଇଁ ପ୍ରଦାନ କରିଥିଲେ । ମନ୍ତ୍ର ଏହିପରି- "ସହସ୍ର ପରିବତ୍ସ ରମିତ କାଳଜାତ କୃଷ୍ଣ ବିୟୋଗ ଜନିତ ତାପ କ୍ଳେଶାନନ୍ଦତି ରୋଭାବୋଽହଂ ଭଗବତେ କୃଷ୍ଣାୟ ଦେହେନ୍ଦ୍ରିୟ ପ୍ରାଣାନ୍ତଃ କରଣାନି ତଦ୍‌ଧର୍ମାଶ୍ଚ ଦରାଗାର- ପୁତ୍ରାପ୍ତ ବିତ୍ତେହା ପରାଣି ଆତ୍ମନା ସହ ସମର୍ପୟାମି ଦାସୋଽହଂ ଶ୍ରୀକୃଷ୍ଣ ତବାସ୍ମି ।" ଶ୍ରୀ ବଲ୍ଲଭଙ୍କ ଉପର୍ଯ୍ୟୁକ୍ତ ସିଦ୍ଧାନ୍ତ ଥିଲା । ସେ ଶ୍ରୀକୃଷ୍ଣଙ୍କର ପ୍ରସନ୍ନତା କୁ ହିଁ ଭକ୍ତି ତତ୍ତ୍ୱ ସଂଜ୍ଞାରେ ବିଭୂଷିତ କରିଥିଲେ । ପୁଷ୍ଟ ଶ୍ରୀକୃଷ୍ଣ- ପ୍ରେମକୁ ପ୍ରକଟ କରୁଥିବା ଭକ୍ତିର ନାମ ହୋଇଥାଏ । ଯେଉଁ ଜୀବ ପୁରୁଷୋତ୍ତମଙ୍କ ସହ ଯୁକ୍ତ ହୁଏ, ସେ ସବୁ କିଛି ଉପଭୋଗ କରିଥାଏ । ପୁଷ୍ଟି ମାର୍ଗର ଉଦୟର ମୂଳାଧାର ଭଗବତ୍ ପ୍ରସାଦ ହିଁ ହୋଇଥାଏ । ଆଚାର୍ଯ୍ୟ ବଲ୍ଲଭ ସାଧିକାର ସୁବୋଧନୀରେ ନିଜ ମତ ପ୍ରକଟ କରି କହନ୍ତି କି ପ୍ରାଣୀ ମାତ୍ରକେ ମୋକ୍ଷ ପାଇଁ ହିଁ ଭଗବାନ୍ ଅଭିବ୍ୟକ୍ତ ହୋଇଥାନ୍ତି ।

**ଗୃହଂ ସର୍ବାତ୍ମନା ତ୍ୟାଜ୍ୟଂ ତ ଚ୍ଛେତ୍ୟକ୍ତୁଂ ନ ଶକ୍ୟତେ**
**କୃଷ୍ଣାର୍ଥଂ ତତ୍‌ପ୍ରଯୁଂଜୀତ କୃଷ୍ଣୋଽନର୍ଥସ୍ୟ ମୋଚକଃ ।।**

(ସର୍ବୋତ୍ତମ ସିଦ୍ଧାନ୍ତ ତ ଏହିକି) ଘରକୁ ପୂର୍ଣ୍ଣଭାବେ ଛାଡ଼ିଦେବା ଉଚିତ୍ କିନ୍ତୁ ପୂର୍ବଜନ୍ମର ସଂସ୍କାରରୁ ସମସ୍ତେ ଗୃହତ୍ୟାଗରେ ସଂମର୍ଥ ହୋଇ ପାରିନ୍ତି ନାହିଁ । ଏଣୁ ଯଦି ଘରକୁ ପୂର୍ଣ୍ଣ ଭାବେ ଛାଡ଼ିବା ସାମର୍ଥ୍ୟ ନ ହୋଇ ପାରିଲା, ଘରେ ରହିକରି ସମସ୍ତ କାର୍ଯ୍ୟ ଶ୍ରୀକୃଷ୍ଣଙ୍କ ନିମିତ୍ତ ତାଙ୍କ ପ୍ରୀତି ନିମିତ୍ତ କର, (ଏପରି କରିବା ଦ୍ୱାରା କର୍ମ କରିବାରେ ଯେଉଁ ପାପ ହୁଏ, ସେହି ପାପ ହେବ ନାହିଁ) । କାରଣ ଶ୍ରୀକୃଷ୍ଣ ସମସ୍ତ ପ୍ରକାର ଅନର୍ଥର ମୋଚନକାରୀ ।

ସଂଗଃ ସର୍ବାତ୍ମନା ତ୍ୟାଜ୍ୟଃ ସ ଚେତ୍ୟକ୍ତୁଂ ନ ଶକ୍ୟତେ
ସ ସଦ୍‌ଭିଃ ସହକର୍ତ୍ତବ୍ୟଃ ସନ୍ତଃ ସଂଗସ୍ୟ ଭେଷଜମ୍ ॥

(ସର୍ବୋତ୍ତମ ସିଦ୍ଧାନ୍ତ ଏହିକି) କାହାରି ସଂଗ କରିବା ଉଚିତ୍ ନୁହେଁ । ସମସ୍ତ ପ୍ରକାର ସଂଗ ତ୍ୟାଗ କରିଦେବା ଉଚିତ୍ । (କିନ୍ତୁ ଅନେକ ଜନ୍ମରୁ ଜୀବକୁ ସମାଜରେ ରହି ଆସିବାର ସ୍ୱଭାବ ପଡ଼ିଯାଇଛି, ଏଣୁ) ସମସ୍ତ ପ୍ରକାର ସଂଗକୁ ପରିତ୍ୟାଗ କରିବାରେ ଅସମର୍ଥ ହେଉଛି, ତେବେ ସଜ୍ଜନ ତଥା ସଂନ୍ଥ ମହାତ୍ମାମାନଙ୍କର ସଂଗ କରିବା ଉଚିତ୍ । କାରଣ ସଂଗରୁ ଯେଉଁ କାମ ଉତ୍ପନ୍ନ ହୁଏ, ତାହାର ଔଷଧ ହିଁ ହେଉଛନ୍ତି ସନ୍ଥ ।

ଭାର୍ଯ୍ୟାଦିର ନୁକୂଳ ଶ୍ଚେତ୍କାରୟେଦ୍ ଭଗବତ୍ କ୍ରିୟାଃ
ଉଦାସୀନେ ସ୍ୱୟଂ କୁର୍ଯ୍ୟାତ୍ ପ୍ରତିକୂଳେ ଗୃହଂତ୍ୟଜେତ୍ ॥
ତ ତ୍ୟାଗେ ଦୂଷଣଂ ନାସ୍ତି ଯତୋ ବିଷ୍ଣୁ ପରାଂମୁଖଃ ।

(ଏବେ ଯେଉଁମାନେ ଗୃହସ୍ଥ ହୋଇ ସାରିଛନ୍ତି, ସେମାନେ କିପରି ବ୍ୟବହାର କରିବା ଉଚିତ) ଯଦି ପତ୍ନୀ ଆଦି ପରିବାର ନିଜର ମନ ମୁତାବକ ଭଗବତ୍ ଭକ୍ତି ପରାୟଣ ଆଦି ହେଲେ ତ, ସେମାନଙ୍କୁ ଭଗବାନଙ୍କର ସେବାପୂଜା ଆଦି କରାଇବେ । ଯଦି ସେମାନେ ଏ ଦିଗରୁ ଉଦାସୀନ ତାଙ୍କ ଦ୍ୱାରା ନ କରାଇ ସ୍ୱୟଂକର । ଯଦି ଭଗବତ୍ ସେବାରେ ବିରୁଦ୍ଧ ହେଲେ ତେବେ ଘର ତ୍ୟାଗ କରି ଏକାନ୍ତରେ ଯାଇ ଭଗବତ୍ ପୂଜା- ଅର୍ଚ୍ଚା କରିବା ଉଚିତ୍ । ଯେ ବିଷ୍ଣୁ ପରାଂମୁଖ, ତାଙ୍କୁ ତ୍ୟାଗ କରିବାରେ କୌଣସି ଦୂଷଣ ନାହିଁ ।

ଅନୁକୂଳସ୍ୟ ସଂକଳ୍ପଃ ପ୍ରତିକୂଳ ବିସର୍ଜନମ୍
ରକ୍ଷିଷ୍ୟତୀତି ବିଶ୍ୱାସୋ ଭର୍ତ୍ତୃତ୍ୱେ ବରଣେ ଯଥା ॥
ଆତ୍ମ ନୈବେଦ୍ୟ କାର୍ପଣ୍ୟେ ଷଡ଼୍‌ବିଧା ଶରଣାଗତିଃ ।

ଭଗବତ୍ ସେବାରେ ଯେ ଅନୁକୂଳ ତାହାର ଚିନ୍ତା କରିବା, ଯେ ଭଗବତ୍ ସେବାରେ ବିଘାତକ ତାକୁ ସର୍ବଥା ତ୍ୟାଗ କରିବା । ପତିବ୍ରତା ସ୍ତ୍ରୀ ପୂର୍ଣ୍ଣ ବିଶ୍ୱାସ ରଖିଥାଏ କି, ଯେ ଅଗ୍ନିକୁ ସାକ୍ଷୀରଖି ମୋ' ପାଣି ଗ୍ରହଣ କରିଛନ୍ତି, ସେ ମୋର ରକ୍ଷା ଅବଶ୍ୟ କରିବେ । ସେହିପରି ଶ୍ରୀକୃଷ୍ଣଙ୍କ ଉପରେ ଭରସା ରଖିବା କି ସେ ଆମର ସୁରକ୍ଷା କରିବେ । ଆତ୍ମନିବେଦନ କରିବା ପରେ ଏହି ଛ' ପ୍ରକାର ଶରଣାଗତି ଅଶ୍ରୟ ନେବାକୁ ହୁଏ ।

ଶ୍ରୀବଲ୍ଲଭଙ୍କ ଅଧିକାଂଶ ସମୟ ବ୍ରଜରେ ଅତିବାହିତ ହୋଇଛି । ସେ ଅଡ଼ୈଲରୁ ବ୍ରଜକୁ ଆସିଥିଲେ । ବ୍ରଜ ଆସିବା ପଥରେ ଗଉଘାଟରେ ମହାକବି ସୁରଦାସଙ୍କୁ ଦୀକ୍ଷିତ କରିଥିଲେ । ସେହି ଯାତ୍ରାରେ ବିଶ୍ରାମ ଘାଟରେ କୃଷ୍ଣଦାସ ଅଧିକାରୀଙ୍କୁ ପୁଷ୍ଟିମାର୍ଗରେ ସମ୍ମିଳିତ କରି ବ୍ରହ୍ମ ସଂବଂଧ ଦେଇଥିଲେ । କୁମ୍ଭ ଦାସ ମଧ୍ୟ ତାଙ୍କ ଶିଷ୍ୟ ହୋଇଥିଲେ । ଗୋବର୍ଦ୍ଧନରେ ଏକ ମନ୍ଦିର ନିର୍ମାଣ କରି ତହିଁରେ ଶ୍ରୀନାଥଙ୍କ ମୂର୍ତ୍ତି ପ୍ରତିଷ୍ଠିତ କରିଥିଲେ । ତାଙ୍କ ଚଉରାଅଶୀ ଶିଷ୍ୟଙ୍କ ମଧ୍ୟରୁ ପ୍ରମୁଖ ସୂର, କୁମ୍ଭନ, କୃଷ୍ଣଦାସ ଏବଂ ପରମାନନ୍ଦ ଶ୍ରୀନାଥଙ୍କୁ ବିଧିବତ୍ ସେବା ଏବଂ କୀର୍ତ୍ତନ ଆଦି କରିବାରେ ଲାଗିଥାନ୍ତି । ସୂରଦାସ ତାଙ୍କ ଚରଣ ଭକ୍ତିରେ ସାହିତ୍ୟରେ ଭଗବାନଙ୍କ ଲୀଳାର ସାଗର ଉଦ୍‌ବେଳିତ କରିଥିଲେ । କୁମ୍ଭଦାସ ଶ୍ରୀ ବଲ୍ଲଭଙ୍କ ଆଶୀର୍ବାଦରୁ ସମ୍ରାଟ ଆକବରଙ୍କୁ ପ୍ରଭାବିତ କରିପାରି ଥିଲେ । ପରମାନନ୍ଦ ପରମାନନ୍ଦ ସାଗରର ସୃଷ୍ଟି କରିଥିଲେ । କୃଷ୍ଣଦାସ କହନ୍ତି–

'କୃଷ୍ଣ ଦାସ ଗିରିଧରକେ ଦ୍ୱାରେ ଶ୍ରୀବଲ୍ଲଭ ପଦ-ରଜ-ବଲଚାରଜନ'

ଚାରି ମହାକବି ତାଙ୍କ ଭକ୍ତି କଳ୍ପଲତାର ଅମୃତ ଫଳ ।

ବ୍ରଜରେ ଶ୍ରୀନାଥଙ୍କର କୀର୍ତ୍ତି ପତାକା ଉଡ଼ାଇ ସେ ପୂର୍ବ ନିବାସ ସ୍ଥାନ 'ଅଡ଼ୈଲ' ଚାଲିଆସିଲେ । ଆଚାର୍ଯ୍ୟଙ୍କର ଦୁଇପୁତ୍ର ହୋଇଥିଲେ । ପ୍ରଥମର ନାମ ଗୋପୀନାଥ ଏବଂ ଅପରର ନାମ ବିଟ୍‌ଠଳନାଥ । ତାଙ୍କ ପାରିବାରିକ ଜୀବନ ଅତ୍ୟନ୍ତ ସୁଖମୟ ଏବଂ ଶାନ୍ତ ଥିଲା । ଥରକର କଥା– ଜଣେ ଭକ୍ତ ଶାଳଗ୍ରାମ ଶିଳା ଏବଂ ପ୍ରତିମା ଦୁହିଁଙ୍କୁ ପୂଜା କରୁଥିଲେ । କିନ୍ତୁ ତାଙ୍କ ମନରେ ଭେଦଭାବ ଥିଲା । ସେ ଶିଳାକୁ ଅଧିକ ଗୁରୁତ୍ୱ ଏବଂ ମୂର୍ତ୍ତିକୁ ନ୍ୟୂନ ମନେ କରୁଥିଲେ । ଆଚାର୍ଯ୍ୟ ତାଙ୍କୁ ବୁଝାଇଲେ ଭଗବତ୍ ବିଗ୍ରହରେ ଏପରି ଭେଦ ଭାବ ରଖିବା ଉଚିତ୍ ନୁହେଁ । ଏତିକିରେ ସେ ବିଗିଡ଼ିଗଲେ । ପ୍ରତିମା ଛାତିରେ ଶାଳଗ୍ରାମକୁ ରଖି ରାତିରେ

ପହୁଡ଼ି ଦେଲେ । ପ୍ରାତଃରୁ ଦେଖିଲା ବେଳକୁ ଜଣାଗଲା ଶାଳଗ୍ରାମ ଖଣ୍ଡ ଖଣ୍ଡ ହୋଇ ଯାଇଛି । ଏବେ ତାଙ୍କୁ ବଡ଼ ପଶ୍ଚାତ୍ତାପ ହେଲା ଏବଂ ଆଚାର୍ଯ୍ୟଙ୍କ ପାଖକୁ ଯାଇ କ୍ଷମା ମାଗିଲେ । ପୁନଃ ଆଚାର୍ଯ୍ୟ ଭଗବାନଙ୍କ ଚରଣାମୃତରେ ସେହି ଖଣ୍ଡଗୁଡ଼ିକୁ ପକାଇ ଗୋଳ କରିବା ପାଇଁ କହିଲେ । ଏପରି କରିବା ଦ୍ୱାରା ମୂର୍ତ୍ତି ଶାଳଗ୍ରାମ ପୂର୍ବ ଅବସ୍ଥାକୁ ଆସିଗଲା ।

ତାଙ୍କ ସମଗ୍ର ଜୀବନ ଏପରି ଆଶ୍ଚର୍ଯ୍ୟ ଜନକ ଘଟଣା ସହ ଓତଃପ୍ରୋତ । ଗୋକୁଳରେ ଭଗବାନ୍ ଶ୍ରୀକୃଷ୍ଣ ତାହାଙ୍କୁ ପ୍ରତ୍ୟକ୍ଷ ଦର୍ଶନ ଦେଇଥିଲେ । ସବୁଠାରୁ ବଡ଼ ଘଟଣା ହେଉଛି ତାଙ୍କ ଜୀବନରେ ଭଗବାନଙ୍କ ବିଶୁଦ୍ଧ ଅନନ୍ୟ ଭକ୍ତି ।

ଆଚାର୍ଯ୍ୟ ଘୋଷଣା କରି ଦେଇଥିଲେ ଯେ 'ମୋ' ବଂଶରେ ବା ମୋ' ଶିଷ୍ୟମାନଙ୍କ ମଧ୍ୟରୁ ଯେ କେହି ଭଗବତ୍ ଦ୍ରବ୍ୟର ଉପଭୋଗ କରିବ, ତା'ର ବିନାଶ ହେବ ।'

ଶ୍ରୀବଲ୍ଲଭାଚାର୍ଯ୍ୟ ମହାନ୍ ଭକ୍ତ ହେବା ସହିତ ଦର୍ଶନ ଶାସ୍ତ୍ରରେ ପ୍ରାକାଣ୍ଡ ପଣ୍ଡିତ ଥିଲେ । ସେ ବ୍ରହ୍ମସୂତ୍ରର 'ଅଣୁଭାଷ୍ୟ' ରଚନା କରିଥିଲେ । ଭାଗବତରେ ଦଶମ ସ୍କନ୍ଧ ଏବଂ ଅନ୍ୟ କେତେକ ସ୍କନ୍ଧ ସଂପର୍କରେ 'ସୁବୋଧିନୀ' ଟୀକା ରଚନା କରିଥିଲେ । ଶ୍ରୀମଦ୍ ଭାଗବତକୁ ସେ ପ୍ରସ୍ଥାନତ୍ରିୟୀ ଅନ୍ତର୍ଗତ ମାନୁଥିଲେ ।

ଶ୍ରୀବଲ୍ଲଭଙ୍କ ପରମଧାମ ଯାତ୍ରା ବିଷୟରେ ଏକ ପ୍ରସିଦ୍ଧ ଘଟଣା ରହିଛି । ତାଙ୍କ ଜୀବନର ଅନ୍ତିମ ଦିନ ଅଡ଼ୈଲରୁ ଫେରି ପ୍ରୟାଗ ଏବଂ ପ୍ରୟାଗରୁ କାଶୀ ଆସିଥିଲେ । ହନୁମାନ ଘାଟରେ ଗଂଗା ସ୍ନାନ କରିବାକୁ ଗଲେ । ଯେଉଁଠି ଠିଆ ହୋଇ ସ୍ନାନ କରୁଥିଲେ ସେହିଠାରୁ ଏକ ଉଜ୍ଜ୍ୱଳ ଜ୍ୟୋତି ଶିଖା ଉଠି ବହୁ ଲୋକଙ୍କ ସମ୍ମୁଖରେ ଶ୍ରୀବଲ୍ଲଭ ସଦେହ ଉପରକୁ ଉଠିଗଲେ । ଲୋକ ଦେଖୁଦେଖୁ ସେ ଆକାଶରେ ଲୀନ ହୋଇଗଲେ । ହନୁମାନ ଘାଟରେ ତାଙ୍କର ଏକ ବୈଠକ ନିର୍ମିତ ହୋଇଛି । ଏହିପରି ବି.ସଂ ୧୫୮୭ ଆଷାଢ଼ ଶୁକ୍ଳ ତୃତୀୟରେ ୫୨ ବର୍ଷ ବୟସରେ ଭଗବାନଙ୍କ ଆଜ୍ଞାନୁସାରେ ଅଲୌକିକ ରୀତିରେ ଇହଲୀଳା ସଂବରଣ କରି ଗୋଲୋକ ଧାମକୁ ଯାତ୍ରାକଲେ ।

**ଆଚାର୍ଯ୍ୟ ବଲ୍ଲଭଙ୍କ ଦାର୍ଶନିକ ସ୍ୱତନ୍ତତା:-**

ଜଗତ- ଜଗତ ବିଷୟରେ ଆଚାର୍ଯ୍ୟ 'ଅବିକୃତ ପରିଣାମବାଦ' ସ୍ୱୀକାର କରନ୍ତି । କନକ, କାମଧେନୁ, କଳ୍ପବୃକ୍ଷ, ଚିନ୍ତାମଣି, ଆଦି ସମାନ ନିର୍ଗୁଣ ସଚ୍ଚିଦାନନ୍ଦାତ୍ମକ ବ୍ରହ୍ମ ହିଁ ଅବିକୃତ ଭାବେ ଜଗତ ରୂପରେ ପରିଣତ ହୁଅନ୍ତି ।

ଯେପରି କୁଣ୍ଡଳାଦି ରୂପମାନଙ୍କରେ ପରିଣତ ହେବା ପରେ ମଧ୍ୟ ସୁବର୍ଣ୍ଣରେ କୌଣସି ବିକାର ହୁଏନାହିଁ, ସେହିପରି ଜଗତ୍ ରୂପରେ ପରିଣତ ହେବା ପରେ ମଧ୍ୟ ବ୍ରହ୍ମର କୌଣସି ବିକାର ହୁଏନାହିଁ ।

ପୁଷ୍ଟିମାର୍ଗ- ଭଗବାନଙ୍କୁ ପାଇବାର ସୁଗମ ଉପାୟ କେବଳ ଭକ୍ତି । ଭଗବାନଙ୍କର ତ୍ରିବିଧରୂପ ଅନୁସାରେ ମାର୍ଗ ମଧ୍ୟ ତ୍ରିବିଧ । ଆଧିଭୌତିକ-କର୍ମମାର୍ଗ, ଜ୍ଞାନମାର୍ଗ- ଆଧ୍ୟାତ୍ମିକ ଜ୍ଞାନ ବଳରେ ଜ୍ଞାନୀ ଯେବେ ଅକ୍ଷର ବ୍ରହ୍ମଙ୍କୁ ଲାଭକରି ପାରନ୍ତି; କିନ୍ତୁ ଭକ୍ତି ଦ୍ୱାରା ପରଂବ୍ରହ୍ମ ସଚ୍ଚିଦାନନ୍ଦର ଉପଲବ୍ଧି ହୁଏ । ଆଚାର୍ଯ୍ୟଙ୍କର ପୁଷ୍ଟି ମାର୍ଗକୁ ଆଚାର ମାର୍ଗ କୁହାଯାଏ । ଭାଗବତରେ ପୁଷ୍ଟି ବା ପୋଷଣର ଅର୍ଥ ଭଗବାନ୍‌ଙ୍କର ଅନୁଗ୍ରହ । ପୋଷଣଂ ତଦନୁଗ୍ରହଃ ଭାଗଂ (୨/୧୦) ଏଣୁ ଭଗବଦ୍‌ନୁଗ୍ରହକୁ ମୁକ୍ତିର ପ୍ରଧାନ ମାର୍ଗ ମାଳିକା ଦ୍ୱାରା ସେହି ମାର୍ଗକୁ ପୁଷ୍ଟିମାର୍ଗ କୁହାଯାଏ । ଏହି ମାର୍ଗ ମର୍ଯ୍ୟଦାମାର୍ଗଠାରୁ ଅତ୍ୟନ୍ତ ବିଲକ୍ଷଣ, ମର୍ଯ୍ୟଦା ମାର୍ଗ ବୈଦିକ, ଯାହା ଅକ୍ଷର ବ୍ରହ୍ମର ବାଣୀର ସୃଷ୍ଟ । କିନ୍ତୁ ପୁଷ୍ଟିମାର୍ଗ ସାକ୍ଷାତ୍ ଭଗବାନଙ୍କ ଶରୀରରୁ ନିର୍ଗତ ହୋଇଛି । ମର୍ଯ୍ୟଦା ମାର୍ଗରେ ଜ୍ଞାନ ତଥା ଶ୍ରବଣାଦି ସାଧନମାନଙ୍କ ଦ୍ୱାରା ସାଯୁଜ୍ୟ ମୁକ୍ତି ହିଁ ଧ୍ୟେୟ ହୁଏ, ପରନ୍ତୁ ପୁଷ୍ଟିମାର୍ଗରେ ସର୍ବାତ୍ମନା ଆତ୍ମସମର୍ପଣ ତଥା ବିପ୍ରଯୋଗ ରସାତ୍ମିକା ପ୍ରୀତିର ସହାୟତାରେ ଆନନ୍ଦଧାମ ଭଗବାନଙ୍କର ସାକ୍ଷାତ୍ ଅଧରାମୃତ ପାନ ହିଁ ମୁଖ୍ୟଫଳ । ହରିରାୟଜୀ ପୁଷ୍ଟିମାର୍ଗର ବିଶେଷତା ଅତି ମନୋଜ୍ଞ ଶବ୍ଦରେ 'ପ୍ରମେୟ- ରତ୍ନାର୍ଣ୍ଣବ'ରେ ପ୍ରକାଶ କରିଛନ୍ତି ।

ଅନୁଗ୍ରହେଣୈବ ସିଦ୍ଧିର୍ଲୌକିକୀ ଯତ୍ର ବୈଦିକୀ<br>
ନ ଯତ୍ନା ଦନ୍ୟଥା ବିଘ୍ନଃ ପୁଷ୍ଟି ମାର୍ଗଂ ସ କଥ୍ୟତେ ॥

ଆଚାର୍ଯ୍ୟ 'ଅଣୁଭାଷ୍ୟ'ରେ ଠିକ୍ ଏହି ରୂପେ କହି ଅଛନ୍ତି- ପୁଷ୍ଟିମାର୍ଗେଽଙ୍ଗୀକୃତସ୍ୟ ଜ୍ଞାନାଦି ନୈରପେକ୍ଷଂ, ମର୍ଯ୍ୟାଦାୟାମଙ୍ଗୀ କୃତତୁ ତଦପେକ୍ଷିତତ୍ତ୍ୱଂ ଚ ଯୁକ୍ତମେବ । (ଅଣୁଭାଷ୍ୟ ୩/୩/୨୯) ॥



# ଦକ୍ଷିଣର ନାରୀ ପଞ୍ଚରନ୍ତ୍

ଦ୍ରାବିଡ଼ ଦେଶରେ ସାଧ୍ୱୀ ଶ୍ରୀ ପୁନୀତବତୀ, ଶ୍ରୀ ମଂଗୈୟର୍କ ରଶି ଏବଂ ଶ୍ରୀ ତିଳକବତୀ ଅତି ପ୍ରସିଦ୍ଧ ଥିଲେ । ଏହି ସମୟରେ ବିଷ୍ଣୁଭକ୍ତ ବୈଷ୍ଣବ ମଧ୍ୟରେ ଦ୍ୱାଦଶଙ୍କୁ ମୁଖ୍ୟ ଭାବେ ଗ୍ରହଣ କରାଯାଏ । ଭଗବାନ୍ ନାରାୟଣଙ୍କ ଭକ୍ତିଧାରା ସେମାନଙ୍କ ଗ୍ରନ୍ଥରେ ପ୍ରବାହିତ ହୋଇଛି । ସେମାନଙ୍କ ଗୀତ ବେଦତୁଲ୍ୟ ବୈଷ୍ଣବଙ୍କ ଦ୍ୱାରା ସମାଦୃତ । ସେମାନଙ୍କୁ 'ଆଲବାର' କୁହାଯାଏ । ଆଲବାରଙ୍କ ମଧ୍ୟରେ ଭକ୍ତିମତୀ ଶ୍ରୀଆଂଡ଼ାଲ (ମୋଦା) ମୁକୁଟ ମଣି ତୁଲ୍ୟ । ଏହା ବ୍ୟତୀତ ଶ୍ରୀମତୀ ଔବୈୟାର ଦକ୍ଷିଣରେ ସର୍ବମାନ୍ୟ ନାରୀ ସନ୍ଥଙ୍କ ସଂପର୍କରେ ସଂକ୍ଷିପ୍ତ ଆଲୋଚନା କରାଯାଉଛି ।

**(୧) ଶ୍ରୀମତୀ ଔବୈୟାର-** ଦକ୍ଷିଣ ଭାରତର ଯେଉଁ ଭୂମି 'ଶ୍ରୀକାଞ୍ଚି', ଶ୍ରୀ 'କାବେରୀ' ଏବଂ ଶ୍ରୀ 'କୁମାରୀ' ଶକ୍ତିତ୍ରୟ ରୂପେ ଭୂଷିତ ହୋଇଅଛି, ଯେଉଁଠି ପାବନତମ ତୀର୍ଥ କ୍ଷେତ୍ର ତଥା ପୀଠ ରହିଛି, ସେହି ପୁଣ୍ୟ କ୍ଷେତ୍ରରେ ଦୁଇ ସହସ୍ର ବର୍ଷ ପୂର୍ବେ ଯେ ସ୍ତ୍ରୀ ମହାତ୍ମା ଆବିର୍ଭୂତ ହୋଇଥିଲେ । କୁଟୀରଠାରୁ ଆରମ୍ଭ କରି ରାଜମହଲ ପର୍ଯ୍ୟନ୍ତ ବୃଦ୍ଧମାନଙ୍କର କାହାଣୀଠାରୁ ଶିଶୁମାନଙ୍କର ମୁଖରେ ତାହାଙ୍କ ସୁଯଶ ବିସ୍ତୀର୍ଣ୍ଣ । ଶ୍ରୀମତୀ ଔବୈୟାରକଙ୍କ ସ୍ଥାନ ଦକ୍ଷିଣ ସନ୍ଥମାନଙ୍କ ମଧ୍ୟରେ ସର୍ବପ୍ରଥମ । 'କ୍ରୋଧକର ନାହିଁ', 'ଧର୍ମକର', 'ମାତା ପିତା ଆମର ପ୍ରତ୍ୟକ୍ଷ ଦେବତା', ଏ ସମସ୍ତ ଔବୈୟାରକଙ୍କ ଉପଦେଶ ବାକ୍ୟ ଆମ ପାଠଶାଳାର ଶିଶୁ ଶ୍ରେଣୀର ପାଠ ହୋଇଯାଇଅଛି ।

ଦୁଇ ଦୁଇ ପଦର ଛୋଟ ଗ୍ରନ୍ଥରୁ ଆରମ୍ଭ କରି ମୋକ୍ଷପ୍ରଦ ଗୂଢ଼-ଆଧ୍ୟାତ୍ମିକ ବିଶଦ ଗ୍ରନ୍ଥର ନିର୍ମାଣ ଔବୈୟାର କରି ଅଛନ୍ତି । ଯେଉଁଠାରେ ତାଙ୍କ ମହିମା ବ୍ୟାପ୍ତ । ଗ୍ରାମ୍ୟ ଲୋକୋକ୍ତିରେ ତାଙ୍କ ମହାକାବ୍ୟ ବିକୀର୍ଣ୍ଣ । ଏହି ମହାସନ୍ଥଙ୍କର ପରମାରାଧ ଭଗବାନ ଗଣପତି । କିନ୍ତୁ ତାଙ୍କ ଗ୍ରନ୍ଥମାନଙ୍କରେ ଜନସାଧାରଣଙ୍କ ପାଇଁ ଶିବ, ବିଷ୍ଣୁ, ପ୍ରଭୃତି ଦେବ ଉପାସନାର ଅପାର ପ୍ରେରଣା ରହିଛି ।

ଔବୈୟାରଙ୍କ ଚରିତ ଉତ୍ତମ ଗୁଣର ଆଦର୍ଶ ପ୍ରତିଷ୍ଠିତ । ତାଙ୍କ ପ୍ରକାଶିତ ପୁସ୍ତକ ଅପେକ୍ଷା କେତେ ଅଧିକ ଅପ୍ରକାଶିତ ଗ୍ରନ୍ଥ ରହିଛି । ତଂଜୋର ଜିଲ୍ଲାରେ ମାୟୁର ଅରତାଙ୍ଗୀ (Mayaranam to Arnlangi) ରେଲୱେରେ ତିଲ୍ଲୈବିଳାକମ୍ ଷ୍ଟେସନ୍ ସମୀପରେ କର୍ପନାର କୋୟିଲ ଅଥବା ତିରୁକ୍କୁଡ଼ିକୁଳବ୍ ଏକ ପ୍ରାଚୀନ ଶୈବ କ୍ଷେତ୍ର, ତା' ନିକଟରେ ତୁଳସିଆର ପଟ୍ଟନମ୍ ଗ୍ରାମରେ ଔବୈୟାରଙ୍କ ଏକ ମନ୍ଦିର ରହିଛି । ମନ୍ଦିର ସହିତ ସଂଲଗ୍ନ ଭୂମି ମଧ୍ୟ ରହିଛି । କିଛି ବର୍ଷ ପୂର୍ବେ ମନ୍ଦିରର ମହାକୁମ୍ଭାଭିଷେକ ମହୋତ୍ସବ ଜୀର୍ଣ୍ଣୋଦ୍ଧାର ସଂପନ୍ନ ହୋଇଅଛି ।

**(୨) ଶ୍ରୀମତୀ ପୁନୀତବତୀ (କାରୈକ୍କାଲ ଅମ୍ମୈୟାର)**- କାରୈକ୍କାଲ ପ୍ରଦେଶ ପଂରାସୀ ଶାସନରେ ରହିଥିଲା । ଶ୍ରୀମତୀ ପୁନୀତବତୀଙ୍କର ସେହିଠାରେ ଆବିର୍ଭାବ ହୋଇଥିଲା । ଏହି ସ୍ଥାନ ତଂଜୋର ଜିଲ୍ଲା ନିକଟବର୍ତ୍ତୀ । ଏହାଙ୍କ ସଂପର୍କରେ ଗୋଟିଏ ଘଟଣା ଲୋକରେ ଅତ୍ୟନ୍ତ ବିଖ୍ୟାତ । କୌଣସି ଏକ ସମୟରେ ଶ୍ରୀମତି ପୁନୀତବତୀଙ୍କ ପତି ଶ୍ରୀପରମଦତ୍ତଜୀଙ୍କୁ କେହି ଜଣେ ସଜ୍ଜନ ଦୁଇଟି ପକ୍ୱ ଆମ୍ର ଫଳ ଦେଇଥିଲା । ସେ ପତ୍ନୀଙ୍କୁ ରଖିବା ପାଇଁ ଦେଲେ । ସେହିଦିନ କୌଣସି ଅତିଥି ସାଧୁ ତାଙ୍କ ଘରକୁ ଆସିଥିଲେ । ଅତିଥି ତ ସ୍ୱୟଂ ଆରାଧ୍ୟେୟ ସ୍ୱରୂପ ହୋଇଥାନ୍ତି । ତାଙ୍କ ସତ୍‌କାରରେ ପୁନୀତବତୀ ଗୋଟିଏ ଆମ୍ୱ ଉପଯୋଗ କଲେ । ପତିଦେବ ଭୋଜନ କରିବା ପାଇଁ ବସିଲେ । ଦ୍ୱିତୀୟ ଆମ୍ୱଟି ତାଙ୍କୁ ଦେଇଦେଲେ । ଆମ୍ୱ ବଡ଼ ସ୍ୱାଦିଷ୍ଟ ଥିଲା । ଗୋଟିଏ ଫଳରେ ତୃପ୍ତି ହୋଇ ନ ପାରି ପତ୍ନୀଙ୍କୁ ଅନ୍ୟ ଫଳଟିକୁ ମାଗିଲେ । ସତୀ ସାଧ୍ୱୀ ପୁନୀତବତୀ ନିଜ ସ୍ୱାମୀଙ୍କ କ୍ରୋଧୀ ସ୍ୱଭାବକୁ ଜାଣନ୍ତି । ଭୟ ହେତୁ ଅତିଥିଙ୍କୁ ଦେଇଦେବା କଥା କହି ପାରୁନାହାନ୍ତି । ଘର ଭିତରକୁ ଯାଇ ସେ ଆରାଧ୍ୟଙ୍କ ସମ୍ମୁଖରେ ପ୍ରାର୍ଥନା କରିବାକୁ ଲାଗିଲେ । ସହସା ଗୋଟିଏ ଆମ୍ୱ ଫଳ ତାଙ୍କ ଅଂଜଳିରେ ଆସିଗଲା ।

ଶ୍ରୀପରମ ପଦଉଜୀ ବଡ଼ ଆଶ୍ଚର୍ଯ୍ୟ ହେଲେ । ଏପରି ଅମୃତ ସ୍ୱାଦ, ଯେଦିବ୍ୟ ସୁରଭୀ ତ ଜୀବନରେ ସେ କେବେ କେଉଁଠି ପ୍ରାପ୍ତ କରି ନାହାଁନ୍ତି । ସେ ଦେଇଥିବା ଫଳ ତ ଏହା ନୁହେଁ । ସେ ପତ୍ନୀଙ୍କୁ ପଚାରିଲେ । ସେ ସରଳତାରେ ସବୁ ସତ କହିଦେଲେ । ଏଥିରେ କେବଳ ଲାଭରୁ ଲୋଭ ଦେଖାଦେଲା । ଆଉ ଗୋଟିଏ ଫଳ ପାଇଁ ଇଚ୍ଛା ପ୍ରକଟ କଲେ । ଶ୍ରୀପୁନତୀବତୀ ପୁନଃ ପ୍ରାର୍ଥନା କଲେ । ଫଳ ତାଙ୍କ ଅଂଜଳିକୁ ଆସିଲା କିନ୍ତୁ ପରମଦଉଜୀଙ୍କ ହାତକୁ ଯିବା କ୍ଷଣି ତାହା ଅଦୃଶ୍ୟ ହୋଇଗଲା । ଏହି ଘଟଣାର ସ୍ମୃତିରେ ପ୍ରତିବର୍ଷ ଏଠାରେ ଫାଲଗୁନ ସ୍ୱାତୀ ନକ୍ଷେତ୍ରରେ 'ଆମ୍ର ଫଳୋତ୍ସବ' ପାଳନ କରାଯାଏ ।

ପତ୍ନୀଙ୍କର ଭଗବତ୍ ଭକ୍ତି ଏବଂ ପ୍ରଭାବ ଦେଖି ପରମଦଉଜୀଙ୍କ ତାଙ୍କ ପ୍ରତି ଆଦର ବୃଦ୍ଧି ହେଲା । ଶ୍ରୀ ପୁନୀତବତୀଙ୍କୁ ଏହା ଦ୍ୱାରା ବଡ଼ ଦୁଃଖ ହେଲା । ଏବେ ପତିଦେବଙ୍କ ସେବାର ଅବସର ପ୍ରାପ୍ତ ହେଲା ନାହିଁ । ଆପଣାର ଜୀବନ ସେ ଈଶ୍ୱରାଧନ ଏବଂ ତୀର୍ଥାଟନରେ ଲଗାଇ ଦେଲେ । ତାଙ୍କ ଦିବ୍ୟ ସୌନ୍ଦର୍ଯ୍ୟ ସେହି ଯୁଗରେ ପାଦଚଲା ତୀର୍ଥ ଯାତ୍ରାର ବାଧକ ହେଉଥିଲା । ଫଳସ୍ୱରୂପ ସେ ନିଜକୁ କୁରୂପା କରିଦେଲେ । ଲୋକେ ତାଙ୍କୁ ଦେଖି ପିଶାଚ ବୋଲି ଭାବିଲେ । ସେ ନିଜ ପଦରେ ନାମ ସ୍ଥାନରେ 'କାରୈକ୍କାଲପେୟ' ପରି 'କାରୈକ୍କାଳ ପିଶାଚ' ମଧ୍ୟ ସବୁଠାରେ ପ୍ରୟୋଗ କଲା ।

## ଶ୍ରୀମତୀ ମଂଗୈୟର୍କରଶି

ତାମିଲ ରାଜ୍ୟରେ ଚେର, ଚୋଳ ଓ ପାଣ୍ଡ୍ୟ ଏହି ତିନି ପ୍ରଖ୍ୟାତ ରାଜ୍ୟ ରହିଛି । ପାଣ୍ଡ୍ୟ ରାଜ୍ୟର ପ୍ରଧାନ ନଗର (ମଦୁରା) ମଧୁରା । ଏହି ରାଜ୍ୟରେ ପଟ୍ଟ ମହୀଷି ମଂଗୈୟର୍କରଶି । ମହାରାଜ ଜୈନ ଧର୍ମର ପ୍ରଭାବରେ ଆସି ରାଜ୍ୟରେ ଘୋଷଣା କଲେ କି- କେହି ହେଲେ ବେଦାଧ୍ୟୟନ କରିବେ ନାହିଁ । ଭସ୍ମ ଏବଂ ରୁଦ୍ରାକ୍ଷ ଧାରଣ ମଧ୍ୟ ଅପରାଧ । ଏପରି କରିବା ବ୍ୟକ୍ତି ଦଣ୍ଡନୀୟ ହେବେ । ମହାରାଣୀ ପରମ ଶିବ ଭକ୍ତା ଥିଲେ । ପତିଙ୍କ ଆଚରଣରେ ସେ ଦୁଃଖିତ ହୋଇଥିଲେ । ଏକାନ୍ତରେ ସେ ପ୍ରାର୍ଥନା କରୁଥିଲେ କି ମହାରାଜାଙ୍କର ବୁଦ୍ଧି ଶୁଦ୍ଧ ହେଉ ଏବଂ ସେ ଭଗବାନ୍ ଶଂକରଙ୍କ ଚରଣରେ ସଂଲଗ୍ନ ହୁଅନ୍ତୁ । ଏଥିପାଇଁ ସେ ଅନେକ ବ୍ରତ କରୁଥାନ୍ତି । ଅନୁଷ୍ଠାନ କରୁଥାନ୍ତି । ଗୋପନରେ ଭଗବାନ୍ ଶଂକରଙ୍କର ଆରାଧନା କରୁଥାନ୍ତି । ପ୍ରତ୍ୟକ୍ଷ କରିବାରେ ମହାରାଜ ରୁଷ୍ଟ ହେବାର ସଂଭାବନା ଥିଲା ।

ମହାରାଣୀଙ୍କ କାତର ପ୍ରାର୍ଥନାରେ ସଦାଶିବ ପ୍ରସନ୍ନ ହେଲେ । ଭଗବାନ ସ୍କନ୍ଦ ଧରାଧାମରେ 'ଜ୍ଞାନ ସମ୍ବନ୍ଧ ମୂର୍ତ୍ତି' ନାମରେ ଅବତୀର୍ଣ୍ଣ ହେଲେ । ସେ ବିଭୂତି ମହାତ୍ମ୍ୟ, ବୈଦିକ ଧର୍ମର ଶୁଦ୍ଧ ସ୍ୱରୂପ ଏବଂ ଶିବଭକ୍ତିର ପ୍ରବଳ ପଚାର ଅରମ୍ଭ କଲେ । ରାଜାଙ୍କ ଉପରେ ଏହି ସମୟରେ ବିପଦ ପହଂଚିଲା । ବିପତ୍ତି କାରଣରୁ ବିବଶ ହୋଇ ସେ କୁମାର କାର୍ତ୍ତିକେୟଙ୍କ ଶରଣାପନ୍ନ ହେଲେ । ରାଜ୍ୟରେ ପୁନଃ ଶୈବ ଧର୍ମର ପ୍ରତିଷ୍ଠା ହୋଇଥିଲା । ମହାରାଣୀଙ୍କ ପତିବ୍ରତ ଏବଂ ତପସ୍ୟା ପ୍ରଭାବରେ ରାଜ୍ୟରୁ ବିପଦ ଦୂରୀଭୂତ ହେବା ସହିତ ସବୃଦ୍ଧି ହୋଇଥିଲା ।

## ଶ୍ରୀମତୀ ତିଳକବତିୟାର

ଦକ୍ଷିଣ ଆରକାଟ ଜିଲ୍ଲାରେ ପଣରୁଟୀ ରେଲୱେ ଷ୍ଟେସନ୍ ନିକଟରେ 'ତିରୁବତିକୈ' ଏକ ପ୍ରଧାନ ଶୈବ କ୍ଷେତ୍ର । ଏହା ସମୀପରେ ଏକ କ୍ଷୁଦ୍ର ଗ୍ରାମରେ ଗୋଟିଏ ଶୂଦ୍ର ଗୃହରେ ଏହାଙ୍କ ଜନ୍ମ ହୋଇଥିଲା । ଶୈଶବରୁ ଶିବୋପାସକ ପରିବାରର ପ୍ରଭାବ ପଡ଼ିଥିଲା ଏବଂ ଭଗବାନ୍ ଶଂକରଙ୍କ ଚରଣରେ ତାଙ୍କ ମନ ମଜ୍ଜିଗଲା । ତାଙ୍କ ବିବାହ ତାଙ୍କ ପିତା ଏକ ସଜାତୀୟ ବଳିଷ୍ଠ ଯୁବକ ସହ ସ୍ଥିର କରିଥିଲେ । ବିବାହର ଆଠଦିନ ପୂର୍ବରୁ ସେହି ଯୁବକକୁ ଯୁଦ୍ଧକୁ ଯିବାକୁ ହେଲା । ସେଠାରେ ସେ ମୃତ୍ୟୁଲାଭ କଲା । ଅକସ୍ମାତ ଏହି ସମୟରେ ମାତା- ପିତାଙ୍କର ମଧ୍ୟ ଶରୀରାନ୍ତ ହୋଇଗଲା । ତିଳକବତୀ ସମସ୍ତଙ୍କ ଆଗରେ ସ୍ପଷ୍ଟ କହିଦେଲା ଯେ, ଯାହାଙ୍କୁ ମୋ' ପିତା ଦେବାକୁ ସ୍ୱୀକାର କରିଛନ୍ତି, ତାହା ସହିତ ଏକ ପ୍ରକାର ବିବାହ ହୋଇସାରିଛି । ହୃଦୟର ଦାନ ଦୁଇଥର ହୁଏ ନାହିଁ । ପ୍ରବଳ ଇଚ୍ଛା ଥାଇ ମଧ୍ୟ ସେ ସତୀ ହୋଇ ପାରିଲେ ନାହିଁ । କାରଣ ତାଙ୍କ ସାନ ଭାଇ ଏବେ ବି ଶିଶୁ ଅଛନ୍ତି । ସେମାନଙ୍କ ପାଳନ ପୋଷଣ ଭାର ତାଙ୍କ ଉପରେ ଥିଲା । ତିଳକବତୀ ଭାଇକୁ ଲାଳନ ପୋଷଣ କରି ସୁଶିକ୍ଷିତ କରିଥିଲେ । ସେ ଅତ୍ୟନ୍ତ ପ୍ରତିଭାଶାଳୀ କବି ହୋଇଥିଲେ । ଶ୍ରମତା ସାଧୁମାନଙ୍କ ସଂପର୍କରେ ଆସି ତାଙ୍କର ଆସ୍ଥା ବୈଦିକ ଧର୍ମରୁ ଉଣା ହୋଇଗଲା । ତନ୍ତ୍ର ମନ୍ତ୍ରରେ ବିଶ୍ୱାସ କଲେ । ଉସ୍ମ ଓ ରୁଦ୍ରାକ୍ଷ ଧାରଣ ବନ୍ଦ ହୋଇଗଲା । ତିଳକବତୀ ଭାଇକୁ ବହୁତ ବୁଝାଇଲେ, କିନ୍ତୁ ସିଏ ତ ଅନ୍ୟର ପ୍ରଭାବରେ ପଡ଼ିଯାଇଥିଲା । ଭଉଣୀଠାରୁ ପୃଥକ୍ ଜୈନ ସ୍ଥାନରେ ରହିବାରେ ଲାଗିଲେ ଏବଂ ତାଙ୍କ ନାମ ଧର୍ମସେନ ହୋଇଗଲା ।

ତିଳକବତୀ ଯାହାକୁ ସଂପୂର୍ଣ୍ଣ ସ୍ନେହରେ ପାଳନ କରିଥିଲେ ତାହାକୁ ଭିନ୍ନ ମାର୍ଗୀ ହେବାର ଦେଖି ସେ ମର୍ମାନ୍ତିକ ପୀଡ଼ା ପାଇଲେ । ପ୍ରତିଦିନ ପ୍ରଭୁ ଆଶୁତୋଷଙ୍କୁ ପ୍ରାର୍ଥନା କରିବାରେ ଲାଗିଲେ ଏବଂ ନିବେଦନ କଲେ 'ହେ ଦୟାମୟ, ମୋ' ଭାଇକୁ ସନ୍ମାର୍ଗକୁ ଘେନି ଆସନ୍ତୁ' । ବାସ୍ତବ ପ୍ରାର୍ଥନା ବ୍ୟର୍ଥ ହୁଏ ନାହିଁ । ଭାଇର ଉଦରରେ ଭୟଙ୍କର ବ୍ୟଥା ଅନୁଭୂତି ହେଲା । ମାନ୍ତ୍ରିକମାନଙ୍କର ସକଳ ଉଦ୍ୟମ ବ୍ୟର୍ଥ ହେଲା । ଏବେ ସେ ଭଉଣୀକୁ ସ୍ମରଣ କଲେ । ସଂଦେଶ ପ୍ରେରଣ କରାଗଲା । କିନ୍ତୁ ତିଳକବତୀ ଶ୍ରମଣ ସ୍ଥାନକୁ ଯିବା ପାଇଁ ମନା କରିଦେଲେ । ବିବଶ ହୋଇ ସେ ଭଉଣୀ ପାଖକୁ ଚାଲି ଆସିଲେ । ଭଉଣୀ ତାଙ୍କୁ ନେଇ ଭଗବାନ୍‌ଙ୍କ ସମ୍ମୁଖରେ ଉପସ୍ଥିତ କରାଇଲେ । ମସ୍ତକରେ ଭସ୍ମ ଲଗାଇଦେଲେ । ସମସ୍ତ ବେଦନା ଦୂରୀଭୂତ ହୋଇଗଲା । ଭାବ ବିଭୋର ହୋଇ ସେ କ୍ରମାଗତ ଭାବେ କବିତାରେ ଶଶାଙ୍କ ଶେଖରଙ୍କ ସ୍ତବ କରିବାକୁ ଲାଗିଲେ । ସନ୍ତୁଷ୍ଟ ହୋଇ ଭଗବାନ୍ ଆଶୁତୋଷ ପ୍ରତ୍ୟକ୍ଷ ଦର୍ଶନ ଦେଇ ତାଙ୍କୁ 'ବାଗୀଶ' ନାମରେ ସଂବୋଧିତ କଲେ ।

ଏବେ ବାଗୀଶ ରାଜ୍ୟରେ ଶିବଭକ୍ତି ଏବଂ ବୈଦିକ ଧର୍ମର ପ୍ରଚାର କରିବାରେ ଲାଗିଲେ । ଶ୍ରମଣମାନଙ୍କ ଦ୍ୱାରା ତାଙ୍କୁ ସର୍ବଦା ବିପଦ ପଶ୍ଚାତ ଧାବନ କରୁଥିଲା । ଭଗବାନ୍ ଶଂକର ତାଙ୍କୁ ସକଳ ବିପତ୍ତିରୁ ରକ୍ଷା କରିଥିଲେ । ରାଜା ମଧ୍ୟ ତାଙ୍କୁ ସମ୍ମାନ କରିବାକୁ ଲାଗିଲେ । ତାଙ୍କୁ 'ପିତା' ସଂବୋଧନ କଲେ । ରାଜ୍ୟରେ ଶୈବ ଧର୍ମର ପ୍ରଚାର ହେଲା । ସେ ନିଜ ଭଉଣୀ ତିଳକବତୀଙ୍କୁ ଗୁରୁ ମାନିଥାନ୍ତି ।

## (୫) ଶ୍ରୀମତୀ ଆଁ ଡାଲ (ଗୋଦା)

କର୍କଟେ ପୂର୍ବ ଫାଲଗୁନ୍ୟାଂ ତୁଳସୀ କାନନୋଦ୍ ଭବାମ୍,
ପାଣ୍ଡ୍ୟେ ବିଶ୍ୱମ୍ଭରାଂ ଗୋଦାଂ ବନ୍ଦେ ଶ୍ରୀ ବନ୍ଦେ ନାୟିକାମ୍ ॥

ଶ୍ରୀ ରାମନାଥ ଜିଲ୍ଲାର ପ୍ରଖ୍ୟାତ ଶ୍ରୀବିଲ୍ଲିପୁତ୍ତୁରମରେ ଶ୍ରୀ ବିଷ୍ଣୁଚିତ୍ତ ବାପରିୟଆଲବାର ନାମକ ଶ୍ରୀ ଆଲବାରଙ୍କ ପୁତ୍ରୀ ରୂପେ ସ୍ୱୟଂ ମହାଲକ୍ଷ୍ମୀ ପ୍ରକଟ ହୋଇଥିଲେ ॥

(ଦ୍ୱାଦଶ ଆଲବାର ପ୍ରସଂଗରେ ବିସ୍ତୃତ ଆଲୋଚନା ହୋଇଛି ।)



# ବଳରାମ ଦାସ

ବଳରାମ ଦାସଙ୍କ ଜନ୍ମ ଗୋଟିଏ ଗଣନା ଆଧାରରେ ଖ୍ରୀ.ଅ ୧୪୮୪, ଡଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତାନୁସାରେ ଖ୍ରୀ.ଅ. ୧୪୭୨ ଅନ୍ୟ ଏକ ଗଣନା ଆଧାରରେ ଖ୍ରୀ.ଅ. ୧୪୭୩ ଏରବଂଗ ପୁରୀଠାରେ ହୋଇଥିଲା । (୧) ସେ ପିତା ସୋମନାଥ ମହାପାତ୍ର ଏବଂ ତା' ମାତା ମନୋମାୟା ବା ମହାମାୟାଙ୍କ କୋଳମଣ୍ଡନ କରିଥିଲେ । ପଞ୍ଚ ସଖାଙ୍କ ମଧ୍ୟରେ ସେ ବୟୋଜ୍ୟେଷ୍ଠଥିବା ଗବେଷକମାନେ ବ୍ୟକ୍ତ କରିଛନ୍ତି । ସୋମନାଥ ମହାପାତ୍ର ପ୍ରତାପରୁଦ୍ରଙ୍କ ଶାସନକାର୍ଯ୍ୟରେ ଜଣେ ମନ୍ତ୍ରୀ ଭାବେ ନିଯୁକ୍ତ ହୋଇଥିଲେ । 'ଦାଢ଼୍ୟତାଭକ୍ତି'ରେ ସେ ପୁରୀ ନିବାସୀ ଥିବା ସୂଚିତ ହୋଇଛି ।

ନାମତା ବଳରାମଦାସ । ମହନ୍ତ ସୋମନାଥ ଶିଷ୍ୟ
ପୁରୁଷୋତ୍ତମ ତା'ର ଘର । କୁଟୁମ୍ବ ଘେନି ସଂଗତର ।
(ଦାଢ଼୍ୟତାଭକ୍ତି , ଭକ୍ତ କବି ରାମଦାସ)

ବଂଗୀୟ ବୈଷ୍ଣବ କବି ଦେବକୀ ନନ୍ଦନ ବଳରାମ ଦାସଙ୍କ ନାମ ଉଲ୍ଲେଖ କରିଛନ୍ତି-

ବନ୍ଦ ଉଡ଼ିୟା ବଳରାମ ଦାସ ମହାଶୟ
ଜଗନ୍ନାଥ ବଳରାମ ଯାର ବଶ ହୟ ।।

ବଳରାମଙ୍କର ପୀଠସ୍ଥାନ ହେଉଛି ପୁରୀ ନିକଟବର୍ତ୍ତୀ ସମଗରା ପାଟ । ସେହି ପୀଠ ଆଜି ବିଲୁପ୍ତ ହୋଇଯାଇଛି । ମାତ୍ର ପୁରୀର ସମୁଦ୍ର କୂଳରେ ଯେଉଁ ଗୁମ୍ଫାଟିରେ ବଳରାମ ସାଧନା କରୁଥିଲେ ସେ ଗୁମ୍ଫାଟି ଏବେ ମଧ୍ୟ ରହିଛି । ସେହିଠାରେ ଧ୍ୟାନ କରି ସେ ଜଗନ୍ନାଥଙ୍କ ରଥକୁ ବଡ଼ଦାଣ୍ଡରେ ଅଟକାଇ ଦେଇଥିଲେ । ପୁରୀ ଜିଲ୍ଲାର ନିମାପଡ଼ାଠାରୁ କିଞ୍ଚିତ୍ ଦୂରରେ କୁଶଭଦ୍ରା ନଦୀକୂଳରେ ବଳରାମ ଦାସଙ୍କର ଗାଦି ଅଛି । ବଳରାମ ସେହିଠାରେ ଦେହ ରକ୍ଷା କରିଥିଲେ । ସେହିଠାରେ ତାଙ୍କ ସମାଧି ମନ୍ଦିର ଅଛି ।

ସାରଳାଦାସଙ୍କ ପରି ବଳରାମ ନିଜକୁ ଶୂଦ୍ରକୁଳ ଜାତି ଶୂଦ୍ରକବି ଭାବରେ ଆଖ୍ୟା ତ କରିଛନ୍ତି । ସୁନ୍ଦରାକାଣ୍ଡ ଶେଷଭାଗରେ କବି ନିଜର ପରିଚୟ ଦେବାକୁ ଯାଇ କହିଛନ୍ତି ଯେ ସେ ତତ୍‌କାଳୀନ ଗଜପତି ପ୍ରତାପରୁଦ୍ର ଦେବ (୧୪୯୭-୧୫୩୮)ଙ୍କର ମନ୍ତ୍ରୀ ସୋମନାଥ ମହାପାତ୍ରଙ୍କର ପୁତ୍ର ଥିଲେ ।

ବଳରାମ ଦାସ ଓଡ଼ିଆ ରାମାୟଣର ରଚୟିତା ଭାବେ ସର୍ବପ୍ରଥମ ପରିଚିତ ହୋଇଅଛନ୍ତି । ଏହା ହିଁ ତାଙ୍କର ଶ୍ରେଷ୍ଠକୃତି । ଅନ୍ୟ ବହୁ ପ୍ରାଚୀନ କବିମାନଙ୍କ କୃତି ପରି ଏହାଙ୍କ ବହୁ କୃତି ଏବେ ବି ଅପ୍ରକାଶିତ । ଗୁପ୍ତଗୀତା, ବେଦାନ୍ତ ସାର ଗୁପ୍ତ ଗୀତା, ଭଗବତ୍ ଗୀତାର ଓଡ଼ିଆ ଅନୁବାଦ, ବିରାଟଗୀତା, ବ୍ରହ୍ମାଣ୍ଡ ଭୂଗୋଳ, ମଥରକୋଷ ଗୀତା, ବଟଅବକାଶ, ଭାବସମୁଦ୍ର, ଦାପ୍ତିସାର ଗୀତା, ମୃଗୁଣୀସ୍ତୁତି, ଜ୍ଞାନଉଜ୍ଜ୍ୱଳମଣି ଗୀତା, କାନ୍ତ କୋଇଲି, ବ୍ରହ୍ମଜ୍ଞାନ ଏକାକ୍ଷର, ବଉଳା ଅଧ୍ୟାୟ, ବ୍ରହ୍ମଗୀତା, ଶ୍ରୀରୋଢ଼ା, ଲକ୍ଷ୍ମୀପୁରାଣ, କମଳଲୋଚନ ଚଉତିଶା ପ୍ରଭୃତି ତାଙ୍କ ରଚନା ଅନ୍ତର୍ଗତ । ରାମାୟଣର ଚରୟିତା ଭାବେ ସେ ସ୍ୱତଃ ପ୍ରସିଦ୍ଧ କିନ୍ତୁ ତାଙ୍କ ଲକ୍ଷ୍ମୀପୁରାଣ ଏବଂ କମଳଲୋଚନ ଚଉତିଶା ପାଇଁ ସେ ପ୍ରତ୍ୟେକଟି ଓଡ଼ିଆ ପରିବାରରେ ସୁପ୍ରତିଷ୍ଠିତ ।

ଜଗମୋହନ ରାମାୟଣ- ବଳରାମ ଦାସଙ୍କ ରାମାୟଣ ଓଡ଼ିଶାର ଅତିଲୋକ ପ୍ରିୟ । ପୁରୀ ଶ୍ରୀଜଗନ୍ନାଥ ମନ୍ଦିରର ଜଗମୋହନରେ ବସି ତାହା ରଚନା କରିଥିବାରୁ ତାହା ଜଗମୋହନ ରାମାୟଣ ଭାବରେ ପରିଚିତ । ସାରଳା ମହାଭାରତ ପରି ଏହା ଦାଣ୍ଡି ବୃତ୍ତିରେ ଲିଖିତ ହୋଇଥିବାରୁ ତାହାକୁ ଦାଣ୍ଡିରାମାୟଣ କୁହାଯାଏ ।

କବି ସଂସ୍କୃତ ରାମାୟଣର ଅନୁବାଦ କରି ନାହାନ୍ତି । ସିଏ ଆପଣାର ସଂପୂର୍ଣ୍ଣ କବିତ୍ୱ ପ୍ରତିଭା ଖଟାଇ ରାମକଥାର ଏକ ଅଭିନବ କାବ୍ୟୋପନ୍ୟାସ ବାଢ଼ି ଦେଇଛନ୍ତି । ଭକ୍ତ ଓ କବି ଉଭୟ ମିଶି ସେହି କଥାକାବ୍ୟଟିକୁ ରଚନା କରିଛନ୍ତି ।

ପଣ୍ଡିତ ଗୋପୀନାଥ ନନ୍ଦ ପ୍ରଥମେ ଏହାର ଆଲୋଚନା ମୁକୁର ପତ୍ରିକାରେ ପ୍ରକାଶ କରିଥିଲେ, କିନ୍ତୁ ତାହା ଅସଂପୂର୍ଣ୍ଣ ଅବସ୍ଥାରେ ରହିଗଲା ।

ମୂଳ ବାଲ୍ମୀକି ରାମାୟଣର ବିଷୟ ବସ୍ତୁର ବ୍ୟତିକ୍ରମ ଦାଣ୍ଡିରାମାୟଣରେ ଦେଖିବାକୁ ମିଳେ । ଅଧିକାଂଶ ସ୍ଥଳରେ ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କ ବର୍ଣ୍ଣନା ଓ ତାଙ୍କ ମହାତ୍ମ୍ୟ କୀର୍ତ୍ତନ ହୋଇଛି । ପ୍ରାରଂଭ ବନ୍ଦନା ଦେଖନ୍ତୁ-

ବନ୍ଦଇ ଜଗନ୍ନାଥ କମଳା ଦେବୀର ପତି
ନୀଳଗିରି ସୁନ୍ଦର ଅପୂର୍ବ ଦିବ୍ୟ ମୂର୍ତି ।
ସୁନ୍ଦର ଶ୍ରୀମୁଖ ଯେ ନୀଳଗିରି ଆଭା
ଜାଣି ପଟାନ୍ତର କଳାମେଘ ପ୍ରଭା ।
ନୟନ ଯୁଗଳ କି ଶରଦର ଶଶି
ଜଗତ ଜନ ହୃଦରେ ଅଛଇ ସେ ବସି ।

ଓଡ଼ିଶାର ତତ୍‌କାଳୀନ ସମର ବିଭବ ରାଜା, ରାଜ୍ୟ, ଓଡ଼ିଶାମାନଙ୍କର ବେଶଭୂଷା, ଚାଲିଚଳନ, ଖାଦ୍ୟପେୟ, ପର୍ବ- ପର୍ବାଣି ପ୍ରଭୃତିର ବର୍ଣ୍ଣନା, ପ୍ରକାରାନ୍ତରେ ଷୋଡ଼ଶ ଶତାବ୍ଦୀ ଓଡ଼ିଶାର ସାମାଜିକ ଇତିହାସ ରାମାୟଣରେ ଦେଖିବାକୁ ମିଳେ । ସାରଳା ମହାଭାରତରେ ସମର ପ୍ରସଂଗରେ ବର୍ଣ୍ଣନା ଯେପିର ରହିଛି, ସେହି ପ୍ରକାର ବର୍ଣ୍ଣନା ବଳରାମ ଦାସଙ୍କ ରାମାୟଣରେ ଦେଖିବାକୁ ମିଳେ । ଗଡ଼ ନିର୍ମାଣ ବିଧି, ଅସ୍ତ୍ରମାନଙ୍କର ନାମକରଣ ପ୍ରଭୃତିରୁ ସମର କୁଶଳୀ ଜାତିର ପରିଚୟ ସୂଚିତ ହୋଇଥାଏ ।

ଅରଣ୍ୟର ବିବିଧ ପଶୁ, ପକ୍ଷୀ ତଥା ବୃକ୍ଷମାନଙ୍କର ଦୀର୍ଘ ସାରେଣୀ ପ୍ରସ୍ତୁତ କରିଛନ୍ତି । ଏଥିରୁ ତାଙ୍କ ପ୍ରକୃତି ସମ୍ବନ୍ଧରେ ପ୍ରତ୍ୟେକ୍ଷ ଜ୍ଞାନର ପ୍ରମାଣ ମିଳେ । ଅରଣ୍ୟ କାଣ୍ଡରେ ବହୁ ପୁଣ୍ୟମୟ ତୀର୍ଥର ବର୍ଣ୍ଣନା ଯେପରି- ଚନ୍ଦ୍ରାଭାଗା ଓ କୋଣାର୍କ, ରାମଚଣ୍ଡୀ ମନ୍ଦିର, ଏକାମ୍ରତୀର୍ଥ; ବିନ୍ଦୁ ସରୋବର, ଚିତ୍ରୋତ୍ପଳା ତଟସ୍ଥ ବିଷ୍ଣୁନାଥ ଦର୍ଶନ, ଶ୍ରୀକ୍ଷେତ୍ରରେ ଋଷିକୁଲ୍ୟା ନଦୀରେ ସ୍ନାନତର୍ପଣାଦି କ୍ରିୟାର ବର୍ଣ୍ଣନା ରହିଛି ।

ରାମୟଣ ରଚନା ପ୍ରସଂଗରେ କବିଙ୍କ ଉକ୍ତି ଲଙ୍କାକାଣ୍ଡରୁ ଦେଖନ୍ତୁ-

ଜଗନ୍ନାଥ ମହାପାତ୍ର କୁଳେ ସେବିତ
ଯହୁଂ ପିତା ହୋଇଲା ପ୍ରଭୁରେ ଭଗତ ।
ତେଣୁ ଜଗନ୍ନାଥ ଯେ ଦୟା ଆମ୍ଭଙ୍କୁ କଲେ
ରାମାୟଣ ଗ୍ରନ୍ଥ ମୋ ମୁଖରୁ ଉତୁରିଲେ ।
ମୋହର ମୁଖେ ଯହୁଁ ସାରଦା ବିଜେ କରି
ଶ୍ରୀରାମ ଚରିତ ଯେ କହିଲି ବିସ୍ତାରି ।......

\+ + + + +

କବି ବଳରାମ, ଭକ୍ତ ସନ୍ଥ ବଳରାମ ଅନ୍ୟ ଚାରି ସଖାଙ୍କ ପରି ଜଗନ୍ନାଥଙ୍କୁ ଅତି ଆପଣାର ଏକ ପ୍ରତୀକ ଭାବେ ଗ୍ରହଣ କରିଥିଲେ । ଜଗନ୍ନାଥଙ୍କ ଭିତରେ ଯାବତୀୟ ଦେବଦେବୀଙ୍କୁ ଦର୍ଶନ କରୁଥିଲେ, ଯାବତୀୟ ଦେବ ଦେବୀଙ୍କ ମଧ୍ୟରେ ଜଗନ୍ନାଥଙ୍କୁ ଦେଖୁଥିଲେ । ଭକ୍ତି ସହଜ ହେଲେ ଠିକ୍ ଏହିପରି ହିଁ ହୋଇଥାଏ । ସନ୍ଥର ଭକ୍ତି ଠିକ୍ ଏହିପରି ହିଁ ହୋଇଥାଏ । ସେହିପରି ଏକ ସହଜ ଭକ୍ତି ଦ୍ୱାରା ପ୍ରେରିତ ହୋଇ ବଳରାମ ଦାସ ରାମଙ୍କୁ ଆଣି ଜଗନ୍ନାଥଙ୍କ ପାଖରେ ହାବୁଡ଼ାଇ ଦେଇଛନ୍ତି । ବନବାସ ସମୟରେ ରାମଚନ୍ଦ୍ର ଜଗନ୍ନାଥ ଦର୍ଶନ କରିବାକୁ ବି ଆସିଛନ୍ତି । (ସନ୍ଥ ଭକ୍ତି ସାହତ୍ୟ- ଚିତ୍ତରଂଜନ ଦାସ- ପୃ:୨୭୫)

ବଳରାମ ଦାସଙ୍କ ସମ ସାମୟିକ କବି ହେଉଛନ୍ତି କୃତ୍ତିବାସ ଯେ ବଂଗଳାରେ ରାମାୟଣ ରଚନା କରିଥିଲେ । ବଳରାମ ଦାସଙ୍କ ଜନ୍ମ ୧୪୭୩ ଖ୍ରୀ.ଅ ବା ୧୪୮୨ ଆଡ଼କୁ ହୋଇଥିବାର କଥା ଯଦି ଠିକ୍ ହୁଏ ଓ ସେ ୩୦ ବର୍ଷ ବୟସରେ ଯଦି ରାମାୟଣ ଲେଖିଛନ୍ତି, ତେବେ ଭକ୍ତ କବି ବଳରାମ ଦାସ ତୁଳସୀ ଦାସଙ୍କର ବହୁ ପୂର୍ବରୁ ଓଡ଼ିଆ ରାମାୟଣ ରଚନା କରିଥିଲେ । କାରଣ ଭକ୍ତ କବି ତୁଳସୀ ଦାସଙ୍କର ଜନ୍ମ ସମୟ ହେଉଛି ଖ୍ରୀ ୧୫୩୨ ଓ ସେ ଖ୍ରୀ.ଅ ୧୫୭୪ ତାଙ୍କର ରାମ ଚରିତ ମାନସ ରଚନା କରିବା ନିର୍ଣ୍ଣିତ ହୋଇଛି । (କୋଣାର୍କ- ପଞ୍ଚସଖା ବିଶେଷାଙ୍କ ପୃ:୪୦୧/୪୦୨)

ଭଗବତ୍ ଗୀତା- ମହାଭାରତ ଭୀଷ୍ମ ପର୍ବ ଅନ୍ତର୍ଗତ ଭଗବତ୍ ଗୀତା (୨୫-୪୩ ଅଧ୍ୟାୟ)କୁ କିନ୍ତୁ ସାରଳା ଦାସ ମହାଶୟ ସାଧାରଣଙ୍କ ଅବୋଧ ଆଧ୍ୟାତ୍ମିକାଦି ଜ୍ଞାନ ବହୁଳ ଭଗବତ୍ ଗୀତାକୁ ତ୍ୟାଗ କରି ଅଛନ୍ତି । "ଶ୍ରୀକୃଷ୍ଣ ଅର୍ଜୁନକୁ ଭଗବତ୍ ଗୀତା କହିଲେ" ଏତିକି ମାତ୍ର ସୂଚନା କରି ଅଛନ୍ତି । ×××× କିନ୍ତୁ ଛାପା ପୁସ୍ତକରେ ଭଗବତ୍ ଗୀତାର ସୂଚନା ଓ ଯୁଧିଷ୍ଠିରଙ୍କ ଶତ୍ରୁ ଚମୂ ପ୍ରତି ଗମନର ମଧ୍ୟରେ ରାଜା କୃଷ୍ଣ ସିଂହକୃତ ଅବିକଳାନୁବାଦ ଗୀତା କିଞ୍ଚିତ ପରିବର୍ତ୍ତନ ସହ ପ୍ରକ୍ଷିପ୍ତ ରହିଅଛି । ++ ସାରଳାଦାସଙ୍କ ପରି ବଂଗ ଭାରତ କର୍ତ୍ତା କାଶୀରାମ ଦାସ, ହିନ୍ଦୀ ଭାରତକର୍ତ୍ତା ସବଳ ସିଂହ ଓ ତୈଲିଙ୍ଗ ଭାରତ କର୍ତ୍ତା ତିକ୍କନା ସୋମଯାଜୀ ପ୍ରଭୃତି ମହୋଦୟମାନେ ଭଗବତ୍ ଗୀତାର ଅନୁବାଦ ଲେଖି ନାହାଁନ୍ତି ।" -(ଶ୍ରୀଭାରତ ଦର୍ପଣ- ପଣ୍ଡିତ ଗୋପୀନାଥ ନନ୍ଦ- ପୃ: ୧୫୨) । (ରାଧାରମଣ ପୁସ୍ତକାଳୟ ମହାଭାରତରେ ଅଠର ଅଧ୍ୟାୟର ଅନୁବାଦ ରହିଛି)

ବଳରାମ ଦାସ ଭଗବତ୍ ଗୀତାର ଓଡ଼ିଆ ଅନୁବାଦ ବିଭିନ୍ନ ଛନ୍ଦରେ କରିଥିଲେ । ସଂଭବତଃ ଓଡ଼ିଆ ଭାଷାରେ ଭଗବତ୍ ଗୀତାର ସର୍ବପ୍ରଥମ ଅନୁବାଦ । ବିଭିନ୍ନ ଅଧ୍ୟାୟରେ ସେ ଭାରତ ବାଣୀ, ରେଢ଼ାବାଣୀ, ବୋଲିବାଣୀ, ଜଳକ୍ରୀଡ଼ାବାଣୀ, ତାଣ୍ଡବବାଣୀ ଓ କଳସାବାଣୀର ଅନୁସରଣ କରିଛନ୍ତି । ଗୀତା ଶେଷରେ 'ଗୀତାବିକାଶ' ରହିଛି । ଏହି ଅବକାଶରେ ଗୀତାର ପ୍ରଶସ୍ତି ଗାନ କରାଯାଇଛି । ବଳରାମ ଦାସ ଗୀତାକୁ 'ପଞ୍ଚମ ବେଦ' ବୋଲି କହିଛନ୍ତି ।

ଗୀତାର ଅନୁବାଦ ସହିତ ଏକ କାହାଣୀ ସଂଯୁକ୍ତ ହୋଇଛି । ଏହି ବ୍ରହ୍ମବିଦ୍ୟା ବ୍ରାହ୍ମଣଙ୍କର ଏକଚାଟିଆ ବୋଲି ତତ୍‌କାଳୀନ ଉନ୍ନତ ବ୍ୟକ୍ତି ବିଶେଷଙ୍କର ଏକ ବଦ୍ଧମୂଳ ଧାରଣା ଥିଲା । ଏହି ଧାରଣା ମୂଳରେ ଭକ୍ତ, ଜ୍ଞାନୀ, ସନ୍ଥ ବଳରାମ ଶକ୍ତ ଆଘାତ ଦେଇଛନ୍ତି । ବ୍ରାହ୍ମଣ୍ୟ ଅର୍ଗଳ ମଧ୍ୟରୁ ଗୀତାକୁ ଓଡ଼ିଆ ଭାଷାରେ ଅନୁବାଦ କରି ସର୍ବସାଧାରଣଙ୍କ ନିକଟରେ ପରଷି ଦେବାର ଦୁର୍ବାର ପ୍ରୟାସ କରିଛନ୍ତି । 'ଶ୍ରୀଜଗନ୍ନାଥ ସରଣ ମୁଁ ବଳରାମ ଦାସ'ରେ ଗୀତାର ଅନୁବାଦ ସମାପ୍ତ ହୋଇଛି ।

ବଳରାମ ଦାସ ସଂସ୍କୃତ ଭାଷାରେ ନିଜର ବ୍ୟୁତ୍‌ପତ୍ତି ସହିତ ଦର୍ଶନ ଶାସ୍ତ୍ରରେ ଯେ ଅତ୍ୟନ୍ତ ଧୂରୀଣ ଥିଲେ ତାଙ୍କ ଗୀତା ଅନୁବାଦରୁ ଜଣାଯାଏ- ଗୋଟିଏ ଦୃଷ୍ଟାନ୍ତ ଦେଖନ୍ତୁ-

ଅହମାତ୍ମା ଗୁଡ଼ାକେଶ ସର୍ବଭୂତାଶୟ ସ୍ଥିତଃ ।  
ଅହମାଦିଶ୍ଚ ମଧ୍ୟଂ ଚ ଭୂତାନାଂ ମନ୍ତ ଏବ ଚ ॥୨୦॥  
ଆଦିତ୍ୟାନାଂ ମହଂ ବିଷ୍ଣୁ ଜ୍ୟୋତିଷାଂ ରବି ରଂଶୁମାନ୍  
ମରିଚି ମରୁତା ମସ୍ମି ନକ୍ଷତ୍ରାଣାଂ ମହଂ ଶଶୀ ॥୨୧॥  
ବେଦାନାଂ ସାମବେଦୋଽସ୍ମି ଦେବାନା ମସ୍ମି ବାସବଃ  
ଇନ୍ଦ୍ରିୟଣାଂ ମନ ଶ୍ଚାସ୍ମି ଭୂତାନା ମସ୍ମି ଚେତନା ॥୨୨॥

× × × × × ×

ଭୋ ଗୁଡ଼ାକେଶ ମୁଁ ସବୁ ପ୍ରାଣୀଙ୍କର  
ଅନ୍ତର୍ଯାମୀ ଆତ୍ମା ଅଟଇ ନିକର ।  
ମୁହିଂ ସେ ହାଦ ଆଦି ଅନ୍ତ ମଧ୍ୟ  
ତୋହର ଆଗେ କହୁ ଅଛି ସାଧ ॥୨୦॥

ଆଦିତ୍ୟଙ୍କରେ ବିଷ୍ଣୁ ବୋଲି ଯେହୁଂ
ଆଦିତ୍ୟ ମଧ୍ୟେ ମୁଁ ଅଟଇ ସେହୁ ।
ଜ୍ୟୋତିମାନଙ୍କର ସୂର୍ଯ୍ୟ ହିଁ ମୁହିଁ
ପବନ ମଧ୍ୟେ ମରୁତ ବୋଲାଇ ॥୨୧॥
ନକ୍ଷତ୍ରମାନଙ୍କରେ ମୁହିଁ ସୋମ
ବେଦମାନଙ୍କ ମଧ୍ୟେ ମୁଁ ସାମ ।
ଦେବତାମାନଙ୍କରେ ମଘବାନ
ଇନ୍ଦ୍ରିୟମାନଙ୍କ ମଧ୍ୟେଂ ସୁମନ
ପ୍ରାଣୀମାନଙ୍କ ଚେତନା ଅଟଇ ॥୨୨॥

× × × × ×

ସାରଳା ଦାସଙ୍କଠାରୁ ପଞ୍ଚସଖା ପର୍ଯ୍ୟନ୍ତ ଓଡ଼ିଆ ସାହତ୍ୟରେ ଅନୁବାଦର ଯୁଗ । ସଂସ୍କୃତ ଜାଣି ନଥିବା ସାଧାରଣ ଲୋକଙ୍କ ପାଇଁ ବଳରାମ ଦାସ ରାମାୟଣ ଓ ଗୀତାର ଅନୁବାଦ କରି ଭାଷା ସାହିତ୍ୟର ଅଶେଷ ଉପକାର କରିଅଛନ୍ତି । ଭାବ ସମୁଦ୍ର- ଭଗବାନଙ୍କ ପ୍ରତି ଭକ୍ତିର ଯେଉଁ ଅନାବିଳ ଆତ୍ମ ନିବେଦନ ତାହା ଏହି ଗ୍ରନ୍ଥ ବର୍ଣ୍ଣିତ । ଉକ୍ତ ଗ୍ରନ୍ଥରେ ୭୪୮ଟି ପଦ ରହିଛି । ପ୍ରତି ପଦରେ ଭକ୍ତି ଧାରା ଓତଃପ୍ରୋତ । କବି ବିଭିନ୍ନ ପୌରାଣିକ ଦୃଷ୍ଟାନ୍ତ ମାନ ଦେଇ ଜଗନ୍ନାଥଙ୍କୁ ଧିକ୍କାର କରିଛନ୍ତି । କିନ୍ତୁ ତାହା ମଧରେ କବିଙ୍କର ଏକାତ୍ମତା ଏବଂ ଭକ୍ତି ଭାବ ଉଜ୍ଜ୍ୱଳ ହୋଇ ଫୁଟିଉଠିଛି । ବାଲି ରଥରେ ବିଜେ ହୋଇଛନ୍ତି ଶ୍ରୀଜଗନ୍ନାଥ, ଫଳରେ ନନ୍ଦିଘୋଷ ରଥ ଚାଲିଲା ନାହିଁ । ସେହି ପ୍ରସଙ୍ଗ କବିଙ୍କ ବର୍ଣ୍ଣନାରେ ଦେଖନ୍ତୁ ।

ନନ୍ଦିଘୋଷ ରଥ ଦେଲୁ ଘଉଡ଼ି, କେ ଓଟାରିବ ତୋ ରଥ ଦଉଡ଼ି
ନାଥ ତୁ ମୋତେ ନେଲେ ସିନା ଯିବୁ, ନୋହିଲେ ସେହିଠାରେ ରହିଥିବୁ
ହରିହୋ
ଧରିଛି ଚିତ୍ତେ ତୁ ଯିବୁ କେମନ୍ତେ, ଦାସ ବଳରାମ ଭରସି ତୋତେ.... ।
କେତେକ ଅସୂୟା ପରବଶ ବ୍ରାହ୍ମଣମାନଙ୍କ ଦ୍ୱାରା ବିତାଡ଼ିତ ହେଲେ-
ଗଳେ ଅନେକ ଧକ୍କା ଦେଲେ । ରଥରୁ ପେଲି ପକାଇଲେ ।
(ଦାର୍ଢ୍ୟତା ଭକ୍ତି- ରାମ ଦାସ)

ଅଭିମାନରେ ବଳରାମ ବାଲିରେ ତିନିରଥ ନିର୍ମାଣ କରି ତହିଁରେ ପ୍ରଭୁ ବିଜେ ହେବା ପାଇଁ ଆକୁଳ ନିବେଦନ କଲେ । ଅଶ୍ରୁର ବନ୍ୟା ତାଙ୍କ ନେତ୍ରରେ । ପ୍ରଭୁ ଶ୍ରୀଜଗନ୍ନାଥ ବାଲି ରଥରେ ବିଜେ କରିବାରୁ ନନ୍ଦିଘୋଷ ଚାଲିଲା ନାହିଁ । ପରିଛା ଆଜ୍ଞାରେ ଉପାସ ଭୋକରେ ପଡ଼ିଥିବା ବଳରାମ ଦାସଙ୍କୁ ଅଣାଇବାରୁ ରଥ ଟଣାହେଲା । ରାଜା ପାତ୍ରମନ୍ତ୍ରୀ ପ୍ରଭୃତିଙ୍କ ସହ ତାଙ୍କୁ ଶଙ୍ଖୋଳି ଆଣିଲେ ।

ମନର ଗଭୀର ଅଭିମାନ କିପରି ଆକୁଳ ଭାଷା ମାଧ୍ୟମରେ ପରିପ୍ରକାଶ ହୋଇଛି, ତାହା ଯେକୌଣସି ପାଠକ ପ୍ରାଣକୁ ଆନ୍ଦୋଳିତ କରିବ ।

ମହାଭାଗ୍ୟବନ୍ତ ଜ୍ଞାନୀ ବୋଲାଉ । ନିଜ ମଉଳାଣୀ ସଂଗତେ ଯାଉ ।
ନାଥତୁ ଶଇଳ ଠାକୁର ହୋଇ । ଏଡ଼େ ପ୍ରଘଟ ଅଟଇ ତୋ ଦେହୀ ।।
ହରିହୋ........

ବ୍ରହ୍ମାଣ୍ଡ ଭୂଗୋଳ- ଏହି ଗ୍ରନ୍ଥରେ ଭାଗବତ ଉପାଖ୍ୟାନଗୁଡ଼ିକର ତାତ୍ତ୍ୱିକ ଅର୍ଥ ବ୍ୟାଖ୍ୟା କରାଯାଇଛି । ପଣ୍ଡିତ ନୀଳକଣ୍ଠ ଏହି ବିଶେଷ ଅର୍ଥରେ 'ଅର୍ଥ ଭାଗବତ' ବୋଲି ମଧ୍ୟ କୁହାଯାଇପାରେ ବୋଲି କହିଛନ୍ତି । ଜଗନ୍ନାଥ ଦାସଙ୍କ ଅର୍ଥ କୋଇଲି ପରି ଉକ୍ତ ଗ୍ରନ୍ଥରେ ପିଣ୍ଡକୁ ସକଳ ବ୍ରହ୍ମାଣ୍ଡର ଆଧାର ବୋଲି କୁହାଯାଇଛି ।

କଣ୍ଠ କମଳୁ ଶିଖାଯାଏ । ସ୍ୱର୍ଗ ବୋଲିଣ ବେଦ କହେ ।।
କଣ୍ଠରୁ କଟିଯାଏ ହୋଇ । ମର୍ତ୍ତ୍ୟ ବୋଲିଣ ବେଦ କହି ।।
କଟିରୁ ପାଦ ଯାଏ ପୁଣ । ପାତାଳ ବୋଲି ହୋ ଅର୍ଜୁନ ।।

ଲକ୍ଷ୍ମୀପୁରାଣ- ଓଡ଼ିଶାରେ ପ୍ରତି ଘରେ ଘରେ ଦେବ ପୂଜାର୍ଚ୍ଚନା ପାଇଁ ଅନ୍ୟ କିଛି ପୁସ୍ତକ ଥାଉ କି ନ ଥାଉ 'ଲକ୍ଷ୍ମୀପୁରାଣ' ଏକ ନିଶ୍ଚିତ ଥିବା କୁହାଯାଇପାରେ । ଓଡ଼ିଆ ଘରର ମହିଳାମାନଙ୍କର ଚାଲି ଚଳଣି, କର୍ତ୍ତବ୍ୟ- ଅକର୍ତ୍ତବ୍ୟ, ସ୍ନାନ, ଶୌଚ, ନୀତି ନିୟମର ବିଧାନ ବର୍ଣ୍ଣିତ ନିଷ୍ଠାରେ ସେହି ନିୟମ ପାଳନରେ ଲକ୍ଷ୍ମୀ ନିଶ୍ଚଳା ହୋଇ ବିରାଜିତ ହେବେ । ଲକ୍ଷ୍ମୀ, ଐଶ୍ୱର୍ଯ୍ୟ, ସଂପଦ, ଶ୍ରୀ ତ ସମସ୍ତଙ୍କର କାମ୍ୟ । ତେଣୁ ସେଥିପାଇଁ ନିଜକୁ ସାଧନା, ତପସ୍ୟା, ନିଷ୍ଠା, ନିୟମ ଏବଂ ସାମାଜିକ କର୍ତ୍ତବ୍ୟ କରଣୀୟ ।

ଶ୍ରୀୟା ଚଣ୍ଡାଲୁଣୀ ନଗ୍ର ବାହାରେ ତା' ଘର
ପ୍ରତିଦିନ ଖରକଇ ଗୁଣ୍ଡିଚା ନବର ।।

ଦେବ ଆଶୀର୍ବାଦ ପାଇବାକୁ ହେଲେ ଦେବାଳୟ ସଫା ସୁତୁରା କରିବା ଆମର କର୍ତ୍ତବ୍ୟ । ଜନସାଧାରଣଙ୍କ ସେବା ତହିଁରେ ସଂପନ୍ନ ହୋଇଥାଏ ଏବଂ ଦୈବୀ ଆଶୀର୍ବାଦର ମାଧ୍ୟମ ହୋଇଥାଏ । ଭକ୍ତ କବି ମନୁଷ୍ୟ (ଭକ୍ତ) ମାତ୍ରେ ଜାତିବର୍ଣ୍ଣ ନିର୍ବିଶେଷରେ ପ୍ରଭୁ କରୁଣା ଲାଭର ଭାଜନ । ଏହା ହିଁ ପ୍ରମାଣ କରିଛନ୍ତି । ପୁଣି ଲକ୍ଷ୍ମୀଙ୍କ ଦ୍ରୋହ କରିବାରୁ ଜଗନ୍ନାଥ, ବଳରାମ ଲକ୍ଷ୍ମୀଛଡ଼ା ହୋଇ ବ୍ୟାକୁଳ ହୋଇଛନ୍ତି । ନାରୀ- ପୁରୁଷକୁ ନେଇ ସଂସାର । କେବଳ ନାରୀ କିମ୍ବା ପୁରୁଷ ସଂସାର କରି ନ ପାରନ୍ତି । ବେଶୀ ଭାଗ ହଇରାଣ ପୁରୁଷକୁ ଭୋଗୀବାକୁ ହୁଏ, ଏହା ହିଁ ପ୍ରମାଣିକ ।

ପୁନଃ ଛୁଆଁ- ଅଛୁଆଁ ଭେଦ- ଉନ୍ନତ ସମାଜ ଗଠନ ପାଇଁ ପ୍ରୟୋଜନ । ଏହାର ଆଦର୍ଶ ହୋଇଛି ଶ୍ରୀମନ୍ଦିର, ଯେଉଁଠି ବ୍ରାହ୍ମଣ- ଚଣ୍ଡାଳର ଭେଦ ନାହିଁ ।

ଅନ୍ନ ଖାଇ ସର୍ବେ ମୁଣ୍ଡେ ପୋଛୁଥିବେ ହସ୍ତ
ତେବେ ବଡ଼ ଦେଉଳକୁ ଯିବି ଜଗନ୍ନାଥ ।।

ଜଗନ୍ନାଥ ଏଥିରେ ତଥାସ୍ତୁ କହିଲେ । ଜଗନ୍ନାଥ ହସି ହସି ଲକ୍ଷ୍ମୀଙ୍କ ହାତ ଧରି ବଡ଼ ଦେଉଳକୁ ଗଲେ ।

ବଳରାମ ଦାସଙ୍କ ଗ୍ରନ୍ଥ ମଧ୍ୟରୁ କେତେକ ପ୍ରକାଶିତ ଏବଂ ଅପର ଅଂଶ ଅପ୍ରକାଶିତ । ପୁନଃ ତାଙ୍କ ଗ୍ରନ୍ଥଗୁଡ଼ିକ ଆମେ ଆଖ୍ୟାନ ମୂଳକ ଓ ତତ୍ତ୍ୱମୂଳକ ଭେଦରେ ବିଭାଜନ କରିପାରିବା । ତାଙ୍କ କବିତ୍ୱ, ପାଣ୍ଡିତ୍ୟ, ଯୋଗମାର୍ଗୀ ରଚନା ସହିତ ଜଣେ ସନ୍ଥ ଭକ୍ତଙ୍କୁ ଆମେ ଦେଖିପାରିବା । ଯଥାର୍ଥରେ ତାଙ୍କ ସଂପର୍କରେ ଯେତେ ଆଲୋଚନା ହେବା କଥା ତାହା ହୋଇ ନାହିଁ । ସେହିପରି ସନ୍ଥ ସର୍ବଭାରତୀୟ ଭକ୍ତି ଧାରାର ଜଣେ ମୂର୍ଦ୍ଧନ୍ୟ ସାଧକ ଏଥିରେ ସନ୍ଦେହ ନାହିଁ ।।



# ଭକ୍ତ କବି ଜଗନ୍ନାଥ ଦାସ

ଶ୍ରୀଜଗନ୍ନାଥ ଦାସ ୧୪୮୭ ଖ୍ରୀ.ଅ ଭାଦ୍ର ଶୁକ୍ଳ ଅଷ୍ଟମୀ (ରାଧାଷ୍ଟମୀ) ବୁଧବାର, ଅନୁରାଧା ନକ୍ଷତ୍ର ବୃଶ୍ଚିକଚନ୍ଦ୍ର ମଧ୍ୟାହ୍ନ ମାହେନ୍ଦ୍ର ମୁହୂର୍ତ୍ତରେ ଜନ୍ମଲାଭ କଲେ । ମାତା ପଦ୍ମାବତୀଦେବୀ ଏବଂ ପିତା ଭଗବାନ୍ ଦାଶଙ୍କ ଇପ୍‌ସିତ କାମନା ପ୍ରଭୁ ପୂର୍ଣ୍ଣ କଲେ । ଶ୍ରୀଜଗନ୍ନାଥଙ୍କ କୃପାରୁ ଜନ୍ମ ହୋଇଥିବାରୁ ମାତା ପିତା ଶିଶୁର ନାମ-ଜଗନ୍ନାଥ ରଖିଥିଲେ । ମହାପୁରୁଷଙ୍କର ସମସ୍ତ ଲକ୍ଷଣ ତାଙ୍କଠାରେ ରହିଥିଲା । ମାତ୍ର ବାରବର୍ଷ ବୟସ ସମୟରେ ପିତା ଏହାଙ୍କ ବିବାହ ଉଦ୍ୟମ କରିଥିଲେ । ସ୍ୱାଭାବିକ ଭାବେ ଆଧାତ୍ମ ପରାୟଣ ଜଗନ୍ନାଥ ଏ ପ୍ରସ୍ତାବକୁ ପତ୍ୟାଖ୍ୟାନ କଲେ । ସେ ସ୍ୱଭାବତଃ ଧୀର, ଶାନ୍ତ, ବିବେକୀ ଏବଂ ବିଦ୍ୱାନ ଥିଲେ । ଅତି କମ୍ ବୟସରେ ବେଦ, ବେଦାଙ୍ଗ, ଦର୍ଶନଶାସ୍ତ୍ର ଆଦି ଅଧ୍ୟୟନ କରି ଅସାମାନ୍ୟ ଜ୍ଞାନର ଅଧିକାରୀ ହୋଇଥିଲେ ।

ପନ୍ଦର ଷୋଳବର୍ଷ ବେଳକୁ ପିତୃ ବିୟୋଗ ଘଟିଲା । ଶ୍ରୀମନ୍ଦିରରେ ଭାଗବତ ପାଠ ବୃତ୍ତି ଗ୍ରହଣ କରି ମାତାଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ । ସଂସାର ପ୍ରତି ତୀବ୍ର ବୈରାଗ୍ୟ ଜାତ ହେବାରୁ ଭଗବତ୍ ଆରାଧନାକୁ ଜୀବନର ଏକମାତ୍ର ଧ୍ୟେୟ ରୂପେ ଗ୍ରହଣ କରି ଆଜୀବନ ବ୍ରହ୍ମଚାରୀ ରହିଥିଲେ । ତାଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ ଏବଂ ଜଗନ୍ନାଥ ଏକ ଓ ଅଭିନ୍ନ ।

ଆଜ୍ଞା ପ୍ରମାଣେ ସେ ଅଇଲେ । ଓଡ଼ିଶା ରାଜ୍ୟେ ଜନ୍ମ ହେଲେ ।
ନାମ କପିଳେଶ୍ୱର ପୁର । ଶାସନ ମଧ୍ୟେ ତାଙ୍କ ଘର ॥
ପୁରାଣ ପଣ୍ଡା ଭଗବାନ । ପଦ୍ମା ବୋଲି ତା' ପତ୍ନୀ ନାମ ।
ପିତାଙ୍କୁ ବିଭା ନାସ୍ତି କଲେ । ସକଳ ବିଦ୍ୟାୟେ ପଢ଼ିଲେ॥

ଯଜୁର୍ବେଦ ସାମବେଦକୁ । କଣ୍ଠସ୍ଥ କଲେକ ତାହାକୁ ।
କଳାପ ବର୍ଦ୍ଧମାନ ଦୁଇ । ରଖିଲେ ଜିହ୍ୱା ଅଗ୍ରେ ନେଇ ॥
ସକଳ ଶାସ୍ତ୍ରେ ପୂର୍ଣ୍ଣ ହେଲେ । ଭାରତ ସମଗ୍ର ପଢ଼ିଲେ ।
ଶ୍ରୀ ରାମାୟଣ ଗ୍ରନ୍ଥ ସାଧି । ଶ୍ରୀ ଭାଗବତେ ଦେଲେ ବୁଦ୍ଧି ॥
(ଶ୍ରୀଜଗନ୍ନାଥ ଚରିତାମୃତ, ଦିବାକର ଦାସ)

କିମ୍ବଦନ୍ତୀରୁ ଜଣାଯାଏ । ତାଙ୍କ ଜନନୀ ପଦ୍ମାବତୀ ଦେବୀ 'ହବିଷ୍ୟ' କରିବା ପାଇଁ କାର୍ତ୍ତିକ ମାସରେ ଶ୍ରୀମନ୍ଦିରକୁ ଯାଉଥିଲେ । ସେଠାରେ ଜନୈକ ପୁରାଣ ପଣ୍ଡାଙ୍କଠାରୁ ସଂସ୍କୃତ ଭାଗବତ ଶୁଣିଲାବେଳେ କୌଣସି ଏକ ପ୍ରସଂଗରେ ଅର୍ଥ ସ୍ପଷ୍ଟ ନହେବାରୁ ପୁରାଣ ପଣ୍ଡାଙ୍କୁ ତାହାର ଅର୍ଥ ପଚାରିଲେ । କିନ୍ତୁ ପୁରାଣ ପଣ୍ଡାଙ୍କ ଆକ୍ଷେପ-ଉକ୍ତି ତାଙ୍କୁ ଗଭୀର ଭାବେ ଆଘାତ କଲା । ଅନ୍ୟ କାହାରି ମତରେ ପୁରାଣ ଶ୍ରବଣ ପରେ ଦକ୍ଷିଣା ପାଇଁ ତାଙ୍କ ପାଖରେ କିନ୍ତୁ ଦେୟ ନଥିବାରୁ ପୁରାଣ ପଣ୍ଡାଙ୍କ ରୁକ୍ଷୋକ୍ତିରୁ ସେ ଆଘାତ ପାଇଥିଲେ । ଘରକୁ ଫେରି ଆସି ପୁଅ ଆଗରେ ଭାଗବତର ଓଡ଼ିଆ ଅନୁବାଦ କରିବା ପାଇଁ ସୂଚନା ଦେଇଥିଲେ । ଫଳରେ ଜଗନ୍ନାଥ ଦାସ ମାତାଙ୍କ ପ୍ରେରଣାକୁ ପାଥେୟ କରି ଭାଗବତ ରଚନା କଲେ ଯାହା ଅଗଣିତ ଓଡ଼ିଆ ଭାଷୀମାନଙ୍କର ଗଳା ରତ୍ନହାର ହୋଇରହିବ ।

ଅନ୍ୟ ଏକ ହେତୁ ଯାହାକୁ 'ଦାଢ୍ୟତା ଭକ୍ତି' ରଚୟିତା ରାମଦାସ ମଧ୍ୟ ବିପ୍ର ଜଗନ୍ନାଥ ଦାସ ଚରିତ ଲେଖିବା ବେଳେ କହିଛନ୍ତି- ଦିନେ ଭଗବାନ ଶ୍ରୀଜଗନ୍ନାଥ ଚତୁର୍ଭୁଜ ମୂର୍ତ୍ତିରେ ସ୍ୱପ୍ନରେ ଜଗନ୍ନାଥ ଦାସଙ୍କ ନିକଟରେ ଆବିର୍ଭୂତ ହୋଇ ଆଦେଶ ଦେଲେ- ପ୍ରାକୃତ ବନ୍ଧରେ ଭାଗବତର ରଚନା କରିବାକୁ । ଯହିଁରେ ସେ ନିଜେ ପବିତ୍ର ହେବେ ଏବଂ ନିଖିଳ ପ୍ରାଣୀଙ୍କୁ ପବିତ୍ର କରାଇ ପାରିବେ । ଭଗବାନଙ୍କର ଜଗନ୍ନାଥ ଦାସଙ୍କ ପ୍ରତି ଉକ୍ତି-

ଏ ମହାପୁରାଣ ଚରିତ । ପ୍ରାକୃତ ବନ୍ଧେ କଲେ ଗୀତ ।
ତୁ ନିଜେ ପବିତ୍ର ହୋଇବୁ । ଅଶେଷ ପ୍ରାଣୀଙ୍କୁ ତାରିବୁ ॥
ଏ ଭାଗବତ ଶୁଣି କର୍ଣ୍ଣେ । ପବିତ୍ର ହେବେ ପ୍ରାଣୀମାନେ ।
କର ତୁ ଏହି ଅନୁକୂଳ । ଲଭ ତୁ ପରମ ମଂଗଳ ॥

ଭଗବାନ୍ ଜଗନ୍ନାଥ ଦାସଙ୍କ ହୃଦୟରେ ରହି ସବୁ ପଦ ବତାଇ ଦେବେ ବୋଲି ଜଣାଇଛନ୍ତି-

ଏମନ୍ତ ଦାସେ ଆଜ୍ଞା ପାଇ । ସ୍ୱପନେ ପ୍ରଭୁଙ୍କୁ ଜଣାଇ ।
ଏ ଗ୍ରନ୍ଥ ଦଶମୁଁ ବାହାର । ମୁନିମାନଙ୍କୁ ଅଗୋଚର ।।
ଫେଡ଼ି ଏକଥା ଆଜ୍ଞା ହେଉ । ଶୁଣି ବୋଲନ୍ତି ମହାବାହୁ ।
ଭୟ ନକର ତୁମ୍ଭେ କିଛି । ଗୀତ ତୁ କର ମୁହିଁ ଅଛି ।।
ତୋ' ହୃଦ ପଦ୍ମେ ବସିଥାଇ । ମୁଁ ଯାହା ହେଉଥିବି କହି ।
ତାହା ତୁ ପତ୍ର ଘେନି ଲେଖ । କହି ଚଳିଲେ ପଦ୍ମମୁଖ ।।

ଭଗବାନ୍ ଜଗନ୍ନାଥ ଦାସଙ୍କୁ ଭରସା ଦେଲେ ଯେ ତାଙ୍କ ହୃଦୟ କନ୍ଦରରେ ରହି ଭାଗବତର ସବୁ ରହସ୍ୟ ଉଦ୍‌ଘାଟିତ କରିଦେବେ । ଏହି ଭଗବତ୍ ଆଦେଶକୁ ଶିରୋଧାର୍ଯ୍ୟ କରି ଦାସେ ଓଡ଼ିଆ ଭାଷାରେ ରଚନା କଲେ ଶ୍ରୀମଦ୍ ଭାଗବତମ୍ । ସଂସ୍କୃତ ଭାଗବତ ରୂପାନ୍ତର ହେଲା ଓଡ଼ିଆ-ଭାଗବତ ସରଳ ନବାକ୍ଷରୀ ଛନ୍ଦରେ । ରଚନା କାଳରେ ଶ୍ରୀଭଗବାନ୍ ହେଲେ ତାଙ୍କ ଅନ୍ତରର ପ୍ରେରଣା ଦାତା ।

ଓଡ଼ିଆ ଭାଗବତ ରଚନା ବାସ୍ତବରେ ଶ୍ରୀଜଗନ୍ନାଥ ଦାସଙ୍କର ପ୍ରଚଣ୍ଡ ସାଧନା, ବିସ୍ମୟକର ପ୍ରୟାସ ସେ ଯେ ଭଗବତ୍- ଆଦିଷ୍ଟ ହୋଇ ଏହି ମହାନ୍ ସାଧନାରେ ବ୍ରତୀ ହୋଇଅଛି ତାହା ସେ ନିଜେ ସ୍ୱୀକାର କରିଛନ୍ତି, ସ୍ୱୀୟ ଭାଗବତରେ । ଓଡ଼ିଆ ଭାଗବତର ଦଶମ ସ୍କନ୍ଧ ପଞ୍ଚଦଶ ଅଧ୍ୟାୟ ଶେଷରେ ନିଜ ସଂପର୍କରେ ଉକ୍ତ କବିଙ୍କ ଉକ୍ତି ଦେଖନ୍ତୁ ।

କହଇ ବିପ୍ର ଜଗନ୍ନାଥ । ଗୀତ ବୋଇଲା ଭାଗବତ ।
ପଣ୍ଡିତେ ନ ଧରିବା ଦୋଷ । ହରି ଚରିତ ସୁଧାରସ ।।
କୃଷ୍ଣ ସବୁରି ଦେହେ ଥାଇ । ଯାହାକୁ ଯେମନ୍ତ ବୁଝାଇଂ ।
ଏଣୁ ମୋହର ଜ୍ଞାନ ନାହିଁ । ବାଳୁତ ଜନ ପ୍ରାୟ ହୋଇ ।
ସୁଜନେ ଏଣେ ମନଦେଲେ । କୃଷ୍ଣ ଭେଟିବ ତୁମ୍ଭେ ଭଲେ ।।

ଭାଗବତର ଦଶମ ସ୍କନ୍ଧରେ ପ୍ରତିଟି ଅଧ୍ୟାୟରେ ଜଗନ୍ନାଥ ଦାସଙ୍କର ଦିବ୍ୟ ମାଧୁର୍ଯ୍ୟ ଭାବରେ ନିଜକୁ ଭସାଇ ଦେଇଛନ୍ତି । ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ସ୍ୱପ୍ନ ନିର୍ଦ୍ଦେଶ ସୂଚାଇଛନ୍ତି ।

ବ୍ରାହ୍ମଣ କୁଳେ ଜାତ ହୋଇ । ବିଷ୍ଣୁ ବାସନା ମୋର ନାହିଁ ।
ସ୍ୱପନେ କହିଲେ ମୁରାରି । ପୁରାଣେ ଗୀତ ନାଦ କରି ।
ଏଣୁ ମୋହର ଭୟ ନାହିଁ । ସୁଜନେ ତର ଏହା ଗାଇ ।।
(ଓ.ଭା. ଦଶମସ୍କନ୍ଧ ୪୭-ଅଧ୍ୟାୟ)

ଓଡ଼ିଆ ଭାଗବତର ଦଶମସ୍କନ୍ଧ ୯୦ ଅଧ୍ୟାୟରେ ଅନୁରୂପ ଭାବେ ବର୍ଣ୍ଣିତ ହୋଇଛି-

ସେ ହରି ଆଜ୍ଞା ଶିରେ ବହି । ଗୀତେ ପାରିଲି ଯାହା କହି ।
ପ୍ରାକୃତ ଭାଷା ଏ ପ୍ରବନ୍ଧ । ଫିଟେ ଅନ୍ଧାର ଭବବନ୍ଧ ।
ମୁଁ ଛାର ହୀନ ମୂଢ଼ମତି । କୃଷ୍ଣ ଚରଣେ ହେଉ ମତି ।

× × × ×

ମାତାଙ୍କ ପ୍ରେରଣା ହେଉ କିମ୍ବା ଭଗବତ୍ ନିର୍ଦ୍ଦେଶ ହେଉ, ଅଥବା ଉଭୟର ପ୍ରଭାବ ହେତୁ ଭକ୍ତ କବି ନବାକ୍ଷରୀ ବୃତ୍ତରେ ସଂସ୍କୃତ ଭାଗବତର ପଦ୍ୟାନୁବାଦ ଆରମ୍ଭ କଲେ । କୁହାଯାଏ ଏଥିପାଇଁ ତାଙ୍କୁ ପାଞ୍ଚବର୍ଷ ସମୟ ଲାଗିଛି । ପଦ ମାଧୁର୍ଯ୍ୟ ଏତେ ଆହ୍ଲାଦକର ଯେ ବିଦ୍ୱାନମାନଙ୍କର ଯେପରି ପ୍ରିୟ ସାଧାରଣ ଜନତାଙ୍କ ପାଇଁ ଅନୁରୂପ ଆଦରଣୀୟ ।

କ୍ରମେ ଗୋସ୍ୱାମୀ ଜଗନ୍ନାଥ ଦାସଙ୍କର ଖ୍ୟାତି ଓ ପ୍ରଶଂସା ଚତୁର୍ଦ୍ଦିଗକୁ ପରିବ୍ୟାପ୍ତ ହୋଇଗଲା । ବିଶେଷତଃ ନାରୀମାନେ ତାଙ୍କ କଣ୍ଠରୁ ଭାଗବତ ଶ୍ରବଣ କରିବାକୁ ଉତ୍‌କଣ୍ଠିତ ହୋଇ ରହୁଥିଲେ । ଏଥିରେ ଦୁଷ୍ଟ ଖଳ ଏବଂ ଅଭିମାନୀ ବିଦ୍ୱାନମାନେ ଈର୍ଷାନ୍ୱିତ ହେଲେ । ସେମାନେ ଜଗନ୍ନାଥ ଦାସଙ୍କ ଭାଗବତକୁ 'ତେଲୀ ଭାଗବତ' ଆଖ୍ୟାୟିତ କରିଥିଲେ । ତତ୍‌କାଳୀନ ସମ୍ରାଟ ପ୍ରତାପରୁଦ୍ରଙ୍କ ନିକଟରେ ନାନା ଅଭିଯୋଗ କଲେ । ବିଶେଷ କରି ନାରୀମାନଙ୍କ ସଂଶ୍ରବ ତାଙ୍କ ପାଇଁ ଏକ ଅମୋଘ ଅସ୍ତ୍ର ହୋଇଥିଲା । ଭକ୍ତ ଜଗନ୍ନାଥ ଦାସଙ୍କ ପବିତ୍ର ଭାବନାକୁ ବୁଝି ନପାରି ରାଜା ଖଳମାନଙ୍କ କଥାରେ ବିଶ୍ୱାସ କରି ତାଙ୍କୁ ନାରୀମାନଙ୍କ ଗ୍ରହଣରେ ରହିବାର କାରଣ ପଚାରିଲେ । ତହୁଁ ଦାସେ କହିଲେ- ଆମ୍ଭେ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସମସ୍ତ ଜିଜ୍ଞାସୁ ଶ୍ରୋତାଙ୍କୁ ଭାଗବତ ଶୁଣାଉଅଛୁ । ଆମ୍ଭେ ପୁରୁଷ ସଂଗରେ ପୁରୁଷ ଏବଂ ନାରୀ ସଂଗରେ ନାରୀ ହୋଇଥାଉ । ଏ ସମ୍ବନ୍ଧରେ ଆପଣ ସଂଶୟ କରନ୍ତୁ ନାହିଁ ।

ବୋଇଲେ ଶୁଣ ଦଣ୍ଡଧାରୀ । ଖଳ ବଚନ ଶୁଣି କରି ।
ସାଧୁଙ୍କୁ କଷଣ ଦେବାର । ଏ ଧର୍ମ ନୁହଁଇ ତୁମ୍ଭର ।
×× ×× ×× ×× ×× ××
ପୁରୁଷେ ପୁରୁଷ ବୋଲାଉ । ସ୍ତିରୀଙ୍କ ସାଂଗେ ସ୍ତିରୀ ହେଉ ।।

ଏ ଅସଂଭବ କଥା ଶୁଣି ରାଜା ତାଙ୍କୁ ବନ୍ଦୀଶାଳାରେ ରଖାଇ ପରଦିନ ତାଙ୍କ କହିବା ମୁତାବକ ନାରୀତ୍ୱ ପ୍ରଦର୍ଶନ କରିବାର ସର୍ତ୍ତ ରଖିଥିଲେ । ବନ୍ଦୀଶାଳାରେ ଜଗନ୍ନାଥ ଦାସ ଶରଣ ପଂଜର ଶ୍ରୀଜଗନ୍ନାଥଙ୍କୁ ଏକାନ୍ତ ଚିତ୍ତରେ ସ୍ମରଣ କରିବାକୁ ଲାଗିଲେ । ପୁରୁଷ ଶରୀର ଯାଇ ଦିବ୍ୟ ନାରୀ ରୂପ ପ୍ରତିଭାତ ହେଲା,

ସ୍ତନ ବଦନ ଅଂଗେ ଶୋଭା । କି ଅବା ପଟାନ୍ତର ଦେବା ।
ସୁନ୍ଦର ପଣେ ଏହୁ ନାରୀ । ମୋହି ପାରଇ ବ୍ରହ୍ମଚାରୀ ।

ଏହା ନିଶ୍ଚୟ ଗୋବିନ୍ଦଙ୍କ ମାୟା । ନାରୀ ସ୍ୱଭାବ ପ୍ରଦର୍ଶନ କରିବା ପାଇଁ ରାଜା ତାଙ୍କୁ ଆଦେଶ କଲେ ତହୁଁ ଦାସେ-

ଏମନ୍ତ ବୋଲି ବାସ ଧରି । ଦେଖାଇ ଦେଲେକ ସୁନ୍ଦରୀ ।
ସ୍ତିରୀ ସ୍ୱଭାବେ ରଜପତି । ପ୍ରତ୍ୟକ୍ଷେ ଦେଖିଲେ ନୃପତି ।

ରାଜାଙ୍କର ଦୃଢ଼ବିଶ୍ୱାସ ହେଲା ଯେ ଦାସେ ଜଣେ ପରମ ଭଗବତ୍ ଭକ୍ତ । ତେଣୁ ତାଙ୍କୁ ଧନ, ବସ୍ତ୍ର- ଆଦି ଦାନ କରି ତୁଷ୍ଟ କଲେ । ଜଳ ମଧରେ ପଶି ସ୍ନାନ କରିବାରୁ ତାଙ୍କ ନାରୀବେଶ ତିରୋହିତ ହେଲା ଏବଂ ସେ ପୁରୁଷ ବେଶ ଧାରଣ କଲେ ।

ଅନ୍ୟ ଏକ ରୋଚକ ଲୋକକଥା ଅନୁସାରେ ଜଗନ୍ନାଥ ଦାସ ବଟ ଗଣେଶଙ୍କ ନିକଟରେ ଭକ୍ତମାନଙ୍କୁ ଭାଗବତ ଶୁଣାଇବା ସମୟରେ ରାଜା ପ୍ରତାପ ରୁଦ୍ରଦେବ ତାଙ୍କୁ ଅଷ୍ଟଭୁଜ ରୂପରେ ଦର୍ଶନ କରିଥିଲେ । ତାଙ୍କ ଛଅ ଗୋଟି ଭୁଜରେ ଶଂଖ, ଚକ୍ର, ଗଦା, ପଦ୍ମ, ଧନୁ, ତୀର ଏବଂ ଅନ୍ୟ ଦୁଇ ହସ୍ତରେ ଥିଲା ବଂଶୀ । 'ସୁଧାତ୍ରୟ' ଗ୍ରନ୍ଥରେ ଏ ପ୍ରସଂଗ ଏହିପରି-

ଅଷ୍ଟବାହୁ ଜଗନ୍ନାଥ ଶଂଖ ଚକ୍ର ଗଦା ପଦ୍ମ ।
ଦାସେ ବଂଶୀ ଧନୁଃ ଶରଂ ବିଭ୍ରନ୍ଥ୍ୟାମୋ ଭବେତ୍ତଦା ।

ଶ୍ରୀମନ୍ଦିର ବେଢ଼ା ମଧ୍ୟସ୍ଥ ବଟ ଗଣେଶଙ୍କ ନିକଟରେ ଭାଗବତ ଚର୍ଚ୍ଚା କରିବା ସମୟରେ ଏତେ ଭାବ ବିହ୍ୱଳ ହୋଇ ଯାଉଥିଲେ ଯେ ତାଙ୍କର ବାହ୍ୟ ଜ୍ଞାନ ରହୁ

ନଥିଲା । ଥରେ ଶ୍ରୀଚୈତନ୍ୟ ମହାପ୍ରଭୁ ତାଙ୍କର ଗୌଡ଼ୀୟ ଭକ୍ତମାନଙ୍କ ସହ ବେଢ଼ା ପରିକ୍ରମା କରିବା ଅବକାଶରେ ଜଗନ୍ନାଥ ଦାସଙ୍କ ମୁଖରୁ ଭାଗବତ ଶ୍ରବଣ କରି ପରମ ତୃପ୍ତି ଲାଭ କଲେ । ଦାସଙ୍କ ଜ୍ଞାନ, ପାଣ୍ଡିତ୍ୟ ଏବଂ ସର୍ବୋପରି ତାଙ୍କ ଭକ୍ତିଭାବ ଦ୍ୱାରା ଏତେ ପ୍ରଭାବିତ ହେଲେ ଯେ ତାଙ୍କୁ 'ଅତିବଡ଼ି' ସଂବୋଧନ କରି ନିବିଡ଼ ଆଲିଂଗନ କଲେ । ଏହି ଆଲଂଗନ ପ୍ରାୟ ଅଢ଼େଇ ଘଡ଼ି ପର୍ଯ୍ୟନ୍ତ ସ୍ଥାୟୀ ହୋଇଥିଲା ।

ଏହା ଫଳରେ ଶ୍ରୀଚୈତନ୍ୟଙ୍କ ବଂଗୀୟ ଶିଷ୍ୟମାନେ ଈର୍ଷାରେ ଜଳିଗଲେ । ଏହି ହେତୁ କେତେକ ବଂଗୀୟ ଶିଷ୍ୟ ଯାଜପୁର ପର୍ଯ୍ୟନ୍ତ ରୋଷ-ଅଭିମାନରେ ଚାଲି ଆସିଥିଲେ । ଜଗନ୍ନାଥ ଦାସଙ୍କୁ ଉତ୍କଳୀୟ ଭକ୍ତ ପ୍ରବର ବଳରାମ ଦାସ ଦୀକ୍ଷା ପ୍ରଦାନ କରିଥିଲେ ।

ରାଜା ପ୍ରତାପରୁଦ୍ର ଦେବ ଜଗନ୍ନାଥଙ୍କୁ ନାରୀ ରୂପ ଅନୁଭବ କରିଥିବାରୁ ରାଣୀ ଗୌରୀଦେବୀଙ୍କୁ ଦୀକ୍ଷା ପ୍ରଦାନ କରିବାକୁ ଅନୁରୋଧ କରିଥିଲେ । ଦାସେ ରାଣୀଙ୍କୁ ଦୀକ୍ଷା ପ୍ରଦାନ କରିଥିଲେ । ବଡ଼ ଓଡ଼ିଆ ମଠ ନାମରେ ବିଖ୍ୟାତ ମଠ, ମହାରାଣୀଙ୍କ ସାମୟିକ ଅବସ୍ଥାନ ପାଇଁ ନିର୍ମିତ ହୋଇଥିଲା ଏବଂ ସେଠାରେ ଜଗନ୍ନାଥ ଦାସ କିଛି କାଳ ଅବସ୍ଥାନ କରିଥିଲେ ।

କିମ୍ବଦନ୍ତୀ ଅଛି ଯେ ମେଧା- ସୁମେଧା ନାମରେ ଦୁଇଜଣ ଦେବକନ୍ୟା ଜଗନ୍ନାଥଙ୍କ ସେବା କରିବାକୁ ଆସୁଥିଲେ । ଏଣୁ ରାଜା ଜଗନ୍ନାଥ ଦାସଙ୍କ ଚରିତ୍ର ଉପରେ ସନ୍ଦେହ କଲେ । ରାଜାଜ୍ଞାରେ ଚରମାନେ ସେମାନଙ୍କୁ କୌଶଳ କ୍ରମେ ଧରିବାକୁ ଚେଷ୍ଟା କରିବାରୁ ସେମାନେ ଅଦୃଶ୍ୟ ହୋଇଗଲେ । ଏହିପରି ଅନେକ ଆଖ୍ୟାନ ତାଙ୍କ ସମ୍ବନ୍ଧରେ ଶୁଣିବାକୁ ମିଳେ ।

କାଶୀରାମ ଦାସ ନାମକ ଜଣେ ବ୍ୟବସାୟୀ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ଆସିଥିଲେ । ଦିନେ ଠାକୁରଙ୍କ ଶ୍ରୀଅଂଗରେ ଲାଗି କରିବା ପାଇଁ ଶ୍ରୀଖଣ୍ଡ ଚନ୍ଦନ ମୁଣ୍ଡାଏ ରାଜାଙ୍କୁ ଦେଇ ଯାଇଥିଲେ । ଏଥିରେ କସ୍ତୂରୀ, କର୍ପୂର ପ୍ରଭୃତି ମୂଲ୍ୟବାନ ସୁବାସ ଦ୍ରବ୍ୟ ଏକତ୍ର ହୋଇଥିଲା । ଦିନେ ସେହି ଟେଳାରୁ ଖଣ୍ଡିଏ ଜଗନ୍ନାଥ ଦାସଙ୍କୁ ଦେଲେ ଏବଂ ତାହାକୁ ଘୋରି ମହାପ୍ରଭୁଙ୍କ ଶ୍ରୀଅଂଗରେ ଲାଗି କରିବାକୁ କହିଲେ । ମାତ୍ର ଭକ୍ତ ଜଗନ୍ନାଥ ଦାସ ତାହାକୁ ଘୋରି ଭାବ ବିହ୍ୱଳ

ହୋଇ ମଠ କାନ୍ଥରେ ଲେପିଦେଲେ । ରାଜା ଏ ସମ୍ବାଦ ପାଇ ଦାସଙ୍କୁ ପଚାରିବାରୁ ସେ କହିଲେ ଠାକୁରଙ୍କ ଶ୍ରୀଅଂଗରେ ବୋଳି ଦେଇଛି । ରାଜା ପରୀକ୍ଷା ଉଦ୍ଦେଶ୍ୟରେ ଶ୍ରୀମନ୍ଦିର ଯାଇ ଦେଖିଲେ ଯେ ବାସ୍ତବରେ ତିନି ଠାକୁରଙ୍କ ଦେହରେ ଚନ୍ଦନ ଲିପ୍ତ ହୋଇଛି ଏବଂ ମନ୍ଦିର ସୁଗନ୍ଧରେ ମହକି ଉଠୁଛି ।

ଜଗନ୍ନାଥ ଦାସଙ୍କ ପାଣ୍ଡିତ୍ୟ ବିଦ୍‌ବତ୍ତା କିଛି କମ୍ ନଥିଲା । ଅଦ୍ୱୈତ ସିଦ୍ଧାନ୍ତର ବିଖ୍ୟାତ ବିଦ୍ୱାନ ବ୍ରହ୍ମାନନ୍ଦ ନାମକ ଜଣେ ଦିଗ୍‌ଦନ୍ତୀ ପଣ୍ଡିତଙ୍କୁ ସ୍ୱୀୟ ପାଣ୍ଡିତ୍ୟରେ ପରାସ୍ତ କରିଥିଲେ । ଜ୍ଞାନ ମିଶ୍ରା ଭକ୍ତିର ଶ୍ରେଷ୍ଠତ୍ୱ ପ୍ରତିଷ୍ଠିତ କରିବା ଫଳରେ ବ୍ରହ୍ମାନନ୍ଦ ତାଙ୍କୁ ଖୁବ୍ ସମ୍ମାନୀତ କରିଥିଲେ ।

**ଶ୍ରୀଜଗନ୍ନାଥ ଦାସଙ୍କ ସୃଷ୍ଟି-**

ଜଗନ୍ନାଥ ଦାସ ସଂସ୍କୃତ ସାହିତ୍ୟରେ ପ୍ରବୀଣ ପଣ୍ଡିତ ଥିଲେ । ସେ ସଂସ୍କୃତ ଓ ଓଡ଼ିଆ ଭାଷାରେ ବହୁ ପୁସ୍ତକ ରଚନା କରିଥିଲେ । ସଂସ୍କୃତ ଭାଷାରେ (୧) କୃଷ୍ଣ ଭକ୍ତି କଳ୍ପଲତା, (୨) ନିତ୍ୟ ଗୁପ୍ତମାଳା, (୩) ଉପାସନା ଶତକମ୍, (୪) ନୀଳାଦ୍ରୀ ଶତକମ୍, (୫) ପ୍ରେମସୁଧା ନିଧିଃ, (୬) ନିତ୍ୟାଚାରଃ, (୭) ଜଗନ୍ନାଥ ଚରିତାସ୍ୱାଧି ସରଣୀ, (୮) ଦୀକ୍ଷା ସହିତୋପାସନାବିଧିଃ ପ୍ରଭୃତି ।

**ଓଡ଼ିଆ ଭାଷାରେ:** (୧) ଭାଗବତ, (୨) ମହାଭାରତ, (୩) ଗୁପ୍ତଭାଗବତ, (୪) ଦାରୁବ୍ରହ୍ମଗୀତା, (୫) ଦୀକ୍ଷା ସଂବାଦ, (୬) ବୋଲେ ହୁଁଟି, (୭) ଅର୍ଥ କୋଇଲି, (୮) ଗଜସ୍ତୁତି, (୯) ମୃଗୁଣୀସ୍ତୁତି, (୧୦) ତୁଳାଭିଣା, (୧୧) ଇତିହାସ ପୁରାଣ, (୧୨) ପାଷାଣ୍ଡ ଦଳନ, (୧୩) ମନଃଶିକ୍ଷା ପ୍ରଭୃତି ଏକୋଇଶ ଖଣ୍ଡ ଗ୍ରନ୍ଥର ସୂଚନା ମିଳିଥାଏ । ଓଡ଼ିଆ ଗ୍ରନ୍ଥଗୁଡ଼ିକ ଓଡ଼ିଶାର ଘରେ ଘରେ ସୁପରିଚିତ ।

ଶ୍ରୀମଦ୍ ଭଗବତ ପରି ଏକ ଦୁରୂହ ଦାର୍ଶନିକ ଚିନ୍ତାଧାରା ସଂବଳିତ ଗ୍ରନ୍ଥକୁ ଓଡ଼ିଆ ଭାଷାରେ ଅନୁବାଦ କରିଥିବାରୁ ଜଗନ୍ନାଥ ଦାସ କେବଳ ଯେ ଓଡ଼ିଆ ଭାଷାଭାଷୀଙ୍କ ନିକଟରେ ସୁପରିଚିତ ହୋଇଥିଲେ ତାହା ନୁହେଁ, ପଡ଼ୋଶୀ ବଂଗ ଦେଶରେ ବିଦ୍ୱାନମାନଙ୍କ ମଧ୍ୟରେ ଆଦରଣୀୟ ହୋଇ ପାରିଥିଲେ ।

ବଂଗଳା ଭାଷାରେ ପ୍ରଥମ ଅନୁବାଦକ ବିପ୍ର ସନାତନ ବିଦ୍ୟାବାଗୀଶ ଜଗନ୍ନାଥ ଦାସଙ୍କ କୃତିତ୍ୱକୁ ଉଚ୍ଛ୍ୱସିତ ପ୍ରଶଂସା କରିଅଛନ୍ତି । ଭାଷାବଂଧ ଭାଗବତ ଦଶମ ସ୍କନ୍ଧରେ ଲେଖିଛନ୍ତି-

ଶୁନଶୁନ ଶ୍ରୋତା ଗନ କରି ନିବେଦନ
ପ୍ରଥମ ହଇତେ ଗ୍ରନ୍ଥ ଲେଖିଲୁ ଆପନ ।
ଦଶମେର ଶେଷ ଷଷ୍ଠ ଭାଖା ନପାଇନ
ଅନେକତ ପାଶି ଗ୍ରାମେ ଗ୍ରାମେ ବେଡ଼ାଇନ ।
ଏ ହେତୁ ଉତ୍କଳ ଭାଷା କରିଲ ଲିଖନ
ଜଗନ୍ନାଥ ଦାସ କୃତ ଅପୂର୍ବ ବର୍ଣ୍ଣନ ।
ଗ୍ରନ୍ଥ ସମାପନ ହେତୁ ଉତ୍କଣ୍ଠା ହଇୟାଁ
ବଂଗଜ ଭାଷାୟ ଉତ୍କଳ ମିଶାଇୟାଁ ॥

× × × ×

ଏଥିରୁ ସ୍ପଷ୍ଟ ଜଣାଯାଏ, ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଭାଗବତ ଅନୁବାଦ ପଡ଼ୋଶୀ ରାଜ୍ୟର ବିପ୍ର ସନାତନ ବିଦ୍ୟା ବାଗୀଶଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲେ । ଦଶମସ୍କନ୍ଧର ଅନୁବାଦ ପ୍ରକରଣରେ ଜଗନ୍ନାଥ ଦାସଙ୍କ ପଦାବଳୀକୁ ଅବିକଳ ଗ୍ରହଣ କରି ନିଜର ଅକ୍ଷମତା ପାଇଁ ବିଜ୍ଞ ପାଠକଙ୍କ ନିକଟରେ କ୍ଷମା ପ୍ରାର୍ଥନା କରିଛନ୍ତି ।

ଜଗନ୍ନାଥ ଦାସଙ୍କ ନାମ ଭଣିତା ଥିବା କେତେକ ଭଜନ, ଚଉପଦୀ ଇତ୍ୟାଦି ଥିବାର ଜଣାଯାଏ । 'ତୁଳାଭିଣା' ପ୍ରଭୃତି ପୁସ୍ତକରେ ତାଙ୍କ ଗଦ୍ୟ ରଚନାର ପ୍ରମାଣ ମିଳିଥାଏ । ସେ ଏକାଧାରରେ ସୁଲେଖକ କବି ଏବଂ ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭାଷାର ପ୍ରବକ୍ତା ତଥା ମହାମନୀଷୀ । ରାଜକିଶୋର ଦାସଙ୍କ ସଂସ୍କରଣ, ଓଡ଼ିଶା ସାହିତ୍ୟ ଏକାଡ଼େମୀ ସଂସ୍କରଣ ଏବଂ ଗୀତାପ୍ରେସ୍ ଗୋରଖପୁର ସଂସ୍କରଣ ଭାଗବତ (ପୁସ୍ତକ) ପାଠକ ନିକଟରେ ପର୍ଯ୍ୟାପ୍ତ ଭାବେ ପହଞ୍ଚାଇ ପାରିଛି । କିଛିବର୍ଷ ପୂର୍ବରୁ ଜଗନ୍ନାଥ ଦାସଙ୍କ ଜନ୍ମିତ ଗ୍ରାମ କପିଳେଶ୍ୱରପୁର ଗ୍ରାମରେ ତାଙ୍କ ଜନ୍ମ ଦିବସରେ ଉତ୍ସବ ପାଳିତ ହେବା ସହ ସ୍ମରଣିକା ପ୍ରକାଶ ପାଉଛି । ସରକାରୀ ସ୍ତରରେ ତାଙ୍କ କୃତି ଓ କୃତିତ୍ୱ ସଂପର୍କରେ ଆଶାନୁରୂପ ଉଦ୍ୟମ ହୋଇ ନାହିଁ । ସାତ ଲହଡ଼ୀ ମଠ ଠାରେ ଷାଠିଏ ବର୍ଷ ବୟସରେ ଖ୍ରୀ.ଅ. ୧୫୪୭ ମାଘ ଶୁକ୍ଳ ସପ୍ତମୀରେ ଗୋଲକଧାମ ପ୍ରାପ୍ତ ହୋଇଥିଲେ ॥



# ମହାପୁରୁଷ ଅଚ୍ୟୁତାନନ୍ଦ

ପଞ୍ଚସଖାଙ୍କ ମଧ୍ୟରୁ ଅଚ୍ୟୁତାନନ୍ଦ ଉତ୍କଳୀୟ ଜନମାନରେ ଅତ୍ୟନ୍ତ ପ୍ରିୟ ଏବଂ ସୁପରିଚିତ । ଅବିଭକ୍ତ କଟକ ଜିଲ୍ଲା ନେମାଲୋ ବା ନେମ୍ୱାଲୋର ଅତି ନିକଟବର୍ତ୍ତୀ ତିଳକଣା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଜନ୍ମ ସମୟ ସଂପର୍କରେ ବିଭିନ୍ନ ମତ ରହିଛି । ଖ୍ରୀ.ଅ ୧୪୮୨ ହେଉଛି ଗୋଟିଏ ମତ । ଶୂନ୍ୟ ସଂହିତା ଆଧାରରେ ଖ୍ରୀ.ଅ ୧୫୦୨ 'ବ୍ରହ୍ମଶାଙ୍କୁଳି' ଓ 'ଅଣାକାର ସଂହିତା'ର ମୁଖବନ୍ଧର ହିସାବ ଅନୁଯାୟୀ କବି ୧୫୧୧ କିମ୍ବା ୧୫୦୨ରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପରମାୟୁ ୧୦୮ ବର୍ଷ ଥିଲା । ଶ୍ରୀଚୈତନ୍ୟ ତିରୋଧାନର ଅଶୀରୁ ଅଧିକ ବର୍ଷ ଜୀବିତ ଥିଲେ ।

ପିତା ଦୀନବନ୍ଧୁ ଏବଂ ମାତା ପଦ୍ମାବତୀ ଶ୍ରୀଜଗନ୍ନାଥଙ୍କ କୃପାରୁ ଏହି ପୁତ୍ର ପ୍ରାପ୍ତି ହୋଇଥିଲେ । ମାଘ ଶୁକ୍ଳ ଏକାଦଶୀ ତାଙ୍କ ଜନ୍ମ ତିଥି ଭାବେ ଗୃହୀତ । ପୁରୀରେ ଚୈତନ୍ୟ ମହାପ୍ରଭୁଙ୍କ ସହ ସାକ୍ଷାତ, ତାଙ୍କ ନିର୍ଦ୍ଦେଶରେ ସନାତନ ଗୋସ୍ୱାମୀଙ୍କଠାରୁ ମନ୍ତ୍ର ଦୀକ୍ଷା ଏବଂ ପୁନଃ ଗ୍ରାମ ବଟମୂଳରେ ଜଣେ ସାଧୁଙ୍କ ସହ ସାକ୍ଷାତରୁ ଦୀକ୍ଷା ଗ୍ରହଣ କରିଛନ୍ତି, ତାଙ୍କୁ ସେ 'ନିର୍ଗୁଣ' ପୁରୁଷ ଓ ଦିଗମ୍ବର ବୋଲି ବର୍ଣ୍ଣନା କରିଛନ୍ତି ।

ସନ୍ଥ ଅଚ୍ୟୁତାନନ୍ଦ ତୀର୍ଥ ଭ୍ରମଣରେ ବାହାରିଲେ । ଦକ୍ଷିଣରେ ରାମେଶ୍ୱର, ଉତ୍ତରର ଚିତ୍ରକୂଟ, ଅଯୋଧ୍ୟା, ଦ୍ୱାରିକା, କାଶୀ, ବାରାଣାସୀ, ପ୍ରୟାଗ, ଗୋପ, ମଥୁରା, ବୃନ୍ଦାବନ ପ୍ରଭୃତି ସମଗ୍ର ଭାରତ ବର୍ଷର ତୀର୍ଥ ପର୍ଯ୍ୟଟନ କରି ନୀଳାଚଳ କ୍ଷେତ୍ରକୁ ବାହୁଡ଼ି ଆସିଲେ । ଅନ୍ୟ ଚାରି ସଖାଙ୍କ ସହ ସାକ୍ଷାତ ଓ ଭାବର ଆଦାନ ପ୍ରଦାନ ହେଲା । ବିଚାର, ବିଶ୍ୱାସ, ଧର୍ମୀୟ ଦର୍ଶନର କେନ୍ଦ୍ର ବିନ୍ଦୁ ହେଲେ ନୀଳାଦ୍ରିନାଥ ଶ୍ରୀଜଗନ୍ନାଥ ।

ଏବେ ସେ ନେମ୍ଲାଳକୁ ଫେରି ଆସିଲେ । ଅଢ଼ଙ୍ଗ ଗଡ଼ର ରାଜା ରଘୁନାଥ ଚମୁପତିଙ୍କ କନ୍ୟା ଚମ୍ପାବତୀ ସହ ତାଙ୍କର ବିବାହ ସଂପନ୍ନ ହେଲା । ରଣପୁର ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ପୃଷ୍ଠ ପୋଷକତାରେ ସେହିଠାରେ ଓଡ଼ିଆ ହରିବଂଶ ରଚନା କରିଥିଲେ । କର୍ମମୟ ଜୀବନରେ ଆଧାତ୍ମିକ ପ୍ରଚାର ପ୍ରସାର ପୂର୍ବକ ନେମ୍ଲାଳଠାରେ ଦେହରକ୍ଷା କରିଥିଲେ । ଏବେ ବି ସେହିଠାରେ ଗାଦୀ ଅଛି ଏବଂ ବିଭିନ୍ନ ତିଥିରେ ଉତ୍ସବାନୁଷ୍ଠାନ ମାନ ହେଉଅଛି ।

**ହରିବଂଶ-** ହରିବଂଶ ଖିଳ ହରିବଂଶର ଅନୁବାଦ ହୋଇଥିଲେ ମଧ୍ୟ ସମାଲୋଚକ ଚିତ୍ତରଞ୍ଜନ ଦାସଙ୍କ ମତରେ ଏହାକୁ ନାନା ଦୃଷ୍ଟିରୁ ଅଚ୍ୟୁତାନନ୍ଦଙ୍କର ଏକ ମୂଳ ଗ୍ରନ୍ଥ ବୋଲି କୁହାଯାଇପାରିବ । ଏହା ସାତଖଣ୍ଡ । ସାତଖଣ୍ଡିଆ ହରିବଂଶ ନାମରେ ପ୍ରସିଦ୍ଧ । ରାଧାକୃଷ୍ଣଙ୍କର ଲୀଳାତ୍ମକ କଥା ମାଧୁରୀରେ ପୂର୍ଣ୍ଣ ହୋଇଛି । ତତ୍‌କାଳୀନ ପୁରାଣ ପ୍ରମୁଖ ରାଗ ଦାଣ୍ଡିବୃତ୍ତିରେ ରଚିତ ହୋଇଛି । ଏହା ତାଙ୍କ ପରିଣତ ବୟସର ରଚନା । ପ୍ରସଂଗକ୍ରମେ ସନ୍ଥକବି ଓଡ଼ିଶାର ପ୍ରସିଦ୍ଧ ତୀର୍ଥ କ୍ଷେତ୍ର, ଯଥା- ପୁରୁଷୋତ୍ତମ ପାଟଣା, କୋଣାର୍କର ବିରଞ୍ଚି ନାଥ, ଏକାମ୍ରକାନନ, ଅନନ୍ତ ବାସୁଦେବ, ଚନ୍ଦ୍ରଭାଗା, ବୈତରଣୀ ତୀର୍ଥ ଓ ବିରଜା କ୍ଷେତ୍ରର ବର୍ଣ୍ଣନା ରହିଛି । ଯାଜପୁର, ଭୁବନେଶ୍ୱର, କୋଣାର୍କ ଏବଂ ପୁରୀକୁ ସେ ଆଦି ବ୍ରହ୍ମଙ୍କର ଚାରିକ୍ଷେତ୍ର ବୋଲି କହିଛନ୍ତି ।

ହରିବଂଶର ଭାଷା ପରିପକ୍ୱ ଭାଷା । ତତ୍‌ସମ ଶବ୍ଦ ସହିତ ତଦ୍‌ଭବ, ଦେଶଜ ଶବ୍ଦମାନଙ୍କର ତିଳତଣ୍ଡୁଳ ରୂପ ଭାବ ଅନୁରୂପ ହୋଇଅଛି । ସଂଭବତଃ ଏହା କବିଙ୍କର ପରିଣତ ବୟସର ରଚନା ।

**ଶୂନ୍ୟ ସଂହିତା-** ଓଡ଼ିଆରେ ଶୂନ୍ୟ ସଂହିତାର ତିନିଗୋଟି ସଂସ୍କରଣ ମିଳୁଛି । ପ୍ରଥମର ପ୍ରକାଶକ ରତ୍ନାକର ଗର୍ଗବଟୁ, ଦ୍ୱିତୀୟଟିର ପ୍ରକାଶକ ନାରାୟଣ ପ୍ରସାଦ

ଦାସ, ତୃତୀୟଟିର ପ୍ରକାଶକ ଜଗନ୍ନାଥ କମ୍ପାନୀ କଟକ । ଗର୍ଗବଟୁ ପ୍ରକାଶନରେ ୩୦ଟି ଅଧ୍ୟାୟ, ଦାସ ପ୍ରକାଶନୀରେ ୪୧ଟି ଅଧ୍ୟାୟ ଏବଂ ଜଗନ୍ନାଥ କମ୍ପାନୀ ପ୍ରକାଶନରେ ୪୧ଟି ଅଧ୍ୟାୟ ରହିଛି । ପଣ୍ଡିତ କୁରାମଣି ପାଠୀଶର୍ମାଙ୍କ ମତରେ ଶୂନ୍ୟ ସଂହିତା ସଂପୂର୍ଣ୍ଣ ୧୧୦ ଅଧ୍ୟାୟ । ମୁଖ୍ୟତଃ ଚତୁର୍ଦ୍ଦଶାକ୍ଷରୀରେ ରଚିତ । ପ୍ରଥମ ଛାନ୍ଦଟି ବଙ୍ଗଳାଶ୍ରୀ ରାଗରେ ରଚିତ । ଏଥି ସହିତ ଗଦ୍ୟରେ ବିଭିନ୍ନ ମନ୍ତ୍ର ପ୍ରୟୋଗ ମଧ୍ୟ ହୋଇଛି । ଶୂନ୍ୟ ସଂହିତାର ୭୭ ଅଧ୍ୟାୟଠାରୁ ପ୍ରାୟ ୯୦ ଅଧ୍ୟାୟ ମଧ୍ୟରୁ ଏକାଦଶାକ୍ଷରୀ ଛନ୍ଦରେ ଲେଖାରହିଛି । ଏଥିମଧ୍ୟରୁ ସଂସ୍କୃତ ଅନୁଷ୍ଟୁପ୍ ଛନ୍ଦରେ ଶ୍ଳୋକ ମଧ୍ୟ ରହିଛି ।

**ବିଷୟବସ୍ତୁ-** ଉକ୍ତ ଗ୍ରନ୍ଥରେ କବିଙ୍କ ଜନ୍ମ ବୃତ୍ତାନ୍ତ ଉଲ୍ଲେଖ ଅଛି । ପଞ୍ଚ ମହାଜନମାନେ (ମୁକୁନ୍ଦ, ଉଦ୍ୟାନ, ପବନ, ରାମ, ଧର୍ମୁ) ରାମଚନ୍ଦ୍ରଙ୍କ ସହିତ ଗୁରୁ ଅଚ୍ୟୁତଙ୍କ ସମ୍ମୁଖରେ ଥାଇ ରାମଙ୍କ ମୁଖରେ ବିବିଧ ପ୍ରଶ୍ନ କରିଛନ୍ତି । ଉତ୍ତରରେ ଗୁରୁ ବିଭିନ୍ନ ତତ୍ତ୍ୱ, ଭ୍ରମଣ ବୃତ୍ତାନ୍ତ, ଯନ୍ତ୍ର, ମନ୍ତ୍ର, ତନ୍ତ୍ରର ପ୍ରୟୋଗ ବିଧି ପ୍ରଭୃତିର ବର୍ଣ୍ଣନା ରହିଛି ।

ଏହି ଗ୍ରନ୍ଥରେ ଗୁରୁବାଦର ମହତ୍ୱ, ପିଣ୍ଡ ମୁକ୍ତିର କାରଣ ସ୍ୱରୂପ ଭଜନ ଓ ନିରାକାର ଭଜନ ମୂଳ ହେତୁ ବୋଲି ବର୍ଣ୍ଣନା କରିଅଛନ୍ତି । ପିଣ୍ଡର କାରଣ ଓ ନାମ ଜପ ମହତ୍ୱ ବର୍ଣ୍ଣନା ହୋଇଛି ।

ଶୂନ୍ୟ ସଂହିତାରେ ଶୂନ୍ୟ ପୁରୁଷଙ୍କ ଆଲୋଚନା ହୋଇଛି । ଅଚ୍ୟୁତାନନ୍ଦଙ୍କ କଳନାରେ ଶୂନ୍ୟ ଏକ ନକାରାତ୍ମକ ଶବ୍ଦ ନୁହେଁ, ତାହା ଏକ ସକାରାତ୍ମକ ଓ ସକଳାତ୍ମକ ଉପଲବ୍ଧି । ସେହି ଶୂନ୍ୟ ପୁରୁଷଙ୍କୁ ଚିହ୍ନେଇବା ପାଇଁ କବିଙ୍କ ଭାଷା ଦେଖନ୍ତୁ-

ଭଲା ପଚାରିଲୁ ଗୁପତ ସନ୍ଧି, ଶୂନ୍ୟ ପୁରୁଷ ଶୂନ୍ୟ ପରେ ବନ୍ଦୀ ।
ଶୂନ୍ୟ ପୁରୁଷ ଉଦାସରେ ରହି, ଶୂନ୍ୟ ପୁରୁଷ ସବୁ ମାୟା ଭ୍ୟାୟେ ।
ଶୂନ୍ୟ ପୁରୁଷ ଦୟାଳୁ ଅଟଇ, ଶୂନ୍ୟ ପୁରୁଷ ସର୍ବ ଘଟ ରହି ।
ଶୂନ୍ୟ ପୁରୁଷ କରେ ନଟଘଟ, ଶୂନ୍ୟ ପୁରୁଷ ଜାଣେ ଛନ୍ଦ କୂଟ ।
ଶୂନ୍ୟ ପୁରୁଷ ଶୂନ୍ୟରେ ମାରଇ, ମାରି ଶୂନ୍ୟ ପୁଣ୍ୟ ଗତି କରଇ ।
ଶୂନ୍ୟ ମନ୍ତ୍ରେ ଶୂନ୍ୟ ପୁରୁଷ ଧରା, ଦଣ୍ଡୁ ଥାଇ ରାଜା ହୋଇଣ ପରା ।
ଶୂନ୍ୟ ପୁରୁଷ ବେଢ଼ିଛି ବେଢ଼ିରେ, ସତ ଶାନ୍ତି ଦୟା କ୍ଷମା ପଣରେ ।

ଶୂନ୍ୟ ପୁରୁଷ ଅଲଗେ ରହିଛି, ଶୂନ୍ୟ ପରେ ରହି ଲୀଳା କରୁଛି ।

× × × × × ×

ଶୂନ୍ୟ ପୁରୁଷର ଏଡ଼ିକି ତେଜ, ଶୂନ୍ୟ ହୋଇ ଭୋଗ କରଇ ରାଜ୍ୟ ।
ଶୂନ୍ୟ ପୁରୁଷ ଶୂନ୍ୟପରେ ରହେ, ଶୂନ୍ୟ ଭଜନ ନିରାକାର ଧ୍ୟାୟେ ।

ଶୂନ୍ୟ ପୁରଷଙ୍କର ମନ୍ତ୍ର ହେଉଛି ଅଣାକାର ମନ୍ତ୍ର, ତାଙ୍କର ଭଜନ ଅଣାକ୍ଷର ଭଜନ ।

ଅଣାକ୍ଷର ଠାରୁ ଯେତେକ ଭଜନ ଅଗାଡ଼ି ଅଟଇ ଜାଣ
ଯୋଗମାର୍ଗ ପଥ ଯେମନ୍ତ ବୃତ୍ତାନ୍ତ ତେମନ୍ତ ଅଟଇ ପୁଣ ।
ଅନେକ କାଳେ ଯୋଗ ସିଦ୍ଧ ହୁଅଇ ଯୋଗ କରଣକୁ ନାଶି ।
ଅଣ ସାଧନାରେ ଅଷ୍ଟକ ଭିତରେ ଶ୍ରୀକୃଷ୍ଣ ଭକତି ପାଇ
**ଇହ ଲୋକ ଭକ୍ତି ନିର୍ମଳ ଆଚାରେ ଅନ୍ତେ ବୈକୁଣ୍ଠ ଲଭଇ ।।**

ଶୂନ୍ୟ ସଂହିତା ଏକ ଅଭୁତପୂର୍ବ ଗ୍ରନ୍ଥ । ଗୃହୀ, ସନ୍ନ୍ୟାସୀ, ମାନ୍ତ୍ରିକ, ତାନ୍ତ୍ରିକ ଯୋଗୀ ସାଧକ ସମସ୍ତଙ୍କ ପାଇଁ ସମସ୍ତ ମୌଳିକ ଉପାଦାନ ରଖିଯାଇଛନ୍ତି ସାଧକ ଅଚ୍ୟୁତ । ଶୂନ୍ୟ ସଂହିତାର ୬୦ରୁ ୧୦୦ ଅଧ୍ୟାୟ ପର୍ଯ୍ୟନ୍ତ ଆଧି- ବ୍ୟାଧି ନିରାକରଣ ନିଦାନ ପରୀକ୍ଷା ସିଦ୍ଧ କରି ସଂପୂଟୀତ କରି ମାନବ ଜାତିର ମହୋପକାର କରିଛନ୍ତି ।

ଗୋପାଳ ଓଗାଳ- ମହାପୁରୁଷଙ୍କର ଏହା ଏକ ଲୋକପ୍ରିୟ ରଚନା । ଏଥିରେ ସାଧାରଣ ଗୋପାଳମାନଙ୍କ କଥା ଥିବାର ଅନୁମିତ ହୋଇଥାଏ । କିନ୍ତୁ ଏଠାରେ ଗୋପାଳ ଅର୍ଥ ବ୍ରହ୍ମ ଗୋପାଳଙ୍କୁ ବୁଝାଇଥାଏ । ଭଗବାନ ଶ୍ରୀକୃଷ୍ଣ ବାଲ୍ଯତ ବୟସରେ ଯେଉଁମାନଙ୍କ ସହିତ ଲୀଳା କରିଥିଲେ, ସେହିମାନେ ହେଉଛନ୍ତି ଗୋପାଳ । ବର୍ତ୍ତମାନର ଗୋପାଳମାନେ ସେହିମାନଙ୍କ ବଂଶଧର । ଅନ୍ୟ ଏକ ମତାନୁସାରେ ଗୋ- କହିଲେ ଗାୟତ୍ରୀ ତା'ର ଯିଏ ପାଳକ ତାଙ୍କୁ ଗୋପାଳ ଓ ତାଙ୍କ ସଂପର୍କୀତ ଜଟିଳ ପ୍ରଶ୍ନର ନାମ ଓଗାଳ । ଏଣୁ ଏହାକୁ ଗୋପାଳ ଓଗାଳ ବୋଲି କହନ୍ତି । ପୁରାଣମାନଙ୍କରେ ରାଧାକୃଷ୍ଣଙ୍କର ଯେଉଁ ସବୁ ବର୍ଣ୍ଣନା ରହିଛି, ତତ୍ ସମ୍ବନ୍ଧୀୟ ଜଟିଳ, ତାତ୍ତ୍ୱିକ ପ୍ରଶ୍ନର ଯଥା-ଯଥ ଭାବରେ ସରଳ ସୁନ୍ଦର ଭାଷା ଓ ଭାବରେ ସମାଧାନ କରାଯାଇଛି, ଉକ୍ତ ଗ୍ରନ୍ଥରେ । ଗୋପାଳ ଓଗାଳ ଅଚ୍ୟୁତାନନ୍ଦଙ୍କର ପୌଢ଼ ସମୟର ରଚନା । ହାସ- ପରିହାସ ରୀତିରେ ଏହା ଲିଖିତ ହୋଇଛି ।

ଏହା ଏକ ବୃହତ ପୋଥି । ଏଥିରେ ରାଧାକୃଷ୍ଣ ତତ୍ତ୍ୱ, ବଂଶୀତତ୍ତ୍ୱ, ପୁରାଣତତ୍ତ୍ୱ, ବୃନ୍ଦାବନତତ୍ତ୍ୱ, ବାଡ଼ି-ପଘାତତ୍ତ୍ୱ, ଗୁହାଳତତ୍ତ୍ୱ, ରାସ, ସ୍ତୋତ୍ର, ଫୁଲତୋଳା, ଗୋବର୍ଦ୍ଧନପୂଜା, ଶିଂଗା, ବେଣୁ, ମୟୂର ଚୂଳର ରହସ୍ୟ, ଗୁରଡ଼- ହନୁମାନ ଯୁଦ୍ଧ, ରୁକ୍ମିଣୀଙ୍କ ସୀତାବେଶ, ଷଡ଼ଚକ୍ର ସାଧନା ମାର୍ଗ- ପଦ୍ଧତି, ରାଧାକୃଷ୍ଣ ବୃତ୍ତାନ୍ତ, ଚଉତିଶା ନ୍ୟାୟ ରଚନା ନାନା ରହସ୍ୟପୂର୍ଣ୍ଣ ପ୍ରସଂଗର ଅବତାରଣା କରାଯାଇଛି ।

ବାରମାସରେ ପ୍ରକୃତିର ନାନା ବୈଚିତ୍ର୍ୟକୁ କବି ରାଧା-କୃଷ୍ଣଙ୍କ ଚରିତ୍ର ମଧ୍ୟରେ ଆରୋପ କରିଅଛନ୍ତି-

ଆଦ୍ୟ ମାର୍ଗଶିର ଶିଶିର ଶୀତ
ଶ୍ରୀକୃଷ୍ଣ ଜାଣନ୍ତି ରାଧିକା ଚିତ୍ତ,
ଦୁଃଖୀର ଜୀବନ ଦୁଃଖୀ ସଂଗୀତ ।
କାହିଁ ଆଣିଦେବି କମଳାକାନ୍ତ ମୋ କାହ୍ନୁରେ.....

ଭଗବାନଙ୍କର ପରିକର ରୂପେ ପଞ୍ଚସଖା କିପରି ପାଞ୍ଚ ଯୁଗରେ ତାଙ୍କରି ଆଦେଶରେ ମର୍ତ୍ତ୍ୟଭୁବନରେ ତାଙ୍କ ଲୀଳାର ନିମିତ୍ତ ହୋଇ ଜନ୍ମଲାଭ କରିଛନ୍ତି ତାହାର ଏକ ବିବରଣୀ ପ୍ରଦାନ କରି ଅଛନ୍ତି ।

ଅନନ୍ତ ଯୁଗ- ଶ୍ରୀଦାମ, ସୁଦାମ, ବସୁଦାମ, ନନ୍ଦ, ସୁବଳ ।
ସତ୍ୟଯୁଗ- ମାର୍କଣ୍ଡ, କୃପାଜଳ, ଗାର୍ଗବ, ସ୍ୱୟମ୍ଭୁ, ନାରଦ ।
ତ୍ରେତାଯୁଗ- ନଳ, ନୀଳ, ସୁଷେଣ, ଜାମ୍ବେବ, ହନୁମାନ ।
ଦ୍ୱାପର ଯୁଗ- ସୁବଳ, ସୁବାହୁ, ଦାମ, ସୁଦାମ, ଶ୍ରୀବସ୍ତ ।
କଳିଯୁଗ- ଅନନ୍ତ, ଅଚ୍ୟୁତ, ଜଗନ୍ନାଥ, ଯଶୋବନ୍ତ, ବଳରାମ ।

ଅନନ୍ତଗୋଇ- ଏହାର ପଦ ସଂଖ୍ୟା ପ୍ରାୟ ତିନିଶହ ହେବ । ଏହାର ପଦ ସଂଯୋଜନା ଏବଂ ଭାବ ଅତ୍ୟନ୍ତ ମନୋରମ । ସମଗ୍ର ପୋଥିଟି ଚକ୍ରକେଳି ରାଗରେ ଲିଖିତ । ଗ୍ରନ୍ଥାରମ୍ଭର ମଂଗଳାଚରଣରେ ଜଗନ୍ନାଥଙ୍କ ବନ୍ଦନା ରହିଛି । କଳିଯୁଗରେ ବିଚିତ୍ର ରୀତି ସଂପର୍କରେ ସାଂଧ ଭାଷାରେ ସୂଚନା ମାନ ରହିଛି ।

ଇନ୍ଦୁପରେ ବିନ୍ଦୁ ଦୃଶ୍ୟ ଗଗନ
ସେ ଦିନୁ ବଢ଼ିବ ଅତି ଅଜ୍ଞାନ ।

ଅନନ୍ତ ଗୋଇ ପୁସ୍ତକରେ ବିସ୍ମୟକର ତଥ୍ୟ ମାନ ଉପସ୍ଥାପିତ କରାଯାଇଅଛି । ତାଙ୍କର ଜନ୍ମ ତଥା ସାଧନା ଜଗତର କଲ୍ୟାଣ ପାଇଁ ଅଭିପ୍ରେରିତ ଥିଲା ।

**ଗୁରୁଭକ୍ତି ଗୀତା-** ଏକକ ପୋଥି ଭାବରେ 'ଗୁରୁ ଭକ୍ତି ଗୀତା' ହେଉଛି ଅଚ୍ୟୁତାନନ୍ଦଙ୍କର ସର୍ବବୃହତ ପୁସ୍ତକ । ପ୍ରାଚୀ ଗ୍ରନ୍ଥମାଳାରେ ଏହା ତିନି ଖଣ୍ଡ ବିଭକ୍ତ । ପ୍ରଥମ ଖଣ୍ଡରେ ଅଧ୍ୟାୟଗୁଡ଼ିକୁ ଛାନ୍ଦ ଏବଂ ଦ୍ୱିତୀୟ ତୃତୀୟ ଖଣ୍ଡରେ ସେଗୁଡ଼ିକୁ ପଟଳ ବୋଲି କହିଛନ୍ତି ।

ଗୁରୁ ଶିଷ୍ୟଙ୍କ ମଧ୍ୟରେ ସଂବଂଧ ସୂଚିତ କରିବା ପାଇଁ କହିଛନ୍ତି-

ଏଣୁ କରି ଗୁରୁ ଶିଷ୍ୟ ଅର୍ଦ୍ଧ ଅର୍ଦ୍ଧ ହୋଏ,<br>
ଗୁରୁ କୃଷ୍ଣ ଏକ ଅଂଗ ଭିନ୍ନ ଭିନ୍ନ ନୋହେ ।

ଏହି ଗ୍ରନ୍ଥର ତୃତୀୟ ଖଣ୍ଡରେ ଅଚ୍ୟୁତ ସାଧୁ, ସନ୍ଥ, ଗୁରୁ ଏବଂ ବୈଷ୍ଣବଙ୍କର ଲକ୍ଷଣମାନ ନିର୍ଣ୍ଣୟ କରିଛନ୍ତି ।

ସାଧୁର ଲକ୍ଷଣ:- ସତ୍ୟବଚନ ପ୍ରତିପାଳେ, ମିଛ ସେ ନକହଇ ତାଳେ ।<br>
ସବୁକଥାକୁ ସନମତ, ଶମ ଶାନ୍ତିରେ ଧରେ ଚିତ୍ତ ।<br>
ଭଗତି ଜ୍ଞାନେ ଧ୍ୟାନ କରେ, ସମାଧି ବସି ଜ୍ୟୋତି ଧରେ ।

**ବୈଷ୍ଣବର ଲକ୍ଷଣ-**

ବଇରଭାବ ଜନେନୋହେ, ମିତ୍ର ପରାୟେ ଭାଷା କହେ ।<br>
ବିତର୍କ ଭାବରେ ଖେଳଇ, ତର୍କ କାହାକୁ ନ କହଇ ।<br>
ବିଦ୍ୟା ଗୁଣରେ ସୁପଣ୍ଡିତ, ମୂର୍ଖଙ୍କ ପ୍ରାୟ ମଉନତ ।<br>
ମନ୍ତ୍ର ଭଜନ ନିରନ୍ତର, ହରି ନାମକୁ କରେ ସାର ।<br>
ପ୍ରାଣୀରେ ପୀରତି କରନ୍ତି, ଅପ୍ରୀତି ଜନରେ ନୋହନ୍ତି ।<br>
ପ୍ରାଣ ପୁରୁଷକୁ ଧ୍ୟାନରେ, ବିହରେ ପରମ ସଂଗରେ ।

ବୈଷ୍ଣବ ପରେ ସନ୍ଥ । ସନ୍ଥ ସ୍ୱଭାବ ସମ୍ବନ୍ଧରେ କହିଛନ୍ତି-

ସତ୍ୟ କହିବ ନିତ୍ୟ ତୁଣ୍ଡେ, ଶାନ୍ତିରେ ଥିବ ହୃଦେ ପିଣ୍ଡେ ।<br>
ଦୟା ଯେ କରିବ ହସ୍ତରେ, କ୍ଷମା କରିବ ଦୋଷୀଠାରେ ।<br>
ଧର୍ମ କରିବ ଅନ୍ନ ଦେଇ, ଦୁଃଖୀ ଦରିଦ୍ରଙ୍କୁ ଭୁଂଜାଇ ।<br>
ଏ ପାଞ୍ଚ ଲକ୍ଷଣ ଯାହାର, ସନ୍ଥ ବୋଲିବା ସେହୁ ନର ।

ବ୍ୟକ୍ତିଗତ ଶୁଦ୍ଧତାଠାରୁ ସାଧନା କ୍ରମରେ ସାଧୁ, ବୈଷ୍ଣବ, ସନ୍ଥ, ମହନ୍ତ, ମହାତ୍ମା ପ୍ରଭୃତି ସ୍ତର ବା ସୋପାନ ପ୍ରସଙ୍ଗ ଉଲ୍ଲେଖ କରିଅଛନ୍ତି । 'ମନୁଷ୍ୟାଣାଂ ସହସ୍ରେଷୁ କ୍ୱଚିଦ୍ ଯତତ ସିଦ୍ଧୟେ' (ଗୀତା ୭/୩)ରେ ଭଗବାନ ବ୍ୟାସ ଯେଉଁ ବିଭାଜନ ସୂଚାଇଛନ୍ତି ଏଠାରେ ଅଚ୍ୟୁତ ତତ୍‌କାଳୀନ ସମାଜରେ ଧର୍ମୀୟ ସ୍ଥିତି ଆଧାରରେ ସୋପାନଗୁଡ଼ିକୁ ଆହୁରି ସ୍ପଷ୍ଟ ଏବଂ ସୁବିନ୍ୟସ୍ତ କରି ଦେଇଛନ୍ତି । ଅଚ୍ୟୁତାନନ୍ଦ ଭଗବାନ୍ ଶ୍ରୀକୃଷ୍ଣଙ୍କ ଅପାର କରୁଣାରୁ ଅପୂର୍ବ କବିତ୍ୱ ଶକ୍ତିର ଅଧିକାରୀ ଥିଲେ । ତାଙ୍କ ଜୀବଦ୍ଦଶାରେ ବହୁ ଗ୍ରନ୍ଥ (ବହୁପ୍ରକାର) ଗ୍ରନ୍ଥ ରଚନା କରିଥିଲେ । ଗ୍ରନ୍ଥଗୁଡ଼ିକ ହେଲା-

୧. ଶବ୍ଦବ୍ରହ୍ମ ବା ଚାରିଖାନି, ୨. ଦଶ ପଟଳ ମାଳିକା, ୩. ଗରୁଡ଼ ଗୀତା, ୪. ଶୂନ୍ୟ ସଂହିତା, ୫. ମହାମନ୍ତ୍ର ବା ମନ୍ତ୍ରରାଜ, ୬. ଷଡ଼ଚକ୍ର, ୭. ତତ୍ତ୍ୱ ବୋଧିନୀ ଗୀତା, ୮. ଆଗତ ଭବିଷ୍ୟ, ୯. ବ୍ରହ୍ମ ଶାଙ୍କୋଳୀ, ୧୦. ଅଣାକାର ସଂହିତା, ୧୧. ଗୁରୁ ଭକ୍ତି ଗୀତା, ୧୨. ଅକଳିତ ସଂହିତା, ୧୩. ଆଗତସାର, ୧୪. ପରମ ରାହାସ, ୧୫. ଗୁପତ ଗହନ ଗୀତା, ୧୬. ଧୁନି ସଂହିତା, ୧୭. ଛାୟା ସଂହିତା, ୧୮. ଜ୍ୟୋତି ସଂହିତା, ୧୯. ବୀଜସାର ଗୀତା, ୨୦. ବସାଣ, ୨୧. ଅଣାକାର ବ୍ରହ୍ମ ଯନ୍ତ୍ର, ୨୨, କର୍ମ ସଂହିତା, ୨୩. ପରମ ଗୁପ୍ତ ଗୀତା, ୨୪. ଶିଶୁବେଦ ସପ୍ତାଙ୍ଗ, ୨୫. ଏକାକ୍ଷର ସଂହିତା, ୨୬. ଉଦୟ କାହାଣୀ, ୨୭. ବାରମାସ ଚବିଶ ଉପଦେଶ, ୨୮. ଅନାହତ ସଂହିତା. ୨୯. ଅନାହତ ଧୁନି ସଂହିତା, ୩୦. ଅବାଡ଼ ସଂହିତା, ୩୧. ଭାଗବତ 'ଲହରୀ ହରିବଂଶ' ।

କବିଙ୍କର ଅଧିକାଂଶ ପୁସ୍ତକ ପ୍ରକାଶିତ ହୋଇ ନାହିଁ ଏବଂ ପ୍ରସିଦ୍ଧ ପୁରାଣ ହରିବଂଶର ଶୁଦ୍ଧ ପାଠ ସଂସ୍କରଣ ମଧ୍ୟ ହୋଇ ନାହିଁ । କମ୍ପ୍ୟୁଟର ଯୁଗରେ ମଧ୍ୟ ଏ ସମସ୍ତ ଗ୍ରନ୍ଥର ନେଟ୍‌ରେ ଉପଲବ୍ଧ ହୋଇ ନାହିଁ ।

ଏ ସମ୍ବନ୍ଧରେ ଅଧ୍ୟାପକ ତଥା ଗବେଷକମାନେ ସମୁଚିତ ଦୃଷ୍ଟି ଦେଇଛନ୍ତି ବୋଲି ମନେ ହୁଏ ନାହିଁ ॥



# ଶିଶୁ ଅନନ୍ତ ଦାସ

ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତାନୁସାରେ ମହାପୁରୁଷ ଅନନ୍ତ ଦାସ ଖ୍ରୀ.ଅ ୧୪୯୩ ମସିହାରେ ପୁରୀ ଜିଲ୍ଲାର ବାଲିପାଟଣା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ମାତାଙ୍କ ନାମ ଗୌରୀ ଏବଂ ପିତାଙ୍କ ନାମ କପିଳ ଥିଲା । (ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ- ପୃ-୧୪୩-୧୪୪) ।

ଅନନ୍ତ ଦାସଙ୍କ ନାମ ପୂର୍ବରୁ ଶିଶୁ ପ୍ରଯୁକ୍ତ ହୋଇଛି । ତେଣୁ ସେ ଶିଶୁ ଅନନ୍ତ ଦାସ ନାମରେ ସୁପରିଚିତ ଏବଂ ସେ ଶିଶୁ ସଂପ୍ରଦାୟର ପ୍ରବର୍ତ୍ତକ ବୋଲି କୁହାଯାଏ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ତାଙ୍କୁ ଗଜପତି ପୁରୁଷୋତ୍ତମ ଦେବଙ୍କ ରାଜତ୍ୱର ୨୫ଅଙ୍କ ଅର୍ଥାତ୍ ଖ୍ରୀ.ଅ ୧୪୮୬ରେ ଜନ୍ମଗ୍ରହଣ କରିଥିଲେ ବୋଲି କହିଛନ୍ତି ।

ତାଙ୍କର ଅନ୍ୟତମ ଶିଷ୍ୟ ହଂସଦାସ ଜଣେ ପ୍ରସିଦ୍ଧ ବ୍ୟକ୍ତି ଥିଲେ ଏବଂ ତାଙ୍କର (ହଂସ ଦାସ) ଜଗତସିଂହପୁର ଜିଲ୍ଲାର ତେନ୍ତୁଳିଆପଦା ଗ୍ରାମ ନିକଟରେ ଗୋଟିଏ ଗାଦି ରହିଛି । ହଂସଦାସ ଗାଦି ନାମରେ ତାହା ପରିଚିତ । ହଂସଦାସଙ୍କର ବ୍ରହ୍ମଜ୍ଞାନ ମୂଳକ ଭଜନ ଓଡ଼ିଶାରେ ପ୍ରଚଳିତ ହୋଇଅଛି ।

ଅନନ୍ତ ଦାସ ନାମରେ ଭଣତି ଥାଇ ଅଧୋଲିଖିତ ପୁସ୍ତକମାନ (ପୋଥି) ସଂଗ୍ରାହାଳୟରେ ରହିଅଛି । ୧. ଅର୍ଥ ତାରିଣୀ, ୨. ଚୁମ୍ବକ ମାଳିକା, ୩. ଅଣାକାର ଶବଦ, ୪. ଭକ୍ତି ମୁକ୍ତି ଦାୟକ ଗୀତା, ୫. ଭଜନ ତତ୍ତ୍ୱ, ୬. ମନ୍ତ୍ର ଚନ୍ଦ୍ରିକା, ୭. ଗରୁଡ଼ କେଶବ ଚଉତିଶା, ୮. ଠିକ ବାଖର, ୯. ପିଣ୍ଡ ବ୍ରହ୍ମାଣ୍ଡ ଗୀତା, ୧୦. ଉଦେ ବାଖର ।

୧. ଅର୍ଥ ତାରିଣୀ- ଏହି ଗ୍ରନ୍ଥରେ ସିଦ୍ଧ ବାରଂଗଙ୍କୁ ଉପଦେଶ ଛଳରେ ବକ୍ତବ୍ୟ ବସ୍ତୁ ବର୍ଣ୍ଣିତ ହୋଇଛି । ଗ୍ରନ୍ଥରେ ୧୬ ଗୋଟି ଅଧ୍ୟାୟ ରହିଛି ।

ଶ୍ରୀଶତ ଅନନ୍ତ ବ୍ରହ୍ମାଣ୍ଡେ ହେଲେ ଭକତ
ଶରଣାଗତ ଅନାଦିଙ୍କ ଚରଣେ ମାଗଇ ଶିଶୁ ଅନନ୍ତ ।
ଶ୍ରୀଖଣ୍ଡଗିରିରେ ବସିଣ ବାରଂଗ କହିଲେ ଶିଶୁକୁ ଚାହିଁ
ବାରଂଗ ଯେଉଁ ରୂପେ ଖୁଣ୍ଟିଆଙ୍କୁ ସଂଗେ ନେଇ ।
ପରମ ଚେଷ୍ଟା ଉତ୍ପତି ଚରିତ ଯେଉଁଠାରୁ ଜୀବ ଜାତ
ଶିଶୁ ବେଦ ଯେଉଁଠାରୁ ଉତ ପତି ଯେଉଁଠାରେ ଅନାହତ ।

୨. ଚୁମ୍ବକ ମାଳିକା- ଅଚ୍ୟୁତାନନ୍ଦଙ୍କ ଭବିଷ୍ୟମାଳିକା ଯଥା ଯଶୋବନ୍ତଙ୍କ ମାଳିକା ପରି ଏହା ଆଗତ ଭବିଷ୍ୟ ବୃତ୍ତାନ୍ତ ମୂଳକ ଗ୍ରନ୍ଥ । କଳିଯୁଗରେ ଯାହା ଯାହା ଘଟିବ, ସେ ସମ୍ବନ୍ଧରେ ଆଲୋଚନା କରି କବି ଉକ୍ତ ପୁସ୍ତକରେ ସମ୍ପୃଟୀତ କରିଅଛନ୍ତି । କବି ପ୍ରଥମେ ନିର୍ବିକାର ପୁରୁଷ ନୀଳକନ୍ଦର ବାସୀ ଶ୍ରୀଜଗନ୍ନାଥଙ୍କୁ ବନ୍ଦନା କରି ଗ୍ରନ୍ଥାରମ୍ଭ କରିଛନ୍ତି ।

୩. ଅଣାକାର ଶବଦ- ବ୍ରହ୍ମଜ୍ଞାନ ସମ୍ବନ୍ଧରେ ଏହା ଏକ କ୍ଷୁଦ୍ର ପୋଥି । ଏଥିରେ ଅଣାକାର ପୁରୁଷ ପରମବ୍ରହ୍ମଙ୍କ ତତ୍ତ୍ୱ ବର୍ଣ୍ଣିତ ।

ଆଦ୍ୟ ଶୂନ୍ୟ ଭିତରେ ନିରାକାର ଥିତି
ଅଣାକାର ପରେ ପରମବ୍ରହ୍ମ ମୂର୍ତ୍ତି ।
× × × ×
ବିନ୍ଦୁ ଅକ୍ଷରୁ ହୋଇଲା ଅଶେଷ
ଶିଶୁ ଅନନ୍ତ ସେହିଠାରୁ ଆସ ।

୪. ଭକ୍ତି ମୁକ୍ତି ଦାୟକ ଗୀତା- ଆଗତ ଭବିଷ୍ୟତ ବିଷୟ ଉକ୍ତ ଗ୍ରନ୍ଥରେ ବର୍ଣ୍ଣିତ । ଯୁଧିଷ୍ଠିରଙ୍କ ପ୍ରଶ୍ନ ଶ୍ରୀକୃଷ୍ଣଙ୍କ ଉତ୍ତର ମଧ୍ୟରେ ଗ୍ରନ୍ଥ ସମାପ୍ତ ହୋଇଛି । ଗ୍ରନ୍ଥଟି ସଂପୂର୍ଣ୍ଣ ବାରଟି ପଟଳ (ଅଧ୍ୟାୟ) ।

ଭଣଇ ଶିଶୁ ଅନନ୍ତ ସଂପୂର୍ଣ୍ଣରେ ବାଣୀ
ଦ୍ୱାଦଶ ପଟଳ ଶେଷକର ଚକ୍ରପାଣି ।

**୫. ଗରୁଡ଼ କେଶବ ଚଉତିଶା**- ଉକ୍ତ ପୁସ୍ତକରେ ଗରୁଡ଼ ପ୍ରଭୁ ଶ୍ରୀକୃଷ୍ଣ କେଶବଙ୍କୁ କଳିଯୁଗର ଭବିଷ୍ୟ ବୃତ୍ତାନ୍ତ ସମ୍ବନ୍ଧରେ କେତେକ ପ୍ରଶ୍ନ ଉତ୍ଥାପନ କରି ତହିଁର ଉତ୍ତର ପାଇଛନ୍ତି । ଏଥିରେ ଓଡ଼ିଶାରେ ରାଜତ୍ୱ କରିଥିବା ରାଜାମାନଙ୍କ ସମୟର ବିଶେଷ ଘଟଣା, ବିଶେଷକରି ପ୍ରଜାମାନଙ୍କର ଆଚାର ବିଚାର ସମ୍ବନ୍ଧରେ ଆଲୋଚନା କରାଯାଇଛି ।

କହନ୍ତି ଗରୁଡ଼ ଶୁଣ ହେ କେଶବ
ଜଣାଇଉଛି ଶ୍ରୀଛାମୁରେ
ସତ୍ୟ ତ୍ରେତୟା ଦ୍ୱାପର ଭୋଗଗଲା
କଳି ଅଛି ଆଉ ଆଗରେ
ଆହେ କେଶବ !
ମୁଁ ଯେ ତୁମ୍ଭର ନିଜ ଦାସ
କିସ ଭିଆଣ କରିଅଛ କେଶବ କହିବ
ଆଗତ ଭବିଷ୍ୟ ॥

ପୁସ୍ତକର ନାମ ଚଉତିଶା ହୋଇଥିଲେ ହେଁ ଏହାର ପଦସଂଖ୍ୟା ୬୪ ଏବଂ 'କ' 'କ୍ଷ' ଚଉତିଶା ନିୟମ ସର୍ବତ ରକ୍ଷା ହୋଇ ନାହିଁ ।

**୬. ପିଣ୍ଡ ବ୍ରହ୍ମାଣ୍ଡ ଗୀତା**- ଏହି ପୋଥିରେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, ପିଣ୍ଡ ବ୍ରହ୍ମାଣ୍ଡ ରହସ୍ୟ ଚର୍ଚ୍ଚିତ ହୋଇଛି । ଦୁଇଶହ ଛୟାଳିଶି ପଦ ବିଶିଷ୍ଟ ଏହି ରଚନା ।

**ସଦ୍ ଗୁରୁ ପ୍ରସନ୍ନେ ମୋ ବୁଦ୍ଧି ପ୍ରସରିଲା**
**ଅମାବାସ୍ୟା ରାତ୍ରେ ଗମନ୍ତେ ଚନ୍ଦ୍ର ପ୍ରକାଶିଲା ।**
**ବ୍ରହ୍ମାଣ୍ଡ ଯେ ସାର ଗୀତା ପରମ ଗୁପତ**
**ସନ୍ଥଜନଙ୍କର ହିତେ କରଇ ଭକତ ।**
**ଦୁଇଶହ ଛୟାଳିଶ ପଦେ ହେଲେ ସରି**
**× × × × ×**
**କର୍ଣ୍ଣ ପଥେ ଶୁଣି ନରେ ହୃଦ ପଦ୍ମେ ଘୋଷ**
**ଭକ୍ତ ଭାବେ ଭଣଇ ଅନନ୍ତ ରାମ ଦାସ ॥**

**୭. ଉଦେ ବାଖର**- ଏହି ପୋଥି ଶିଶୁ ଅନନ୍ତଙ୍କ ନାମରେ ଭଣିତା ଥାଇ ରାଜ୍ୟ

ସଂଗ୍ରହାଳୟ ପୋଥି ବିଭାଗରେ ରହିଛି । ଉକ୍ତ ପୋଥି ୫୭ ପଦ ବିଶିଷ୍ଟ ଏବଂ ଶେଷ ପଦରେ ଅନନ୍ତ ଦାସଙ୍କ ପିତା- ମାତାଙ୍କ ନାମୋଲ୍ଲେଖ ରହିଛି ।

ହରି ଆଶ୍ରେ କର ସୁଜ୍ଞ ଜନମାନେ
ହରି ମହିମା ଅଗୋଚର,
ଅନନ୍ତ ଶିଶୁ ହରି ଆଶ୍ରେ କରିଣ
କଳି-କଲ୍ମଷ କଲା ଦୂର ।
ଆହେ ସୁଜନ !
ଅକୁଳ ଅମୂଳ ଅଟଇ
କପିଳ ମୁନି ପିତା ମୋହର ଅଟଇ
ମାତା ଗୋଉରା ନାମ ବହି ॥

ହେତୁ ଉଦୟ ଭାଗବତ- ହେତୁ ଉଦୟ ଭାଗବତ ଶିଶୁ ଅନନ୍ତଙ୍କର ଏକ ପ୍ରସିଦ୍ଧ ବ୍ରହ୍ମଜ୍ଞାନମୂଳକ ଗ୍ରନ୍ଥ । ଏହା ଦଶଗୋଟି ଅଧ୍ୟାୟ ସମ୍ବଳିତ । 'ହେତୁ' ଓ 'ମନ'ର କଥୋପକଥନରେ ଗ୍ରନ୍ଥର ପ୍ରସଂଗ ଗତିଶୀଳ ହୋଇଛି । ଓଡ଼ିଶା ସନ୍ଥ ସାହିତ୍ୟରେ 'ହେତୁ' ଏକ ବିଶିଷ୍ଟ ଶବ୍ଦ ଯାହାର ଅର୍ଥ ଜ୍ଞାନ । ପ୍ରାଚୀନ ସାହିତ୍ୟରେ 'ହେତୁ' ଶବ୍ଦର ବହୁଳ ପ୍ରୟୋଗ ପରିଲକ୍ଷିତ ହୋଇଥାଏ ।

ପ୍ରଚଳିତ ଧାରା ଅନୁସାରେ ଗୁରୁ ବନ୍ଦନାରୁ ଗ୍ରନ୍ଥାରମ୍ଭ ହୋଇଅଛି ।

ବନ୍ଦଇ ଶ୍ରୀଗୁରୁ ଚରଣ । ଗୁରୁ ଜୀବର ପରିତ୍ରାଣ ।
ଗୁରୁଟି ଆପେ ବ୍ରହ୍ମରାଶି । କାଳ ସ୍ୱରୂପେ ତମ ନାଶି ।
ଶ୍ରୀଗୁରୁ ଆଦିଶକ୍ତି ହୋଇ । ଆଦି ଅନାଦି ନାମ ବହି ।
ଅନାଦି ଠାରୁ ଆଦି ହୋଇ । ଏଣୁ ତା' ଆଦି ଅନ୍ତ ନାହିଁ ।

ଗୁରୁଙ୍କ କୃପାରେ ବିଦ୍ୟା ଶିକ୍ଷା ବିନା ଉକ୍ତ ତତ୍ତ୍ୱ ଗ୍ରନ୍ଥ ରଚନାରେ ସମର୍ଥ ହୋଇପାରନ୍ତି, କବି କହିଛନ୍ତି-

ବେଦ ସାହାସ୍ର ପଢ଼ି ନାହିଁ । ଶ୍ରୀଗୁରୁ ସେବା ନଜାଣଇ ।
କେମନ୍ତେ ସୁକୃପା ହୋଇଲା । ତେଣୁ ଲେଖିଲି ବ୍ରହ୍ମଲୀଳା ।
ହେତୁ ଉଦୟ ଭାଗବତ । ଲେଖିଲା ପାମର ଅନନ୍ତ । (ଅ.୨)

ଏହି ଶରୀରରେ ଗଂଗା ଯମୁନା ରହିଛି, ଏ ଶରୀରରେ ସବୁ ତୀର୍ଥ ରହିଅଛି । ଶିଶୁ ଅନନ୍ତ ବର୍ଣ୍ଣନା କରିବାକୁ ଯାଇ କହନ୍ତି-

ଗଂଗା ଯମୁନା ଏହୁ ଜାଣ । ସରସ୍ୱତୀ କାଳିନ୍ଦୀ ନାମ ॥
ଇଅଁଳା ପିଅାଁଳା ବୋଲାଇ । ଶିଶୁମୁଳା ଯେ ବିଧି ଏହି ॥
ଏହି ଯେ ମଥୁରା ଅଯୋଧା । ଦ୍ୱାରିକା ନୀଳାଦ୍ରି ଯେ ଶୁଦ୍ଧା ॥

ପ୍ରସଂଗ କ୍ରମେ ଗୋରଖନାଥ ଅସମ୍ଭବ କରିବାର ଆଖ୍ୟାନ ପ୍ରଦତ୍ତ । ଭାଗବତର ଚବିଶ ଗରୁଙ୍କ ବିଷୟର ଏକ ତାତ୍ତ୍ୱିକ ବ୍ୟାଖ୍ୟାନ ଚତୁର୍ଥ ଅଧ୍ୟାୟରେ ରହିଛି । ପଞ୍ଚମ ଅଧ୍ୟାୟରେ ଅବଧୂତ ଉପାଖ୍ୟାନ । ବଚନ ସିଦ୍ଧ, ବ୍ୟବସାୟୀର ବାକ୍ୟ ଅନୁସାରେ ବଳଦ ଗାଡ଼ିରେ ଲଦା ହୋଇଥିବା ବିରି ଅଂଗାର ହୋଇଛି । ଯୋଗ ସିଦ୍ଧ ପୁରୁଷଙ୍କ ଦୟାରୁ ଅଦ୍ଭୁତ ଘଟଣା ଘଟିଛି ।

ଅନ୍ଧ ଚକ୍ଷୁଦାନ ପାଇ । ଅପୁତ୍ରୀ ପୁତ୍ର ଯେ ଲଭଇ ।
ଖୋଡ଼ ଯେ କୁଷୀ ଯେତେ ଜନ । ସମସ୍ତେ ଲଭିଲେ କାରଣ ।
ଦରିଦ୍ର ଧନବନ୍ତ ହେଲା । ନିଶ୍ଚଳ ଭକ୍ତି କେ ଲଭିଲା ।

ଯୋଗ ସାଧନର ଶ୍ରେଷ୍ଠତା, ଯୋଗ ସିଦ୍ଧର ମହତ୍ତ୍ୱ ପ୍ରକଟିତ ହୋଇଛି । ଦଶମ ଅଧ୍ୟାୟରେ ନୀଳାଦ୍ରି କ୍ଷେତ୍ର ତତ୍ତ୍ୱରେ ପଞ୍ଚବେଦର ବର୍ଣ୍ଣ ପଞ୍ଚଶଂଖ ରୂପ ଶଂଖନାଭି ମଣ୍ଡଳରେ ଏକତ୍ର କରି ଦେଇଛନ୍ତି ।

ଏ ମନ୍ତ ନୀଳାଦ୍ରି ମହିମା । ଦେବାକୁ ନାହିଁ ନା ଉପମା ॥

ଗ୍ରନ୍ଥର ଅନ୍ତିମ ପର୍ଯ୍ୟାୟରେ ଗୁରୁଙ୍କ ମହିମା ବର୍ଣ୍ଣିତ । ସେ ଗୁରୁପଦ ସ୍ମରଣରେ ଏହି ଗ୍ରନ୍ଥ ରଚନା କରିଛନ୍ତି ।

ଶ୍ରୀଗୁରୁ ପାଦେ ଚିତ୍ତ ଦେଇ । ଯେ ହେତୁ ଉଦେ ଲେଖି ଲଇଁ ॥
ଶରଣ ତାହାଙ୍କ ଚରଣ । ପାମର ଅନନ୍ତ ବଖାଣ ॥
ମନ୍ତ୍ର ସେ ଯନ୍ତ୍ର ଆଦି ଯେତେ । ଏ ଗ୍ରନ୍ଥେ ଅଛନ୍ତି ସମସ୍ତେ ॥
ଭକ୍ତି ଯେ ମୁକ୍ତି ଏଥି ଅଛି । ଶ୍ରୀଗୁରୁ ପ୍ରସନ୍ନରେ ଲେଖି ॥
ଯେହେତୁ ଉଦେ ଭାଗବତ । ଶ୍ରୀସନ୍ଥ ସାଧୁଙ୍କ ଚରିତ ॥
ଗୁରୁ ସେବିଲେ ଏହା ପାଇ । ନୋହିଲେ କୋଟି କଲ୍ପେ କାହିଁ ॥



# ଭକ୍ତ କବି ଯଶୋବନ୍ତ ଦାସ

ଉତ୍କଳୀୟ ପ୍ରସିଦ୍ଧ ପଞ୍ଚସଖାଙ୍କ ମଧ୍ୟରୁ ସାଧକ ଯଶୋବନ୍ତ ଏକତମ । ସେ (କଟକ ଜିଲ୍ଲା) ଜଗତସିଂହପୁର ଜିଲ୍ଲା ଅଡ଼ଙ୍ଗଗଡ଼ରେ ଖ୍ରୀ.ଅ ୧୪୮୭ରେ ଜନ୍ମଗ୍ରହଣ କରିଥିଲେ । ଅଡ଼ଙ୍ଗଗଡ଼ କଟକ- ଜଗତସିଂହପୁର ରାସ୍ତା ନିକଟବର୍ତ୍ତୀ ଅଣଖିଆଠାରୁ ପାଞ୍ଚ କିଲୋମିଟର ଦୂରରେ ଦେବୀ ନଦୀ ତଟରେ ଅବସ୍ଥିତ । ଏଠାରେ ବର୍ତ୍ତମାନ ତାଙ୍କ ସାଧନା ପୀଠ ମଠ ବିଦ୍ୟମାନ । ୧୯ ପୁରୁଷ ହେଲା ଏହି ମଠ ବଂଶ ପରଂପରା କ୍ରମେ ଯଶୋବନ୍ତଙ୍କ ଉତ୍ତରାଧିକାରୀ ମାନଙ୍କ ଦ୍ୱାରା ପରିଚାଳିତ ହୋଇ ଆସୁଅଛି । ମାଘ ଶୁକ୍ଳ ଷଷ୍ଠୀ ବା ଓଢ଼ଣ ଷଷ୍ଠୀ ତାଙ୍କ ମହାପ୍ରୟାଣ ଦିବସରେ ଏଠାରେ ଗୋଟିଏ ମେଳା ଅନୁଷ୍ଠିତ ହୁଏ ।

ମହାତ୍ମା ଯଶୋବନ୍ତଙ୍କ ଅଗାଧ ଯୋଗ ପ୍ରଭାବରେ ମୁଗ୍ଧ ହୋଇ ଗଜପତି ପ୍ରତାପ ରୁଦ୍ରଦେବ ଅଠରନଳା ନିକଟରେ ତାଙ୍କୁ ଅଭ୍ୟର୍ଥନା କରିଥିବା ଜନଶ୍ରୁତି ଅଦ୍ୟାପି ପ୍ରଚଳିତ । ଶ୍ରୀଚୈତନ୍ୟଙ୍କ ପୁରୀରେ ଅବସ୍ଥାନ ତଥା ଉତ୍କଳୀୟ ପଞ୍ଚ ସଖାଙ୍କର ତାଙ୍କ ସହ ଯେଉଁ ଅପୂର୍ବ ସମନ୍ୱୟ ସଂଘଟିତ ହୋଇ ଥିଲା ସେ ସମ୍ବନ୍ଧରେ 'ନିତ୍ୟ ଗୁପ୍ତ ମଣି' ଦିବାକର ଦାସ କୃତ ଶ୍ରୀଜଗନ୍ନାଥ ଚରିତାମୃତ, ବଂଗୀୟ କବି ଦେବକୀ ନନ୍ଦନଙ୍କ ବୈଷ୍ଣବ ବନ୍ଦନା, ମହାପୁରୁଷ ଅଚ୍ୟୁତଙ୍କ 'ଶୂନ୍ୟସଂହିତା' ପ୍ରଭୃତି ଗ୍ରନ୍ଥମାନଙ୍କରେ ହୋଇଅଛି । ଯଶୋବନ୍ତ ଦାସଙ୍କ ଚୌରାଶୀ ଆଜ୍ଞା' ପୁସ୍ତକରେ ତତ୍ ସଂପର୍କିତ ବର୍ଣ୍ଣନା ଏହିପରି-

କହନ୍ତି ଚୈତନ୍ୟ ଗୋସାଇଁ, ପଞ୍ଚ ସଖାକୁ ପାଶେ ରାଇ ।
ବୋଇଲେ ଜଗନ୍ନାଥ ଦାସ, ମୋର ନିକଟେ ବେଗେ ଆସ ।
ପୁଣି ବୋଇଲେ ବଳରାମ, ଆସ ମୋ ନିକଟେ ବହନ ।
ଯଶୋବନ୍ତ ଦାସ ତୁ ଆସ, ଅଚ୍ୟୁତାନନ୍ଦ ଶିଶୁ ଦାସ ।
ପ୍ରଭୁଙ୍କ ଶ୍ରୀମୁଖ ବଚନ, ରାଇ ହେ ଗଲୁ ସନ୍ନିଧାନ ।

(ଯଶୋବନ୍ତଙ୍କ ଚୌରାଶୀ ଆଜ୍ଞା)

ସିଦ୍ଧ ସାଧକ ଯଶୋବନ୍ତ ଦାସଙ୍କ ପ୍ରକାଶିତ 'ଶିବସ୍ୱରୋଦୟ' ଯୋଗ ବିଷୟ ସମ୍ବନ୍ଧୀତ 'ସ୍ୱରୋଦୟ ଲେଶ' ନାମକ ସଂସ୍କୃତ ଗ୍ରନ୍ଥ ଆଧାରରେ ରଚିତ ହୋଇଥିଲେ ହେଁ ଏହାର ଆଦ୍ୟ ଏବଂ ପ୍ରାନ୍ତରେ ଶ୍ରୀ ଜଗନ୍ନାଥଙ୍କ ମହିମା କୀର୍ତ୍ତିତ ହୋଇଛି ।

ଜୟଜୟ ଜଗନ୍ନାଥ ଜଗତ ଧାରଣ
ଜୟ ବଳଭଦ୍ର ଭଦ୍ରା ଜୟ ସୁଦର୍ଶନ ।
ଜୟ ଉତପତି ସ୍ଥିତି ଯାହାଠାରୁ ହୋଏ
ଜଗନ୍ନିବାସ ବୋଲନ୍ତି ଶ୍ରୁତି ଯାହା ରାଏ ।

ଗ୍ରନ୍ଥର ଶେଷାଂଶରେ-

କୋଟି କୋଟି ପତିତ ପାବନ ନେବ ହରି
ତିନି ଭୁବନରେ ନାଥ ନୀଳାଦ୍ରି ବିହାରୀ ।
ଦକ୍ଷିଣ ବାରିଧି ତଟେ କଳପବଟ ମୂଳେ
ନିଜ ସୁଖେ ବିହାର କରନ୍ତି କୃତୁ ହଳେ ।
ବେଦ ଯାହା ନ ଚିହ୍ନଇ ଆଉ କେ ଚିହ୍ନିବ
ନରଙ୍କର ଚିହ୍ନିବାକୁ କେହୁ କ୍ଷମ ହେବ ।
ଆଶ୍ରେ କଲା ଜନକୁ ନିୟମ କଷ୍ଟ ତାରି
ଅଭକ୍ତ ଜନରେ ଦୟ ଅନ୍ନ ବସ୍ତ୍ର କରି ।
ଏବଂ ଭୂତ ଯେଉଁ ପ୍ରଭୁ ତାଙ୍କ ପଞ୍ଚଭୂତ
ଏକ ଭୂତ ସଖା ଯେ ଅଟଇ ଯଶୋବନ୍ତ ।

ଶ୍ରୀଜଗନ୍ନାଥଙ୍କ ପଞ୍ଚଭୂତ ସଖାଙ୍କ ମଧ୍ୟରୁ ସେ (ଯଶୋବନ୍ତ) ହେଉଛନ୍ତି ଏକତମ ବୋଲି ସ୍ୱୟଂ ଘୋଷଣା କରିଅଛନ୍ତି ।

ସିଦ୍ଧ ସାଧକ ସନ୍ଥ ମହୋଦୟଙ୍କ ଅନ୍ୟ ଏକ ପ୍ରକାଶିତ ପୁସ୍ତକ 'ପ୍ରେମଭକ୍ତି ବ୍ରହ୍ମ ଗୀତା'ରେ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ ଅତି ଆତ୍ମୀୟତା ଭରା ବର୍ଣ୍ଣନା ଦେଖିବାକୁ ମିଳେ ।

ନମସ୍ତେ ଦେବ ଜଗନ୍ନାଥ । ସେ ପ୍ରଭୁ ଶଂଖ ଚକ୍ର ହସ୍ତ ।
ପ୍ରଳୟ ଜଳେ ଶଂଖା ମାରି । ଯେ ଶଂଖ ଚକ୍ର ଭୁଜେ ଧରି ।
ଜଗତ ଉଦ୍ଧାରଣ କାଳେ । ଅବନୀ ସ୍ଥାପିଲ ନିଶ୍ଚଳେ ।

× × × × ×

ଉକ୍ତ ଗ୍ରନ୍ଥର ପଞ୍ଚମ ଅଧ୍ୟାୟରେ ଉତ୍କଳ ଦେଶର ସିନ୍ଧୁ ତଟରେ ନୀଳଗିରି ପର୍ବତୋପରି ଅକ୍ଷୟ ବଟ ନିକଟରେ ପୂଜିତ ଚତୁର୍ଦ୍ଧା ରୂପୀ ଜଗନ୍ନାଥଙ୍କର ସ୍ତୁତିଗାନ କରି କବି ରତ୍ନସିଂହାସନ, ଜଗମୋହନର ଚାରିଦ୍ୱାର, କଳାପାବଚ୍ଛ, ଅରଗଳି, ଜୟ ବିଜୟ ଦ୍ୱାର, ଗରୁଡ଼ସ୍ତମ୍ଭ ଏବଂ ବେଢ଼ା ମଧ୍ୟସ୍ଥ ରୋଷଘର, ବଟମଂଗଳା, ରୋହିଣୀ କୁଣ୍ଡ, ସୁନାକୂଅ, ମୁକ୍ତିମଣ୍ଡପ, ସିଂହଦ୍ୱାର ପ୍ରଭୃତି ବର୍ଣ୍ଣନା କରିଅଛନ୍ତି । ଏ ସମସ୍ତ ଦୁର୍ଲଭ ଦେବଶକ୍ତି ଯେଉଁଠାରେ ସମାବିଷ୍ଟ ତାହା ତାଙ୍କ ବିଚାରରେ ଶ୍ରେଷ୍ଠ ତୀର୍ଥ ଏବଂ ଭୂସ୍ୱର୍ଗ-

ଦେଖ ଏ ନିତ୍ୟ ନୀଳାଚଳ । ସକଳ ତୀର୍ଥଙ୍କର ଆଳ ।
ଗୋପ ମଥୁରା ବୃନ୍ଦାବନ । ଦ୍ୱାରକା ଆଦି ଯେତେ ସ୍ଥାନ ।
ସକଳ ଏହି ସ୍ଥାନେ ପାଇ । ଆବର କାଶୀ ମଧ ହୋଇ ।
କୋଟିଏ ତୀର୍ଥ ଏ କ୍ଷେତ୍ରରେ । ମହିମା କହିଲେ ନସରେ ।
ସ୍ୱର୍ଗୁ ସକଳ ଦେବଗଣ । ଖଟନ୍ତି ତିନି ଧୂପେ ପୁଣ ।
ବ୍ରହ୍ମା ତାଙ୍କର ପୁରନ୍ଦର । ଆବର ଶଶୀ ଦିବାକର ।
ଖଟନ୍ତି ଧୂପ ଅବକାଶ । ସକଳ ଦେବତା ତ୍ରିଦଶ ।

**ଗୀତଗୋବିନ୍ଦ ଚନ୍ଦ୍ର-** ଯଶୋବନ୍ତଙ୍କ ରଚନାବଳୀ ମଧ୍ୟରେ ଟୀକାଗୋବିନ୍ଦ ଚନ୍ଦ୍ର ବହୁ ଲୋକପ୍ରିୟତା ଅର୍ଜନ କରିଥିଲା । ଯୋଗୀମାନେ କେନ୍ଦରା ସାହାଯ୍ୟରେ ଏହି ଆଖ୍ୟାନ ଗାନ କରିଥାନ୍ତି । ଏହି ପୁସ୍ତକରେ ବଂଗର ରାଜା ଗୋବିନ୍ଦ ଚନ୍ଦ୍ର କିପରି ମାତା ମୁକ୍ତାଦେଈଙ୍କ ଉପଦେଶ ଅନୁସାରେ ସିଂହାସନ, ପରିବାର ତ୍ୟାଗ କରି ସନ୍ନ୍ୟାସ ଜୀବନ ବରଣ କରିନେଇଛନ୍ତି ତାହା ବର୍ଣ୍ଣିତ । ହାଡ଼ିପ୍ପାଙ୍କଠାରୁ ଦୀକ୍ଷା ଗ୍ରହଣ କରିଛନ୍ତି ।

ତୋ' ଗୁରୁ ଗୋରଖ ନାଥ, ମୋ ଗୁରୁ କାହ୍ନୁପା
ସେବାରେ ସୁଦୟା କଲେ ଆମ୍ଭେ ସାର୍ଦ୍ଧି ଶାଖା ।

ବିଖ୍ୟାତ ସିଦ୍ଧ ଗୁରୁ ଗୋରେଖ ନାଥଙ୍କ ପ୍ରଭାବ ସମଗ୍ର ଭାତରବର୍ଷର ଦେଖିବାକୁ ମିଳେ । ତାଙ୍କ ନାମାନୁସାରେ ଉତ୍ତର ପ୍ରଦେଶର ଗୋରଖପୁର ଜିଲ୍ଲା ଏବଂ ସହର, ଗୋର୍ଖାଲାଣ୍ଡ ପ୍ରଭୃତି ନାମିତ । ସାରଳା ମହାଭାରତ ସଭାପର୍ବରେ ଗୋରଖନାଥଙ୍କ ପ୍ରସଂଗ ଦେଖଯାଏ । ଗୋରଖନାଥ ଏବଂ ତାଙ୍କ ଗୁରୁ ମତ୍ସେନ୍ଦ୍ରନାଥଙ୍କ ଆଖ୍ୟାନ ରହିଛି ।

ମତ୍ସଇନ୍ଦ୍ର ନାଥଙ୍କର ଆମ୍ଭେ ଅଟୁ ପୁତ୍ର
ଆମ୍ଭେ ଅଟୁ ଗୋରେଖ ପଣ୍ଡିତ ଅବଧୂତ । (ସଭାପର୍ବ)

ସିଦ୍ଧ ଯଶୋବନ୍ତଙ୍କ ସମୟକୁ ଗୋରେଖନାଥଙ୍କ ଯୋଗ ପ୍ରଭାବ ହ୍ରାସ ପାଇ ନଥିଲା । ପୁନଃ ଜୀବନର ଅନ୍ୟ ଏକ ଦିଗ ପ୍ରତି ଅଂଗୁଳି ନିର୍ଦ୍ଦେଶ କରି ସୂଚିତ ହୁଏ ଯେ ଭୋଗ ଐଶ୍ୱର୍ଯ୍ୟ ପ୍ରଭୃତିରେ କର୍ମ ବନ୍ଧନ ଏବଂ ପୁନର୍ଜନ୍ମର ଧାରା ଚକ୍ରବତ୍ ଚାଲିଥିବ । କିନ୍ତୁ ମାନବ ଯୋନିରେ ଜନ୍ମ ହୋଇ ଆପଣାର ମୁକ୍ତି ପଥ ଯେଉଁମାନେ ସଂଧାନ କରି ନିଅନ୍ତି ସେଇମାନେ ହିଁ ଧନ୍ୟ । ଜଗତ୍‌ଗୁରୁ ଶଂକରାଚାର୍ଯ୍ୟଙ୍କ ଭାଷାରେ 'କୌପୀନବନ୍ତଃ ଖଲୁ ଭାଗ୍ୟବନ୍ତଃ' ଅର୍ଥାତ୍ ମନୁଷ୍ୟ ସମାଜରେ ଯିଏ କୌପୀନ ପରିଧାନ କରି ସନ୍ନ୍ୟାସୀ ହେଲା ସେ ସେହି ବଂଶର ୫୧ ପୁରୁଷ ଉଦ୍ଧାର କରିବ । ସୁତରାଂ ଭୋଗ ବିଳାସରେ 'ଭୋଗେରୋଗଭୟଂ', ପୁନଃ ଆବାଗମ ଚକ୍ରରେ 'ପୁନରପି ଜନନଂ ପୁନରପି ମରଣଂ' ହେବାକୁ ବାଧ ।

ସମଗ୍ର ସାହିତ୍ୟ, ଦର୍ଶନର ମୁକୁଟା ଦେଇ ଏକ ସ୍ୱତନ୍ତ୍ର ବିରଳ ମାତୃତ୍ୱ, ଯିଏ ପୁଅକୁ ଘର ସଂସାର ପିଲା- କବିଲା କରିବାରୁ ନିରୋଧ କରି ସନ୍ନ୍ୟାସ, ଯୋଗସାଧନ କରିବା ମାର୍ଗ ନିର୍ଦ୍ଦେଶ କରୁଛନ୍ତି ।: ଭାରତୀୟ ସାହିତ୍ୟରେ ଏପରି ଜନନୀ ଆଉ କାହିଁ? ଏହି ଗୋବିନ୍ଦ୍ର ଚନ୍ଦ୍ର ବା ଗୋପୀଚନ୍ଦ୍ର ଆଖ୍ୟାନ କେବଳ ଓଡ଼ିଶା ବା ବଂଗଳାରେ ନୁହେଁ, ଭାରତର ବହୁ ପ୍ରଦେଶରେ କିଞ୍ଚିତ ଭିନ୍ନ ରୂପରେ ଦେଖିବାକୁ ମିଳେ । ବିଶେଷ ଭାବରେ ବଂଗଳା, ବିହାର, ଗୁଜୁରାଟ, ମହାରାଷ୍ଟ୍ର, ପଞ୍ଜାବ, ଉତ୍ତରପଶ୍ଚିମ ମଧ୍ୟପ୍ରଦେଶ ସିନ୍ଧୁ ପ୍ରଦେଶ ଓ ଅନ୍ୟାନ୍ୟ ବହୁ ଅଂଚଳରେ ଲୋକକଥା ଲୋକଗୀତ ଓ ସାହିତ୍ୟରେ ପ୍ରଚଳିତ । (ଓଡ଼ିଆ ସାହିତ୍ୟର ଇତିହାସ ବଂଶୀଧର ମହାନ୍ତି ପୃ- ୨୨୨-୨୨୩) ।

ଜଗନ୍ନାଥ ଦାସଙ୍କ ଭାଗବତର ବଂଗଳା ରୂପାନ୍ତର, ତୁଳାଭିଣା ପ୍ରଭୃତି ଗ୍ରନ୍ଥର ବଂଗାକ୍ଷର ପୁସ୍ତକାକାରେ ପ୍ରକାଶିତ, ପ୍ରଚଳି ହେବା ଦ୍ୱାରା ସେହି ଗ୍ରନ୍ଥର ଲୋକପ୍ରିୟତା ସିଦ୍ଧ ହୋଇଥାଏ । ସେହିପରି ଗୀତ ଗୋବିନ୍ଦ ଚନ୍ଦ୍ର ବଂଗ ଭାଷାରେ ଭାଷାନ୍ତର ହୋଇ ଲୋକପ୍ରିୟତା ଅର୍ଜନ କରିଥିଲା । ବଂଗଳା ସାହିତ୍ୟର ଇତିହାସ ଲେଖକ ସ୍ୱର୍ଗତ ଦୀନେଶଚନ୍ଦ୍ର ସେନ୍ ଗୀତ ଗୋବିନ୍ଦ ଚନ୍ଦ୍ରର ବହୁ ପ୍ରଶଂସା କରିଅଛନ୍ତି । "ଗୋବିନ୍ଦ ଚନ୍ଦ୍ର ସନ୍ନ୍ୟାସୀ ହେବା ସମୟରେ ମା' ଓ ପୁଅଙ୍କର

ମଧ୍ୟରେ କଥୋପ କଥନ ବିଶେଷ ଭାବରେ ହୃଦୟଗ୍ରାହୀ ହୋଇଛି । ଗୋବିନ୍ଦଚନ୍ଦ୍ର ଦର୍ପଣ ସମ୍ମୁଖରେ ଛିଡ଼ା ହୋଇ ନିଜ ଯୌବନର ପ୍ରତିଛବି ଦେଖି ଆନନ୍ଦିତ ହେବାବେଳେ ମୁକ୍ତାଦେଇଙ୍କର ଶରୀରର ନଶ୍ୱରତା ସମ୍ବନ୍ଧରେ ଉକ୍ତି ଓ ସର୍ବଗ୍ରାସୀ କାଳର ପ୍ରଭାବ ସମ୍ବନ୍ଧରେ ଯେଉଁ ସବୁ ବିଷୟ ବର୍ଣ୍ଣନା କରଛନ୍ତି ତାହା ମଧ୍ୟ ବିଶେଷ ରମଣୀୟ ହୋଇଉଠିଛି । ବଂଗଳାରେ ସେହି ପୁସ୍ତକର ନାମ "ଗୋବିନ୍ଦ ଚନ୍ଦ୍ରର ଗୀତ" । ସମଗ୍ର ଓଡ଼ିଶା ଏବଂ ବଂଗଳାର ଏହାର ବହୁଳ ପ୍ରଚାର, ଏହି ଗ୍ରନ୍ଥର ଲୋକ ପ୍ରିୟତାର ନିଦର୍ଶନ ।

ଏବେ ମୋବାଇଲ ଯୁଗ ପୂର୍ବରୁ ପ୍ରାୟ ଅଧିକାଂଶ ସଂସ୍କୃତି ସଂପନ୍ନ ବ୍ୟକ୍ତି ଗୋବିନ୍ଦ ଚନ୍ଦ୍ର ଉପାଖ୍ୟାନରୁ କିଛି ପଦ କଣ୍ଠସ୍ଥ କରିଥିବା ଦେଖାଯାଇଥିଲା ।

କେ କାନ୍ଦିବ ଦିନ ଦଶରେ କୁମର କେ କାନ୍ଦିବ ଦିନ ବାର
ମୁହିଁ ଗର୍ଭଧାରୀ ନିରତେ କାନ୍ଦିବି ମରିବାର ଯୁଗାନ୍ତର ।

ଏଠାରେ ବ୍ୟକ୍ତିର ପରିବାର କୁଟୁମ୍ବ ତଥା ବନ୍ଧୁ, ପରିଜନ ଇତ୍ୟାଦିଙ୍କ ସହିତ ମାତାଙ୍କର ତୁଳନା କରାଯାଇଛି । ଏମାନେ ସମସ୍ତେ ଦଶ ଦିନ ଶୁଦ୍ଧ ହେବା କିମ୍ବା ବାରପତ୍ର ପୂରିବା ବାରଦିନ ପର୍ଯ୍ୟନ୍ତ ସନ୍ତାପିତ ହେବେ କିନ୍ତୁ ଗର୍ଭଧାରୀ ଜନନୀ ମୃତ୍ୟୁ ପର୍ଯ୍ୟନ୍ତ ରୋଦନ କରି ଚାଲିବ । ମୃତ୍ୟୁରେ ସେହି କାରୁଣ୍ୟମୟ ବ୍ୟଥାରେ ପୂର୍ଣ୍ଣଚ୍ଛେଦ ପଡ଼ିବ । ସୁତରାଂ ସାଂସାରିକ କ୍ଷେତ୍ରରେ ଯେତେସବୁ ସଂପର୍କ ରହିଛି ତନ୍ମଧ୍ୟରୁ ମାତାର ସଂପର୍କ ସ୍ୱତନ୍ତ୍ର, ଅନନ୍ୟ ଏବଂ ଅତୁଳନୀୟ ।

ଓଡ଼ିଶାର ଧର୍ମ- ଦର୍ଶନ ଓ ସାହିତ୍ୟରେ ଯଶୋବନ୍ତ ଦାସଙ୍କର 'ଗୀତ ଗୋବିନ୍ଦଚନ୍ଦ୍ର'ର ସ୍ଥାନ ସ୍ୱତନ୍ତ୍ର । ଏବେ ବିବିଧ କାରଣରୁ ଆଉ ଯୋଗୀମାନେ ଭିକ୍ଷାଟନରୁ ନିବୃତ୍ତ ହୋଇଛନ୍ତି ସୁତରାଂ ତାଙ୍କ କଣ୍ଠରୁ ଏହି ବୈରାଗ୍ୟ ବ୍ୟଞ୍ଜକ ରାଗିଣୀ ଶୁଣିବାର ଅବକାଶ ବା କାହିଁ ? ଏହାର ଏକ ଶୁଦ୍ଧ ସଂସ୍କରଣର ଆବଶ୍ୟକତା ରହିଛି, କହିବା ଅନାବଶ୍ୟକ ।



# ଶ୍ରୀ ଶ୍ରୀଧର ସ୍ୱାମୀ

ଶ୍ରୀ ଶ୍ରୀଧର ସ୍ୱାମୀ ଶ୍ରୀମଦ୍ ଭାଗବତରେ ପରମଧର୍ମର ନିର୍ଣ୍ଣୟ କରିଅଛନ୍ତି । ଶ୍ରୀଭାଗବତ ଧର୍ମକୁ ସମୁଚିତ ପ୍ରକାରେ ନ ଜାଣିବାରୁ କିଛି ବିଦ୍ୱାନ କର୍ମ, ଜ୍ଞାନ, ଉପାସନା ଏହି ତିନି କାଣ୍ଡର ଗୋଟିକରେ ମିଶ୍ରିତ କରି ଶ୍ରୀମଦ୍ ଭାଗବତର ବ୍ୟାଖ୍ୟା କରିଅଛନ୍ତି । କର୍ମକାଣ୍ଡୀ ଏବଂ ଶୁଷ୍କଜ୍ଞାନୀ ବିଦ୍ୱାନ ଟାଣି ଓଟାରି କଠିନ କଳ୍ପନା କରି ଅର୍ଥର ବିପରୀତ ଅର୍ଥ କରିଅଛନ୍ତି । ଜିଜ୍ଞାସୁ ଭକ୍ତଗଣ ଦ୍ୱନ୍ଦ୍ୱରେ ପଡ଼ିଯାଇଛନ୍ତି, ବାସ୍ତବ ତାତ୍ପର୍ଯ୍ୟ କ୍ଳୁପ୍ତ ହୋଇଯାଇଥିଲା । ଏପରି ସ୍ଥିତିରେ ବିଶ୍ୱବିଖ୍ୟାତ 'ପରମହଂସ ସଂହିତା'ର ବିଦ୍ୱାନମାନଙ୍କ ମଧ୍ୟରେ ପ୍ରସିଦ୍ଧ ଟୀକା 'ଭାବାର୍ଥ ଦୀପିକା'ର ରଚନା ସ୍ୱାମୀ ଶ୍ରୀଧରାଚାର୍ଯ୍ୟ କରିଛନ୍ତି । ସେ ଷଟ୍ ଶାସ୍ତ୍ର ଏବଂ ଷଟ୍ ଦର୍ଶନର ଅନୁକୂଳ ତଥା ବେଦୋପନିଷଦ୍ ସମସ୍ତ ସିଦ୍ଧାନ୍ତର ସମର୍ଥନ କରିଅଛି । ଶ୍ରୀଧର ସ୍ୱାମୀଙ୍କର ଗୁରୁଦେବ ଶ୍ରୀପରମାନନ୍ଦ ସରସ୍ୱତୀଙ୍କ କୃପାରେ ଭଗବାନ୍ ବିନ୍ଦୁମାଧବ ଶ୍ରୀଧର କୃତ ଟୀକାକୁ ଆପଣାର ହସ୍ତ କମଳରେ ସୁଧାରି ଦେଇଥିଲେ । ହସ୍ତାକ୍ଷର କରି ସର୍ବୋତ୍ତମ ସିଦ୍ଧ କରିଥିଲେ । (ସଂପ୍ରତି ୨୦୧୯ ଖ୍ରୀ.ଅ.ରେ ଶ୍ରୀଧର ସ୍ୱାମୀଙ୍କ ଟୀକା ଭାଗବତ ୫ଖଣ୍ଡରେ ସଂସ୍କୃତ ବ୍ୟାଖ୍ୟାନ ଗୁଜୁରାଟୀ ଅନୁବାଦ ସହ ଗୀତାପ୍ରେସ୍ ପ୍ରକାଶ କରିଛନ୍ତି ।) ଏହି ଟୀକା ସର୍ବମାନ୍ୟ ଏବଂ ପ୍ରାମାଣିକ । ୧ମ ଖଣ୍ଡ- ଶ୍ରୀମଦ୍ ଭାଗବତ ମହାତ୍ମ୍ୟ, ପ୍ରଥମ, ଦ୍ୱିତୀୟ ଏବଂ ତୃତୀୟ ସ୍କନ୍ଧ, ୨ୟ ଖଣ୍ଡ- ଚତୁର୍ଥ ପଞ୍ଚମ ଏବଂ ଷଷ୍ଠ ସ୍କନ୍ଧ, ୩ୟ ଖଣ୍ଡ- ସପ୍ତମ ଅଷ୍ଟମ ନବମ ସ୍କନ୍ଧ, ଚତୁର୍ଥ ଖଣ୍ଡ- ଦଶମ ସ୍କନ୍ଧ ପୂର୍ବାଦ୍ଧ, ଉତ୍ତରାର୍ଦ୍ଧ, ୫ମ ଖଣ୍ଡ- ଏକାଦଶ, ଦ୍ୱାଦଶ ଏବଂ ଶ୍ଳୋକାନୁ କ୍ରମଣିକା ।)

ବାଗୀଶା ଯସ୍ୟ ବଦନେ ଲକ୍ଷ୍ମୀର୍ଯସ୍ୟ ଚ ବକ୍ଷସି ।
ଯସ୍ୟାସ୍ତେ ହୃଦୟେ ସଂବିତ୍ ତଂ ନୃସିଂହ ମହଂଭଜେ ।
(ଶ୍ରୀଧର ସ୍ୱାମୀ)

ପ୍ରାମାଣିକ ସାମଗ୍ରୀ ସହାୟତାରେ ତାଙ୍କ ଜୀବନୀ ଏବଂ କୃତିତ୍ୱ ସମ୍ବନ୍ଧରେ ସଂକ୍ଷେପରେ ଆଲୋଚନା କରିବା ।

ପାଶ୍ଚାତ୍ୟ ଐତିହାସିକ D.R.J.N. Farquhar ତାଙ୍କ ପୁସ୍ତକ An out line of Religious literature of India"(Oxford University Press 1920) ଶ୍ରୀଧର ସ୍ୱାମୀଙ୍କ ସଂପର୍କରେ ଲେଖନ୍ତି– "Probably about A.D. 1400 Sridhar Swami, Mahanta of the Sankarite monastery Govardhana, in Puri wrote a commentary on the Bhagabata Puranam the Bhagabata Bhavartha Dipika, which is by for the most famous exposition of the work. + + He begins his commentary with the distinct statement that the great Purana was not writen by Vopadeva. + + + + His interpretation of Purana is Advitist, since he was a follower of Sankar and since the Bhagabata itself tinds to be monist, his Dipika is usually regarded as most authoritative." (p297)

S.K.De has writer on the work of Sridhar Swami. His paper entitled "Pre- chailanye Vaisnavism in Bengal' in 1933. The next edition was 1961.

"It appears probable, on the hand that Madhaven dra Puri and his disciple Isvana Puri, Were Sankarite Sanyasins of the same type as Sridhar svamin. Who in his great commentary on the Srimad Bhagabata attempted to combine the Advaite teaching of Sankar with the emotionalism of Bhagabata.

ଡଃ ଦେ ତାଙ୍କୁ ବନାରସ ଅବସ୍ଥାନ କରିବା ସୂଚାଇଛନ୍ତି । ସଂଭବତଃ ସେ ଚନ୍ଦ୍ରଦତ୍ତଙ୍କ 'ଭକ୍ତମାଳା' ପ୍ରଭାବରେ ଏପରି କହିଛନ୍ତି । (ବେଙ୍କେଟେଶ୍ୱର ପ୍ରେସ୍ ବମ୍ବେ, ୧୯୨୬ ପ୍ରକାଶିତ) ଯେଉଁଥିରେ ଶ୍ରୀଧରଙ୍କ ଅଲୌକିକ ଘଟଣାବଳୀ ସ୍ଥାନିତ । ଚନ୍ଦ୍ରଦତ୍ତଙ୍କ କହିବା କଥା କି ସେ ଯାହା ଶୁଣିଲେ ତାହା ଲିଖିତ କରିଛନ୍ତି ।

ଏଥିରୁ ତାଙ୍କ ରଚନା ବହୁ ପରବର୍ତ୍ତୀ କାଳର ବୋଲି ସ୍ପଷ୍ଟ ଜଣାଯାଏ । କହିବାକୁ ଗଲେ ୧୮ଶତାବ୍ଦୀ କିମ୍ବା ତତ୍‌ପରବର୍ତ୍ତୀ ।

ଶ୍ରୀଧରଙ୍କ ଆଧ୍ୟାତ୍ମିକ ବ୍ୟାଖ୍ୟାନ ପ୍ରାୟତଃ ଗୋଟିଏ ଶ୍ରେଣୀର ସନ୍ନ୍ୟାସୀମାନଙ୍କ ଦ୍ୱାରା ଗୃହୀତ ହୋଇଥିଲା । ଯେ ପ୍ରଥମେ ବଂଗଳାରେ ବୈଷ୍ଣବ ଭକ୍ତି ଆନ୍ଦୋଳନର ମୂଳଦୁଆ ପକାଇଥିଲେ ଶ୍ରୀମଦ୍ ଭାଗବତ୍ ଦ୍ୱାରା । ଚୈତନ୍ୟ ସ୍ୱୟଂ ଏହି ଧରଣର ସନ୍ନ୍ୟାସୀ ଥିଲେ । ସେ ଏହି ଆନ୍ଦୋନକୁ ନିଜର ଅଭ୍ୟାସ ତଥା ଅଭିଜ୍ଞତା ବଳରେ ନୂତନ ରୂପ ପ୍ରଦାନ କରିଥିଲେ ।

'ଚୈତନ୍ୟ ଚରିତାମୃତ' ବିଖ୍ୟାତ ଗ୍ରନ୍ଥ, ଯାହା କୃଷ୍ଣଦାସ କବିରାଜଙ୍କ ଦ୍ୱାରା ୧୬୧୫ ଖ୍ରୀ.ଅରେ ରଚିତ ହୋଇଥିଲା । ତହିଁରେ ଶ୍ରୀଧର ସ୍ୱାମୀଙ୍କ 'ଟୀକା' ସମ୍ବନ୍ଧରେ ସୂଚନା ଦେଖିବାକୁ ମିଳେ । ଉଦାହରଣ ଦେଖନ୍ତୁ-

ଶ୍ରୀଧର ସ୍ୱାମୀ ପ୍ରସାଦେତେ ଭାଗବତ ଜାନି
ଜଗତ ଗୁରୁ ଶ୍ରୀଧର ସ୍ୱାମୀ ଗୁରୁ କରି ମାନି ।

ଶ୍ରୀଧର ସ୍ୱାମୀଙ୍କ କୃପାରୁ ମୁଁ ଭାଗବତ ଅଧ୍ୟୟନ କଲି । ମୁଁ ଶ୍ରୀଧର ସ୍ୱାମୀଙ୍କୁ ଗୁରୁଭାବେ ଗ୍ରହଣ କରୁଛି । କୁହାଯାଇପାରେ ଶ୍ରୀକଷ୍ଟ ଚୈତନ୍ୟଙ୍କ ଓଡ଼ିଶା ଆଗମନ 1509A.D./1510A.D. । ପୂର୍ବରୁ ଜୀବଦେବାଚାର୍ଯ୍ୟ ଓଡ଼ିଶାର ପଣ୍ଡିତ କବି ଭକ୍ତି ଭାଗବତ ମହାକାବ୍ୟ ଏବଂ ଭକ୍ତି ବୈଭବ ନାଟକ ସଂସ୍କୃତରେ ରଚନା କରି ପ୍ରତିପାଦିତ କରିଥିଲେ ଯେ ଶ୍ରୀଧର ସ୍ୱାମୀ ଓଡ଼ିଶାରେ ଅତ୍ୟନ୍ତ ଶକ୍ତିଶାଳୀ ପ୍ରଭାବ ପକାଇଥିଲେ, ଏପରିକି ତାଙ୍କ ମୃତ୍ୟୁପରେ ସେହି ପ୍ରଭାବ ସୁଦୃଢ଼ ଥିଲା ।

ଏବେ ଆମେ ଶ୍ରୀଧର ସ୍ୱାମୀଙ୍କ ଜନ୍ମ ସ୍ଥାନ ସମ୍ବନ୍ଧରେ କିଛି ବିବେଚନା କରିବା । ପାରଂପାରିକ ଭାବେ ଉତ୍ତର ଓଡ଼ିଶା ତାଙ୍କ ଜନ୍ମ ଏବଂ ନିବାସ ସ୍ଥାନ ଭାବେ ଗୃହୀତ । ଶତାବ୍ଦୀ ପୂର୍ବରୁ ଶ୍ରୀଚନ୍ଦ୍ର ମୋହନ ମହରାରଣା- ରେମୁଣା ଅଧିକାରୀ ଏବଂ ସରକାରୀ ହାଇସ୍କୁଲର ପ୍ରଧାନଶିକ୍ଷକ 'ମୁକୁର' ରେ ଗୋଟିଏ ପ୍ରବନ୍ଧ ଲେଖିଥିଲେ 'ଶ୍ରୀଧର ସ୍ୱାମୀଙ୍କର ପରଂପରା' ଶିରୋନାମାରେ । ସେ ତହିଁରେ ସୂଚୀତ କରିଥିଲେ ଯେ ଶ୍ରୀଧର ସ୍ୱାମୀଙ୍କର ଜନ୍ମସ୍ଥାନ ଏବଂ ନିବାସ ସ୍ଥାନ ମରେଇ ଗାଁ' । ଯାହା ରେମୁଣାର କ୍ଷୀରଚୋରା ଗୋପୀନାଥଙ୍କଠାରୁ ତିନି ମାଇଲ ଉତ୍ତରକୁ ଅବସ୍ଥିତ । ରେମୁଣା ଟାଉନ୍ ବାଲେଶ୍ୱର ଟାଉନ୍‌ଠାରୁ ପାଞ୍ଚ ମାଇଲ ଦୂର ଏବଂ ବାଲେଶ୍ୱରର ମହକୁମା ।

ଶ୍ରୀଧର ସ୍ୱାମୀ ରେମୁଣାର ଗୋପୀନାଥ ମନ୍ଦିର ଦ୍ୱାରା କେବଳ ପ୍ରଭାବିତ ହୋଇ ନଥିଲେ, ଅପରନ୍ତୁ ତାଙ୍କ ଗ୍ରାମର ନିକଟବର୍ତ୍ତୀ ଗ୍ରାମରେ ଥିବା ଅଥର୍ବ ବେଦୀମାନଙ୍କ ପ୍ରଭାବ ତାଙ୍କ ଉପରେ ଗଭୀର ଭାବେ ପଡ଼ିଥିଲା । ଗୋପାଳ ତାପିନୀ ଏବଂ ଶ୍ରୀକୃଷ୍ଣ ତାପିନୀ ଯାହା ଅଥର୍ବ ବେଦର ପିପ୍ପଳାଦ ଶାଖା ଅନ୍ତର୍ଗତ । ତାହା ବୈଷ୍ଣବ ଧର୍ମର ମୂଳତାତ୍ତ୍ୱିକ ଗ୍ରନ୍ଥ । ୧୯୫୮ ଖ୍ରୀ.ଅରେ ପ୍ରଫେସର ଦୁର୍ଗାମୋହନ ଭଟ୍ଟାଚାର୍ଯ୍ୟ ରେମୁଣା ପାର୍ଶ୍ୱ'ବର୍ତ୍ତୀ ଗ୍ରାମମାନଙ୍କରୁ ଏହାର ପୋଥି ସଂଗ୍ରହ କରି ସଂପାଦନା ପୂର୍ବକ ପ୍ରକାଶ କରିଥିଲେ ।

ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ The Archaeology cal Remains at Cuttack or Jajpur' ପୁସ୍ତକର ୪୧୫ ପୃଷ୍ଠାରେ ଲେଖନ୍ତି- "In 1963 while staying at Baripada I made correspondence with a member of the family of Sridhar Swami named Sashi Bhusan Satpathy and last year Sashi Bhusan came to see me at Baripada, But due to my absence I was not lucky enough to see him."

ଏହି ଜୀବନ୍ତ ପରଂପରା ଶ୍ରୀଧର ସ୍ୱାମୀଙ୍କର ପ୍ରମାଣିତ କରୁଛି ଯେ ଶ୍ରୀଧର ସ୍ୱାମୀଙ୍କର ଜନ୍ମ ସ୍ଥାନ ବାଲେଶ୍ୱର ଜିଲ୍ଲା ରେମୁଣା ନିକଟବର୍ତ୍ତୀ ମରେଇଗାଁ । ରେମୁଣା ଏବଂ କ୍ଷୀରଚୋରା ଗୋପୀନାଥ ଆଲୋଚକମାନଙ୍କ ଦୃଷ୍ଟିରୁ ଦୂରକୁ ଯାଇ ନଥିଲେ ହେଁ ଶ୍ରୀଧର ସ୍ୱାମୀ ଏବଂ ବଳଦେବ ବିଦ୍ୟାଭୂଷଣ ବିସ୍ମୃତ ହୋଇ ଯାଇଛନ୍ତି । ଶ୍ରୀଧର ସ୍ୱାମୀଙ୍କ ପରି ବଳଦେବ ବିଦ୍ୟା ଭୂଷଣ ବୈଷ୍ଣବ ଧର୍ମର ଦାର୍ଶନିକ ତତ୍ତ୍ୱ ଉପସ୍ଥାପିତ କରି ଶ୍ରୀକୃଷ୍ଣ ଚୈତନ୍ୟ ଚନ୍ଦ୍ରଙ୍କୁ ଶ୍ରୀକ୍ଷେତ୍ର ନବଦ୍ୱୀପ ଏବଂ ବୃନ୍ଦାବନରେ ନୂତନ ବୈଷ୍ଣବ ଭିତ୍ତି କରିବାରେ ସହାୟକ ହୋଇଥିଲେ ।

ଗୀତା, ଭାଗବତ, ବିଷ୍ଣୁପୁରାଣ ଉପରେ ଶ୍ରୀଧର ସ୍ୱାମୀଙ୍କର ଟୀକା ପ୍ରାପ୍ତ ହୋଇଥାଏ । ସେହି ଟୀକାମାନଙ୍କରେ ଭକ୍ତି ତଥା ପ୍ରେମର ଅଖଣ୍ଡ ପ୍ରବାହ ଦେଖିବାକୁ ମିଳେ । ଏକମାତ୍ର ଶ୍ରୀଧର ସ୍ୱାମୀଙ୍କର ଟୀକା ସକଳ ସଂପ୍ରଦାୟ ବ୍ୟକ୍ତିଙ୍କ ଦ୍ୱାରା ସମାଦୃତ ହୋଇଥିବା ଦେଖାଯାଏ । ଭାଗବତର ଟୀକା ସମ୍ବନ୍ଧରେ ଆପତ୍ତି ଉଠାଇଥିଲେ, ସେହି ସମୟରେ ବେଣୀ ମାଧବଙ୍କ ମନ୍ଦିରରେ ପ୍ରଭୁଙ୍କ ନିକଟରେ ଗ୍ରନ୍ଥ ରଖି ଦିଆଗଲା । କୁହାଯାଏ ସ୍ୱୟଂ ଭଗବାନ୍ ଅନେକ ସାଧୁ ମହାତ୍ମାଙ୍କ ସମ୍ମୁଖରେ ଏହି ଗ୍ରନ୍ଥକୁ ଉଠାଇ ହୃଦୟରେ ଲଗାଇଥିଲେ । ଏପରି ଭଗବତ୍ ଭକ୍ତ ସମଗ୍ର ପୃଥିବୀକୁ ପବିତ୍ର କରିଥାନ୍ତି ।

ଏହି ଘଟଣାର ବର୍ଣ୍ଣନା ଭକ୍ତ ମାଳାର ଟୀକାକାର ଶ୍ରୀପ୍ରିୟାଦାସଜୀ ଏକ କବିତାରେ ଲେଖନ୍ତି-

ପଣ୍ଡିତ ସମାଜ ବଡ଼େ ବଡ଼େ ଭକ୍ତ ରାଜ ଜିତେ ଭାଗବତ ଟୀକା କରି ଆପସମେ ରୀଝିୟେ ।

ଭୟୋ ଦୂ ବିଚାର କାଶୀପୁର ଅବିନାଶୀ ମାଂଝ ସଭା ଅନୁସାର ଜୋଈ ସୋଈ ଲିଖ ଦୀଜିୟେ ।

ତାକୋ ତୋକୋ ପ୍ରମାନ ଭଗବାନ୍ ବିନ୍ଦୁମାଧୌଜୀହି ସାଧୌ ସହି ବାତଧରି ମନ୍ଦିର ମୌଁ ଲୀଜିୟେ ।

ଧରେ ସବ ଜାୟ ପ୍ରଭୁ ସୁକର ବନାୟ ଦିୟେ କୟୋ ସର୍ବ ଉପର ଲୌ ଚଲ୍ୟୋ ମତି ଧୀଜିୟେ(୧୬୪)

(ଭକ୍ତମାଳ, ନାଭାଦାସ କୃତ- ପ୍ରିୟାଦାସ କୃତଟୀକା- ଗୀତପ୍ରେସ୍, ଗୋରଖପୁର- ପୃ.୪୦୧)



# ଶ୍ରୀ ଶଙ୍କରାଚାର୍ଯ୍ୟ

## (୭୮୮-୮୨୦ ଖ୍ରୀ.ଅ) ଦ୍ୱାରା ଅଦ୍ୱୈତବାଦର ପ୍ରତିବାଦନ:

ଶଙ୍କରାଚାର୍ଯ୍ୟଙ୍କ ପୂର୍ବବର୍ତ୍ତୀ କାଳରେ ଅଦ୍ୱୈତବାଦ ସିଦ୍ଧାନ୍ତ ଅନାବିଷ୍କୃତ ଥିଲା, ଏହା କୁହାଯାଇ ନପାରେ । ସ୍ୱୟଂ ଶଙ୍କରାଚାର୍ଯ୍ୟ ନିଜ ଭାଷ୍ୟ ଗ୍ରନ୍ଥରେ ତାଙ୍କ ପୂର୍ବବର୍ତ୍ତୀ ବେଦାନ୍ତ ଆଚାର୍ଯ୍ୟମାନଙ୍କର ଉଲ୍ଲେଖ କରିଅଛନ୍ତି । ଅତଃ ଯେପରିକି ଅଦ୍ୱୈତ ବେଦାନ୍ତର ଐତିହ୍ୟରେ ମଧ୍ୟ ସିଦ୍ଧ ହୋଇ ଥାଏ କି, ଏହା ନିଶ୍ଚିତ ଯେ ଶଙ୍କରାଚାର୍ଯ୍ୟଙ୍କୁ ନିଜର ପୂର୍ବବର୍ତ୍ତୀ ଧାର୍ମିକ ଏବଂ ଦାର୍ଶନିକ ସାହିତ୍ୟରୁ ଅଦ୍ୱୈତ ସଂବଧିତ ବିଚାରାଧାରର ଏକ ସବଳ ପୃଷ୍ଠଭୂମି ଉପଲବ୍ଧ ହୋଇଥାଏ । କିନ୍ତୁ ଶଙ୍କର ଅଦ୍ୱୈତବାଦର ପ୍ରମୁଖ ଆଧାର ବାଦରାୟଣୟଙ୍କ ବ୍ରହ୍ମସୂତ୍ର ଦର୍ଶନ ଏବଂ ଉପନିଷଦ ଦର୍ଶନ । ଏହା ମଧ୍ୟ ସ୍ୱାଭାବିକ ଯେ ଆଧାତ୍ମ ବିଦ୍ୟାର ଅନେକ ଅନୁଶୀଳନ କର୍ତ୍ତା ଉପନିଷଦବର୍ତ୍ତୀ ତତ୍ତ୍ୱବେତ୍ତାଗଣ ଏବଂ ଉପନିଷଦବର୍ତ୍ତୀ ସିଦ୍ଧାନ୍ତର ସୂତ୍ରରୂପେ ପ୍ରସ୍ତୁତକର୍ତ୍ତା ବାଦରାୟଣଙ୍କ ବିଚାରରେ ଅନେକତା ଏବଂ ସୂତ୍ରରୂପତା କାରଣରୁ କିଛି ଅସମାଂଜସ୍ୟ ଏବଂ ସଂଦିଗ୍ଧତା ହୋଇ ରହିଅଛି । ଉପନିଷଦ ଏବଂ ବ୍ରହ୍ମସୂତ୍ର ଦର୍ଶନର ଉକ୍ତ ନ୍ୟୂନତାର ପୂର୍ତ୍ତି ଶଙ୍କରାଚାର୍ଯ୍ୟ ଆପଣାର ଭାଷ୍ୟ ଗ୍ରନ୍ଥରେ ପ୍ରସ୍ତୁତ ସମନ୍ୱୟାତ୍ମକ ସିଦ୍ଧାନ୍ତ ଆଧାରରେ କରାଯାଇଛି । ଅତଏବ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ପ୍ରତିପାଦିତ ଅଦ୍ୱୈତବାଦ ସିଦ୍ଧାନ୍ତର ପ୍ରତିପାଦନ କରିଅଛନ୍ତି ।

**ଶଙ୍କରାଚାର୍ଯ୍ୟ ଦ୍ୱାରା ଅଦ୍ୱୈତବାଦ ଅନ୍ତର୍ଗତ ବ୍ରହ୍ମ ସଂବଧି ସିଦ୍ଧାନ୍ତର ପ୍ରତିପାଦନ-**

ଆମେ ଏଠାରେ କହୁଅଛି ଯେ ଶଙ୍କରାଚାର୍ଯ୍ୟଙ୍କ ଦର୍ଶନର ମୂଳ ଆଧାର ହେଉଛି ଉପନିଷଦ ସାହିତ୍ୟ । ଶଙ୍କରାଚାର୍ଯ୍ୟ ବ୍ରହ୍ମକୁ ଅଦ୍ୱୈତ ତତ୍ତ୍ୱ ମାନି ଅଦ୍ୱୈତବାଦ ସିଦ୍ଧାନ୍ତର ପ୍ରତିପାଦନ କରି ଅଛନ୍ତି । ତାଙ୍କ ବିଚାର ଅନୁସାରେ ଅଦ୍ୱୈତ ତତ୍ତ୍ୱ ବ୍ରହ୍ମକୁ ନିର୍ଗୁଣ ସ୍ୱୀକାର କରିଅଛନ୍ତି । ଜଗତର ସତ୍ତା ଶଙ୍କର ଅଦ୍ୱୈତବାଦ ଅନ୍ତର୍ଗତ ମାୟିକ କୁହାଯାଇଅଛି । ମାୟା କାରଣରୁ ହିଁ ଜୀବ ଓ ବ୍ରହ୍ମର ଭିନ୍ନତ୍ୱ ରହିଅଛି । ବସ୍ତୁତଃ ଜୀବ ଏବଂ ବ୍ରହ୍ମମୂଳତଃ ଐକ୍ୟ ହିଁ ହୋଇଥାଏ । ଏହା ହିଁ ଶଙ୍କର ଅଦ୍ୱୈତବାଦର ମୂଳ ସିଦ୍ଧାନ୍ତ । ଶଙ୍କରାଚାର୍ଯ୍ୟ ବ୍ରହ୍ମସୂତ୍ରର ଭାଷ୍ୟରେ ଅଦ୍ୱୈତବାଦ ବ୍ରହ୍ମଙ୍କର ଅଧୋଲିଖିତ ପରିଭାଷା ଦେଇ ଅଛନ୍ତି ।

"ଅସ୍ୟ ଜଗତୋ ନାମରୂପାଭ୍ୟାଂ ବ୍ୟାକୃତସ୍ୟ ଅନେକ କର୍ତ୍ତୃ ଭୋକ୍ତୃ ସଂଯୁକ୍ତସ୍ୟ ପ୍ରତିନିୟତ ଦେଶ କାଳ ନିମିତ୍ତ କ୍ରିୟା ଫଳାଶ୍ରୟସ୍ୟ ମନସା ଅପି ଅଚିନ୍ତ୍ୟ ରଚନା ରୂପସ୍ୟ ଜନ୍ମସ୍ଥିତ ଭଙ୍ଗ ଯତଃ ସର୍ବଜ୍ଞାତ୍ ସର୍ବଶକ୍ତେଃ କାରଣାଦ୍ ତଦ୍ ବ୍ରହ୍ମ"- (ଶା.ଭା.ବ୍ର.ସୂ ୧/୧/୨)

ଅର୍ଥାତ୍ 'ନାମ ରୂପ ଦ୍ୱାରା ଅବ୍ୟକ୍ତ, ଅନେକ କର୍ତ୍ତା ଭୋକ୍ତାଙ୍କ ସଂଯୁକ୍ତ, ଏପରି କ୍ରିୟା ଓ ଫଳ ଆଶ୍ରୟ ଯାହାର ଦେଶ, କାଳ ନିମିତ୍ତ ବ୍ୟବସ୍ଥିତ ରହିଛି, ମନରେ ମଧ ଯାହାଙ୍କ ସ୍ୱରୂପ ବିଚାର କରି ହେବ ନାହିଁ, ଏପରି ଜଗତର ଉତ୍ପତ୍ତି, ସ୍ଥିତି ନାଶ ଯେଉଁ ସର୍ବଜ୍ଞ ଏବଂ ସର୍ବ ଶକ୍ତିମାନ କାରଣରୁ ହୋଇଥାଏ ତାହା ହେଉଛି ବ୍ରହ୍ମ ।' ଉପର୍ଯ୍ୟୁକ୍ତ ଶଙ୍କରାଚାର୍ଯ୍ୟ କୃତ ଲକ୍ଷଣ ଅନୁସାରେ ବ୍ରହ୍ମର ବିଶେଷତା ହେଉଛି- ସର୍ବବ୍ୟାପକତା, ଅଧିଷ୍ଠାନତା, ସର୍ବଜ୍ଞତା ଏବଂ ସର୍ବ ଶକ୍ତିମତ୍ତା ହୋଇଥାଏ । ଉପର୍ଯ୍ୟୁକ୍ତ ପରିଭାଷା ଅନୁସାରେ ବ୍ରହ୍ମ ଶଙ୍କର ବେଦାନ୍ତର ସର୍ବୋଚ୍ଚ ତତ୍ତ୍ୱ ।

**ବ୍ରହ୍ମଙ୍କ ଅସ୍ତିତ୍ୱ ନିରୂପଣ-** ଜର୍ମାନ୍ ବିଦ୍ୱାନ ଡାଏସନ୍‌ଙ୍କ ଏହି କଥନ ସତ୍ୟ ପ୍ରତୀତ ହୁଏ ନାହିଁ କି ଭାରତର ବିଦ୍ୱାନ ସତ୍ତ୍ୱବିଦ୍ୟା ସଂବଂଧି (Ontological) ପ୍ରମାଣ ବନ୍ଧନରେ ଫସି ନଥାନ୍ତି । ଡାଏସନ୍‌ଙ୍କ ଏହି କଥନ ଅତି କମ୍‌ରେ ଶଙ୍କରାଚାର୍ଯ୍ୟଙ୍କ ସମ୍ବନ୍ଧରେ ଉପଯୁକ୍ତ ପ୍ରତୀତ ହୋଇନଥାଏ । ଶଙ୍କରାଚାର୍ଯ୍ୟ ବ୍ରହ୍ମଙ୍କ ସମ୍ବନ୍ଧରେ

ଯେଉଁ ତର୍କ ପ୍ରସ୍ତୁତ କରିଛନ୍ତି ତାହା ନିଶ୍ଚିତ ସତ୍ୟ ବିଦ୍ୟା ସଂବଂଧି ପ୍ରମାଣ ସହ ଯୁକ୍ତ । ଆଚାର୍ଯ୍ୟ ଯେଉଁ ଅଦ୍ୱୈତବହ୍ମର ପ୍ରତିପାଦନ କରିଛନ୍ତି ତାହା ତର୍କ ପ୍ରତିପାଦ୍ୟ ନ ହୋଇଥିଲେ ହେଁ ଅନୁଭବଗମ୍ୟ ।

ଶଙ୍କରାଚାର୍ଯ୍ୟ ନିଜ ଭାଷ୍ୟ ଗ୍ରନ୍ଥରେ ବ୍ରହ୍ମ ନାମକ ଯେଉଁ ସର୍ବୋଚ୍ଚ ସତ୍ତାକୁ ସ୍ୱୀକାର କରିଅଛନ୍ତି, ତା'ର ସତ୍ତା ବ୍ୟାବହାରିକ, ଦେଶିକ, କାଳିକ ଏବଂ ବୈଚାରିକ ସତ୍ତାଠାରୁ ବିଲକ୍ଷଣ । ଯେପରିକି ବେଦାନ୍ତ ପରିଭାଷାକାରଙ୍କ କଥନ ହେଉଛି ଯଦ୍ୟପି ଏହି ବ୍ରହ୍ମସତ୍ତ୍ୱ କୌଣସି ଦ୍ରବ୍ୟ ରୂପ ସତ୍ୟ ନୁହେଁ, ପୁନଃ ଏହା ସମସ୍ତ ଜଗତର ଅଧିଷ୍ଠାନ, ସମସ୍ତ ଚେତନ ଏବଂ ଅଚେତନ, ସାମାନ୍ୟ ଏବଂ ବିଶେଷ, ସମସ୍ତ ବସ୍ତୁଗୁଡ଼ିକର ଏକ ମହା ସାମାନ୍ୟ (ବ୍ରହ୍ମ)ରେ ହିଁ ଅନ୍ତର୍ଭାବ । ବ୍ରହ୍ମର ଅସ୍ତିତ୍ୱ ବଡ଼ ବିଲକ୍ଷଣ ହୋଇଥାଏ । ଯଦି ଦେଖାଯାଏ ତ ବ୍ରହ୍ମର ଅସ୍ତିତ୍ୱ ସର୍ବବ୍ୟାପ୍ତ ହୋଇଛନ୍ତି, କିନ୍ତୁ ଦେଶ କାଳାତୀତ ହେବା କାରଣରୁ ବ୍ରହ୍ମର ଅସ୍ତିତ୍ୱ କୌଣସି ସ୍ଥାନରେ 'ନାହିଁ' କୁହାଯାଇ ପାରେନାହିଁ । ବସ୍ତୁତଃ ଏହା ଏପରି ଏକ ସୂକ୍ଷ୍ମତତ୍ତ୍ୱ, ଯାହାର ନିର୍ଦ୍ଦେଶ ମନ ଏବଂ ବାଣୀ ଦ୍ୱାରା ଅଂସଭବ । କିନ୍ତୁ ଏକଥା କୁହାଯାଇ ନପାରେ ଯେ ଏହା ଅଭାବରୂପ । ବ୍ରହ୍ମଙ୍କ ସତ୍ତାକୁ ସ୍ୱୀକାର କରି ଶଙ୍କରାଚାର୍ଯ୍ୟ ସ୍ପଷ୍ଟ ଭାବେ କହିଛନ୍ତି ଯେ-

ବ୍ରହ୍ମାବସାନୋଽୟଂ ପ୍ରତିଷେଧୋ ନାଭାବସାନଃ- (ବ୍ର.ସୂ.ଶା.ଭା. ୩/୨/୨୨)

ବ୍ରହ୍ମଙ୍କ ଅସ୍ତିତ୍ୱ ନିରୂପଣ ଅନ୍ୟ କୌଣସି ବସ୍ତୁ ଆଧାରରେ ହେବା ଅସଂଭବ । ଏହାର କାରଣ ଏହିକି ବ୍ରହ୍ମଙ୍କ ସମାନ ଅନ୍ୟ କିଛି ନାହିଁ କିମ୍ବା ଅସମାନ ନାହିଁ । ବ୍ରହ୍ମ ବସ୍ତୁତଃ କୌଣସି ପ୍ରକାରରେ ସ୍ୱଗତଭେଦ ରହିତ । ଶଙ୍କରଙ୍କର କହିବାର କଥା ହେଉଛି, ଗୋଟିଏ ବୃକ୍ଷ, ଯେ ପତ୍ର, ପୁଷ୍ପ ଏବଂ ଫଳରେ ସ୍ୱଗତ ଭେଦ ଯୁକ୍ତର ସାଦୃଶ୍ୟ ଅନ୍ୟ ବୃକ୍ଷ ସହିତ ଦେଖାଯାଇପାରେ । ଏହା ବ୍ୟତୀତ ପାଷାଣ ଆଦି ବୃକ୍ଷଠାରୁ ଅସଦୃଶ ବସ୍ତୁର ମଧ ଉପଲବ୍ଧ ହୋଇଥାଏ । କିନ୍ତୁ ଯେପରି ଉପର୍ଯ୍ୟୁକ୍ତ ବ୍ରହ୍ମର ସ୍ଥିତି ଏହାର ବିପରୀତ ହୋଇଥାଏ । ଅତଃ କୌଣସି ଦୃଷ୍ଟାନ୍ତ ଆଧାରରେ ବ୍ରହ୍ମଙ୍କ ଅସ୍ତିତ୍ୱର ପ୍ରତିପାଦନ ଅସଂଭବ ହୋଇଥାଏ ।

ବ୍ରହ୍ମ ସତ୍ ଚିତ୍ ଏବଂ ଆନନ୍ଦ ସ୍ୱରୂପ । ବ୍ରହ୍ମଙ୍କର ଏହି ଆନନ୍ଦରୂପା ନୈୟାୟିକ ଦୃଷ୍ଟିରେ ଅନୁପଯୁକ୍ତ । ଏଣୁ ସେମାନେ ମୁକ୍ତିକୁ ଶୁଷ୍କ ସ୍ୱୀକାର କରିଥାନ୍ତି । ଜର୍ମାନ ଦାର୍ଶନିକ କାଣ୍ଟ ମଧ ପରମତତ୍ତ୍ୱକୁ ବୋଧରେ ଉତ୍ପନ୍ନ ହେଉଥିବା ଆନନ୍ଦର

ବୋଧ ନହେବା କାରଣରୁ ପରମତତ୍ତ୍ୱର ଉପଲବ୍ଧି ସଂବଂଧରେ ସଂଦିଗ୍ଧ ଥିଲେ । କାରଣ ଏହିକି ଦାର୍ଶନିକ କାଣ୍ଟ ଶୁଦ୍ଧବସ୍ତୁ (Thing nit self)ର ବୋଧ ଅସଂଭବ ମାନିଥାନ୍ତି । ଏହାର ବିପରୀତ ଶଂକର ଦର୍ଶନର ପ୍ରମୁଖ ସାଧ୍ୟ ହିଁ ବ୍ରହ୍ମଜ୍ଞାନ । ଏ ସାଧ୍ୟକୁ ପ୍ରସ୍ତାବନା ରୂପରେ ହିଁ ବ୍ରହ୍ମସୂତ୍ର ଅନ୍ତର୍ଗତ ସର୍ବପ୍ରଥମ- 'ଅଥାତୋ ବ୍ରହ୍ମ ଜିଜ୍ଞାସା'- (ବ୍ର.ସୂ. ୧/୧/୧ ) ସୂତ୍ରର ନିର୍ମାଣ ପ୍ରତୀତ ହୋଇଥାଏ ।

ଶାଂକର ଦର୍ଶନ ଅନୁସାରେ ବ୍ରହ୍ମଙ୍କର ଅସ୍ତିତ୍ୱ ସ୍ୱତଃସିଦ୍ଧ । ଏଣୁ ଏହା ସ୍ପିନୋଜାଙ୍କ ସ୍ୱତନ୍ତ୍ର ସତ୍ତ୍ୱର ଅଧିକ ସମୀପବର୍ତ୍ତୀ ପ୍ରତୀତ ହୋଇଥାଏ । ବ୍ରହ୍ମକୁ ଅସତ୍ ପଦାର୍ଥ କହିବାର ଆଶଂକା ଶଙ୍କରାଚାର୍ଯ୍ୟଙ୍କୁ ପ୍ରଥମରୁ ଜଣାଥିଲା, ଆଚାର୍ଯ୍ୟ ନିଜ ଛାନ୍ଦୋଗ୍ୟ ଉପନିଷଦ ଭାଷ୍ୟରେ ସେହି ମନ୍ଦବୁଦ୍ଧିଙ୍କ ଚର୍ଚ୍ଚା ସ୍ପଷ୍ଟଭାବରେ କରିଅଛନ୍ତି । ଯାହାଙ୍କ ପାଇଁ ଦିଗା, ଦେଶ, ଗୁଣ, ଗତି, ଫଳ ଓ ଭେଦ ଶୂନ୍ୟ ପରମାର୍ଥ ସତ୍ ଏବଂ ଅଦ୍ୱୟ ତତ୍ତ୍ୱ ଅସତ୍ ପଦାର୍ଥ ସମାନ ଦେଖାଯାଇଥାଏ । ଏଥିପାଇଁ ଶଙ୍କରାଚାର୍ଯ୍ୟ ଶୂନ୍ୟବାଦ ସିଦ୍ଧାନ୍ତକୁ ସର୍ବଥା ଅନୁପପନ୍ନ କହିଅଛନ୍ତି । (ବ୍ର.ସୂ.ଶା.ଭା- ୨/୨/୩୨)

**ଶାଂକର ଅଦ୍ୱୈତବାଦ ଅନ୍ତର୍ଗତ ଈଶ୍ୱରଙ୍କ ସ୍ୱରୂପ-** ଶାଂକର ଅଦ୍ୱୈତବାଦ ଦର୍ଶନ ଅନ୍ତର୍ଗତ ଈଶ୍ୱରଙ୍କ ବିବେଚନ କରିବା ପୂର୍ବରୁ ଏହା କହିବା ଆବଶ୍ୟକ କି ଶଙ୍କର ଦର୍ଶନରେ ବ୍ରହ୍ମ ଓ ଈଶ୍ୱରଙ୍କ ନାମରେ ଦୁଇ ପୃଥକ ସତ୍ତା ସ୍ୱୀକାର କରାଯାଇ ନାହିଁ । ବ୍ରହ୍ମଙ୍କର ଗୋଟିଏ ସ୍ଥିତି ରହିଛି । ଶଙ୍କରାଚାର୍ଯ୍ୟ ବ୍ରହ୍ମଙ୍କ ପର ଅପର ଦୁଇ ଭେଦ କରି ଅଛନ୍ତି । ଆଚାର୍ଯ୍ୟଙ୍କ କହିବା ହେଉଛି, ଯେଉଁଠି ଅବିଦ୍ୟାପ୍ରଯୁକ୍ତ ନାମ ଏବଂ ରୂପ ଆଦି ବିଶେଷର ପ୍ରତିରୋଧରେ ଅସ୍ଥୁଳାଦି ଶବ୍ଦରେ ବ୍ରହ୍ମଙ୍କ ଉପଦେଶ କରାଯାଇଅଛି, କିନ୍ତୁ ବ୍ରହ୍ମ । ଏହା ବ୍ୟତୀତ ଯେବେ ତାହା ନାମା ରୂପାଦି କୌଣସି ବିଶେଷରେ ବିଶିଷ୍ଟ ହୋଇଥିବା ଉପାସନା ପାଇଁ ବର୍ଣ୍ଣିତ ହୋଇଥାଏ ତାହାକୁ ଅପର ବ୍ରହ୍ମ କୁହାଯାଏ । (ଛା. ୩/୧୪/୨) (ଇତ୍ୟାଦି ଶବ୍ଦେସ୍ୱଦ ପରମା- ବ୍ର.ସୂ.ଶା.ଭା. ୪/୩/୧୪) । ଏହି ଅପର ବ୍ରହ୍ମ ହିଁ ଶାଂକର ଦର୍ଶନର ଈଶ୍ୱର । ଶଙ୍କରାଚାର୍ଯ୍ୟଙ୍କ ପରବର୍ତ୍ତୀ ଦାର୍ଶନିକମାନେ ଈଶ୍ୱରଙ୍କ ବ୍ୟାଖ୍ୟା ଭିନ୍ନ ଭିନ୍ନ ପ୍ରକାର କରିଅଛନ୍ତି ।

**ଈଶ୍ୱରଙ୍କର ଅନ୍ତର୍ଯାମୀତ୍ୱ ଏବଂ ଶାସକତ୍ୱ-** ବିଷୟ ଏବଂ ବିଷୟୀ ଦୁଇଟିର ଅନ୍ତର୍ଗତ ଈଶ୍ୱରଙ୍କ ସତ୍ତା ହେବା କାରଣରୁ ଈଶ୍ୱର ଅନ୍ତର୍ଯାମୀ । ଏହା ବ୍ୟତୀତ

ଈଶ୍ୱର ହିଁ ଜଗତର ସ୍ରଷ୍ଟା, ଶାସକ ଏବଂ ସଂହାର କର୍ତ୍ତା । (ବ୍ର.ସୂ.ଶା.ଭା. ୧/୧/୧୮- ୨୦, ୨୨/୧/୩/୩୯, ୪୧,୩/୨/୯/୧୦) ଶ୍ରୀମଦ୍‌ଭଗବତ ଗୀତାର ସେହି ଉକ୍ତିରେ ଈଶ୍ୱରଙ୍କ ଅନ୍ତର୍ଯାମୀତ୍ୱର ବଡ଼ ସ୍ପଷ୍ଟ ଝଲକ ମିଳିଥାଏ । ଯହିଁରେ କଥିତ ଅଛି ଈଶ୍ୱର ହିଁ ଯନ୍ତାରୂଢ଼ ସମ ସମସ୍ତ ପ୍ରାଣୀଙ୍କୁ ଆପଣା ମାୟାରେ ଭ୍ରମିତ କରାଇ ସମସ୍ତ ପ୍ରାଣୀଙ୍କ ହୃଦୟରେ ବର୍ତ୍ତମାନ ରହିଛନ୍ତି । (ଶା.ଭା.ଗୀ. ୧୮/୬୧) କିନ୍ତୁ ଏହା ବିଚାର୍ଯ୍ୟ କି ଯେପରି ମାୟାବୀ (ଐନ୍ଦ୍ରଜାଲିକ)ସ୍ୱୟଂ ପ୍ରସାରିତ ମାୟାରେ ତ୍ରିକାଳରେ ମଧ୍ୟ ସ୍ପୃଷ୍ଟ ହୋଇ ନଥାଏ, ସେହିପରି ପରମାତ୍ମା ମଧ୍ୟ ସଂସାର ମାୟାରୁ ଅସ୍ପୃଷ୍ଟ ରହିଥାନ୍ତି ।

**ଶଂକର ଦର୍ଶନରେ ସୃଷ୍ଟି ବୈଷମ୍ୟ ଓ ଈଶ୍ୱର-** ଯଦି ଆପ୍ତକାମ ଏବଂ ନିଷ୍ପୃହ ଈଶ୍ୱର ଜଗତର ସ୍ରଷ୍ଟା ତେବେ ତାଙ୍କ ସୃଷ୍ଟିରେ ବୈଷମ୍ୟ କାହିଁକି ? ଏହା ବିଚାରଣୀୟ । ବସ୍ତୁତଃ ସୃଷ୍ଟିବୈଷମ୍ୟ କାରଣ ସଂସାରରେ କେହି ସବୁଠାରୁ ଉଚ୍ଚା, କେହି ମଧ୍ୟମ, କେହି ନୀଚ । ସୃଷ୍ଟିର ଏ ବ୍ୟତିକ୍ରମ ବିଷମତା କାରଣ ଶଙ୍କରାଚାର୍ଯ୍ୟ ବିସ୍ତାରିତ ଭାବେ ବୁଝାଇଛନ୍ତି । ଶଙ୍କରାଚାର୍ଯ୍ୟଙ୍କର କଥନ ହେଉଛି କି ଈଶ୍ୱର ନିରପେକ୍ଷ ହୋଇ ସୃଷ୍ଟିର ନିର୍ମାଣ କରିଥାନ୍ତି । ବରଂ ସେ ଧର୍ମ ଏବଂ ଅଧର୍ମର ଅପେକ୍ଷା କରି ସୃଷ୍ଟି ରଚନା କରିଅଛନ୍ତି । ସୃଜ୍ୟମାନ ପ୍ରାଣୀମାନଙ୍କର ଧର୍ମ ଓ ଅଧର୍ମର ଅପେକ୍ଷାରୁ ସୃଷ୍ଟି ବିଷମ ହୋଇଥାଏ । ଅତଃ ଈଶ୍ୱରଙ୍କର କୌଣସି ଅପରାଧ ନାହିଁ । ଈଶ୍ୱରଙ୍କୁ ପର୍ଜନ୍ୟ ସମାନ ବୁଝିବା ଦରକାର । ଯେପରି ବ୍ରିହି, ଯବ, ଧାନ୍ୟ ଆଦିର ସୃଷ୍ଟିରେ ପର୍ଜନ୍ୟ ସାଧାରଣ କାରଣ, ବ୍ରିହି, ଯବ ଆଦିର ବିଷମତାରେ ସେହି ବୀଜରେ ରହିଥିବା ସାମର୍ଥ୍ୟ ଅସାଧାରଣ କାରଣ ହୋଇଥାଏ । ସେହିପରି ଦେବ, ମନୁଷ୍ୟ ଆଦି ସୃଷ୍ଟି ଈଶ୍ୱର ସାଧାରଣ କାରଣ । ଦେବ, ମାନବ ଆଦିର ବିଷମତାରେ ତତ୍ ତତ୍ ଜୀବରେ ରହିଥିବା କର୍ମ ସାଧାରଣ କାରଣ ହୋଇଥାଏ । ଏହିପରି ଈଶ୍ୱର କର୍ମର ଅପେକ୍ଷା ରଖିବା ଦ୍ୱାରା ବୈଷମ୍ୟ ଓ ନୈର୍ଘୃଣ୍ୟ ରୂପ ଦୋଷର ଭାଜନ ନୁହଁନ୍ତି ।

ଏହା ବିଚାରଣୀୟ କି ସାପେକ୍ଷ ଈଶ୍ୱର ନୀଚ ମଧ୍ୟମ ଓ ଉତ୍ତମ ସଂସାରର ନିର୍ମାଣ କିପରି କରି ପାରନ୍ତି । ଏ ସମ୍ବନ୍ଧରେ କୌଷୀତକୀ ବ୍ରାହ୍ମଣ ଅନ୍ତର୍ଗତ ସ୍ପଷ୍ଟଭାବେ କୁହାଯାଇଛି କି ଈଶ୍ୱର ଯାହାକୁ ଏହି ଲୋକରୁ ଉର୍ଦ୍ଧ୍ୱକୁ ନେବାକୁ ଚାହୁଁଛନ୍ତି, ତାକୁ ସାଧୁକର୍ମ କରାଇଥାନ୍ତି, ଏବଂ ଯାହାକୁ ନୀଚକୁ ନେବାକୁ ଚାହୁଁଛନ୍ତି,

ତାକୁ ଅସାଧୁ କାର୍ଯ୍ୟ କରାଇଥାନ୍ତି । 'ଏଷ ହ୍ୟେବ ସାଧୁ କର୍ମ କାରୟତି ତଂ ଯମେଭ୍ୟୋ ଲୋକେଭ୍ୟୋ ଭିନ୍ନିନୀଷତ ଏବ ଉ ଏବା ସାଧୁକର୍ମ କାରୟତି ତଂ ଯମଧୋ ନିନୀଷତେ । (କୌ.ବ୍ରା.୩/୮) । ଶ୍ରୁତିର ଉକ୍ତ ବିଚାର ଅନୁସାରେ ଈଶ୍ୱରଙ୍କର ବୈଷମ୍ୟ ସୃଷ୍ଟି ଅଧିକ ପକ୍ଷପାତପୂର୍ଣ୍ଣ ପ୍ରତୀତ ହୋଇଥାଏ । କାରଣ କାହାରିକୁ ସାଧୁ ଏବଂ କାହାକୁ ଅସାଧୁ କର୍ମ କରାଇବାରେ ଈଶ୍ୱରଙ୍କ ଉଦ୍ଦେଶ୍ୟ ପକ୍ଷପାତପୂର୍ଣ୍ଣ ହିଁ କୁହାଯିବ । ଈଶ୍ୱରଙ୍କ ସମ୍ବନ୍ଧରେ ଏପରି ଶଂକା କରିବା ଅନୁଚିତ । ଅନାଦିକାଳରୁ ସଂଚିତ ସାଧୁ ଏବଂ ଅସାଧୁ ବାସନା କାରଣରୁ ପୁରୁଷ ସ୍ୱଭାବରେ ହିଁ ସତତ କର୍ମରେ ପ୍ରବୃତ୍ତ ହୋଇଥାଏ । ଅତଃ ଈଶ୍ୱର ଏଥିରେ ସାଧାରଣ ହେତୁ ହୋଇଥାନ୍ତି । ଏଣୁ ଈଶ୍ୱରଙ୍କୁ ପକ୍ଷପାତପୂର୍ଣ୍ଣ ସ୍ରଷ୍ଟା କୁହାଯାଇନପାରେ ।

**ଶଙ୍କର ଅଦ୍ୱୈତବାଦ ଅନ୍ତର୍ଗତ ଜୀବର ସ୍ୱରୂପ-** ଗୋଟିଏ ଅଦ୍ୱୈତ ତତ୍ତ୍ୱ ବ୍ରହ୍ମକୁ ହିଁ ମାୟାଶକ୍ତି କାରଣରୁ ଈଶ୍ୱର ଏବଂ ଅବିଦ୍ୟୋପାଧି କାରଣ ହେତୁ ଜୀବ, ଏହି ଦୁଇ ଭେଦ ରହିଛି । ଶଙ୍କରାଚାର୍ଯ୍ୟ ଜୀବର ଜୀବତାକୁ ସ୍ୱଷ୍ଟ କରିବା ପାଇଁ କୁହନ୍ତି କି ଯେ ଯାବତ୍ ବୁଦ୍ଧି ରୂପ ଉପାଧି ସହିତ ଜୀବର ସଂବଂଧ ରହିଥାଏ, ସେ ଯାବତ୍ ଜୀବର ଜୀବତ୍ୱ ସଂସାରିତ୍ୱ ହୋଇଥାଏ । (ବ୍ର.ସୂ.ଶା.ଭା.୨/୩//୩୦) । ଜୀବର ସ୍ୱରୂପ ବିବେଚନ ସଂବଂଧରେ ଶାଙ୍କର ବେଦାନ୍ତ ଅନୁଯାୟୀ ବିଦ୍ୱାନଙ୍କର ବିଭିନ୍ନ ମତ ମିଳିଥାଏ ।

*ବାଚସ୍ପତି ମିଶ୍ରଙ୍କ ମତ-* ବାଚସ୍ପତି ମିଶ୍ରଙ୍କର ମତ ଏହିକି ଅବିଦ୍ୟା ଜୀବର ଅଧିକରଣ, କିନ୍ତୁ ଜୀବରେ ରହିଥିବା ଅବିଦ୍ୟା ନିମିତ୍ତତା ଏବଂ ବିଷୟତାର କରଣ ଈଶ୍ୱରାଶ୍ରିତ ହେଉଥିବାରୁ ଈଶ୍ୱରାଶାୟୀ କୁହାଯାଏ ।

*ପ୍ରକଟାର୍ଥ ବିବରଣକାରଙ୍କ ମତ-* ଏହାଙ୍କ ମତ ଏହିକି ସର୍ବଭୂତ ପ୍ରକୃତି, ଚିନ୍ମାତ୍ରସଂବଂଧିନୀ ଅନାଦି ଏବଂ ନିର୍ବଚନୀୟ ମାୟାରେ ଚୈତନ୍ୟର ପ୍ରତିବିମ୍ବ ହେଉଛି ଈଶ୍ୱର ଏବଂ ସେହି ମାୟାକୁ ଅବିଦ୍ୟା ନାମ ଯୁକ୍ତ, ଆବରଣ ଓ ବିକ୍ଷେପ ଶକ୍ତିଯୁକ୍ତ ପରିଛିନ୍ନ ଅନନ୍ତ ପ୍ରଦେଶରେ ଚୈତନ୍ୟର ପ୍ରତିବିମ୍ବ ହେଇଛି ଜୀବ ।

*ସର୍ବଜ୍ଞାମ୍ର ମୁନିଙ୍କ ମତ-* ସଂକ୍ଷେପ ଶାରୀରକର ରଚୟିତା ସର୍ବଜ୍ଞାପ୍ତ ମୁନି ଅବିଦ୍ୟାରେ ଚୈତନ୍ୟର ପ୍ରତିବିମ୍ବକୁ ଈଶ୍ୱର ତଥା ଅନ୍ତଃକରଣ ପ୍ରତିବିମ୍ବିତ ଚୈତନ୍ୟର ପ୍ରତିବିମ୍ବକୁ ଜୀବ ସଂଜ୍ଞା ଦେଇଛନ୍ତି ।

*ଦୃଗ୍‌ଦୃଶ୍ୟ ବିବେକ ଅନୁସାରେ ଜୀବର ତିନିଭେଦ-* ଦୃଗ୍‌ଦୃଶ୍ୟ ବିବେକ ଅନ୍ତର୍ଗତ ବିଦ୍ୟାରଣ୍ୟ ମୁନି ଜୀବର ତିନିଭେଦ କରିଅଛନ୍ତି । (୧) ଅନ୍ତଃକରଣା ବିଚ୍ଛିନ୍ନ କୂଟସ୍ଥ ଚୈତନ୍ୟ ପାରମାର୍ଥିକ ଜୀବ, (୨) ମାୟାବୃତ୍ତ କୂଟସ୍ଥରେ ଚିତ୍‌ର ଆଭାସରୂପ ବ୍ୟାବହାରିକ ଜୀବ । (୩) ନିଦ୍ରାରେ ଆବୃତ ବ୍ୟାବହାରିକ ଜୀବରେ କଳ୍ପିତ ପ୍ରାତିଭାସିକ ଜୀବ । ଏହିପରି ବିଦ୍ୟାରଣ୍ୟ ଜୀବର ଉକ୍ତ ଭେଦର ଉଲ୍ଲେଖ କରି ବୈଜ୍ଞାନିକ ଅଧ୍ୟୟନର ପରିଚୟ ଦେଇଛନ୍ତି ।

**ନିଷ୍କର୍ଷ-** ଯେପରି ଜୀବ ସଂବଂଧି ବିବେଚନର ଆରମ୍ଭରେ ହିଁ କୁହାଯାଇଛି ଯେ, ମୂଳତତ୍ତ୍ୱ ଏକମାତ୍ର ବ୍ରହ୍ମ ହିଁ ହୋଇଥାନ୍ତି । ବ୍ରହ୍ମ ହିଁ ଅବିଦ୍ୟା କାରଣରୁ ଜୀବତ୍ୱକୁ ପ୍ରାପ୍ତି ହୋଇଥାଏ । ବସ୍ତୁତଃ ଜୀବର ବାସ୍ତବିକ ସ୍ୱରୂପ ହିଁ ବ୍ରହ୍ମ । ଜୀବାନାଂ ସ୍ୱରୂପ ବାସ୍ତବଂ ବ୍ରହ୍ମ (ଭାମତି. ବ୍ର.ସୂ. ୧/୪/୩) । ଏଠାରେ ଏହା ଉଲ୍ଲେଖନୀୟ ଯେ ଅବିଦ୍ୟାର ନିବୃତ୍ତି ହେବାପରେ ଜୀବ ଈଶ୍ୱରତ୍ୱକୁ ପ୍ରାପ୍ତି କରିଥାଏ । ଏହି ଈଶ୍ୱରଙ୍କଠାରୁ ବ୍ରହ୍ମର ସତ୍ତା ପୃଥକ୍ ବୋଲି ବିଚାରିବା ଉଚିତ୍ ନୁହେଁ । ଜଗତର ସମସ୍ତ ସୁଖ- ଦୁଃଖାଦିର ଭୋକ୍ତା ଏବଂ ବିଭିନ୍ନ କାର୍ଯ୍ୟର କର୍ତ୍ତା ଏହି ଜୀବ ହୋଇଥାଏ । ଏହିପରି ଶୁଦ୍ଧ ଚୈତନ୍ୟ ରୂପ ବ୍ରହ୍ମକୁ ହିଁ ଅବିଦ୍ୟାପ୍ରନ୍ନ ଜୀବାଦି ଭେଦ ହୋଇଥାଏ ।

କର୍ତ୍ତା ଏବଂ ଭୋକ୍ତା ଜୀବର ହିଁ ବିଶ୍ୱ, ତୈଜସ ଏବଂ ପ୍ରାଜ୍ଞ ସଂଜ୍ଞା ସାଧାରଣ କରନ୍ତି । ଜୀବର ଉକ୍ତ ଅବସ୍ଥାଗୁଡ଼ିକ ଜାଗ୍ରତ ସ୍ୱପ୍ନ ଏବଂ ସୁଷୁପ୍ତି ଏହି ତିନି ଅବସ୍ଥା, ସ୍ଥୁଳ, ସୂକ୍ଷ୍ମ ଓ କାରଣ ଏହି ତିନି ଶରୀର ତଥା ଅନ୍ନମୟ, ମନୋମୟ, ପ୍ରାଣମୟ, ବିଜ୍ଞାନମୟ ଏବଂ ଆନନ୍ଦମୟ ପାଞ୍ଚକୋଷ ଉପରେ ଆଧାରିତ ।

ଜାଗ୍ରତ ଅବସ୍ଥାରେ ସ୍ଥିତ ଅନ୍ନମୟ କୋଷରୂପ ସ୍ଥୁଳଶରୀର ଅଭିମାନୀ ଜୀବକୁ ବିଶ୍ୱ କୁହାଯାଏ । ସ୍ୱପ୍ନାବସ୍ଥାରେ ସ୍ଥିତ ମନୋମୟ, ପ୍ରାଣମୟ ଏବଂ ବିଜ୍ଞାନମୟ କୋଷରୂପ ସୂକ୍ଷ୍ମଶରୀରସ୍ଥ ଅଭିମାନୀ ଜୀବକୁ ତୈଜସ କୁହାଯାଏ । ଉକ୍ତ ତିନି କୋଷ ହିଁ ଜୀବର ଜ୍ଞାନଶକ୍ତି, ଇଚ୍ଛାଶକ୍ତି ତଥା କ୍ରିୟାଶକ୍ତିର କାରଣ ହୋଇଥାଏ । ବିଜ୍ଞାନମୟ କୋଷଶକ୍ତି ଦ୍ୱାରା ଯୁକ୍ତ ହେବା କାରଣରୁ କର୍ତ୍ତୃତ୍ୱମୟ ହୋଇଥାଏ । ମନୋମୟ କୋଷ ଇଚ୍ଛାଶକ୍ତିରେ ଯୁକ୍ତ ହେବା କାରଣରୁ ବିବେକର ସାଧକ ହୋଇଥାଏ । ପ୍ରାଣମୟକୋଷ ଗମନାଦି କ୍ରିୟାରେ ଯୁକ୍ତ ହେବା କାରଣରୁ କାର୍ଯ୍ୟରୂପ ହୁଏ ।

ସୁଷୁପ୍ତ୍ୟବସ୍ଥାବର୍ତ୍ତୀ ଆନନ୍ଦମୟ କୋଷରୂପ କାରଣ ଶରୀରର ଅଭିମାନୀ ଜୀବକୁ ପ୍ରାଜ୍ଞ କୁହାଯାଏ । ଉପର୍ଯ୍ୟୁକ୍ତ ଜାଗ୍ରତାଦି ଅବସ୍ଥା, ସ୍ଥୁଳାଦି ଶରୀର ଏବଂ ଆନନ୍ଦାଦି କୋଷର ଅନୁରୂପ ହିଁ ସମଷ୍ଟି ରୂପ ଈଶ୍ୱରଙ୍କୁ 'ବୈଶ୍ୱାନର' ବା ବିରାଟ ସୂତ୍ରାତ୍ମା ବା ହିରଣ୍ୟଗର୍ଭ ତଥା ଈଶ୍ୱର କହିଥାନ୍ତି ।

**ଜୀବ ଏବଂ ଈଶ୍ୱର**- ଈଶ୍ୱର ମାୟାଶକ୍ତି ସଂପନ୍ନ ଏବଂ ଜୀବ ଅବିଦ୍ୟୋପାଧିରେ ଉପହିତ । ଯେଉଁଠି ଈଶ୍ୱରଙ୍କ ଠାରେ ସର୍ବଜ୍ଞତ୍ୱ, ସର୍ବଶକ୍ତିମତ୍ୱ ଏବଂ ସର୍ବବ୍ୟାପକତ୍ୱ ରହିଛି ସେଠାରେ ଜୀବ ଅଳ୍ପଜ୍ଞ, ତୁଚ୍ଛ ଏବଂ ଅତ୍ୟନ୍ତ ଲଘୁ । ଶଙ୍କରାଚାର୍ଯ୍ୟଙ୍କ କଥନ ହେଉଛି, ନିରତିଶୟ ଉପାଧି ସଂପନ୍ନ ଈଶ୍ୱର ଅତ୍ୟନ୍ତ ହୀନସଂପନ୍ନ ଜୀବ ଉପରେ ଶାସନ କରିଥାନ୍ତି । ଯେପରି କୁହାଯାଇଛି, ଈଶ୍ୱର ଏବଂ ଜୀବ ମୂଳତଃ ଏକ ହିଁ ହୋଇଥାନ୍ତି । ଚୈତନ୍ୟ ତତ୍ତ୍ୱ ଜୀବ ଏବଂ ଈଶ୍ୱର ଏକ ହିଁ ହୋଇଥାନ୍ତି । ଜୀବ ଈଶ୍ୱରଙ୍କ ଅଂଶ ସମାନ ହୋଇଥାନ୍ତି । କିନ୍ତୁ ସେ (ତାହା) ମୁଖ୍ୟ ଅଂଶ ନୁହେଁ । ଏହାର କାରଣ ଏହିକି, ନିରବୟବ ଈଶ୍ୱରଙ୍କ ଅଂଶ ହୋଇ ନପାରନ୍ତି ।

ଜୀବ ଓ ଈଶ୍ୱରଙ୍କ ମଧ୍ୟରେ ଗୋଟିଏ ବିଶେଷ ଅନ୍ତର ଏହିକି- ଜୀବ ସାଂସାରିକ ଦୁଃଖ ସୁଖାଦିର ଅନୁଭବ କର୍ତ୍ତା ଈଶ୍ୱର ଦୁଃଖାଦିର ଅନୁଭବ କର୍ତ୍ତା ନୁହଁନ୍ତି । ଏହାର କାରଣ ଏହିକି ଜୀବ ଅବିଦ୍ୟାର ଆଦେଶରେ ବଶ ଦେହାଦି ଆତ୍ମଭାବକୁ ପ୍ରାପ୍ତ କରି ତତ୍‌କୃତ ଦୁଃଖରେ ଅହଂଦୁଃଖୀ, ମୁଁ ଦୁଃଖୀ ଇତ୍ୟାଦି ଅବିଦ୍ୟାକୃତ ଦୁଃଖ ଉପଭୋଗର ଅଭିମାନୀ ହୋଇଥାଏ । ଏହାର ବିରୁଦ୍ଧ ପରମେଶ୍ୱରଙ୍କର ଦେହାଦିରେ ଆତ୍ମଭାବ ବା ଦୁଃଖାଦି ଅଭିମାନ ହୋଇନଥାଏ ।

**ଜୀବ ଏବଂ ସାକ୍ଷୀ ମଧ୍ୟରେ ଅନ୍ତର**- ବ୍ରହ୍ମ, ଜୀବ ଏବଂ ସାକ୍ଷୀ ଶବ୍ଦରେ ପରମାର୍ଥିକ ଦୃଷ୍ଟିରୁ ଏକ ତତ୍ତ୍ୱର ହିଁ ସ୍ଥିତି ହୋଇଥିଲେ ହେଁ, ସୂକ୍ଷ୍ମ ଅନ୍ତର ଉପଲବ୍ଧ ହୋଇଥାଏ । ଉପାଧି ଶୂନ୍ୟ ଚେତନ ତତ୍ତ୍ୱର ନାମ ହେଉଛି ବ୍ରହ୍ମ ଏବଂ ମାୟା ବିଶିଷ୍ଟ ବ୍ରହ୍ମକୁ ଈଶ୍ୱର ସଂଜ୍ଞାରେ ଅଭିହିତ କରାଯାଏ । ଯେପରି ଉପର୍ଯ୍ୟୁକ୍ତ କଥିତାନୁସାରେ ଜଗତର ଭୋକ୍ତାପଣର ଅଭିମାନୀ ହେଉଛି ଜୀବ । ସାକ୍ଷୀ ଏହି ତିନିଠାରୁ ଭିନ୍ନ, ସେ କର୍ତ୍ତା ନୁହେଁ, ଭୋକ୍ତା ନୁହେଁ କିମ୍ବା ସ୍ରଷ୍ଟା ନୁହେଁ । ଜୀବ ଏବଂ ସାକ୍ଷୀର ଭେଦର ସ୍ପଷ୍ଟିକରଣ ମୁଣ୍ଡକୋପନିଷଦ୍ ଏକ ଉପମାନ ଆଧାରରେ ବଡ଼ ସୁନ୍ଦର ଭାବେ କରାଯାଇଅଛି ।

ମୁଣ୍ଡକୋପନିଷଦରେ କୁହାଯାଇଛି ଗୋଟିଏ ବୃକ୍ଷରେ ଦୁଇଗୋଟି ପକ୍ଷୀ ସଦା ନିବାସ କରନ୍ତି । ଜନ୍ମଧରୁ ଗୋଟିଏ ମଧୁର ଫଳର ଆସ୍ୱାଦନ ପୂର୍ବକ ଭକ୍ଷଣ କରୁଅଛି, ଅନ୍ୟଟି ସେହି ଫଳ ନଖାଇ ଦେଖି ରହୁଛି । ଏହି ଦ୍ରଷ୍ଟା ହେଉଛି ସାକ୍ଷୀ ।

ଏକଇ ବୃକ୍ଷେ ହଂସ ଦୁଇ । ବସନ୍ତି ପ୍ରିୟ ଭାବ ବହି ।
ସ୍ୱଭାବେ ବେନି ସଖା ହୋନ୍ତି । ଏକ ଆରକେ ନ ଛାଡ଼ନ୍ତି ।
ସମାନ ଶକ୍ତି ସେ ବହନ୍ତି । ବଦ୍ଧ ବିମୁକ୍ତ ବେନି ଗତି ।
ସେ ବୃକ୍ଷେ ଯେତେ ଫଳ ଫଳେ । ଏକ ଭୁଂଜଇ ତାହା ବଳେ ।
ଏକ ବଞ୍ଚଇ ଉପବାସେ । ନିର୍ଲେପ ନିରଂଜନ ଅଂଶେ ।

(ଭାଗବତ ୧୧ଶ ସ୍କନ୍ଧ ୧୨ଶ ଅଧ୍ୟାୟ)

(ମୂଳ ସଂସ୍କୃତ ଅନୁସାରେ ଏକାଦଶ ଅଧ୍ୟାୟ)

ଉକ୍ତ କ୍ଷେତ୍ରରେ ଭାଷ୍ୟ କରି ଶଙ୍କରାଚାର୍ଯ୍ୟ ଈଶ୍ୱରଙ୍କୁ କ୍ଷେତ୍ର ଏବଂ ଅବିଦ୍ୟା କାମ ବାସନାର ଆଶ୍ରୟ ଲିଂଗୋପିଧିରେ ଉପହିତ ଆତ୍ମା ଏବଂ ଈଶ୍ୱରଙ୍କୁ ପକ୍ଷୀ କହି ଅଛନ୍ତି । ଏଠାରେ ଆଚାର୍ଯ୍ୟ ଶଙ୍କରଙ୍କ କଥନ ହେଉଛି ତନ୍ମଧରୁ ଗୋଟିଏ କ୍ଷେତ୍ରଜ୍ଞ ଲିଂଗୋପାଧି ରୂପ ବୃକ୍ଷ ଆଶ୍ରିତ ହୋଇ କର୍ମାନୁସାରେ ନିଷପନ୍ନ ସୁଖ ଦୁଃଖ ରୂପ ଫଳକୁ ଅବିବେକ ସହିତ ଉପଭୋଗ କରିଥାଏ । ଦ୍ୱିତୀୟ ଅର୍ଥାତ୍ ଈଶ୍ୱର ଯେ ନିତ୍ୟ ଶୁଦ୍ଧ, ବୁଦ୍ଧ, ମୁକ୍ତ ସ୍ୱଭାବଯୁକ୍ତ ସର୍ବଜ୍ଞ ତଥା ସର୍ବତ୍ତୋପାଧି ଦ୍ୱାରା ଯୁକ୍ତ ହୋଇଅଛି, ସେ କର୍ମଫଳର ଭୋକ୍ତା ନୁହେଁ । ଯଦି ଈଶ୍ୱର ସାକ୍ଷୀ ରୂପରେ ଭୋକ୍ତା ଜୀବ ଏବଂ ଭୋଗ୍ୟର ପ୍ରେରକ ହୋଇଥାନ୍ତି । ରାଜାଙ୍କ ତୁଲ୍ୟ ଈଶ୍ୱରଙ୍କ ଦର୍ଶନ ହିଁ ପ୍ରେରଣା ହୋଇଥାଏ । ଏହିପରି ଭୋକ୍ତା ଜୀବାତ୍ମା ଏବଂ ସାକ୍ଷୀ ଈଶ୍ୱରଙ୍କ ମଧରେ ଅନ୍ତର ଦ୍ରଷ୍ଟବ୍ୟ । (ଶା.ଭା. ମୁଣ୍ଡ.ଉ ୩/୧/୧)

**ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତବାଦ ଓ ତାଙ୍କ ମାୟାବାଦ ସିଦ୍ଧାନ୍ତ:-**

ଅଦ୍ୱୈତବାଦ କ୍ଷେତ୍ରରେ ମାୟାବାଦର ମହତ୍ତ୍ୱ ଅତ୍ୟନ୍ତ ପ୍ରମୁଖ । ମାୟାବାଦର ସିଦ୍ଧାନ୍ତକୁ ସ୍ୱୀକାର କରିବା ବିନା ଅଦ୍ୱୈତବାଦ ପ୍ରତିପାଦନ ଅସଂଭବ । ଏହା ହେଉଛି ମାୟାବାଦର ଉପଯୋଗିତା । ଅନେକ ଆଲୋଚକଙ୍କ ଭ୍ରମ କାରଣରୁ ଏହା କହି ଦେବା ସଂଗତ ହେବ କି ମାୟାବାଦ ସିଦ୍ଧାନ୍ତବାଦ ନୁହେଁ । ପ୍ରାଚ୍ୟ ପାଶ୍ଚାତ୍ୟ ବିଦ୍ୱାନମାନଙ୍କର ସିଦ୍ଧାନ୍ତବାଦ ସଂପର୍କରେ ବିବିଧ ମତ ଉପସ୍ଥାପିତ କରାଗଲା ।

୧. *ଥିବୋଙ୍କ ମତ*– ବେଦାନ୍ତ ଦର୍ଶନର ପଶ୍ଚିମୀ ବିଦ୍ୱାନଙ୍କ ମଧ୍ୟରେ ଜର୍ଜ ଥିବୋଙ୍କ ସ୍ଥାନ ପ୍ରମୁଖ । ବ୍ରହ୍ମସୂତ୍ର ଶାଙ୍କର ଭାଷ୍ୟର ଅନୁବାଦ ଗ୍ରନ୍ଥର ଭୂମିକାରେ ଥିବୋ ମହୋଦୟ ଏ ସଂପର୍କରେ କିଛି ଆଲୋଚନା କରିଛନ୍ତି ଯେ ଉପନିଷଦରେ ମାୟାବାଦ ସିଦ୍ଧାନ୍ତ ଉପଲବ୍ଧ ବା ନୁହେଁ । ଏ ପ୍ରସଂଗ ଥିବୋ ମହାଶୟ ଏହି ନିଷ୍କର୍ଷରେ ପହଂଚିଛନ୍ତି କି ଉପନିଷଦରେ ମାୟାର ଯେଉଁ ଅସାରତା ଏବଂ ତୁଚ୍ଛାତାର ଚର୍ଚ୍ଚା ହୋଇଛି, ତନ୍ମଧ୍ୟରେ କୌଣସି ମାୟାକୁ ଏହି ଅର୍ଥରେ ମିଥ୍ୟାତ୍ୱର ପ୍ରତିପାଦନ କରି ନାହିଁ । ଯେଉଁ ଅର୍ଥରେ ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ପ୍ରତିପାଦିତ ମାୟା ମିଥ୍ୟା । ଏ ପ୍ରସଂଗରେ ଥିବୋ ଉପନିଷଦର ମାୟା ଏବଂ ଶଙ୍କରଙ୍କର ମାୟାର ପୃଥକତ୍ୱ ପ୍ରତିପାଦନ କରିଅଛନ୍ତି । ଥିବୋ ମହୋଦୟ ଯେପରି ଜଗତକୁ ରଜ୍ଜୁରେ ସର୍ପ ସମାନ ମିଥ୍ୟା କହିଛନ୍ତି ସେହି ପ୍ରକାର ଉପନିଷଦରେ ଜଗତକୁ ମିଥ୍ୟା କୁହାଯାଇ ନାହିଁ ।

*କୋଲବ୍ରୁକ୍‌ଙ୍କ ମତ*– କୋଲୁବ୍ରୁକ୍ ମହୋଦୟଙ୍କ ବିଚାର ହେଉଛି, ଜଗତର ମାୟାତ୍ୱ, ମିଥ୍ୟାତ୍ୱ, ସ୍ୱପ୍ନତ୍ୱ ଏବଂ ଅକିଞ୍ଚନତ୍ୱର ବିଚାର ଉପନିଷଦ ଏବଂ ମୂଳବେଦାନ୍ତ ଦର୍ଶନ ଅନ୍ତର୍ଗତ ଉପଲବ୍ଧ ନୁହେଁ ।

*ମାକ୍‌ସ୍‌ମୁ୍ୟଲାରଙ୍କ ମତ*– ମାକସ୍‌ମୁ୍ୟଲାର ମଧ୍ୟ ମାୟାବାଦୀ ସିଦ୍ଧାନ୍ତକୁ ଉପନିଷଦର ଦାନ ଗ୍ରହଣ ନକରି ଉପନିଷଦ ଉତ୍ତରକାଳୀନ ଦାନ ସ୍ୱୀକାର କରିଅଛନ୍ତି । ଏ ସମ୍ବନ୍ଧରେ ତାଙ୍କ କଥନ ହେଉଛି, ଉପନିଷଦରେ ଜଗତକୁ ମାୟା ବା ମିଥ୍ୟା ସିଦ୍ଧ କରିବାର ବିଚାର ମିଳେ ନାହିଁ ।

*ରେଗନାଡ୍‌ଙ୍କ ମତ*– ଜର୍ମାନ ବିଦ୍ୱାନ ରେଗନାଡ୍‌ଙ୍କ କଥନାନୁସାରେ ଏହା ପୂର୍ଣ୍ଣତଃ ବିଦିତ ଯେ ପ୍ରମୁଖ ଉପନିଷଦମାନଙ୍କ ମଧ୍ୟରୁ ଶ୍ୱେତାଶ୍ୱେତର ଏବଂ ମୈତ୍ରାୟଣୀକୁ ଛାଡ଼ି ଅନ୍ୟ କୌଣସିଠାରେ ମାୟା ଶବ୍ଦର ପ୍ରୟୋଗ ଦେଖାଯାଏ ନାହିଁ । ବୃହଦାରଣ୍ୟକ ଉପନିଷଦରେ ଥରେ ମାତ୍ର ଏହାର ପ୍ରୟୋଗ ହୋଇଛି । ଯେଉଁ ଅଂଶରେ ମାୟା ଶବ୍ଦ ପ୍ରଯୁକ୍ତ ତାହା ଋକବେଦ ସଂହିତାରୁ ଉଦ୍ଧୃତ । ଯେଉଁଠାରେ ମାୟା ଶବ୍ଦର ଅର୍ଥ ସୃଷ୍ଟିକର୍ତ୍ତା ଶକ୍ତି । ରେଗନାଡ୍ ମହୋଦୟଙ୍କ ବିଚାରରେ ଉପନିଷଦ ଶିକ୍ଷାରେ ମାୟାବାଦ ସିଦ୍ଧାନ୍ତ ଉପଲକ୍ଷିତ ହୋଇଛି, କିନ୍ତୁ ଏଠାରେ ସିଦ୍ଧାନ୍ତ ଅସ୍ପଷ୍ଟ ।

*ଗଫ୍‌ଙ୍କ ମତ*– ଗଫ୍ ମହୋଦୟ ନିଜର 'ଫିଲୋସଫିଅଫ୍ ଉପନିଷଦ' ଗ୍ରନ୍ଥର ନବମ ଅଧ୍ୟାୟରେ ଦୃଢ଼ତାର ସହ କହିଛନ୍ତି ଯେ ମାୟାବାଦ ସିଦ୍ଧାନ୍ତ ଉପନିଷଦର ମୂଳ ସିଦ୍ଧାନ୍ତ ।

*ଡଃ ପ୍ରଭୁଦତ୍ତ ଶାସ୍ତ୍ରୀଙ୍କ ମତ*– ବେଦାନ୍ତ ଦର୍ଶନର ଅଧ୍ୟେତା ଏବଂ ମାୟାବାଦର ଅଲୋଚକ ଡଃ ପ୍ରଭୁଦତ୍ତ ଶାସ୍ତ୍ରୀ ନିଜର 'ଦି ଡକ୍ଟ୍ରିକ ଅଫମାୟା' ନାମକ ପୁସ୍ତକ ଅନ୍ତର୍ଗତ ମାୟାବାଦର ଉଦୟ ଏବଂ ବିକାଶ ପ୍ରଦର୍ଶିତ କରିବାର ଚେଷ୍ଟା କରିଅଛନ୍ତି । ଏହି ଗ୍ରନ୍ଥରେ ସେ ଏହି ନିଷ୍କର୍ଷରେ ପହଂଚି ଅଛନ୍ତି କି- ମାୟାବାଦର ବିଚାର ଋକ୍‌ବେଦ ସଂହିତା ଏବଂ ଉପନିଷଦରେ ପ୍ରାପ୍ତ ହୋଇଥାଏ ।

ଉପର୍ଯ୍ୟୁକ୍ତ ଆଲୋଚନାରୁ ଅଧୋଲିଖିତ ମତ ଚର୍ଚ୍ଚିତ ହୋଇଅଛି ।

**୧.** ମାୟାବାଦର ଉଦୟ ଏବଂ ବିକାଶ ଋକ୍‌ବେଦ ସଂହିତା ଏବଂ ଉପନିଷଦରେ ଉପଲବ୍ଧ । ଏହି ମତର ସମର୍ଥକ ଡଃ ପ୍ରଭୁଦତ୍ତ ଶାସ୍ତ୍ରୀ ।

**୨.** ମାୟାବାଦର ସିଦ୍ଧାନ୍ତ ଉପନିଷଦର ମୂଳ ସିଦ୍ଧାନ୍ତ ଏହି ମତ ପ୍ରଫେସର ଗଫ୍‌ଙ୍କ ବିଚାର ଆଧାରିତ ।

**୩.** ମାୟାବାଦ ସିଦ୍ଧାନ୍ତର ସ୍ୱରୂପ ଉପନିଷଦରେ ଏହି ଅର୍ଥରେ ଉପଲବ୍ଧ ହୁଏ ନାହିଁ, ଯେଉଁ ଅର୍ଥରେ ଏହାର ବିକାଶ ଶାଙ୍କର ବେଦାନ୍ତ ଅନ୍ତର୍ଗତ ଉପଲବ୍ଧ ହୋଇଥାଏ । ଏହି ମତରେ ସମର୍ଥକ ହେଉଛନ୍ତି- ମାକ୍‌ସମ୍ୟୁଲର, କୋଲବ୍ରୁକ୍ ତଥା ଥୋବୀ ପ୍ରମୁଖ ।

**୪.** ଉପନିଷଦରେ ମାୟାବାଦ ସିଦ୍ଧାନ୍ତର ଅସ୍ପଷ୍ଟ ରୂପ ଉପଲବ୍ଧ, ଏହି ମତରେ ଅନୁସର୍ତ୍ତା ରେଗନାଡ଼୍ ପ୍ରଭୃତି ବିଦ୍ୱାନଗଣ ।

**ଶାଙ୍କର ମାୟାବାଦର ସ୍ୱରୂପ**- ଶଙ୍କରାଚାର୍ଯ୍ୟଙ୍କ ସମସ୍ତ ଗ୍ରନ୍ଥରେ ମାୟା ସଂବଂଧି ବିବେଚନ ଅନେକ ସ୍ଥାନରେ ହୋଇଅଛି । କିନ୍ତୁ ମାୟାବାଦ ସଂବଂଧି ବିବେଚନ ଦୃଷ୍ଟିରୁ ଶଙ୍କରଙ୍କର ଭାଷ୍ୟ ଗ୍ରନ୍ଥ ହିଁ ଅଧିକ ପ୍ରାମାଣିକ ଏବଂ ମହତ୍ତ୍ୱପୂର୍ଣ୍ଣ । ପ୍ରାଚୀନ ଉପନିଷଦମାନଙ୍କ ମଧ୍ୟରୁ ଇଶୋପନିଷଦ୍ ଭାଷ୍ୟ ଅନ୍ତର୍ଗତ ମାୟା ଶବ୍ଦର ଚର୍ଚ୍ଚା ଥରେ ହେଲେ ହୋଇ ନାହିଁ । କେନୋପନିଷଦ୍ ଭାଷ୍ୟରେ ପ୍ରାୟ ତିନିଥର, କଠୋପନିଷଦ ଭାଷ୍ୟରେ ଚାରିଥର, ମୁଣ୍ଡକୋପନିଷଦ ଭାଷ୍ୟରେ ଚାରିଥର, ପ୍ରଶ୍ନୋପନିଷଦ ଭାଷ୍ୟରେ ଦୁଇଥର, ଛାନ୍ଦୋଗ୍ୟ- ଉପନିଷଦ ଭାଷ୍ୟରେ ଦୁଇଥର ଏବଂ ବୃହଦାରଣ୍ୟକ ଉପନିଷଦ ଭାଷ୍ୟ ଅନ୍ତର୍ଗତ ତିନିଥର ମାୟା ଶବ୍ଦ ପ୍ରୟୋଗ ହୋଇଛି । ସବୁ ମିଶାଇ ଉପନିଷଦ ଭାଷ୍ୟରେ ପ୍ରାୟ ପଚିଶ ଥର ମାୟା ଶବ୍ଦର ପ୍ରୟୋଗ ହୋଇଛି । ଗୌଡ଼ ପାଦାଚାର୍ଯ୍ୟଙ୍କ ମାଣ୍ଡୁକ୍ୟ କାରିକାରେ ମଧ୍ୟ ପ୍ରାୟ

ପଚିଶ ଥର ମାୟା ଶବ୍ଦର ପ୍ରୟୋଗ ହୋଇଛି । ଶ୍ରୀମଦ୍ ଭଗବତ୍ ଗୀତା ଅନ୍ତର୍ଗତ ଚାଳିଶଥର ମାୟା ସଂବଂଧି ବିବେଚନା ମିଳିଥାଏ । ବ୍ରହ୍ମସୂତ୍ର ଭାଷ୍ୟ ଅନ୍ତର୍ଗତ ପ୍ରାୟ ଚାଳିଶଥର ମାୟା ଶବ୍ଦର ପ୍ରୟୋଗ ହୋଇଛି । ବ୍ରହ୍ମସୂତ୍ର ଅନ୍ତର୍ଗତ କେବଳ ଥରେ ମାତ୍ର (ବ୍ର.ସୂ. ୩/୨/୩) ମାୟାର ଚର୍ଚ୍ଚା ହୋଇଅଛି । ଏହି ସ୍ଥଳରେ ମାୟାର ଚର୍ଚ୍ଚା ପରମେଶ୍ୱରଙ୍କର ଶକ୍ତି, ଅବିଦ୍ୟା, ଇନ୍ଦ୍ରଜାଲ ଓ ମିଥ୍ୟାତ୍ୱ ଅର୍ଥରେ କରାଯାଇଛି । (ମାୟା ଶବ୍ଦର ପ୍ରୟୋଗ ପାଇଁ ଦେଖନ୍ତୁ- ଡଃ ରମାନନ୍ଦ ତିୱାରୀ- 'ଶଙ୍କରାଚାର୍ଯ୍ୟକା ଆଚାର ଦର୍ଶନ ପୃ-୫୮)

ଆଚାର୍ଯ୍ୟ ଶଙ୍କର ଜଗତ ଏବଂ ବ୍ରହ୍ମର ଦ୍ୱୈତବୁଦ୍ଧି ହେତୁ ଅବିଦ୍ୟାକୁ ସୂଚିତ କରିଛନ୍ତି । ଶଙ୍କରାଚାର୍ଯ୍ୟଙ୍କ ମାୟାବାଦ ପ୍ରତିପାଦନ ସଂବଂଧରେ କୁହାଯାଏ କି ଲୋକଙ୍କର ଅନେକ ପ୍ରକାର ତୃଷ୍ଣା ଏବଂ ଜନ୍ମ ମରଣ ଆଦି ଦୁଃଖର କାରଣ ହିଁ ଅବିଦ୍ୟା । ଏହି ଅବିଦ୍ୟାର ବିଷୟ ହେଉଛି ଜୀବ । ଅବିଦ୍ୟା କାରଣରୁ ଜୀବକୁ ପରମାର୍ଥ ସତ୍ୟ ଆତ୍ମସ୍ୱରୂପର ବୋଧ ନହେବାରୁ ନାମ ରୂପାତ୍ମକ ଜଗତ ହିଁ ପରମାର୍ଥ ରୂପରେ ସତ୍ୟ ଜଣାଯାଇଥାଏ । ଅବିଦ୍ୟା ନିବୃତ୍ତି ହେବାପରେ ଜୀବକୁ ଆତ୍ମସ୍ୱରୂପ ବୋଧ ହୋଇଥାଏ । ଜୀବର ଏହି ସ୍ୱରୂପ ସ୍ଥିତି ତାହାର ବ୍ରହ୍ମ ସ୍ୱରୂପ ହୋଇଥାଏ । ଏହି ଅବିଦ୍ୟାକୁ ଜଗତର ଉତ୍ପତ୍ତି କର୍ତ୍ତ୍ରୀ ବୀଜଶକ୍ତିର ରୂପ ଦିଆଯାଇଛି । ସେହି ବୀଜଶକ୍ତି ପରମାତ୍ମାଙ୍କର ଶକ୍ତି । ଏହି ଅବିଦ୍ୟା ରୂପ ବୀଜଶକ୍ତିର ବିନାଶ ଆତ୍ମ ବିଦ୍ୟାଦ୍ୱାରା ହିଁ ସଂଭବ । ଅବିଦ୍ୟୟା ତସ୍ୟା ବୀଜଶକ୍ତେ ର୍ଦାହାତ୍- (ବ୍ର.ସୂ.ଶା.ଭା. ୧/୪/୩) ।

ଅବିଦ୍ୟାର ଅପର ନାମଧେୟ ମାୟା । ପୂର୍ବରୁ ଆମେ ଅବିଦ୍ୟା ସଂପର୍କରେ ଚର୍ଚ୍ଚା କଲେ । ଏହାର ସଂବଂଧି ଜୀବ ସହିତ ରହିଛି । ମାୟାର ପ୍ରୟୋଗ ଶଙ୍କରାଚାର୍ଯ୍ୟ ପ୍ରାୟଃ ମିଥ୍ୟାତ୍ୱର ପ୍ରତିପାଦକ ଇନ୍ଦ୍ରଜାଲ ଅର୍ଥରେ କରିଅଛନ୍ତି । ଶଙ୍କରାଚାର୍ଯ୍ୟ ପରମେଶ୍ୱରଙ୍କରୁ ମାୟାବୀ ତଥା ଜଗତକୁ ମାୟା କହିଛନ୍ତି । ଇନ୍ଦ୍ରଜାଲ ଅର୍ଥରେ ମାୟା ଶବ୍ଦର ପ୍ରୟୋଗ କରି ଶଂକର ଏହା ସିଦ୍ଧ କରନ୍ତି କି- ଯେପରି ଇନ୍ଦ୍ରଜାଲର ସତ୍ୟତା କେବଳ ଦ୍ରଷ୍ଟାମାନଙ୍କ ପାଇଁ ହୋଇଥାଏ, ସେହିପରି ନାମ ରୂପାତ୍ମକ ଜଗତର ସତ୍ୟତା ମଧ୍ୟ ପରମାତ୍ମାଙ୍କ ପାଇଁ ନହୋଇ କେବଳ ଅଜ୍ଞାନୀଙ୍କ ପାଇଁ ହୋଇଥାଏ ।

ଏହି ମାୟାକୁ ଅତି ଗମ୍ଭୀର, ଦୂରବଗ୍ରାହ୍ୟ ଏବଂ ବିଚିତ୍ର ସିଦ୍ଧ କରି

ଶଙ୍କରାଚାର୍ଯ୍ୟଙ୍କ କଥନ ଏହିକି- ଏହି ସମସ୍ତ ସଂସାର ଏହା କହିବା ପରେ ମଧ୍ୟ ପ୍ରତ୍ୟେକ ଜୀବ ପରମାତ୍ମାଙ୍କ ରୂପ ହୋଇଥାଏ । 'ମୁଁ ପରମାତ୍ମାଙ୍କ ରୂପ' ଏପରି ବୁଝିନଥାଏ । ଏହାର ବିପରୀତ ଇନ୍ଦ୍ରିୟାଦି ରୂପ ଅନାତ୍ମତତ୍ତ୍ୱକୁ ହିଁ ଗ୍ରହଣ କରିଥାଏ ।

ଅଦ୍ୱୈତ ସିଦ୍ଧାନ୍ତ ଅନୁସାରେ ବାସ୍ତବିକ ପରମାର୍ଥ ସତ୍ୟତ ଅଦ୍ୱୈତ ବ୍ରହ୍ମ ହିଁ ହୋଇଥାନ୍ତି । ଜଗତ ହେଉଛି ମାୟା, କିନ୍ତୁ ଜଗତ ମାୟିକ ହେବା ପରେ ମଧ୍ୟ ଶଶଶଂଗ ପରି ପୂର୍ଣ୍ଣତଃ ଅସତ୍ ନୁହେଁ । ଏଣୁ ଶଂକର ଅଦ୍ୱୈତବାଦର ଅନ୍ତର୍ଗତ ଜଗତର ବ୍ୟାବହାରିକ ସତ୍ତା ସ୍ୱୀକାର କରି ଅଛନ୍ତି ।

**ମାୟାର ଆବରଣ ଏବଂ ବିକ୍ଷେପ ଶକ୍ତି-** ସଦାନଂଦ ବେଦାନ୍ତ ସାର ଅନ୍ତର୍ଗତ ମାୟାର ଆବରଣ ଏବଂ ବିକ୍ଷେପ ଶକ୍ତିର ଚର୍ଚ୍ଚା କରିଅଛନ୍ତି । ମାୟାର ଆବରଣ ଶକ୍ତି ଜୀବ ଉପରେ ଅଜ୍ଞାନର ଆବରଣ ଆଚ୍ଛାଦିତ କରିଥାଏ । ଫଳରେ ଜୀବ ନିଜର ସ୍ୱରୂପ- ପରମାର୍ଥ ସତ୍ୟ ରୂପ ବ୍ରହ୍ମଙ୍କ ଜ୍ଞାନ କରିପାରି ନଥାଏ । ମାୟାର ଅନ୍ୟ ଶକ୍ତି ହେଉଛି ବିକ୍ଷେପ । ଏହି ବିକ୍ଷେପ ଶକ୍ତି ସମସ୍ତ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତ୍ରୀ । (ବିକ୍ଷେପ ଶକ୍ତି ଲିଂଗାଦି ବ୍ରହ୍ମାଣ୍ଡାନ୍ତଂ ଜଗତ୍ ସୃଜେତ୍) । (ବେଦାନ୍ତସାର ୧୦ ସଂ ଉଦ୍ଧୃତ) । ଶଙ୍କରାଚାର୍ଯ୍ୟଙ୍କୁ ଉତ୍ତରକାଳରେ ମାୟାର ବ୍ୟବହାର ଦୃଷ୍ଟିରୁ ବିଷୟୀମୂଳକ ଅବିଦ୍ୟା ଏବଂ ବିଷୟ ମୂଳକ ମାୟାର ରୂପରେ ଯେଉଁ ଭେଦ ମିଳିଥାଏ, ତାହା ମାୟାର ଉପଯୁକ୍ତ ଆବରଣ ଏବଂ ବିକ୍ଷେପ ଶକ୍ତିଗୁଡ଼ିକ ସହ ସମାନ । ଯେପରି ବିଷୟୀମୂଳକ ଅବିଦ୍ୟା ଜୀବକୁ ବସ୍ତୁ ଜ୍ଞାନରୁ ବଂଚିତ କରିଥାଏ । ସେହିପରି ଆବରଣ ଶକ୍ତି ମଧ୍ୟ ଜୀବର ସ୍ୱରୂପଜ୍ଞାନରେ ବାଧକ ହୋଇଥାଏ । ଯେପରିକି ବିଷୟମୂଳକ ମାୟା ଜଗତର ବୀଜ ଶକ୍ତି ହୋଇଥାଏ, ସେହିପରି ବିକ୍ଷେପ ଶକ୍ତି ମଧ୍ୟ ଜଗତର ରଚୟିତ୍ରୀ ହୋଇଥାଏ ।

---

*୧. ଭାରତୀୟ ଦର୍ଶନକୀ ଚିନ୍ତନଧାରା- ପ୍ର. ରାମମୂର୍ତ୍ତି ଶର୍ମା- ପି.ଏଚଡ଼ି, ଡ଼ି.ଲିଟ୍ ଚୌଖମ୍ବା ଓରୟଣ୍ଟାଲିୟା- ଦିଲ୍ଲୀ- ୨୦୦୮ ।*

*୨. ଭାରତୀୟ ଦର୍ଶନ- ଅଧ୍ୟାପକ ବଳଦେବ ଉପାଧ୍ୟାୟ- ଅନୁବାଦ- ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ର- ପ୍ର. ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର- ୧୯୮୭ ।*



# ଦକ୍ଷିଣ ଭାରତରେ ଅଲବାର ବୈଷ୍ଣବ ପରଂପରା

ପରମ ପୁରୁଷ ଶ୍ରୀନାରାୟଣ ସମଗ୍ର ମାନବ ସମାଜର କଲ୍ୟାଣ ପାଇଁ ବେଦବର ବ୍ରହ୍ମାଙ୍କୁ ଚତୁର୍ବେଦ ଜ୍ଞାନ ପ୍ରଦାନ କରିଥିଲେ । ସେ ମଧ୍ୟ ମନୁଷ୍ୟକୁ ଭଲ ମନ୍ଦ ବିଚାର ଶକ୍ତି ଦେଇଥିଲେ । ଯେବେ ଅଧର୍ମର ବୃଦ୍ଧି ହୁଏ, ତେବେ ସେ ଧରାରେ ଅବତାର ଗ୍ରହଣ କରି ଧର୍ମର ସ୍ଥାପନା କରିବା ସହିତ ଆସୁର ଶକ୍ତିର ପରାହତ ତଥା ଧାର୍ମିକମାନଙ୍କୁ ସୁରକ୍ଷିତ କରିଥାନ୍ତି । ଅବତାର ବ୍ୟତୀତ ସେ କେତେକ ପ୍ରତିନିଧିଙ୍କୁ ପ୍ରେରଣ କରି ମାନବ ସମାଜରେ ଭକ୍ତି ମାର୍ଗର ପ୍ରସାର କରିଥାନ୍ତି । ତଦନୁସାରେ ଆଲୱାର ଧରାରେ ଆବିର୍ଭୂତ  ହୋଇ ବୈଷ୍ଣବ ଧର୍ମ ଏବଂ ଭକ୍ତିମାର୍ଗରେ ପ୍ରସାରରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ଏହିପରି ଦକ୍ଷିଣ ଭାରତରେ ଆଲୱାରମାନଙ୍କର ଆବିର୍ଭାବ ହୋଇଥିଲା । ଆଲବାରମାନଙ୍କର ସଂଖ୍ୟା ବାର । ସେମାନଙ୍କ ମଧ୍ୟରୁ 'ଆଣ୍ଡାଲା' ଏକମାତ୍ର ମହିଳା । ସେମାନେ ହେଲେ- ପୌଚାଇ ଆଲବାର, ଭୂଥାଥା ଆଲବାର, ପେ ଆଲବାର, ତିରୁ ମସି ସାଇ ଆଲବାର, ନମ୍ମ ଆଲବାର, କୁଳ ଶେଖର ଆଲବାର, ପେରିୟ ଆଲୱାର, ଅଣ୍ଡଲା, ଥୋଣ୍ଡ୍ର ଦିପ୍ପଓଡ଼ି ଆଲବାର, ତିରୁପ୍ପନ୍ନ ଆଲବାର, ତିରୁମନ ଚାଇ ଆଲବାର ଏବଂ ମଧୁର କବି ଆଲବାର ।

୧. ପୋଇଚାଇ ଆଲବାର- ତାଙ୍କ ଆବିର୍ଭାବ ଥିରୁବେକ୍କ (କାଞ୍ଚିପୁରମ୍) ପରି ଯାହା ଭାରତର ପବିତ୍ର ସହରଠାରେ ହୋଇଥିଲା । ଭଗବାନ୍ ଶ୍ରୀନାରାୟଣଙ୍କ ବାମ ହସ୍ତରେ ଶୋଭିତ ପାଞ୍ଚଜନ୍ୟର ପ୍ରତିନିଧିତ୍ୱ କରିଥିଲେ । ସେ କୌଣସି ମାନବଠାରୁ ଜନ୍ମ ହୋଇନଥିଲେ । ପଦ୍ମ ପୁଷ୍କରିଣୀଠାରେ ସେହି ଶିଶୁ ପ୍ରାପ୍ତ ହୋଇଥିଲା । ଯାହା ଥରୁବେକ୍କର ଉତ୍ତର ଭାଗରେ ଅବସ୍ଥିତ ଏବଂ ସଂପ୍ରତି ଯଶୋଖକରି ମନ୍ଦିର ଭାବେ ପ୍ରସିଦ୍ଧ । ତୁଳା ମାସ ଶ୍ରବଣା ନକ୍ଷତ୍ରରେ ତାଙ୍କ ଆବିର୍ଭାବ ହୋଇଥିଲା । ସେ ସର୍ବଦା ଈଶ୍ୱରୀୟ ସଂଗୀତ ଗାନ କରୁଥିଲେ । ସେ ତିନି ମୁଦାଲା ଆଲବାରଙ୍କ ମଧ୍ୟରେ ପ୍ରଥମ । ସ୍ୱତସ୍ଫୁର୍ତ୍ତ ଭାବେ ସେ ଶତକ ଭଜନ ରଚନା କରିଥିଲେ । (ତାମିଲରେ ପଶୁରାମସ୍ କୁହାଯାଏ) । ସେ ମୁଦଲଥିରୁ ବନ୍ଦାଦି ଭାବେ ସୁପରିଚିତ ।

୨. ଭୂଟଟା ଆଲବାର- ବଙ୍ଗୋପ ସାଗରର ପୂର୍ବ ଦିଗରେ ସ୍ଥିତ ବିଖ୍ୟାତ ଗ୍ରାମ ଥିରୁକଦଲ ଯାହା ବର୍ତ୍ତମାନ ମହାବଳୀପୁରମ୍ ନାମରେ ପ୍ରସିଦ୍ଧ । ଏହାଙ୍କ ଜନ୍ମ ମଧ୍ୟ କୌଣସି ମାନବଠାରୁ ହୋଇନାହିଁ । ଗୋଟିଏ ଉଦ୍ୟାନ ସ୍ଥିତ ସୁଗନ୍ଧିତ ପୁଷ୍ପ ବୃକ୍ଷ ମୂଳରୁ ସେ ପ୍ରାପ୍ତ ହୋଇଥିଲେ । ତୁଳା ମାସ ଧନିଷ୍ଠା ନକ୍ଷତ୍ରରେ ତାଙ୍କ ଆବିର୍ଭାବ । ସେ ଭଗବାନ୍ ବିଷ୍ଣୁଙ୍କର ଅନନ୍ୟ ଭକ୍ତ ଥିଲେ । ଇଷ୍ଟଙ୍କ ଭକ୍ତି ସମନ୍ୱିତ ଶତକ ରଚନା କରିଛନ୍ତି । ତାହା 'ଇରନ୍ଦମ୍ ତିରୁବଦଦି' ନାମରେ ସୁପରିଜ୍ଞାତ । ବିଷ୍ଣୁଙ୍କ ଗଦା ଅଂଶରୁ ସେ ସଂଭୂତ ହୋଇଥିଲେ ।

୩. ପେୟ ଆଲବାର- ସେ ଗୋଟିଏ କୂପରେ ଆବିର୍ଭାବ ହୋଇଥିଲେ । ମାଳପୁର ନିକଟବର୍ତ୍ତୀ ଏକ ସ୍ଥାନ ବର୍ତ୍ତମାନ ତାହା (ତିରୁ ବଲ୍ଲଇକ୍କେନି ବା ତ୍ରିପଲିକେନ) ନାମରେ ପରିଚିତ । ସେ ଭଗବାନ୍ ବିଷ୍ଣୁଙ୍କ ଖଡ୍‌ଗ ଅଂଶରୁ ଜାତ । 'ମୋନରମ ତିରୁଭନନ୍ଦଦି' ନାମରେ ଶତକ ଭକ୍ତି ସଂଗୀତ ଇଷ୍ଟଙ୍କୁ ନିବେଦିତ କରିଛନ୍ତି । ତାଙ୍କ ଜନ୍ମ ତୁଳା ମାସ ଶତଭିଷା ନକ୍ଷତ୍ର । ଏହି ତିନି ଆଲବାରଙ୍କ ଥରୁର୍କ୍କ ଓ ଭେଲରରେ ସାକ୍ଷାତ୍ ସଂପର୍କରେ କୌତୂହଳପ୍ରଦ କାହାଣୀ ରହିଛି । ଭଗବାନ୍ ବିଷ୍ଣୁ ସେମାନଙ୍କୁ ଗୋଟିଏ ସ୍ଥାନରେ ଭେଟି ତାଙ୍କୁ ଆଶୀର୍ବାଦ କରିବା ସ୍ଥିରକଲେ । ଏକ ନିର୍ଦ୍ଦିଷ୍ଟ ଦିନରେ ଆକାଶ ଘନ ଅନ୍ଧକାର, ପ୍ରବଳ ବୃଷ୍ଟି ସହ ଘଡ଼ିଘଡ଼ି ହେଉଥାଏ । ବିବ୍ରତ ଅବସ୍ଥାରେ ଆଲବାରମାନେ ଆଶ୍ରୟ ନେଉଥାନ୍ତି । ସର୍ବପ୍ରଥମ ପେୟ ଆଲବାର ଗୋଟିଏ ଘରେ ପହଂଚିଗଲେ । ଯେଉଁଠି ଜଣେ ଲୋକ ଶୋଇ

ପାରିବ । ପୋଇଚାଇ ଆଳବାର ବର୍ଷାରେ ଭିଜି ଭିଜି ସେଠାରେ ପହଂଚିଲେ ଏବଂ ଆଶ୍ରୟ ନେବାକୁ ଅନୁରୋଧ କଲେ । ପେୟ ଆଳବାର ତାଙ୍କ ସ୍ୱାଗତ କଲେ ଏବଂ କହିଲେ ଏଠାରେ ଜଣେ ବ୍ୟକ୍ତି ଶୋଇ ପାରିବ, ଦୁଇଜଣ ଏଠାରେ ବସିପାରିବେ । ଯେତେବେଳେ ସେ ଜଣେ ସେଠାରେ ବସିଥିଲେ, କିଛି ସମୟ ପରେ ଅନ୍ୟ କେହି କବାଟ ଖଟ୍ ଖଟ୍ କଲା । କବାଟ ଖୋଲିଲା ପରେ ଦେଖାଗଲା ସଂପୂର୍ଣ୍ଣ ଓଦା ହୋଇ ଯାଇଥିବା ଜଣେ ବ୍ୟକ୍ତି ଆଶ୍ରୟ ନେବାକୁ ଇଚ୍ଛା କରୁଛନ୍ତି । ଦୁଇଜଣ ଭିତରେ ଅଛନ୍ତି, ତାଙ୍କୁ ମଧ୍ୟ ଭିତରକୁ ଆସିବାକୁ ସ୍ୱାଗତ କଲେ ଏବଂ କହିଲେ ଏହିଠାରେ ଜଣେ ବ୍ୟକ୍ତି ଶୋଇପାରିବେ, ଦୁଇଜଣ ବସିପାରିବେ ଏବଂ ତିନିଜଣ ଠିଆ ହୋଇପାରିବେ । କୌଣସି ମତେ ତିନିଜଣ ବ୍ୟବସ୍ଥିତ ହୋଇଗଲେ । ହଠାତ୍ ସେମାନେ ଶ୍ୱାସ ରୁଦ୍ଧ ହେବା ଅନୁଭବ କଲେ ଏବଂ ତାଙ୍କୁ କେହି ଚାପି ଧରିବା ପରି ବୋଧ କଲେ, ଯେମିତି ସେଠାରେ ଚତୁର୍ଥ ବ୍ୟକ୍ତିର ଉପସ୍ଥିତ ହୋଇଛି । ସହଜେ ତ ଅନ୍ଧକାର । ସେମାନେ ପ୍ରଦୀପଟିଏ ଜାଳି ଚତୁର୍ଥ ବ୍ୟକ୍ତିକୁ ଜାଣିବାକୁ ଚାହିଁଲେ ।

ପୌଇଚାଇ ଆଳବାର ଚିନ୍ତାକଲେ ଯେ ତାଙ୍କ ଆଧ୍ୟାତ୍ମ ସଂଗୀତ ଦ୍ୱାରା ଦୀପ ପ୍ରଜ୍ୱଳିତ କରିବେ । ଭୂଟାଟା ଆଳବାର ତାଙ୍କ ବଂଦନା ଦ୍ୱାରା ପ୍ରଦୀପ ଆଲୋକିତ କରିବା ପ୍ରୟାସ କଲେ । ପେୟ ଆଳବାର ଈଶ୍ୱରଙ୍କୁ ଦର୍ଶନ କଲେ ଏବଂ ସେ ସେମାନଙ୍କ ଉପରେ ଆଶୀର୍ବାଦ ବର୍ଷା କଲେ । ଫଳତଃ ତିନିଆଳବାରମାନେ ଦୀର୍ଘଜୀବୀ ହୋଇ ଭକ୍ତି ସ୍ରୋତ ପ୍ରବାହିତ କରିଥିଲେ ।

୪. ତିରୁମସିସିସାଇ ଆଳବାର- ସେ ଭକ୍ତିସାରରେ ଭାବେ ପରିଚିତ ଏବଂ ସୁଦର୍ଶନଙ୍କ ଅଂଶ ବିଶେଷ ଥିଲେ । ସେ ମକର ମାସ ମଘା ନକ୍ଷତ୍ରରେ ଆବିର୍ଭୂତ ହୋଇଥିଲେ । ତାଙ୍କର ନାଳୟିରାମ୍‌ଗୁଡ଼ିକୁ ନନ୍‌ମୁଗନ୍ ଥିରୁନଦଦି (୯୬) ଏବଂ ଥିରୁଚନ୍ଦ ବିରୁଥାମ୍ (୧୨୦) । ସେଥିରୁ ମଝିସାଇରେ ଆବିର୍ଭୂତ ହୋଇଥିଲେ ସେ ଥିରୁବେକ୍‌କ (କାଞ୍ଚି)ର ମୁଖ୍ୟ ଦେବଙ୍କୁ ପୂଜା କରୁଥିଲେ । ପୈଆଳବାର ନିଜକୁ ଶୈବ ଧର୍ମରୁ ବୈଷ୍ଣବ ଧର୍ମକୁ ପରିବର୍ତ୍ତିତ କରିଥିଲେ । ସେ ତାଙ୍କ ପରିଣତ ବୟସ କୁମ୍ଭ କୋନମ୍‌ର ଅରବମଧୁନଙ୍କ ପୂଜାର୍ଚ୍ଚନାରେ ନିମଗ୍ନ ରହିଥିଲେ । କୁହାଯାଏ ଯେ ସେ ଭୂଲୋକରେ ୪୭୦୦ ବର୍ଷ ଜୀବିତ ଥିଲେ ।

ନନ୍- ମୁହାନ ଥିରୁ ବନଦାଦି ଲୋକମାନଙ୍କୁ ଈଶ୍ୱର ବିଶ୍ୱାସୀ ହେବାକୁ ପ୍ରେରିତ କରିଥିଲେ । ଥିରୁଚନ୍ଦ ବିରୁଥମ କାବ୍ୟିକ ଛନ୍ଦରେ ରାଗ, ତାଳ ମାଧ୍ୟମରେ ଲୋକଙ୍କୁ ଆକର୍ଷିତ କରୁଥିଲେ । ଏହାକୁ ବୈଷ୍ଣବ ସାହିତ୍ୟର ମୁକୁଟ କୁହାଯାଇପାରେ । ଏହାକୁ ଶ୍ରୀବୈଷ୍ଣବ ଧର୍ମ କୁହାଯାଏ ।

**୫.** ନମ୍ମ ଆଲବାର- ନମ୍ମ ଆଲବାରଙ୍କୁ ଆଲବାରଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ କୁହାଯାଏ । ସେ ଚାରିଗୋଟି ପ୍ରବନ୍ଧମ୍ ରଚନା କରିଅଛନ୍ତି- ଯଥା ୧. ଥିରୁ ବିରୁତ୍ତମ (୧୦୦ ପଶୁରମସ୍) ୨. ଥିରୁ ବସିରିଅମ୍ (୭), ୩. ପେରିୟ ଥିରୁ ବନ୍ଦଦି, ୪. ଥିରୁ ଭୋଇ ମୋଜି (୧୧୦୨ ପଶୁରମସ୍), ଏହି ମହାନ କୃତିଗୁଡ଼ିକ ଋକ୍‌ବେଦ, ଯଜୁର୍ବେଦ, ଅଥର୍ବବେଦ ଓ ସାମବେଦ ଭାବେ ସମ୍ମାନୀତ । ଏଗୁଡ଼ିକ ତାମିଲ ସାହିତ୍ୟରେ ଅମୂଲ୍ୟ ରତ୍ନ ।

ନମ୍ମ ଆଲବାର ତାଙ୍କ ଥିରୁବିରୁତ୍ତମ୍‌ରେ ବର୍ଣ୍ଣନା କରିଛନ୍ତି, ଦୈନନ୍ଦିନ ଜୀବନରେ ବହୁ ଘାତ ପ୍ରତଘାତର ସମ୍ମୁଖୀନ ହୋଇଥିଲେ । ଥିରୁବିରୁତ୍ତମର ବର୍ଣ୍ଣନାନୁସାରେ ସେ ଈଶ୍ୱରୀୟ ସୌନ୍ଦର୍ଯ୍ୟ ଏବଂ ତାଙ୍କ କର୍ମଗୁଡ଼ିକର ସମୁନ୍ନତ ବର୍ଣ୍ଣନା କରିଅଛନ୍ତି । ପେରିୟ ଥିରୁବନଦଦିରେ ଈଶ୍ୱରଙ୍କ ମହାନତା, ଉପାସନା ବିଧାନ ବର୍ଣ୍ଣିତ । ଥିରୁବଇ ମୋଜି ତାଙ୍କ ସର୍ବୋତ୍ତମ କୃତି ଭାବେ ଗୃହୀତ । ଯହିଁରେ ସେ ମୋକ୍ଷ ମାର୍ଗ ପ୍ରଦର୍ଶନ କରିଛନ୍ତି ।

ମଧୁକରବି ଆଲବାର ନମ୍ମଆଲବାରଙ୍କୁ ଗୁରୁଭାବେ ପୂଜା କରିଛନ୍ତି । ତାଙ୍କ ଗୁରୁ ଈଶ୍ୱର ଏବଂ ସବୁକିଛି ବୋଲି କହିଛନ୍ତି । ସେ ଦ୍ୱାଦଶ ଆଲବାର ମଧ୍ୟରୁ ଜଣେ, ସେ ତାଙ୍କ 'ପଶୁରାମସ୍ କନ୍ନିନମ୍ ଶି ରୁ ଥମ୍ବୁ' ମାଧ୍ୟମରେ ତାଙ୍କୁ ପ୍ରଶଂସା କରି ଈଶ୍ୱର ଭାବେ ପୂଜା କରିଛନ୍ତି ।

ବ୍ରହ୍ମାଣ୍ଡ ପୁରାଣ, ଭବିଷ୍ୟ ପୁରାଣ, ମାର୍କଣ୍ଡେୟ ପୁରାଣ ଏବଂ ଅନ୍ୟ କେତେକରେ ନମ ଆଲବାରଙ୍କ ମହାନତା ଏବଂ ଅବତାର ସମ୍ବନ୍ଧରେ ସୂଚନା ରହିଛି । ଥିନଥିନି ବୃକ୍ଷ ଯାହା ଥିରୁ ନଗରୀରେ ରହିଛି, ଏବେ ମଧ୍ୟ କହେ ଯେ ନମ୍ମ ଆଲବାରଗଣ ବାଳକ, ସେ ପନ୍ଦର- ଷୋଳ ବର୍ଷକାଳ କୌଣସି ଖାଦ୍ୟ ଗ୍ରହଣ କରି ନଥିଲେ ଏବଂ ଈଶ୍ୱରଙ୍କୁ ଆରାଧନା ପୂର୍ବକ ମାତ୍ର ୩୫ ବର୍ଷରେ ଇହଲୀଳା ସାଂଗ କଲେ ।

ନମ୍ମ ଆଲବାରଙ୍କ 'ଥିରୁଭୋଇ ମୋଜି' ଭାରତର ପ୍ରାୟ ସମସ୍ତ ଭାଷାରେ ଅନୁଦିତ ହୋଇଅଛି । ଏହା ବ୍ୟତୀତ ଜର୍ମାନ, ଫ୍ରେଞ୍ଚ ଏବଂ ଇଂରାଜୀରେ ଭାଷାନ୍ତର ହୋଇଛି । ସେ ତାଙ୍କ କବିତା ମାଧ୍ୟମରେ ନାୟିକା ଭାବ ପ୍ରକଟ କରି ପ୍ରିୟତମଙ୍କୁ ପ୍ରାପ୍ତିର ଆଶା ରଖିଛନ୍ତି । ଏହା ଦ୍ୱାରା ଦୈନଦିନ ଇଷ୍ଟ ପୂଜାର ଗୁରୁତ୍ୱ ଏବଂ କଳ୍ପନା କରିଛନ୍ତି ।

ଭାଗବତ ବୈଷ୍ଣବ ଧର୍ମର ଅର୍ଥ ହେଉଛି ଥିରୁ ଭୋଇ ମୋଜି ସଂପର୍କରେ ଟୀକା । ଅନେକ ଆଚାର୍ଯ୍ୟ ଏହା ସଂପର୍କରେ ବ୍ୟାଖ୍ୟାନ କରିଅଛନ୍ତି, ସେମାନଙ୍କ ମଧ୍ୟରେ ନମ୍‌ପିଳାଇ ସର୍ବଶ୍ରେଷ୍ଠ । ଏପରିକି ରାମାନୁଜ ବିଶିଷ୍ଟଦ୍ୱୈତବାଦର ପ୍ରତିଷ୍ଠା ନିମିତ୍ତ, ନମ୍ମ ଆଲବାରଙ୍କୁ ମାର୍ଗଦର୍ଶକ ଭାବେ ଗ୍ରହଣ କରି, ବ୍ୟାସଦେବଙ୍କ ବ୍ରହ୍ମସୂତ୍ରର ଶ୍ରୀଭାଷ୍ୟ ପ୍ରଣୟନ କରିଥିଲେ ।

ଥିରୋ ଭୋଇ ମୋସି ଚତୁର୍ବେଦ ସ୍ୱରୂପ, ଜୀବ ସ୍ୱରୂପ, ମୋକ୍ଷ ସ୍ୱରୂପ, ଫଳ ସ୍ୱରୂପ: ଅୟୁର ବିରୋଧୀ ସ୍ୱରୂପ, ନାମକ ଅର୍ଥ ପଞ୍ଚକାଙ୍କା ମିଳନ୍ ହେଇ ।

୬. କଲୁଶେଖର ଆଲବାର- ଆଲବାର ଛେର ଗଜା ଧୃଦବ୍ରତଙ୍କ ରାଜ୍ୟ ଥିରୁବନ୍‌ଜି କୁଲମ୍‌ରେ (ମସି) କୁମ୍ଭ ମାସ ପୁନର୍ବସୁ ନକ୍ଷତ୍ରରେ ବିଷ୍ଣୁଙ୍କ କୌସ୍ତୁଭ ଅଂଶରେ ଜନ୍ମ ଗ୍ରହଣ କରିଥିଲେ । ଈଶ୍ୱରଙ୍କ ଆଶୀର୍ବାଦ ପ୍ରଭାବରେ ସେ ବେଦ, ସ୍ମୃତି, ରାମାୟଣ, ମହାଭାରତ ଏବଂ ଭାଗବତ ଅଧ୍ୟୟନ କରିଥିଲେ । ରାଜା କୁଳଶେଖରଙ୍କ ମନ ପୌରାଣିକ ଗାଥା, ଶ୍ରବଣ ଏବଂ ଆଲୋଚନା ଦ୍ୱାରା ବିଶୁଦ୍ଧ ହୋଇଥିଲେ । ବିଶେଷଙ୍କ ରାମଚନ୍ଦ୍ରଙ୍କ ସହ ଖରଦୂଷଣ ଏବଂ ରାବଣଙ୍କ ଯୁଦ୍ଧ ହୋଇଥିଲା । ସେ ନିଜେ ଯୁଦ୍ଧ ପ୍ରସ୍ତୁତ ଭୁଲି ଯାଇଥିଲେ ଏବଂ ମନ୍ତ୍ରୀମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲେ । ସେ ବୈଷ୍ଣବମାନଙ୍କ ନିନ୍ଦା ସହି ପାରୁନଥିଲେ । ଏକଦା ଜଣେ ଲୋକ ବୈଷ୍ଣବ ଧର୍ମର ନିନ୍ଦା କରିବାରୁ କୁଳଶେଖର ତା'ର ହାତକୁ ନାଗ ସାପ ପେଡ଼ିରେ ପୂରାଇ ଦେଇଥିଲେ । ମନ୍ତ୍ରୀମାନେ ତାକୁ ଦେଖି ତହିଁରୁ ନିବୃତ୍ତ କରାଇଲେ ଫଳରେ ତା'ର କିଛି କ୍ଷତି ହେଲା ନାହିଁ ଏବଂ ତାକୁ ରାଜକ୍ଷମା ମିଳିଲା ।

ତାଙ୍କ ପ୍ରବନ୍ଧମାନଙ୍କ ମଧ୍ୟରୁ 'ପେରୁମଲ ଥିରୁମୋଜି' ଯହିଁରେ ୧୦୫ ପଶୁରାମ ରହିଛି । ସେ ରାମଚନ୍ଦ୍ରଙ୍କ ଚରିତ ବର୍ଣ୍ଣନା କରିଛନ୍ତି । ରାମଙ୍କ ଆଚରଣ ଏବଂ ଦୁଃସାହସିକ କାର୍ଯ୍ୟାବଳୀ ଏବଂ ରାମଚନ୍ଦ୍ରଙ୍କ ବନଗମନ ପରେ ଦଶରଥଙ୍କ କାରୁଣ୍ୟ ତଥା ସମଗ୍ର ରାମାୟଣ ଗାଥା ବର୍ଣ୍ଣିତ ।

ସେ ସଂସ୍କୃତରେ ମୁକୁନ୍ଦ ମାଳା ସ୍ତୋତ୍ର ୪୧ଟି ଶ୍ଳୋକବଦ୍ଧ ମନୋଜ୍ଞ ରଚନା କରିଛନ୍ତି । ଏହା ସଂସ୍କୃତ ସାହିତ୍ୟର ଅମୂଲ୍ୟମଣି । ସେ ଏକମାତ୍ର ଆଲବାର ଯେ ସଂସ୍କୃତରେ ସ୍ତୋତ୍ର ରଚନା କରିଛନ୍ତି । ଏଥି ସହିତ ପେରୁମଳ ଥିରୁ ମୋଜିରେ ୧୦୫ ପର୍ଶୁରାମ ରଚନା କରିଛନ୍ତି, ଯାହା ନାଲୟିରମ୍‌ର ଅଂଶ ବିଶେଷ । ସେ ସ୍ତୋତ୍ରମାନଙ୍କରେ ଅତି ବିନୟର ସହିତ ନିଜକୁ ଦାସାନୁଦାସ ଭାବେ ଅଭିହିତ କରିଛନ୍ତି ।

'ତଦ୍‌ଭୃତ୍ୟ ଭୃତ୍ୟ ଭୃତ୍ୟ ପରିଚାରକ ଭୃତ୍ୟ ଭୃତ୍ୟ ଭୃତ୍ୟସ୍ୟଭୃତ୍ୟ ଇତି ମାମ୍ ସ୍ମର ଲୋକନାଥ' । ତାଙ୍କର ଗୋଟିଏ ବିଖ୍ୟାତ ସ୍ତୋତ୍ରରେ ସେ କହିବାକୁ ଚାହିଁଛନ୍ତି- ବର୍ତ୍ତମାନର ମନୁଷ୍ୟ ଜୀବନ ପରିବର୍ତ୍ତେ ସେ ଗୋଟିଏ କ୍ଷୁଦ୍ର ପକ୍ଷୀ, କିମ୍ବା କୀଟ, ଜଳଧାର, ପାଷାଣ ଅଥବା ଅନ୍ୟ କିଛି ହୋଇ ପ୍ରଭୁଙ୍କ ନିବାସ ସ୍ଥଳରେ ରହିଯାଆନ୍ତି । ଫଳରେ ସେ ଇଷ୍ଟଙ୍କର ନିକଟବର୍ତ୍ତୀ ହୋଇ ପାରନ୍ତି । ସେହି ଆଲବାରଙ୍କ ଇଚ୍ଛା ପୂର୍ତ୍ତିର ସ୍ୱରୂପ ଅଦ୍ୟାବଧି ବୈଷ୍ଣବ ମନ୍ଦିରର ମୁଖ୍ୟ ପ୍ରବେଶ ଦ୍ୱାରରେ ଥିବ ପବିତ୍ର ଚରଣ ଚିହ୍ନକୁ କୁଳଶେଖର ପାଦି କୁହାଯାଏ । କୁଳଶେଖର ପେରୁମଳ ପ୍ରଭୁ ରଂଗନାଥଙ୍କୁ ପୂଜାର୍ଚ୍ଚନା କରି ସାରିବା ପରେ ଅନ୍ୟ କେତେକ ଶ୍ରୀବୈଷ୍ଣବ ବିଗ୍ରହ ଦର୍ଶନ କରିଥିଲେ । ସେ ୬୭ ବର୍ଷ ଜୀବିତ ଥିଲେ ଏବଂ ସେ ବ୍ରହ୍ମଲୀନ ହୋଇଥିଲେ ।

**୭. ମଧୁର କବି ଆଲବାର-** ଏହି ଆଲବାର ଥିରୁ କୁରୁହୋରଠାରେ ଚୈତ୍ର ମାସରେ ଚିତ୍ରାନକ୍ଷତ୍ରରେ ଆବିର୍ଭାବ ହୋଇଥିଲେ । ସେ ଭଗବାନ୍ ରାମଚନ୍ଦ୍ରଙ୍କ ଜନ୍ମସ୍ଥାନ ଦର୍ଶନ କରିବା ଉଦ୍ଦେଶ୍ୟରେ ତୀର୍ଥ ଯାତ୍ରାରେ ଅଯୋଧ୍ୟା ଯାଇଥିଲେ । ସେ ସେଠାରେ କିଛି କାଳ ଅବସ୍ଥାନ କରି ରାଚମନ୍ଦ୍ରଙ୍କ ପୂଜାର୍ଚ୍ଚନା କରିଥିଲେ । ଦିନେ ସେ ସରଜୁ ନଦୀରୁ ଫେରୁଥିବା ସମୟରେ ସେ ନିଜ ଜନ୍ମଭୂମି ଦିଗକୁ ଲକ୍ଷ୍ୟ କଲେ, ତତ୍‌କ୍ଷଣ ସେ ଏକ ଉଜ୍ଜ୍ୱଳ ଆଲୋକର ସୂଚନା ପ୍ରାପ୍ତ ହେଲେ । ସେ ଦିଗକୁ ଚାଳିତ ହୋଇ ଅଲବାର ତ୍ରିଗୁଣଚାରିଙ୍କ ନିକଟକୁ ଆସିଲେ, ଯେଉଁଠି ନମ୍ମ ଆଲବାର ଗୋଟିଏ ତେନ୍ତୁଳି ଗଛ କୋରଡ଼ରେ ବସିଥିଲେ । ସେ ସ୍ଥାନୀୟ ଲୋକମାନଙ୍କଠାରୁ ତାଙ୍କ ସମ୍ବନ୍ଧରେ ଜାଣିବାକୁ ପାଇଲେ ଯେ କରିମରପ୍ପିରାନ୍ ତାଙ୍କ ଜନ୍ମରୁ ସେ ସେହି ଗଛ କୋରଡ଼ରେ ବାସ କରୁଛନ୍ତି ଏବଂ ଖାଦ୍ୟ ଗ୍ରହଣ ବିନା କେବଳ ଶ୍ୱାସ ଗ୍ରହଣ ଦ୍ୱାରା ଜୀବିତ ଅଛନ୍ତି । ସେ ତାଙ୍କ ମନରେ ଥିବା

ଶଂକା ସଂପର୍କରେ ପ୍ରଶ୍ନ ପଚାରିଥିଲେ ଏବଂ ସଂଦେହ ମୁକ୍ତ ହେଲେ । ସେ ସିଦ୍ଧାନ୍ତ କଲେ ଯେ କରିମରନ୍ ଜଣେ ସାଧାରଣ ବ୍ୟକ୍ତି ନୁହଁନ୍ତି, କିନ୍ତୁ ଜଣେ ମହାତ୍ମା ଜନ ସମୁଦାୟର ମୁକ୍ତି ପାଇଁ ଜନ୍ମ ଲାଭ କରିଛନ୍ତି । ତାଙ୍କୁ ଆଚାର୍ଯ୍ୟ (ଗୁରୁ) ଭାବେ ଗ୍ରହଣ କରିବା ପାଇଁ ତାଙ୍କର ଦ୍ୱିଧା ନାହିଁ । ନମ୍ମଆଲବାର ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ତାଙ୍କୁ ପଞ୍ଚସଂସ୍କାର ଉପଦେଶ ଦେଲେ, ଯଥା- ପରତ୍ୱ ଯାହା ପରମ ପଦ ଭାବେ କଥିତ ବ୍ୟୁହ, ଅନ୍ତର୍ଯାମୀତ୍ୱମ୍, ବିଭବ ଏବଂ ଅର୍ଚ୍ଚା । ମଧୁକର କବି ଆଲବାର ନାମଆଲବାରଙ୍କୁ ସବୁକିଛି ମନେକରିଛନ୍ତି: ତାଙ୍କ ପ୍ରସିଦ୍ଧ କୃତି 'କନିନମ୍ ଶିରୁଥମ୍ବୁ'ରେ ସୂଚିତ କରିଛନ୍ତି ଯେ କରିମରନ୍ ତାଙ୍କ ଆକାଂକ୍ଷା ପୂର୍ଣ୍ଣ କରିଛନ୍ତି । ଏହାଛଡ଼ା ସେ ଆଉ କିଛି ଜାଣନ୍ତି ନାହିଁ । ସମାନ ଭାବରେ ଆଚାର୍ଯ୍ୟ ଭକ୍ତି ମେଲକୋଟର ବଦୁହନମ୍ବି ଏପରିକି ରାମାନୁଜାଚାର୍ଯ୍ୟ, ମରନରନମ୍ବି ଯମୁନାଚାର୍ଯ୍ୟଙ୍କ ପର୍ଯ୍ୟନ୍ତ ପ୍ରଭୁତ୍ୱ ବିସ୍ତାର କରିଥିଲେ ।

୮. **ଥିରୁପ୍ପନ ଆଲବାର-** ସେ ଓରୟୋରଠାରେ ଶ୍ରୀରଂଗମ୍ ନିକଟରେ କାର୍ତ୍ତିକ ମାସ ରୋହିଣୀ ନକ୍ଷତ୍ରରେ ଏକ ଧାନ୍ୟ କ୍ଷେତ୍ରରେ ଆବିର୍ଭୂତ ହୋଇଥିଲେ । ସେ ପଞ୍ଚମ ଜାତିର ବ୍ୟକ୍ତିଙ୍କ ଦ୍ୱାରା ଲାଳିତ- ପାଳିତ ହୋଇଥିଲେ । ତାଙ୍କୁ ପନରସ୍ କୁହାଯାଏ । ସେମାନେ ବାଦ୍ୟଯନ୍ତ ସାହାଯ୍ୟରେ କିମ୍ବଦନ୍ତୀ ଆଖ୍ୟାୟିକା ଗାନ କରିଥାନ୍ତି ।

ସେ ପ୍ରଭୁ ରଂଗନାଥଙ୍କର ଜଣେ ବିଶିଷ୍ଟ ଭକ୍ତ କିନ୍ତୁ ସେ ମନ୍ଦିର ନିକଟକୁ ଯାଆନ୍ତି ନାହିଁ, କିନ୍ତୁ ବାଦ୍ୟଯନ୍ତ ସହାୟତାରେ ପ୍ରଭୁଙ୍କ ଗୁଣଗାନ କରିଥାନ୍ତି । ପ୍ରଭୁ ରଂଗନାଥ ସେହି ଭକ୍ତଙ୍କୁ ସମସ୍ତଙ୍କ ସମ୍ମୁଖକୁ ଆଣିବାକୁ ଚାହିଁଲେ, ଯଦ୍ୱାରା ଭକ୍ତିର ମହାନତା ପ୍ରକଟିତ ହୋଇପାରିବ । ପୂଜକ ଲୋକ ସାରକା ମୁନିଙ୍କୁ ତାଙ୍କୁ ମନ୍ଦିରକୁ ଆଣିବାକୁ ଆଦେଶ ଦେଲେ । ସେ ଦେବ ଦର୍ଶନ କଲାପରେ ତାଙ୍କ କଣ୍ଠରୁ ସ୍ୱତଃ ଶ୍ରୀଦେବଙ୍କ ସୁଦର୍ଶନ ଆପାଦ- ମସ୍ତକ ବର୍ଣ୍ଣନାତ୍ମକ ଭକ୍ତି ନିର୍ଝରିଣୀ ଉତ୍‌କୂଳିତ ହୋଇଉଠିଲା । ଶେଷରେ ସେ ଶ୍ରୀଦେବ ବିଗ୍ରହରେ ବିଲୀନ ହୋଇଗଲେ । ଆଲବାର ମଧ୍ୟ ମୁନି ବହନରଙ୍କୁ ଆଧାର କରି ଦଶଗୋଟି ଭକ୍ତି ଗୀତିକା ରଚନା କରିଛନ୍ତି । ଯାହାକୁ 'ଅମଳନ ଦିର୍ପଣ' କୁହାଯାଏ ।

୯. **ଥୋଣ୍ଡରଦିପ୍ପୋଦି ଅଲବାର (ବିପ୍ରନାରାୟଣ)-** ଏହି ଆଲବାରଙ୍କ ଜନ୍ମ ଶ୍ରୀରଂଗମ୍ ନିକଟବର୍ତ୍ତୀ ଥିରୁ ମନ୍ଦନଗୁଡ଼ିଠାରେ ମାର୍ଗଶିର ମାସ ଜ୍ୟେଷ୍ଠା ନକ୍ଷତ୍ରରେ

କୁଳୀନ ବ୍ରାହ୍ମଣ ପରିବାରରେ ହୋଇଥିଲେ । ସେ ଭଗବାନ୍ ବିଷ୍ଣୁଙ୍କର ବନମାଳାର ଅଂଶ । ସେ ବିପ୍ରନାରାୟଣ ନାମରେ ପରିଚିତ ଥିଲେ । ଶ୍ରୀରଂଗମ୍‌ର ପ୍ରଭୁ ରଂଗନାଥଙ୍କ ପ୍ରତି ତାଙ୍କର ଏତେ ଭକ୍ତି ଥିଲେ ଯେ, ସେ ଫୁଲ ଏବଂ ତୁଳସୀ ନିଜେ ରୋପଣ ତଥା ପାଳନ କରି ତହିଁରୁ ମାଳା ପ୍ରସ୍ତୁତ କରି ପ୍ରତିଦିନ ଦେବାର୍ପଣ କରୁଥିଲେ ।

ରାଜନର୍ତ୍ତକୀ ଦେବ- ଦେବୀ ତାଙ୍କ ଭଉଣୀ ସହିତ ଦିନେ ସେହି ଉଦ୍ୟାନ ପଥ ଦେଇ ଯାଉଥିଲେ । ସେ ଅଲବାରଙ୍କ ସହ ଆଳାପ କରିବାକୁ ଇଚ୍ଛାପୋଷଣ କଲେ । ତାଙ୍କ ମାଧୁର୍ଯ୍ୟପୂର୍ଣ୍ଣ ବ୍ୟକ୍ତିତ୍ୱକୁ ନିଜର ପ୍ରେମଦ୍ୱାରା ଜୟ କରିବାର ମାନସ ତାଙ୍କର ଥିଲା । ଆଲବାର ସେତେବେଳେ ନିଜ ଧାରାବାହିକ କର୍ମରେ ଗଭୀର ଭାବେ ନିମଗ୍ନ ଥିବାରୁ ଏଥିପ୍ରତି ଅମନଯୋଗୀ ହୋଇ ଯାଇଥିଲେ । ଦେବ-ଦେବୀଙ୍କ ଭଉଣୀ ଭାବିଲେ ଯେ ସେ ତାଙ୍କ କର୍ମଦ୍ୱାରା ସଫଳିକୃତି ହେଲେ ନାହିଁ କିମ୍ବା ତାଙ୍କୁ ନିଜ ଆଡ଼କୁ ଆକର୍ଷିତ କରିପାରିଲେ ନାହିଁ ।

ପରଦିନ ଦେବଦେବୀ ବିପ୍ରନାରାୟଣଙ୍କୁ ସାକ୍ଷାତ୍ କଲେ ଏବଂ ତାଙ୍କୁ ଉଦ୍ୟାନ କର୍ମରେ ସହାୟତା କରିବା ପାଇଁ ପ୍ରାର୍ଥନା କଲେ । ତାଙ୍କୁ ଜଣେ ତପସ୍ୱିନୀ ବିଚାର କରି ତାଙ୍କ ଅନୁରୋଧ ରକ୍ଷା କଲେ । ଅନ୍ୟ ଏକ ଦିନେ ବୃଷ୍ଟି ହେଉଥାଏ, ଦେବ- ଦେବୀ ସଂପୂର୍ଣ୍ଣ ଭିଜି ଯାଇଥାନ୍ତି, ସେହି ସମୟରେ ସେ ବିପ୍ରନାରାୟଣଙ୍କୁ ନିଜ ଆଡ଼କୁ ଆକର୍ଷିତ କରିବାକୁ ସକ୍ଷମ ହେଲେ । ସେ ପ୍ରଭୁଙ୍କ ସେବାରେ ନିଜକୁ ନିବିଷ୍ଟ କରିଥାନ୍ତି, ଦେବ-ଦେବୀଙ୍କ ସୌନ୍ଦର୍ଯ୍ୟରେ ନିମଜ୍ଜିଗଲେ । ପରେ ପରେ ସେ ଗୃହତ୍ୟାଗୀ ହୋଇ ଏବେ ସୁଦ୍ଧା ଗୋଟିଏ କୁଟୀରରେ ନିବାସ କରୁଥାନ୍ତି । ଆକସ୍ମିକ ଭାବେ ଦିନେ ଜଣେ ବ୍ୟକ୍ତି ତାଙ୍କ ପାଖକୁ ଆସି ବିପ୍ରନାରାୟଣଙ୍କର ବନ୍ଧୁ ବୋଲି ନିଜକୁ ପରିଚୟ ଦେଲେ ଏବଂ ଗୋଟିଏ ସୁବର୍ଣ୍ଣ ଗିନା ଦେଇ ଏହା ବିପ୍ରନାରାୟଣ ଉପହାର ସ୍ୱରୂପ ତାଙ୍କୁ  ପ୍ରେରଣ କରିଥିବା ପ୍ରକାଶ କଲେ ।

ସେ (ବିପ୍ରନାରାୟଣ) ତାଙ୍କୁ ଡକାଇଛନ୍ତି, ତାଙ୍କ ସହିତ ଗୋଟିଏ ରାତି ଅତିବାହିତ କରିବା ପାଇଁ କହିଛନ୍ତି । ପରଦିନ ସକାଳୁ ମନ୍ଦିରର ମୁଖ୍ୟ ପୂଜକ ଦେଖିଲେ ଯେ ଗୋଟିଏ ସୁବର୍ଣ୍ଣ ଗିନା ହଜିଯାଇଛି । ଏ ସଂବାଦ ସେ ରାଜାଙ୍କୁ ଜଣାଇଲେ । ରାଜା ଅନୁସନ୍ଧାନ କଲେ ଏବଂ ଶେଷରେ ବିପ୍ରନାରାୟଣ ଧୃତ ହୋଇ କାରଗାରରେ ରହିଲେ । ଶ୍ରୀଦେବ ରାଜାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ ସମସ୍ତ

ବୃତ୍ତାନ୍ତ ରାଜାଙ୍କୁ ଜଣାଇଲେ । ଏବେ ବିପ୍ରନାରାୟଣ ମୁକ୍ତ ହୋଇ ପ୍ରଭୁଙ୍କ ପାଖରେ ଅନୁତପ୍ତ ହେଲେ ଏବଂ ପୂର୍ବବତ୍ ଦେବସେବା ପ୍ରାପ୍ତ ହେଲେ ।

ତାଙ୍କର ପ୍ରଗାଢ଼ ଭକ୍ତି ପ୍ରଭାବରୁ ସେ ପ୍ରଖ୍ୟାତ 'ଥିରୁପଲ୍ଲୀ ୟେଲୁଛି' ରଚନା କରିଛନ୍ତି । ସେଥିରେ ଦଶଗୋଟି ସ୍ତୋତ୍ର ରହିଛି । ମନ୍ଦିର ପ୍ରଭାତ ଅବକାଶ ସମୟରେ ଏବଂ ଗୃହସ୍ଥମାନେ ଏହାକୁ ପ୍ରାର୍ଥନା ଭାବେ ନିତ୍ୟ ପାଠ କରିଥାନ୍ତି । ତାଙ୍କର ଅନ୍ୟ ଏକ ବହୁଜନାଦୃତ ପ୍ରାର୍ଥନା ରହିଛି 'ଥିରୁମଳାଇ' (୪୫ ସ୍ତୋତ୍ର) । ଯେଉଁଥିରେ ସେ ନିଜର ଦୟନୀୟ ଜୀବନ ବର୍ଣ୍ଣନା କରିଅଛନ୍ତି । ପୁଷ୍ପମାଳା ସଦୃଶ (ଥିରୁ ମଳାଇ) ଏକ ସ୍ତୋତ୍ର ମାଳିକା, ଯାହା ଇଷ୍ଟଦେବଙ୍କ ପ୍ରତି ନିବେଦିତ ।

**୧୦. ପିରିୟ ଆଲବାର-** ପିରିୟ ଆଲବାରଙ୍କୁ ବିଷ୍ଣୁଚିତ୍ତର କୁହାଯାଏ । ସେ ଶ୍ରୀବଲ୍ଲିପୁଥର ଠାରେ କୁଳୀନ ବ୍ରାହ୍ମଣ ପରିବାରରେ ଜ୍ୟେଷ୍ଠ ମାସ ସ୍ୱାତୀ ନକ୍ଷତ୍ରରେ ଜନ୍ମ ହୋଇଥିଲେ । ତାଙ୍କ ନାମକୁ ସାର୍ଥକ କରି ସେ ବିଷ୍ଣୁ ପୂଜନରେ ସମଗ୍ର ଜୀବନ ବ୍ୟତୀତ କରିଥିଲେ । ସେ ଗୋଟିଏ ସୁନ୍ଦର ପୁଷ୍ପ ଏବଂ ତୁଳସୀ ଉଦ୍ୟାନ ନିର୍ମାଣ କରିଥିଲେ । ସେ ପୁଷ୍ପ ଓ ତୁଳସୀ ମାଳା ପ୍ରସ୍ତୁତ କରି ଶ୍ରୀ ଦେବଙ୍କୁ ଗଭୀର ଭକ୍ତି ସହକାରେ ନିବେଦିତ କରୁଥିଲେ ।

ରାଜା ବଲ୍ଲଭଦେବ ପରମାତ୍ମାଙ୍କୁ ପରିଜ୍ଞାତ ହେବା ଏବଂ ଚତୁର୍ଥ ପରୁଷାର୍ଥ ମୋକ୍ଷ ସଂବଂଧରେ ବିଚାର- ବିମର୍ଷ କରିବା ପାଇଁ ସିଦ୍ଧ, ସାଧକ, ବିଦ୍ୱାନ, ପଣ୍ଡିତ, ଦାର୍ଶନିକମାନଙ୍କର ଏକ ସମ୍ମେଳନ ମଦୁରାଇ ଠାରେ ଆହ୍ୱାନ କଲେ । ବିଷ୍ଣୁଚିତ୍ତରଙ୍କ  ନିଷ୍କାମ ସେବାରେ ପ୍ରଭୁ ସନ୍ତୁଷ୍ଟ ହୋଇଥିଲେ । ଫଳରେ ଦେବ ତାଙ୍କୁ ପରତତ୍ତ୍ୱ ଉପଦେଷ୍ଟା ଭାବେ ନିର୍ବାଚିତ କଲେ । ସ୍ୱପ୍ନରେ ଶ୍ରୀଦେବ ତାଙ୍କୁ କହିଲେ "ତୁମେ ମଦୁରାଇ ଯାଇ ରାଜାଙ୍କୁ କୁହ ଯେ ମୁଁ ସେ ବିଷୟ ଜ୍ଞାତ ନୁହେଁ ।" ଇତି ମଧ୍ୟରେ ରାଜା ବଲ୍ଲଭ ବିତ୍ତ ପୁରସ୍କାର ଭାବେ ଘୋଷଣା କରି ସାରିଥାନ୍ତି । ଯିଏ ପରତତ୍ତ୍ୱ ସମ୍ବନ୍ଧରେ ଆଲୋଚନା କରିପାରିବ, ଯଦ୍ୱାରା ରାଜ ନିଃସଂଦେହ ହୋଇପାରିବେ,  ଉକ୍ତ ପଣ୍ଡିତ ସେହି ପୁରସ୍କାର ପ୍ରାପ୍ତି କରିପାରିବେ ।

ବିଷ୍ଣୁଚିତ୍ତର ଧର୍ମସଭାକକ୍ଷକୁ ପ୍ରବେଶ କଲେ । ପୂର୍ବରୁ ସେଠାରେ ବହୁ ବିଦ୍ୱାନ ସମବେତ ହୋଇଥିଲେ । ସେ ପ୍ରଭୁଙ୍କୁ ସ୍ମରଣ କରି ନିଜ ବକ୍ତବ୍ୟ ଆରମ୍ଭ କଲେ । ବିଷୟ ସମ୍ବନ୍ଧିତ ପ୍ରସଂଗକୁ ବେଦ, ସ୍ମୃତି, ଇତିହାସ, ପୁରାଣ ଇତ୍ୟାଦିରୁ ପ୍ରମାଣମାନ ଦେଇ ଚାଲିଲେ । ପୂର୍ବରୁ ସେସବୁ ସେ ଜାଣି ନଥିଲେ । ଶ୍ରୀଦେବଙ୍କ

ଅନୁଗ୍ରହରୁ ପରତତ୍ତ୍ୱ ସଂବଂଧରେ ଯେଉଁ ଅଦ୍ଭୁତ ବ୍ୟାଖ୍ୟାନ କରି ମୋକ୍ଷଲାଭର ଶାସ୍ତ୍ରୀୟ ଭକ୍ତି ତଥା ଚତୁର୍ଥ ପୁରୁଷାର୍ଥକୁ ସିଦ୍ଧାନ୍ତ ସ୍ଥାପନ କେବଳ ପରମାତ୍ମାଙ୍କ ଦୟାରୁ ହିଁ ହୋଇପାରେ । ପଣ୍ଡିତ, ବିଦ୍ୱାନ ତଥା ସମବେତ ଦାର୍ଶନିକବୃନ୍ଦ ତାଙ୍କ ଭକ୍ତି ଏବଂ ଯୁକ୍ତି ବ୍ୟାଖ୍ୟାନ ଏବଂ ବିତର୍କ ଶ୍ରବଣ କରି ଏକସ୍ୱରରେ ତାଙ୍କ ପ୍ରଶଂସା କରି ତାଙ୍କୁ 'ପିତ୍ତର ପିରାନ୍' ଉପାଧି ବିଭୂଷିତ କରିଥିଲେ । ରାଜା ବଲ୍ଲଭ ଏବଂ ରାଜ ପାରିଷଦମାନେ ତ ବିହ୍ୱଳ ହୋଇ ଯାଇଥିଲେ । ତାଙ୍କୁ ସମ୍ମାନିତ କରିବା ଉଦ୍ଦେଶ୍ୟରେ ତାଙ୍କୁ ହାତୀ ଉପରେ ବସାଇ ବିରାଟ ପଟୁଆରର ଆୟୋଜନ କରିଥିଲେ । ଶ୍ରୀବିଷ୍ଣୁ ଏବଂ ମହାଲକ୍ଷ୍ମୀ ଏହି ମହାର୍ଘ ମୁହୂର୍ତ୍ତରେ ନିଜ ଭକ୍ତିର ଆନନ୍ଦ ଉପଲବ୍ଧି ପାଇଁ ଗୁରଡ଼ ବାହନରେ ଶୂନ୍ୟମଣ୍ଡଳରେ ବିରାଜମାନ କଲେ । ବିଷ୍ଣୁ ଚିତ୍ତରଙ୍କ ଆନନ୍ଦ କିଛିକ୍ଷଣ ପରେ ଭୟରେ ପରିଣତ ହେଲା । କାଳେ ତାଙ୍କ ପ୍ରଭୁଙ୍କ ଉପରେ ଖରାପ ଲୋକଙ୍କ ଦ୍ୱାରା କିଛି ହୋଇଯିବ ? ସେ ଚାରିଗୋଟି ପ୍ରସିଦ୍ଧ ତପସ୍ୟା ଆଧାରିତ ରଚନା- 'ଥିରୁପ୍ପଲ୍ଲନ୍ଦୁ' ଗୋଟିଏ ପ୍ରାର୍ଥନା ଯହିଁରେ ୧୨ଗୋଟି ସ୍ତୁତି ରହିଛି । ତାହାକୁ 'ମଂଗଳ ସସନ' କୁହାଯାଏ । ତହିଁରେ ସେ ଇଷ୍ଟଦେବଙ୍କ ମଂଗଳ କାମନା କରିଛନ୍ତି । ସୁତରାଂ ସେ 'ପେରିୟ ଆଲବାର'ରେ ପରିଣତ ହେଲେ, ସମସ୍ତ ଆଲବାରଙ୍କ ମଧ୍ୟରେ ଶ୍ରେଷ୍ଠ ବିବେଚିତ । ରାଜରଂଗ ପୁରମ୍‌ରେ ଶ୍ରୀଭିଲ୍ଲିପୁଥରଠାରେ ସୁଉଚ୍ଚ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କୁ ଯେଉଁ ସବୁ ଉପହାର ମିଳିଥିଲା ତାହାର ବିନିଯୋଗ ଏହି କାର୍ଯ୍ୟ ସଂପନ୍ନ ହୋଇଥିଲା ।

ଭଗବାନ୍ ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ପ୍ରେମ- ଭକ୍ତିର ଅନନ୍ୟତା ଅତି ଚିତ୍ତାକର୍ଷକ ଭାବେ 'ପେରିୟ ଆଲବାର ଥିରୁ ମୋଜି'ରେ ୪୬୧ ପଶୁରାମ ମାଧ୍ୟମରେ ପରିପ୍ରକାଶ ଲାଭ କରିଛି । ଯେଉଁଠି ଜନନୀ ଯଶୋଦା କୃଷ୍ଣଙ୍କୁ ସ୍ନାନ କରିବା ପାଇଁ ଡାକୁଛନ୍ତି, ବସ୍ତ୍ର ପିନ୍ଧାଇବାକୁ ଡାକୁଛନ୍ତି, ଗୋପୀମାନଙ୍କ ପ୍ରତି ତାଙ୍କ ଆକର୍ଷଣ, ଯଶୋଦାଙ୍କର ବାତ୍ସଲ୍ୟ ସଂଗୀତ, ତାଙ୍କର ଲବଣୀ ଚୋରି, ପଡ଼ୋଶୀମାନଙ୍କର ଅଭିଯୋଗ, ଧେନୁମାନଙ୍କ ପ୍ରତି ତାଙ୍କ ପ୍ରତି ତାଙ୍କର ପ୍ରୀତି, ଗୋ.ଚାରଣ, ବେଣୁ ମାଧୁର୍ଯ୍ୟ ପ୍ରଭୃତି ନାନା ଆଖ୍ୟାନ ଲୀଳା 'ପେରିୟ ଆଲବାର ଥିରୁ ମୋଜି' ରେ ମନୋଜ୍ଞ ଭାବେ ବର୍ଣ୍ଣିତ । ତାଙ୍କର ଯଜ୍ଞ ପ୍ରତି ଆଗ୍ରହ ଆନ୍ଦାଳ (ଯେତେବେଳେ ଯଜ୍ଞ ପାଇଁ ଭୂମିକର୍ଷଣ କରୁଥିଲେ) । କିଏ ତାଙ୍କୁ ଆଲବାର ମଧ୍ୟକୁ ଆଣିଲା, ତାଙ୍କୁ ଏ ଦିଗରେ ଦୀକ୍ଷିତ କରାଇଲା, ଏ ବିଷୟ ମଧ୍ୟ ତାଙ୍କ ଜୀବନରେ ପ୍ରମୁଖ ସ୍ଥାନ ଅଧିକାର କରିଛି ।

୧୧. ଆଣ୍ଡାଳ (ଗୋଦା ଦେବୀ)- ଆଣ୍ଡାଳ ଆଲବାରଙ୍କ ମଧ୍ୟରେ ଏକମାତ୍ର ମହିଳା । ପେରିୟ ଆଲବାର ଯେବେ ତାଙ୍କ ପୁଷ୍ପ ଉଦ୍ୟାନରେ କାର୍ଯ୍ୟରତ ଥିଲେ ଆଣ୍ଡାଳ ସେଠାରେ ଗୋଟିଏ ତୁଳସୀ ବାଟିକା ତୁଲ୍ୟ ଆବିର୍ଭାବ ହେଲେ, ଯେପରି ରାଜର୍ଷି ଜନକ ଯଜ୍ଞ ଉଦ୍ଦେଶ୍ୟରେ ଭୂମି ଚାଷ କରୁଥିବା ସମୟରେ ସୀତାଙ୍କୁ ପ୍ରାପ୍ତ ହୋଇଥିଲେ । ପେରି ଆଲବାର ନିସନ୍ତାନ ଥିଲେ । ସେହି କନ୍ୟାକୁ ଲାଳନ ପାଳନ କରି ତା'ର ନାମ ରଖିଲେ 'କୋଥାଇ' । ତାଙ୍କୁ ଦକ୍ଷିଣ ଭାରତର ମୀରା କୁହାଯାଏ ।

କୋଥାଇ କ୍ରମେ ବୟଃ ବୃଦ୍ଧି ସହିତ ପବିତ୍ର ବାତାବରଣର ପ୍ରଭାବକୁ ନିଜ ସଂପଦ ଭାବେ ହୃଦୟ କନ୍ଦରରେ ସାଇତି ରଖୁଥାନ୍ତି । ପିତାଙ୍କର ଶ୍ରୀବିଲ୍ଲିପୁତ୍ତରର ପ୍ରମୁଖ ଦେବ ଶ୍ରୀବିଷ୍ଣୁଙ୍କ ପୂଜନ, ଭାଗବତର ବହୁବିଧ ଆଖ୍ୟାନ ଶ୍ରବଣ, ଭଗବାନ୍ କୃଷ୍ଣଙ୍କର କୌତୂହଳାତ୍ମକ ଆଖ୍ୟାୟିକା ଶ୍ରବଣ ମନନ ଦ୍ୱାରା ତାଙ୍କ ଅନ୍ତରର କୃଷ୍ଣଭକ୍ତି ସଂଚାରିତ ଏବଂ ସମ୍ବନ୍ଧିତ ହେବାକୁ ଲାଗିଲା । କ୍ରମଶଃ ତାହା ଗଭୀର ଭକ୍ତିରେ ରୂପାନ୍ତର ହୋଇ ତାଙ୍କ ପ୍ରତି ସେ ପ୍ରେମମୟୀ ହୋଇ ଉଠିଲେ ।

ପେରିୟ ଆଲବାରଙ୍କ ନିତ୍ୟକର୍ମ ମଧ୍ୟରେ ପୁଷ୍ପ ଉଦ୍ୟାନରୁ ପୁଷ୍ପ ସଂଗ୍ରହ କରି ସୁରମ୍ୟ ସୁମନମାଳା ରଚନା କରି ଶ୍ରୀଦେବଙ୍କୁ ଶ୍ରଦ୍ଧା ଭକ୍ତିରେ ନିବେଦନ କରିବା । କୋଥାଇ ଏ ସବୁକୁ ଖୁବ୍ ନିକଟରୁ ନିରୀକ୍ଷଣ କରୁଥାନ୍ତି । ଦିନେ ପିତାଙ୍କ ଅନୁପସ୍ଥିତିରେ ସେ ନିଜେ କେଶସଜ୍ଜା କରିବା ପାଇଁ ଦେବ ଉଦ୍ଦେଶ୍ୟରେ ନିର୍ମିତ ମାଳାକୁ ଗ୍ରହଣ କଲେ । ଦର୍ପଣରେ ନିଜର ରୂପକୁ ଦେଖି ଭାବିଲେ ସେ 'କନ୍ୟା' ଭାବେ ନିଶ୍ଚୟ ଦିନେ ଶ୍ରୀକୃଷ୍ଣଙ୍କ ହୃଦୟ ଜୟ କରିବେ । ଏକଦା ପେରିୟ ଆଲବାର ମନସ୍ୱିନୀ କନ୍ୟାକୁ ଦେଖିବାର ସୁଯୋଗ ପାଇଲେ, ଦେବ ପୁଷ୍ପମାଲ୍ୟ ଶିରୋଭୂଷଣ ଭାବେ ସେତେବେଳେ ଧାରଣ କରିଥାନ୍ତି । ଏହି କାରଣ ପାଇଁ ପିତା କ୍ରୋଧିତ ହେଲେ । ଗଭୀର ଦୁଃଖରେ ସେ ଇଷ୍ଟଙ୍କୁ ପୁଷ୍ପ ମାଲ୍ୟ ଅର୍ପଣ କରି ପାରିଲେ ନାହିଁ । ଅନାହାରରେ ଶୋଇ ରହିଲେ । ଦେବ ରାତିରେ ନିଦ୍ରା- ସ୍ୱପ୍ନରେ ଆବିର୍ଭୂତ ହୋଇ ତାଙ୍କୁ ପୁଷ୍ପମାଲ୍ୟ ନିବେଦନ ନ କରିବାର କାରଣ ପୁଚ୍ଛା କଲେ । ପେରିୟ ଆଲବାର ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କରି ପୁତ୍ରୀ କରିଥିବା ଅପରାଧ ନିମିତ୍ତ କ୍ଷମା ପ୍ରାର୍ଥନା କଲେ । ଶ୍ରୀଦେବ ସ୍ମିତହାସ୍ୟ ସହ ପ୍ରକାଶ କଲେ ଯେ, କୋଥାଇ ବ୍ୟବହାର କରିଥିବା ଫୁଲ (ମାଳ)କୁ ସେ ଶ୍ରଦ୍ଧାରେ ଗ୍ରହଣ କରନ୍ତି । ପେରିୟ

ଆଲବାର ନିଜ କନ୍ୟାର ମହାନତା ଅନୁଭବ କଲେ । ତାକୁ ଦୈବ୍ୟ ଶକ୍ତିସଂପନ୍ନ ମନେକଲେ । ମହାଲକ୍ଷ୍ମୀଙ୍କର ଅଂଶରେ ସେ ଆବିର୍ଭୂତା । ସେଥିପାଇଁ ସଂଯୋଗ ବଶତଃ ଆନ୍ଦାଳ ହୋଇଛି, ଯାହାର ଅର୍ଥ 'ଯେ ଶାସନ କରନ୍ତି' ।

ସେ 'ଛୁଡ଼ି କୋଦୁଥା ନଛିର' ପଦବୀ ମଧ୍ୟ ଗ୍ରହଣ କରିଥିଲେ । ସେ ଭଗବାନ୍ କୃଷ୍ଣ (ରଂଗନାଥ)ଙ୍କୁ ବିବାହ କରିବାକୁ ସ୍ଥିର କରିଥିଲେ । ବିଛେଦର ଅସହ୍ୟ ଯନ୍ତ୍ରଣା ଏବଂ ଉଦ୍‌ବେଗର ଅଭିବ୍ୟକ୍ତି ଦୁଇଗୋଟି ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ- ୧. ତିରୁପ୍ପଅବଇ, ୩୦ ପଶୁରାମ ଏବଂ ୨. ନୈଛିଅର ତରୁମାଜି, ଯାହା ୧୪୩ ପରଶୁରାମ ସମ୍ବଳିତ । ବିବାହ ବୟସ ହେବାରୁ ସେ ସ୍ପଷ୍ଟ ଭାବେ କହିଲେ ଯେ ସେ କୃଷ୍ଣଙ୍କୁ ବିବାହ କରିବେ (ଶ୍ରୀରଂଗର ରଂଗନାଥ) । ରାଜା ବଲ୍ଲଭଦେବ ଏହି ଦୈବ ବିବାହ ପ୍ରସ୍ତାବ ଆନ୍ଦାଳ ଏବଂ ପ୍ରଭୁ ରଂଗନାଥଙ୍କୁ ଶ୍ରବଣ କରି ମହାଆଡ଼ମ୍ବର ଆୟୋଜନ କଲେ । ଆନ୍ଦାଳଙ୍କୁ ପାଲିଙ୍କିରେ ଶ୍ରୀରଂଗକୁ ଯାତ୍ରା କରାଇଲେ । ଆନ୍ଦାଳ ପାଲିଙ୍କିରୁ ଓହ୍ଲାଇ ରନ୍ ସିଂହାସନ ପାଖକୁ ଚାଲିଲେ, ଏ ଦୃଶ୍ୟ ଉପସ୍ଥିତ ଜନତାକୁ ଆଶ୍ଚର୍ଯ୍ୟ ଚକିତ କରିଥିଲା । ସେ ସେଠାରେ ଶ୍ରୀବିଗ୍ରହରେ ଲୀନ ହୋଇଗଲେ, ଏକାକାର ହୋଇ ଅଦୃଶ୍ୟ ହୋଇଗଲା । ଏଣୁ ପେରି ଆଲବାର ଶ୍ରୀଦେବଙ୍କର ଶ୍ୱଶୁର ହେଲେ । ସେ ସେଠାରୁ ଶ୍ରୀବିଲ୍ଲିପୁଥରକୁ ଫେରି ଆସିଲେ ଏବଂ ପ୍ରତ୍ୟହ ପୂଜାର୍ଚ୍ଚନା କଲେ । ତାଙ୍କର ଦୁଇଟି କୃତି ମଧ୍ୟରୁ ତିରୁପ୍ପଅବଇ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ତଥା ଦାର୍ଶନିକ ଭାବ ସମନ୍ୱିତ, ଶ୍ରୀ ବୈଷ୍ଣବ ଧର୍ମ ସମ୍ବନ୍ଧରେ ଏହା ଏକ ସର୍ବଗ୍ରାହ୍ୟ ଗ୍ରନ୍ଥ । ଏହା ବେଦର ସଂକ୍ଷିପ୍ତ ସାର ବୋଲି କୁହାଯାଏ । ରାମାନୁଜନଙ୍କର ଏହା ପ୍ରତି ସ୍ୱତନ୍ତ୍ର ଅନୁରାଗ ରହିଛି । ତିରୁପ୍ପଅବାଇ ନାମରେ ସେ ନାମିତ କରିଛନ୍ତି । ସେ ତାଙ୍କୁ ସମ୍ମାନ ସୂଚକ 'ଗୋଦାଗ୍ରାଜିର' ଉପାଧି ପ୍ରଦାନ କରିଥିଲେ । ଆନ୍ଦାଳାଙ୍କଠାରୁ ପ୍ରଦତ୍ତ ଖାଦ୍ୟ ଥିରୁମାଲିୟମ୍ ସୋଲାଇଠାରେ ଦେବ ସ୍ୱୟଂ ଗ୍ରହଣ କରିଥିଲେ । ମାର୍ଗଶିର ମାସର ପ୍ରତ୍ୟେକ ଦିନ ଥିରୁପ୍ପବୟୀର ୩୦ ପଶୁରାମସ୍ ଅଜସ୍ର ଭକ୍ତଙ୍କ ଗହଣରେ ଗାନ କରାଯାଇଥାଏ । ଏହା (ଦ୍ୱାରା) ଆନ୍ଦାଳଙ୍କ ପାଦପଦ୍ମ ପ୍ରତି ସମ୍ମାନ ବୋଧର ପରିଚାୟକ ।

**୧୨. ଥିରୁମଂଗଳି ଆଲବାର-** ଥିରୁ ମଂଗଳି ଆଲବାର ହେଉଛନ୍ତି ଆଲବାର ପନ୍ଥାର ସର୍ବଶେଷ ସନ୍ଥ । ସେ ପରକେଲଣ, କଲିୟାନ୍, ନେଲନ୍, କଲିକନରି ଏବଂ ଥିରୁ ମଂଗଳି ମନ୍ନଅନ ଭାବର ବିଦିତ । ସେ ଅଲିନଦୁ (ଥିରୁମଂଗି)ଠାରେ

କଲ୍ଲଗୋଷ୍ଠୀର ପ୍ରମୁଖଙ୍କ ପରିବାରରେ କାର୍ତ୍ତିକ ମାସ କୃତିକା ନକ୍ଷତ୍ରରେ ଆବିର୍ଭୂତ ହୋଇଥିଲେ । ସେ ବିଷ୍ଣୁଙ୍କ ଶାରଂଗ ଧନୁର ଅଂଶରୁ ସୃଷ୍ଟି ।

ସେ ସମସ୍ତ ସମର କୌଶଳ ଶିକ୍ଷା ଲାଭ କରି ଚୋଳ ରାଜାଙ୍କ ସେନା ବାହିନୀରେ ସେନାପତି ଭାବେ ଅବସ୍ଥାପିତ ହୋଇଥିଲେ । ଅନେକ ଯୁଦ୍ଧରେ ସେ ବିଜୟୀ ହୋଇଥିଲେ । ଏକଦା ସେ କୁମୁଦାବଲ୍ଲୀ ନାମ୍ନି ପରମା ସୁନ୍ଦରୀ ଯୁବତୀକୁ ଦେଖି ତାଙ୍କୁ ବିବାହ କରିବା ନିମିତ୍ତ ପ୍ରସ୍ତାବ ଦେଲେ । ସେ ଶ୍ରୀବୈଷ୍ଣବ ସଂପ୍ରଦାୟ ଭୁକ୍ତ ହୋଇଥିବାରୁ ତାଙ୍କ ଆଗରେ ଗୋଟିଏ ସର୍ତ୍ତ ବାଢ଼ିଲା କି ଥିରୁମଂଗଳି ପଞ୍ଚ ସଂସ୍କାର ହୋଇ ଶ୍ରୀବୈଷ୍ଣବ ହେବେ ।

ଏହାପରେ ଥିରୁମଂଗଳି ମନ୍ନଅନ ଥିରୁନରେୟୁର ଯାଇ ପଞ୍ଚମ ସଂସ୍କାର ଶ୍ରୀଦେବ ନମ୍ବିଙ୍କ ସମ୍ମୁଖରେ ହେଲେ । କୁମୁଦ ବଲ୍ଲୀସ୍ଥିତ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ସେ ବୈଷ୍ଣବ ଦୀକ୍ଷାରେ ଦୀକ୍ଷିତ ହୋଇ ପ୍ରଫୁଲ୍ଲିତ ହୋଇଥିଲେ । ତା'ପରେ ସେ ଅନ୍ୟ ଏକ ସର୍ତ୍ତ ବାଢ଼ିଲେ ଯେ ବିବାହ ପୂର୍ବରୁ ବର୍ଷେ ପର୍ଯ୍ୟନ୍ତ ଏକ ହଜାର ବ୍ରାହ୍ମଣଙ୍କୁ ପ୍ରତିଦିନ ଭୋଜନ କରାଇବେ । ସେ ଦ୍ୱିତୀୟ ପ୍ରସ୍ତାବକୁ ମଧ୍ୟ ଗ୍ରହଣକଲେ । କୁମୁଦବଲ୍ଲୀ ତାଙ୍କ ନିଷ୍ଠା ଅନୁଭବ କଲେ ଏବଂ ବିବାହ ପାଇଁ ରାଜି ହେଲେ । ଆଡ଼ମ୍ବର ସହକାରେ ବିବାହ ଉତ୍ସବ ସଂପନ୍ନ ହେଲା ।

ଥିରୁମଂଗି ମନନ୍ ହଜାର ବୈଷ୍ଣବଙ୍କୁ ଦୈନିକ ଭୋଜନ କରାଇ ବହୁ ଖର୍ଚ୍ଚାନ୍ତ ହୋଇଗଲେ । ରାଜକୋଷରୁ ବହୁ ଅର୍ଥ କରଜ କରିବାକୁ ବାଧ୍ୟ ହେଲେ । ଯଥା ସମୟରେ ଅର୍ଥ ପୈଠ କରି ନପାରିବାରୁ ରାଜା ତାଙ୍କୁ ଗୋଟିଏ ମନ୍ଦିର ମଧ୍ୟରେ ତିନିଦିନ କାଳ ଖାଦ୍ୟ– ନିଦ୍ରା ବିନା ରହିଥିଲେ । ତୃତୀୟ ଦିନ ରାତିରେ ଯେବେ ସେ ନିଦରେ ଶୋଇଗଲେ କାଞ୍ଚିର ଦେବରାଜ ପ୍ରଭୁ ତାଙ୍କୁ ସ୍ୱପ୍ନରେ ଦର୍ଶନ ଦେଲେ ଏବଂ କହିଲେ କାଞ୍ଚିରେ ସେ ସଂପଦ ପ୍ରାପ୍ତ ହେବେ । ମନ୍ନଅନ ମନ୍ତ୍ରୀଙ୍କୁ କହିଲେ ତାଙ୍କୁ କାଞ୍ଚିକୁ ନେଇଗଲେ ସେ ରାଜ ଋଣ ପରିଶୋଧ କରିଦେବେ । ପରକଲନ ବେଗବତୀ ନଦୀର ତଟରେ ପହଂଚିଲେ । ସେଠାରେ ଧନ ପ୍ରାପ୍ତ ହୋଇ ରାଜଋଣ ପରିଶୋଧ କରି ନିଜପାଇଁ ଅନ୍ୟ କିଛି ରଖିଲେ । ସେ ସମସ୍ତ ଶେଷ ହୋଇଯିବା ପରେ ସେ ଜଣେ ଧନୀ ବ୍ୟକ୍ତିଙ୍କ ଘରୁ ଚୋରି କରିବାକୁ ବାଧ୍ୟ ହେଲେ ଏବଂ ଭାବିଲେ ଏଥିରେ ପାପ ନାହିଁ । ବାୟାଲାଲି ଇମ୍ପେରିଭମାନ୍ ପ୍ରଭୁ ତାଙ୍କ ନିକଟକୁ ଆଣିବାକୁ ଚାହିଁଲେ । ସେ ଏବଂ ତାଙ୍କ ପତ୍ନୀ ମହାଲକ୍ଷ୍ମୀ

ନିଜକୁ ନବ ବିବାହିତା ବ୍ରାହ୍ମଣ ଦମ୍ପତ୍ତି ଭାବେ ଅଳଂକାର ବିଭୂଷିତ ହୋଇ ବହୁମୂଲ୍ୟ ବସ୍ତ୍ର ପରିଧାନ କରି ତାଙ୍କ ସମ୍ମୁଖକୁ ଆସିଲେ ଏବଂ ତାଙ୍କୁ ଉତ୍ତେଜିତ କଲେ । ଭୟଭୀତ କରାଇ ସେମାନେ ସମସ୍ତ ବସ୍ତ୍ର- ଅଳଂକାରକୁ ଗୋଟିଏ ପୁଟୁଳା କରି ତାଙ୍କୁ ହସ୍ତାନ୍ତର କଲେ । ପାଦର ମୁଦିଟିଏ ବାହାରି ପାରିନଥିଲା । ସେ ତାକୁ ଦାନ୍ତ ଦ୍ୱାରା ବାହାର କରିବାକୁ ଚେଷ୍ଟିତ ହେଲେ । ଏହାକୁ ଉପଯୁକ୍ତ ସମୟ ଦେଖି ତିରୁମନତ୍ରଙ୍କ କାନରେ ଫୁସ୍ ଫୁସ୍ କରି କହିଲେ, ମୁଦି ବାହାରି ସାରିଲା ପରେ ସେ ସେହି ବହୁମୂଲ୍ୟ ବସ୍ତ୍ର ଅଳଂକାର ପୁଟୁଳାକୁ ନେବାକୁ ଚାହିଁଲେ । କିନ୍ତୁ ତାହା ଏତେ ଓଜନ ହୋଇଥିଲା ଯେ ତଳୁ ମଧ ଉଠିଲା ନାହିଁ । ହଠାତ୍ ବ୍ରାହ୍ମଣ ଦମ୍ପତ୍ତି ଗରୁଡ଼ ପୃଷ୍ଠରେ ବିରାଜିତ ହୋଇ ଅଦୃଶ୍ୟ ହୋଇଗଲେ । ତା'ପରେ ସେ ତିରୁମନ୍ତ୍ର ଧ୍ୟାନ କଲେ ଏବଂ ପ୍ରଭୁ ତାଙ୍କୁ ଦୀକ୍ଷା ଦେଲେ । ଫଳତଃ ସେ ଜଣେ ବିଖ୍ୟାତ କବି ଭାବିରେ ପ୍ରତିଷ୍ଠିତ ହେଲେ । ଇଷ୍ଟଙ୍କ ମହିମା ଆଧାର କରି ୧୩୬୦ ପଶୁରାମ୍ ସଂବଂଳିତ ଛ' ଗୋଟି ପ୍ରବନ୍ଧ ରଚନା କଲେ । ପୂର୍ବ କୃତକର୍ମ ପାଇଁ ଅନୁଶୋଚନା କଲେ ।

ସେ ଶ୍ରୀ ବୈଷ୍ଣବ ତୀର୍ଥକ୍ଷେତ୍ରମାନଙ୍କୁ ପରିକ୍ରମା କରିବାର ଦୁର୍ବାର ସଂକଳ୍ପ ନେଲେ । ସମଗ୍ର ଦେଶର ବୈଷ୍ଣବ ତୀର୍ଥ ପରିଦର୍ଶନର ବୃତ୍ତାନ୍ତ ବର୍ଣ୍ଣନା କରିଅଛନ୍ତି । ୧୦୮ ଦିବ୍ୟଦେଶ ମଧ୍ୟରୁ ସେ ୮୬ଟି ଦର୍ଶନ କରିଥିଲେ ଏବଂ ମଂଗଳ ସମନମସ୍ କରିଥିଲେ । ନାଳୟିରା- ଦିବ୍ୟ ପ୍ରବନ୍ଧମ୍‌କୁ ତାଙ୍କର ଅବଦାନଗୁଡ଼ିକ ହେଲା- ୧. ପେରିୟ ତିରୁମୋଜି, ୨. ତିରୁନେ ହୁନ୍ଦହସ, ୩. ତିରୁଭେଳୁକ୍କ ଓ ଥିରୁକ୍କଅଇ, ୪. ପେରିୟ ତିରୁମଣ୍ଡଳ, ୫. ଶିରିୟ ତିରୁମଣ୍ଡଳ ଏବଂ ୬. ତିରୁକ୍କଭରୁଣ୍ଡ ହସ ।



# ଆଚାର୍ଯ୍ୟ ଏବଂ ତାଙ୍କ ଶିଷ୍ୟ ପରଂପରା

ଭଗବାନ୍ ଶ୍ରୀକୃଷ୍ଣ ଏକମାତ୍ର ପରମାଚାର୍ଯ୍ୟ ଯେ ସମଗ୍ର ବିଶ୍ୱକୁ ଭାଗବତ ଶିକ୍ଷା ଦେଇଛନ୍ତି । ଆଲବାରମାନେ ବିଭିନ୍ନ ସ୍ଥାନର ଦେବଦର୍ଶନ ତଥା ଅଭିଜ୍ଞତା ଫଳରେ ଇଷ୍ଟଦେବଙ୍କ ଭକ୍ତି ପ୍ରାପ୍ତ ହୋଇ ପଶୁରାମ ରଚନା କରି 'ନାଳ ୟିରିଅମ୍'କୁ ସଂବଂଧିତ କରିଥିଲେ । ଶ୍ରୀମାନ୍ ମୁନି ନାଳୟିର ଦିବ୍ୟ ପ୍ରବନ୍ଧଗୁଡ଼ିକୁ ପରିପ୍ରକାଶ କରିଥିଲେ । ଯାହା ଆଲବାରମାନଙ୍କ ଦ୍ୱାରା ରଚିତ ତଥା ଦୀର୍ଘକାଳ ଧରି ଲୁପ୍ତ ହୋଇଯାଇଥିଲା । ପରବର୍ତ୍ତୀ କାଳରେ ଯମୁନାଚାର୍ଯ୍ୟ ଏବଂ ରାମାନୁଜ ସେ ସବୁକୁ ଅଧ୍ୟୟନ କରି ଭକ୍ତି ମାର୍ଗର ରହସ୍ୟମୟ ତତ୍ତ୍ୱକୁ ତାଙ୍କ ଶିଷ୍ୟମାନଙ୍କ ଦ୍ୱାରା ପ୍ରଚାର କରାଇଥିଲେ ।

ରାମାନୁଜାଚାର୍ଯ୍ୟ ହେଉଛନ୍ତି ପ୍ରଥମ ଆଚାର୍ଯ୍ୟ ଯେ ଆଚାର୍ଯ୍ୟ ପୀଠ ଅଧିକାର କରିଥିଲେ । ତାଙ୍କ ପରବର୍ତ୍ତୀ ଏମ୍ପର ତାଙ୍କ ପରେ କୁରାଥଲୁଆନଙ୍କ ପୁତ୍ର ପରାଶର ଭଟ୍ଟାର ଏହି ଦାୟିତ୍ୱ ନିର୍ବାହ କରିଥିଲେ । ତାଙ୍କ ପରେ ନମଜୀୟାର ଆଚାର୍ଯ୍ୟ ପୀଠ ମଣ୍ଡନ କରିଥିଲେ । ପରେ ନମ୍ପିଲ୍ଲଇ, ବେଦକ୍କୁ, ଥିରୁବିଦ୍ଧିପିଲ୍ଲାଇ, ପିଲ୍ଲାଇ ଲୋକାଚାର୍ଯ୍ୟ, ଥିରୁବୋଇ ମୋଜି ପିଲ୍ଲାଇ ଆଚାର୍ଯ୍ୟ ପୀଠାଧୀଶ୍ୱର ହୋଇଥିଲେ । ଶେଷ ଆଚାର୍ଯ୍ୟ ସଂଭବତଃ ମନବଳ ମହାମୁନି । ବେଦାନ୍ତ ଗୁରୁ ପରଂପରାର ପ୍ରଥମାଚାର୍ଯ୍ୟ ହେଉଛନ୍ତି ଦେଶିକାଚାର୍ଯ୍ୟ । ଉପର୍ଯ୍ୟୁକ୍ତ ଆଚାର୍ଯ୍ୟବୃନ୍ଦ ସେମାନଙ୍କ ଦିବ୍ୟ ଜୀବନଚର୍ଯ୍ୟା ଏବଂ ଅବିସ୍ମରଣୀୟ କାର୍ଯ୍ୟାବଳୀ ଦ୍ୱାରା ଶ୍ରୀବୈଷ୍ଣବ ଧର୍ମର ପ୍ରଚାର ପ୍ରସାର କରିଅଛନ୍ତି ।

ଶ୍ରୀ ନାଥମୁନି ଯେ କି ପ୍ରଥକ ପୂର୍ବାଚାର୍ଯ୍ୟ ବୀର ନାରାୟଣ ପୁରର ଈଶ୍ୱର ଭଟ୍ଟାରଠାରେ ଆବିର୍ଭୂତ ହୋଇଥିଲେ । ସେ ଭାରତର ବିଭିନ୍ନ ତୀର୍ଥ କ୍ଷେତ୍ର ଯଥା ମଥୁରା, ନନ୍ଦଗୋକୁଳ, ଦ୍ୱାରକା, ଅଯୋଧ୍ୟା ଅହୋବଳ, ଶ୍ରୀରଂଗମ୍, ତିରୁଭେଙ୍କଟମ୍ ଏବଂ ଅନ୍ୟ କେତେକ ସ୍ଥାନ ପରିଦର୍ଶନ କରିଥିଲେ । ପରନ୍‌କୁଶଦସର ଏବଂ ଅନ୍ୟ ଶ୍ରୀ ବୈଷ୍ଣବମାନଙ୍କ ସହାୟତାରେ ସେ ନମ୍ମାଆଲବାରଙ୍କ ସାକ୍ଷାତ୍ କରିଥିଲେ ।

ମଧୁରା କବି ଆଲବାରଙ୍କ 'କିନ୍ନନନ୍ ଶିରୁଥମ୍ବୁ' ୧୨୦୦୦ ଥର ଆବୃତ୍ତି କଲାପରେ ନାମ୍ମ ଆଲବାରଙ୍କ ସହ ତାଙ୍କ ସାକ୍ଷାତ କରିବାକୁ ସକ୍ଷମ ହୋଇଥିଲେ । ନାମ୍ମଆଲବାର ଥିରୁବୋମିମାଜିର ତିନିହଜାର ପଶୁରାମକୁ ନାଥମୁନିଙ୍କୁ ଅଧ୍ୟାପନା କରିଥିଲେ । ଯହିଁରେ ଅଷ୍ଟାଂଗ ଯୋଗ ଏବଂ ଅନ୍ୟ ସଂପୃକ୍ତ ବିଷୟ ଅନ୍ତର୍ଗତ ।

ବୀରନାରାୟଣପୁରର ମନ୍ନାର ସ୍ୱାମୀଙ୍କ ନିର୍ଦ୍ଦେଶାନୁସାରେ ଦିବ୍ୟ ପ୍ରବନ୍ଧମ୍‌ଗୁଡ଼ିକର ମାଧୁର୍ଯ୍ୟପୂର୍ଣ୍ଣ ରାଗରେ ଗାୟନ କରାଯାଇଥିଲା । କିଲ୍ ମହାଥାଲଓ୍ୱାନ୍ ଏବଂ ମେଲମହା ଥାଲଓ୍ୱାନ୍ ସହିତ ଗାନ କରାଯାଇଥିଲା । ଉୟକୋନଦର ଏବଂ କୁରୁହି କବଲସ୍ୱନ ତାଙ୍କ ଅଷ୍ଟ ଶିଷ୍ୟଙ୍କ ମଧ୍ୟରୁ ଅନ୍ୟତମ । ସେମାନେ ସମସ୍ତେ ନାଥମୁନିଙ୍କ ପ୍ରଦର୍ଶିତ ମାର୍ଗାନୁସାରେ ଭକ୍ତିର ବିବିଧ ରହସ୍ୟ ଉଦ୍‌ଘାଟରେ ପ୍ରଶିକ୍ଷିତ ହୋଇଥିଲେ । ସେମାନେ ମଧ୍ୟ ନାଥମୁନିଙ୍କ ପୁତ୍ର ଈଶ୍ୱର ମୁନିଙ୍କୁ ସମସ୍ତ ଗୋପନ ତତ୍ତ୍ୱ ବ୍ୟାଖ୍ୟାନ କରିବାକୁ ନିର୍ଦ୍ଦେଶିତ ହୋଇଥିଲେ । ଭବିଷ୍ୟତରେ ଜାତ ହେବାକୁ ଥିବା ଈଶ୍ୱର ମୁନିଙ୍କ ପୁତ୍ର 'ଯମୁନଇ ଥୁରଇବନ'ଙ୍କୁ ମଧ୍ୟ ଦୀକ୍ଷିତ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ସେ ପରମ ପଦ ପ୍ରାପ୍ତି ପାଇଁ ତପସ୍ୟା କରିବାକୁ ଗଲେ ଏବଂ ବ୍ରହ୍ମଲୀନ ହୋଇଥିଲେ ।

ନମୋ ଚିଂନ୍ତ୍ୟା ଭୁତାକ୍ଲିଷ୍ଟ ଜ୍ଞାନ ବୈରାଗ୍ୟ ରାଶୟେ

ନାଥାୟ ମୁନୟେ, ଅଗାଧ ଭଗବାନ୍ ଭକ୍ତି ସିଂଧବେ ।

ନାଥମୁନିଙ୍କର ଶିଷ୍ୟ ଉୟକୋନଦରଙ୍କୁ ମଧ୍ୟ ପୁଣ୍ଡରୀକାକ୍ଷର କୁହାଯାଏ, ତାଙ୍କ ଶିଷ୍ୟ ମନକ୍କଅଲ ନମ୍ବି (ରାମମିଶ୍ର) ଯମୁନାଚାର୍ଯ୍ୟଙ୍କ ପୁତ୍ର ଈଶ୍ୱର ମୁନିଙ୍କୁ ତାଙ୍କ ଗୁରୁ ଉୟକୋନ୍ଦରଙ୍କ ନିର୍ଦ୍ଦେଶାନୁସାରେ ସମସ୍ତ ପ୍ରବନ୍ଧ ଏବଂ ଭକ୍ତି ଗୋପନୀୟତା ଶିକ୍ଷା ଦେଇଥିଲେ ।

ଯମୁନାଚାର୍ଯ୍ୟ ଶାସ୍ତ୍ରାଭାଷ୍ୟ ସହ ମହାଭାଷ୍ୟ ଭଟ୍ଟାର ଅଭ୍ୟାସ କରିଥିଲେ ।

ତା'ପରେ ରାଜପୁରୋହିତ ଅକ୍କି ଅଲଓ୍ୱାନ ସମସ୍ତଙ୍କଠାରୁ କର ଆଦାୟ କରୁଥିଲେ । ଯେବେ ଅକ୍କି ଅଲଓ୍ୱାନ ଭଟ୍ଟାରଙ୍କୁ କର ପାଇଁ ଅନୁରୋଧ କଲେ, ସେହି ଦାବି ଅସ୍ୱୀକୃତି ହେଲା । ଯେବେ ସେହି ଦାବୀ ରାଜାଙ୍କ ଦ୍ୱାରା ଆସିଲା, ତାହା ମଧ୍ୟ ଆଗ୍ରାହ୍ୟ ହୋଇଗଲା । ତା'ପରେ ରାଣୀ ରାଜାଙ୍କୁ ଉପଦେଶ ଦେଲେ ଯେ ଯମୁନାଚାର୍ଯ୍ୟଙ୍କୁ ସମ୍ମାନର ସହ ନିମନ୍ତ୍ରଣ କରାଯାଉ । ରାଜା ଅକ୍କିଅଲଓ୍ୱାନଙ୍କ ସହ ଆଲୋଚନ କରି ଆଦେଶ କଲେ ଯେ ତାଙ୍କ ସହ ଶାସ୍ତ୍ର ବିତର୍କରେ ଜୟ ଲାଭ କଲେ ଅର୍ଦ୍ଧେକ ରାଜ୍ୟ ପ୍ରାପ୍ତ ହେବ । ଯମୁନାଚାର୍ଯ୍ୟ ଅକ୍କିଆଲଓ୍ୱାନଙ୍କ ସହ ଚାତୁର୍ଯ୍ୟପୂର୍ଣ୍ଣ ତର୍କରେ ବିଜୟୀ ହେଲେ । ଅର୍ଦ୍ଧେକ ରାଜ୍ୟ ପ୍ରାପ୍ତ କଲେ । ଗୋଟିଏ କ୍ଷୁଦ୍ର ଅଂଶର 'ଆଲଓ୍ୱାନ୍ଦାର' (ଯେ ଶାସନ କରନ୍ତି) ହୋଇଥିଲେ ।

ମନକ୍କଲନମ୍ବୀ ତାଙ୍କ ବିଜୟରେ ଉତ୍‌ଫୁଲ୍ଲିତ ହୋଇଥିଲେ । ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଯମୁନାଚାର୍ଯ୍ୟଙ୍କୁ ଈଶ୍ୱରାଭିମୁଖୀ କରାଇବା । ସୁତରାଂ ସେ ଭଗବତ୍ ଗୀତାର ବିଶେଷ ଅର୍ଥ ଅଧ୍ୟାୟ ପରେ ଅଧ୍ୟାୟ କରି ଚାଲିଲେ । ତାଙ୍କ ଉଦ୍ଦେଶ୍ୟ ଯମୁନାଚାର୍ଯ୍ୟଙ୍କୁ ଈଶ୍ୱରଙ୍କ ଦିଗକୁ ଘେନିଯିବା ହେଇଥିବାରୁ ସେ ଚରମ ଶ୍ଳୋକର ଗୁରୁତ୍ୱ ବ୍ୟାଖ୍ୟାନ କଲେ । ସେ ତାଙ୍କୁ ଶ୍ରୀରଂଗକୁ ସଂଗରେ ଘେନିଗଲେ ଓ ପ୍ରଭୁ ରଂଗନାଥଙ୍କ ଦର୍ଶନ କରାଇଲେ ଏବଂ କହିଲେ ଏ ସକଳ ସଂପତ୍ତି ତାଙ୍କ ପୂର୍ବପୁରୁଷର । ଯମୁନାଚାର୍ଯ୍ୟ ତାଙ୍କ ପୂର୍ବ ଜୀବନର କୃତ୍ୟ ପାଇଁ ପାଶ୍ଚାତ୍ତାପ କଲେ । ସେ କାହିଁକି ଈଶ୍ୱରାଭିମୁଖୀ ନହେଲେ ଏବଂ ଶ୍ରୀରଂଗରେ କାହିଁକି ନରହିଲେ । ପରେ ପେରିୟ ନମ୍ବି, ତିରୁକ୍କୋଟ୍ଟିୟୁରନମ୍ବି, ତିରୁମଲାଇ ଅନ୍ଦନ, ତିରୁକ୍କଚ୍ଚି ନମ୍ବି, ମରନିର ନମ୍ବି, କାଞ୍ଚିପୁରନର ଏବଂ ଅନ୍ୟ କେତେକ ତାଙ୍କ ଶିଷ୍ୟ ହେଲେ । ମନକନ୍ଦନମ୍ବି କୁରୁଛି କବଳ ଅପ୍ପନଙ୍କୁ ଯମୁନାରଙ୍କ ସହ ପରିଚିତ କରାଇଥିଲେ । ଯାହାଙ୍କଠାରୁ ସେ ଯୋଗଶାସ୍ତ୍ର ପ୍ରାପ୍ତ ହୋଇଥିଲେ ଏବଂ ଭୟକୋନ୍ଦରଙ୍କ ଇଚ୍ଛା ପୂର୍ଣ୍ଣ ହୋଇଥିଲେ । ପରେ ପରେ ସେ କୁରୁହେି କବଳପ୍ପନଙ୍କୁ ସାକ୍ଷାତ କରି ତାଙ୍କଠାରୁ ଯୋଗଶାସ୍ତ୍ର ଶିକ୍ଷା କରିବାକୁ ଚାହିଁଥିଲେ, କିନ୍ତୁ ତାଙ୍କୁ ଦର୍ଶନ କରିବାକୁ ଯିବା ବେଳକୁ ତାଙ୍କର ଦେହାନ୍ତ ହୋଇଯାଇଥିଲା ।

ଯମୁନାଚାର୍ଯ୍ୟ ଚତୁଶ୍ଳୋକୀରେ ଲକ୍ଷ୍ମୀ ସ୍ତୋତ୍ର, ବିଶିଷ୍ଟା ଦ୍ୱୈତ ସିଦ୍ଧାନ୍ତ, ରଂଗନାଥଙ୍କୁ ଆଧାର କରି ସ୍ତୋତ୍ରରତ୍ନ ସିଦ୍ଧିତ୍ରୟ, ଆଗମ ପ୍ରାମାଣ୍ୟ, ଗୀତାର୍ଥ ସଂଗ୍ରହ ପ୍ରଭୃତି ତାଙ୍କ ପ୍ରମୁଖ କୃତି । ବେଦାର୍ଥ ସଂଗ୍ରହରେ ସେ ଗୀତାର ଅଷ୍ଟାଦଶ

ଅଧ୍ୟାୟକୁ ମାତ୍ର ୩୨ଟି ଶ୍ଳୋକ ମଧ୍ୟରେ ପ୍ରକଟିତ କରିଛନ୍ତି, ଯାହାକୁ ଆଶ୍ରୟ କରି ରାମାନୁଜ ଗୀତା ଭାଷ୍ୟ ରଚନା କରିଛନ୍ତି । ସେ ଜଣେ ଦର୍ଶନ ସ୍ଥାପକାଚାର୍ଯ୍ୟଙ୍କ ଅନୁସନ୍ଧାନରେ ଥିଲେ । ରାମାନୁଜାଚାର୍ଯ୍ୟଙ୍କ ନାମ ଶୁଣିଥିଲେ । ଯାଦବ ପ୍ରକାଶକୁ ଗୁରୁଭାବେ ଗ୍ରହଣ କରି ପରେ ତିରୁକ୍କଚିନମ୍ବିଙ୍କୁ ଗ୍ରହଣ କରିଥିଲେ । ସେ ତାଙ୍କ ଶିଷ୍ୟଙ୍କୁ ମହାପୁରନରକୁ ପ୍ରେରଣ କରି ରାମାନୁଜଙ୍କୁ ଘେନି ଆସିବାକୁ ନିର୍ଦ୍ଦେଶ ଦେଇଥିଲେ । ସେହି ସମୟରେ ସେମାନେ ଶ୍ରୀରଂଗମ୍‌ରେ ପହଞ୍ଚିଲେ । ଯମୁନାଚାର୍ଯ୍ୟ ପରମ ପଦ୍ମରେ (ଲୀନ) ପ୍ରତିଷ୍ଠିତ ହୋଇଗଲେ ।

ରାମାନୁଜ ଯମୁନାଚାର୍ଯ୍ୟଙ୍କୁ ସଦେହରେ ଦେଖିପାରିବାର ସୁଯୋଗ ଲାଭ କରି ପାରିନଥିବାରୁ ସେ ଅତ୍ୟନ୍ତ ଦୁଃଖୀତ ହେଲେ । ସେ ଦେଖିଲେ ଯେ ଯମୁନାଚାର୍ଯ୍ୟଙ୍କ ତିନୋଟି ଆଂଗୁଳ ବନ୍ଦ ହୋଇ ରହିଛି । ସେ କାରଣ ଅନୁଧ୍ୟାନ କଲେ, ସମବେତ ସୁଧୀ ମଣ୍ଡଳୀରୁ କେହି ଜଣେ କହିଲେ ଯେ ତାଙ୍କର ତିନୋଟି ଇଚ୍ଛା ଅପୂର୍ଣ୍ଣ ରହିଛି । ୧. ବିଶିଷ୍ଟାଦ୍ୱୈତ ତତ୍ତ୍ୱ ଆଧାରରେ ବ୍ୟାସକୃତ ବ୍ରହ୍ମସୂତ୍ରର ଭାଷ୍ୟ ରଚନା କରିବା, ୨. ନାମ୍ମଆଲବାରଙ୍କ ରଚିତ ଥିରୁଭୋଇ ମୋଜି ସମ୍ବନ୍ଧରେ ବ୍ୟାଖ୍ୟାନ, ୩. ବ୍ୟାସ ଏବଂ ପରାଶରଙ୍କୁ ଯଥାରୀତିରେ ସମ୍ମାନ ପ୍ରଦାନ ।

ରାମାନୁଜର ସେହିଠାରେ ଶପଥ କଲେ ଯେ ଏକାକୀ ତାଙ୍କର ତିନୋଟି ଯାକ ଆକାଂକ୍ଷ ପୂରଣ କରିବେ । ସେ ଶପଥ ଗ୍ରହଣ କରିବା ସଂଗେସଂଗେ ତାଙ୍କର ତିନିଟିଯାକ ଆଂଗୁଳି ଖୋଲିଗଲା । ସମବେତ ଭକ୍ତମଣ୍ଡଳୀ ଆଶ୍ଚାର୍ଯ୍ୟ ଚକିତ ହେଲେ ଏବଂ ଭାବିଲେ ଯେ ଯମୁନାଚାର୍ଯ୍ୟଙ୍କ ପୂର୍ଣ୍ଣ ଆଶୀର୍ବାଦ ରମାନୁଜଙ୍କ ଉପରେ ରହିଛି । ସେ ବିଶିଷ୍ଟଦ୍ୱୈତ ବାଦର ଦର୍ଶନ ସପ୍ତକାଚାର୍ଯ୍ୟ ହେବେ । ଅବଭୃତ ସ୍ନାନ ପରେ ଯମୁନାଚାର୍ଯ୍ୟ, ରାମାନୁଜଙ୍କୁ କାଞ୍ଚି ପୁରମ୍ ଆସିଲେ ତଥା ତାଙ୍କ ଉଦେଶ୍ୟ ପୂର୍ତ୍ତିରେ ଅଗ୍ରସର ହେଲେ ।

ଯତ୍‌ପଦାଂଭୋରୁହ ଧ୍ୟାନ ବିଧ୍ୱସ୍ଥା ଶେଷକଲ୍ମଷହ
ବସ୍ତୁତାମୁପୟା ତୋହଂ ଯାମୁନେୟମ୍ ନମାମି ତମ୍ ।

**ଶ୍ରୀ ରାମାନୁଜର–** ଶ୍ରୀ ରାମାନୁଜର ଶ୍ରୀବୈଷ୍ଣବ ଆଚାର୍ଯ୍ୟଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଆଲବାର । ତାଙ୍କ ଆବିର୍ଭାବ ଶ୍ରୀପେରୁମ୍ବୁଦୁରଠାରେ ଚୈତ୍ର ମାସ ଅନୁରାଧା ନକ୍ଷତ୍ରରେ । ପିତା ଅସୁରୀ ସୋମଯାଜୀ ଏବଂ ମାତା କନ୍ତିମତୀଙ୍କଠାରୁ ହୋଇଥିଲା ।

ଶ୍ରୀଶୈଳପୂର୍ଣ୍ଣ (ପେରିୟଥିରୁମଲାଇ ନାମ୍ବି) ତାଙ୍କ ଭଗ୍ନିଙ୍କ ପୁତ୍ରକୁ ଦେଖିବାକୁ ଆସିଥିଲେ ଏବଂ ରାମାନୁଜ ନାମକରଣ କରିଥିଲେ । ଏପରିକି ଜ୍ୟୋତଷମାନେ ସେ ବୁଦ୍ଧିମାନ, ପ୍ରଜ୍ଞାବାନ୍ ଏବଂ ଧର୍ମର ଐକାନ୍ତିକ ପ୍ରଚାରକ ହେବାର ଭବିଷ୍ୟତ ବାଣୀ କରିଥିଲେ । ତାଙ୍କୁ ଷୋଳବର୍ଷ ବେଳକୁ ତାଙ୍କ ପିତା ପରିବାର ସମ୍ବନ୍ଧୀୟ ତଞ୍ଜମାମ୍ବଳଙ୍କ ସହିତ ବିବାହ କରିଦେଲେ ଏବଂ ସେ ମୃତ୍ୟୁଲାଭ କଲେ । ଗୁରୁଙ୍କ ସନ୍ଧାନରେ ବାହାରି ଅଦ୍ୱୈତ ଯାଦବ ପ୍ରକାଶଙ୍କ ଆଶ୍ରମରେ ତାଙ୍କ ସଂପର୍କୀୟ ଭାଇ ଗୋବିନ୍ଦଙ୍କ ସହ ଅବସ୍ଥାନ କଲେ । ସେ ଅନ୍ୟ ସମସ୍ତ ସହପାଠୀଙ୍କଠାରୁ ବିଷୟ, ତଥ୍ୟମୂଳକ ଯୁକ୍ତି ଏବଂ ବିଚକ୍ଷଣତାରେ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କଲେ । ଗୋଟିକ ପରେ ଗୋଟିଏ ଘଟଣାରେ ସେ ତାଙ୍କ ଗୁରୁଙ୍କଠାରୁ ସ୍ୱତନ୍ତ୍ର ବିଚାର ଉପସ୍ଥାପନା କରୁଥିଲେ । ଅନ୍ୟ ଏକ ଘଟଣା ଶ୍ରୁତିର ବ୍ୟାଖ୍ୟାନ, ବିଶେଷ କରି କପ୍ୟାସ ଶ୍ରୁତିର ବ୍ୟାଖ୍ୟାନରେ ଗୁରୁ ତାଙ୍କ ଉପରେ ଖିନ୍ନ ହୋଇଥିଲେ । ଯାଦବ ତାଙ୍କୁ ସହିପାରୁନଥିଲେ ଏବଂ ତାଙ୍କୁ ଏହିପରି କେତେକ ଘଟଣାରେ ବାହାର କରିଦେବାକୁ ଚାହୁଁଥିଲେ, କାରଣ ସେ ତାଙ୍କୁ ଅତିକ୍ରମ କରିଯେବେ, ତାଙ୍କ ଖ୍ୟାତି ନ୍ୟୂନ ହୋଇଯିବ । ସେ ସେଥିପାଇଁ ଗୋଟିଏ ଯୋଜନା କଲେ । ବିନ୍ଧ୍ୟାଚଳ ଦିଗରେ ଗୋଟିଏ ଦଳ ମଧ୍ୟରେ ତାଙ୍କୁ ଘେନିଗଲେ । ଗୋବିନ୍ଦ ଗୁରୁଙ୍କ ମନ୍ଦ ଉଦ୍ଦେଶ୍ୟ ଜାଣପାରିଲେ, ଗୋପନରେ ରାମାନୁଜଙ୍କୁ ଜଣାଇଦେଲେ । ରାମାନୁଜ ଦଳରୁ ବାହାରି ଯାଇ ଜଂଗଲରେ ଲୁଚିଗଲେ । ଅରଣ୍ୟ ପଥରେ ଆଦିବାସୀ ଦମ୍ପତ୍ତିଙ୍କୁ ଭେଟିଲେ ଏବଂ ସେମାନେ କାଞ୍ଚି ଯାଉଥିଲେ । ଯାତ୍ରା ଜନିତ ଶ୍ରମ ହେତୁ ଦମ୍ପତ୍ତି ଜଳପାନ ଇଚ୍ଛା କଲେ । ରାମାନୁଜ ଜଳ ଆଣି ସେଠାରେ ପହଞ୍ଚିଲାବେଳକୁ ସେମାନଙ୍କୁ ଆଉ ପାଇଲେ ନାହିଁ । ସେହିଠାରେ ରାମାନୁଜ ରାତ୍ରି ବିତାଇ ଦେଲେ ।

ସକାଳୁ ଉଠି ସ୍ଥାନୀୟ ଲୋକଙ୍କୁ କାଞ୍ଚି ଯିବା ମାର୍ଗ ପଚାରିଲେ । ସେମାନେ କହିଲେ ସେହି ସ୍ଥାନ ହେଉଛି କାଞ୍ଚି । ସେ କାଞ୍ଚି ମନ୍ଦିରର ଗୋପୁର ଦେଖି ମୁଗ୍ଧ ହୋଇଯାଇଥିଲେ । ଯାଦବ ପ୍ରକାଶ କାଞ୍ଚିକୁ ଫେରିବା ପରେ ରାମାନୁଜଙ୍କ ବିଷୟରେ ଅନୁସନ୍ଧାନ କରିଥିଲେ । ଏ ସମସ୍ତ ଘଟଣା ପରେ ରାମାନୁଜ ସେହି ବିଦ୍ୟାମନ୍ଦିରରେ ଅଧ୍ୟୟନ ଅବ୍ୟାହତ ରଖିଲେ । ଯାଦବ ପ୍ରକାଶଙ୍କ ମନରୁ ସେହି ଖରାପ ଘଟଣାକୁ କୌଣସି ମତେ ବାହାର କରିପାରୁନଥାନ୍ତି । କାଞ୍ଚି ରାଜକୁମାରୀଙ୍କ ସଂପର୍କରେ

ଘଟିଥିବା ଘଟଣା ବସ୍ମୃତ ହୋଇପାରୁ ନଥାନ୍ତି । ରାମାନୁଜ ରାଜକୁମାରୀଙ୍କ ମସ୍ତକରେ ପାଦ ରଖିଦେଲେ । ଗୁରୁ ଏହି ଘଟଣାରେ ରାମାନୁଜଙ୍କ ପ୍ରତି ଈର୍ଷାନ୍ୱିତ ହେଲେ ଏବଂ ତାଙ୍କୁ ଅନୁଷ୍ଠାନରୁ ବାହାରିଯିବାକୁ କହିଲେ ।

ରାମାନୁଜ ଅନ୍ୟ ଜଣେ ଗୁରୁଙ୍କ ସନ୍ଧାନରେ ବାହାରିଲେ । ସେ କଛିପୁରନ୍ (ଥିରୁକ୍କଛିନମ୍ବି) ଜଣେ ଅବ୍ରାହ୍ମଣ ଇଷ୍ଟଙ୍କ ସେବାରେ କାଞ୍ଚିରେ ଅବସ୍ଥାନ କରୁଥାନ୍ତି । ସେ ଯମୁନାଚାର୍ଯ୍ୟଙ୍କ ଶିଷ୍ୟ ପରିଣତ ବୟସ ହେତୁ ଜଣେ ଉତ୍ତର ସୁଯୋଗ୍ୟ ବ୍ୟକ୍ତି ସନ୍ଧାନ କରୁଥାନ୍ତି, ଯିଏ କି ବିଶିଷ୍ଟଦ୍ୱୈତ ମତବାଦର ପ୍ରମୁଖ ହୋଇପାରିବେ । ସେ ପେରିୟନମ୍ବିଙ୍କୁ (ମହାପୁରନ)ଙ୍କୁ କାଞ୍ଚି ପଠାଇ ରାମାନୁଜଙ୍କୁ ଶ୍ରୀରଂଗମ୍‌କୁ ଘେନି ଆସିଲେ । ଯଥା ସମୟରେ ରାମାନୁଜ ଶ୍ରୀରଂଗମ୍‌ରେ ପେରିୟନମ୍ବିଙ୍କ ସହ ଆସି ପହଞ୍ଚିଲେ, ସେତେବେଳକୁ ଯମୁନାଚାର୍ଯ୍ୟ ସ୍ୱର୍ଗବାସୀ ହୋଇ ସାରିଥିଲେ । ରାମାନୁଜ ତାଙ୍କୁ ଜୀବିତାବସ୍ଥାରେ ଦେଖିବାକୁ ପାଇ ନଥିଲେ । ତାଙ୍କ ଆତ୍ମାକୁ ସମ୍ମାନ ଜ୍ଞାପନ କରିବା ପାଇଁ ଧ୍ୟାନସ୍ଥ ହେବାରୁ ଯମୁନାଚାର୍ଯ୍ୟଙ୍କ ତିନୋଟି ଅସଂପୂର୍ଣ୍ଣ କାର୍ଯ୍ୟ ତାଙ୍କୁ ପରିଜ୍ଞାତ ହେଲା । ୧. ବ୍ୟାସଦେବଙ୍କ ବ୍ରହ୍ମସୂତ୍ରର ବିଶିଷ୍ଟଦ୍ୱୈତ ଭାଷ୍ୟ, ୨. ପରାଶରଙ୍କ ବିଷ୍ଣୁପୁରାଣ, ଏବଂ ୩. ପ୍ରଖ୍ୟାତ ସାଧୁ ନାମ୍ମ ଆଲବାରଙ୍କ ପରିପ୍ରଚାର । ପୂର୍ବ ସୂଚନା ଅନୁସାରେ ମୃତ ଶରୀରର ତିନିଗୋଟି ଆଂଗୁଳି ଖୋଲି ଯିବାରୁ, ଜନ ସମାଜରେ ତାଙ୍କ ମହତ୍ତ୍ୱ ପ୍ରକଟିତ ହେଲା ଏବଂ ସେ ଶ୍ରୀବୈଷ୍ଣବ ସଂପ୍ରଦାୟର ଶୀର୍ଷବିନ୍ଦୁ ହୋଇଗଲେ ।

ରାମାନୁଜ ଚାହିଁଥିଲେ କାଞ୍ଚିପୁର ତାଙ୍କ ଗୁରୁହେବେ, କିନ୍ତୁ ସେ ପେରିୟନମ୍ବିଙ୍କ ଦିଗକୁ ନିର୍ଦ୍ଦେଶିତ କରିଥିଲେ । ସେ କାଞ୍ଚିପୁରଙ୍କୁ ତାଙ୍କ ଘରକୁ ମଧ୍ୟାହ୍ନ ଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । ନିମନ୍ତ୍ରଣ ରକ୍ଷା କରିବାରୁ ତାଙ୍କ ପତ୍ନୀଙ୍କୁ ଖାଦ୍ୟ ପ୍ରସ୍ତୁତ କରିବାର ସୂଚନା ଦେଲେ । ରାମାନୁଜ ପଦାକୁ ଯାଇଥିବା ସମୟରେ କାଞ୍ଚିପୁର ତାଙ୍କ ଘରେ ଉପସ୍ଥିତ ହେଲେ, ପ୍ରସ୍ତୁତ ହୋଇଥିବା ଖାଦ୍ୟକୁ ତାଙ୍କ ପତ୍ନୀ ପରିବେଷଣ କଲେ । ରାମାନୁଜ ଘରକୁ ଫେରି ଆଶ୍ଚର୍ଯ୍ୟ ହେଲେ, ତାଙ୍କ ପତ୍ନୀ ଘର ସମସ୍ତ ପରିଷ୍କାର କରି ସ୍ନାନ କରୁଛନ୍ତି । ରାମାନୁଜ ଏ ଅବସ୍ଥାରେ ବିରକ୍ତ ହେଲେ ଏବଂ ତାଙ୍କ ଅସଦାଚରଣ ପାଇଁ ଗାଳି ମଧ୍ୟ ଦେଲେ ।

କାଞ୍ଚିପୁରଙ୍କ ନିର୍ଦ୍ଦେଶାନୁସାରେ ରାମାନୁଜ ମହାପୁରାଣଙ୍କୁ ଗୁରୁ କରିବା ଉଦ୍ଦେଶ୍ୟରେ କାଞ୍ଚିପୁରରୁ ଶ୍ରୀରଂଗମ୍ ଯାତ୍ରା କଲେ । କିନ୍ତୁ ପଥ ମଧ୍ୟରେ

ମଧୁରନ୍‌କମ୍‌ଠାରେ ଆଶ୍ଚର୍ଯ୍ୟ ଜନକ ଭାବେ ସେ ମହାପୁରଣଙ୍କୁ ସାକ୍ଷାତ୍ କଲେ । ସେ ପଞ୍ଚଶଙ୍କରମ୍‌ର ପ୍ରଶାସକ ଭାବେ ଅବସ୍ଥାପିତ ହୋଇଥିଲେ । ରାମାନୁଜଙ୍କ ଅନୁରୋଧ କ୍ରମେ ମହାପୁରଣ ତାଙ୍କ ପତ୍ନୀଙ୍କ ସହ କାଞ୍ଚି ଆସି ରାମାନୁଜଙ୍କ ଘରେ ଅତିଥି ହୋଇ ରହିଲେ । ଉଭୟ ମହିଳାଙ୍କ ମଧ୍ୟରେ କଳହ ହେତୁ ମହାପୁରଣ ଶ୍ରୀରଂଗମ୍ ଫେରି ଆସିବାକୁ ବାଧ୍ୟ ହେଲେ, ଏହି ଘଟଣାରେ ରାମାନୁଜ ଅତ୍ୟନ୍ତ ଦୁଃଖୀ ହୋଇଥିଲେ । ରାମାନୁଜଙ୍କ ପତ୍ନୀଙ୍କ ବ୍ୟବହାର ସୁଖକର ନଥିଲା, ଯାହା ଫଳରେ ମାତ୍ର ୩୨ ବର୍ଷ ବୟସରେ ତାଙ୍କ ଦାମ୍ପତ୍ୟ ଜୀବନର ପରସମାପ୍ତି ଘଟିଲା ଏବଂ ସନ୍ନ୍ୟାସ ଗ୍ରହଣ କରିବାର ସ୍ଥିର କଲେ ।

କାଞ୍ଚି ନିକଟବର୍ତ୍ତୀ କୋରାମର କୋରଥଅଲଓ୍ୱନ ଜଣେ ବିଖ୍ୟାତ ଧନୀଲୋକ ଏବଂ ରାମାନୁଜଙ୍କଠାରୁ ବୟସ୍କ ମଧ୍ୟ, ସେ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ରାମାନୁଜଙ୍କ ପୁତୁରାର ପୁଅ ମୁଦାଲିଆନ୍ଦନ ଆଶ୍ଚର୍ଯ୍ୟଜନକ ଭାବେ ଏଯାବତ୍ ରାମାନୁଜଙ୍କ ଗୁରୁ ଯାଦବ ପ୍ରକାଶ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରି ଗୋବିନ୍ଦଜୀ ନାମ ଧାରଣ କରିଥିଲେ । ରାମାନୁଜଙ୍କର ସଂପର୍କୀୟ ଭାଇ ଯେ କଲ୍‌ହାସ୍ତିର ଶୈବଧର୍ମ ଆଚରଣ କରୁଥିଲେ ସେ ଶ୍ରୀଶୈଳପୂରଣଠାରେ ବୈଷ୍ଣବ ଧର୍ମ ଗ୍ରହଣ କଲେ ଏବଂ ଗୋବିନ୍ଦ ଭଟ୍ଟ ନାମରେ ନାମିତ ହୋଇ ତାଙ୍କ ପ୍ରମୁଖ ଶିଷ୍ୟ ହୋଇଥିଲେ । ସେ ଏମ୍ବର ନାମରେ ପରିଚିତ ପ୍ରଭୁ ରଂଗନାଥ ଅତ୍ୟନ୍ତ ଖୁସି ହୋଇ ତାଙ୍କୁ 'ଉଦୟବର' ଉପାଧି ପ୍ରଦାନ କରିଥିଲେ । ତିରୁବ ରଂଗନାଥ ଏଯାବତ୍ ଯେ ଶ୍ରୀରଂଗ ମନ୍ଦିରର ପରିଚାଳନା ନିର୍ବାହ କରୁଥିଲେ; ସେ ରାମାନୁଜଙ୍କଠାରେ ସମସ୍ତ ଅଧିକାର ସମର୍ପଣ କରି ତାଙ୍କ ଶିଷ୍ୟ ହୋଇଥିଲେ । ପରବର୍ତ୍ତୀ କାଳରେ ପ୍ରସିଦ୍ଧ 'ଏରମାନୁଜ ନୂତନନ୍ଦବୀ' ରଚନା କରିଥିଲେ, ଯହିଁରେ ସେ ରାମାନୁଜଙ୍କର ବିଷୟ ଏବଂ ଜ୍ଞାନ ସମ୍ବନ୍ଧରେ ଚର୍ଚ୍ଚା କରିଛନ୍ତି ।

ରାମାନୁଜଙ୍କ ପାଞ୍ଚଜଣ ଆଚାର୍ଯ୍ୟ ଥିଲେ- ୧. ପେରିୟାନମ୍ଭି ଯେ ପଞ୍ଚ ସଂସ୍କାର କରିଥିଲେ 'ଦ୍ୱାର୍ଥି'ର ଅର୍ଥ ଶିକ୍ଷା ହେଇଥିଲେ । ୨. ଗୋଷ୍ଠୀପୂର୍ଣ୍ଣ ଯେ ଥିରୁମନ୍ତ୍ର ଶିକ୍ଷା ଦେଉଥିଲେ । ସେ ତାଙ୍କ ପଦବୀର ଯୋଗ୍ୟ ବ୍ୟକ୍ତି ଥିଲେ ଏବଂ ଚରମ ଶ୍ଳୋକ ତଥା ଶରଣାଗତି ତତ୍ତ୍ୱ ଶିକ୍ଷା ଦେଉଥିଲେ । ୩. ତିରୁ ମଲାଇ ଆଡ଼ନ୍ ଭାଗବତ ବୈଷ୍ଣବ ଧର୍ମ କିମ୍ବା ନାମ୍ମା ଆଲବାରଙ୍କର ତିରୁଭୋମାଳୀ ସଂପର୍କରେ ଶିକ୍ଷା ପ୍ରଦାନ କରୁଥିଲେ । ୪. ଶ୍ରୀଶୈଳୀ ପୁରଣ (ପେରିୟ ଥିରୁମଲାଇ

ନମ୍ଭି) ଯାହାଙ୍କଠାରୁ ସେ ବର୍ଷେକାଳ ରାମାୟଣର ଗୋପନୀୟ ତତ୍ତ୍ୱ ଶିକ୍ଷାଲାଭ କରିଥିଲେ । ୫. ବରରଂଗଙ୍କଠାରୁ ପ୍ରପତ୍ତି ଶିକ୍ଷାଲାଭ କରିଥିଲେ ।

ରାମାନୁଜଙ୍କର ଅନ୍ୟ ଶିଷ୍ୟମାନଙ୍କ ମଧ୍ୟରୁ ଦାଶରଥୀ (ରାମାନୁଜଙ୍କ ଭାଗିନେୟ), ଯଜ୍ଞମୂର୍ତ୍ତି, ଧର୍ନୁଦାସ, ଯଜ୍ଞେଶ, ବରଦାଚାର୍ଯ୍ୟ, ଅନନ୍ତଲୁଆନ, ବାଦୁହନମ୍ଭି ପ୍ରଭୃତି ।

ବୋଧାୟନ ନାମରେ ଜଣେ ପ୍ରଖ୍ୟାତ ସାଧୁ ପୂର୍ବରୁ ବ୍ରହ୍ମ ସୂତ୍ର ଉପରେ ବୃତ୍ତିଗ୍ରନ୍ଥ ନାମରେ ସୁନ୍ଦର ବ୍ୟାଖ୍ୟାନ କରିଥିଲେ । ଏହାକୁ ଅନୁସନ୍ଧାନ କରିବା ପାଇଁ ସେ କୁରୁଶ, ମୁଦଲି ଆନ୍ଦନ, ଏମ୍ବର ଏବଂ ନଦଥୁର, ଅମ୍ମନଙ୍କୁ ସାଥିରେ ଘେନି ବିଭିନ୍ନ ସ୍ଥାନ ପରିଭ୍ରମଣ କଲେ । ସେ କାଶ୍ମୀରର ଶ୍ରୀନଗର ଯାତ୍ରାକଲେ, ଯେଉଁଠି 'ବୃତ୍ତି' ଗ୍ରନ୍ଥଗୁଡ଼ିକ ରାଜଦରବାରରେ ସଂରକ୍ଷିତ ହୋଇ ରହିଥିଲା । ସେ ସେହିଠାରେ ସେ ସବୁର ଅଧ୍ୟୟନ କରିବାର ଅନୁମତି ପ୍ରାପ୍ତ ହେଲେ କିନ୍ତୁ ସେଠାରୁ ଘେନି ଆସିବାକୁ ନୁହେଁ । କୁରେଶ ଯେ କି ଅସାମାନ୍ୟ ସ୍ମୃତି ଶକ୍ତିର ଅଧିକାରୀ ଥିଲେ, ସେ ସମସ୍ତ ପୃଷ୍ଠା ସ୍ମରଣ ରଖିଦେଲେ । ରାମାନୁଜ ଯେବେ ତାଙ୍କ ତୀକ୍ଷ୍ଣ ସ୍ମୃତିର ପରୀକ୍ଷା ନେଲେ ସେ ସମସ୍ତ ପୃଷ୍ଠା, ଶବ୍ଦ ମଧ୍ୟ କହିଦେଲେ । ନିର୍ଦ୍ଧାରିତ ସମୟ ସରିଗଲା, ରାମାନୁଜ ଅଧାରୁ ପାଠାଗାର ତ୍ୟାଗକଲେ । ସେ ହତବୁଦ୍ଧି ହେବା ସମୟରେ କୁରେଶ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ ଯେ ସେ ସଂପୂର୍ଣ୍ଣ ଗ୍ରନ୍ଥ ଅକ୍ଷରଶଃ ସ୍ମରଣ ରଖିଛନ୍ତି ଏବଂ ତାଙ୍କୁ ଫେରିଯିବାକୁ ଅନୁରୋଧ କଲେ । ରାମାନୁଜ ଏବଂ ତାଙ୍କ ଶିଷ୍ୟମାନେ ଶ୍ରୀରଂଗମ୍ ଫେରିଆସିଲେ । କୁରେଶ 'ବୃତ୍ତି' ଗ୍ରନ୍ଥ ତାଙ୍କ ସ୍ମୃତିରୁ ସଂପୂର୍ଣ୍ଣ ଲେଖିଦେଲେ । ରାମାନୁଜ ସେହି ଆଧାରରେ ଶ୍ରୀଭାଷ୍ୟ ରଚନା ତଥା ସମାପ୍ତି କରିଥିଲେ । ଯହିଁରେ ବୈଷ୍ଣବ ଧର୍ମର (ସ୍ୱାତନ୍ତ୍ର) ବୈଶିଷ୍ଟ୍ୟ ସନ୍ନିହିତ ହୋଇଛି, ପରବର୍ତ୍ତୀ ବଂଶଧର ଅତି ସହଜରେ ଏହି ତତ୍ତ୍ୱର ବାସ୍ତବ ପ୍ରୟୋଗ କରିପାରିବେ ଏବଂ ବିଶିଷ୍ଟାଦ୍ୱୈତବାଦର ମହାନ୍ ଗ୍ରନ୍ଥ 'ଶ୍ରୀଭାଷ୍ୟ' ଆଧାର ହୋଇପାରିବ ।

ଅଜାଗିୟ ମନବଳ ପେରୁମାଳ ନୟନାର, ପିଲାଇ ଲୋକାଚାର୍ଯ୍ୟଙ୍କର ଭାଇ ତାଙ୍କ ଗ୍ରନ୍ଥ ଆଚାର୍ଯ୍ୟ ହୃଦୟରେ କହିଛନ୍ତି । ଭାଷ୍ୟକାରମାନେ ନାମ୍ମଆଲବାରଙ୍କ ପଦ୍ୟରେ ସୂତ୍ରଗୁଡ଼ିକର ସହଜ, ସୁଗମ ଗୁରୁତ୍ୱ ଏବଂ ମାର୍ଗ ନିର୍ଦ୍ଦେଶକ ହୋଇ ବୋଧଗମ୍ୟ କରାଇ ପାରିବ । ରାମାନୁଜ ତାଙ୍କ ଶ୍ରେଷ୍ଠକୃତିର ସମାପନ କରିବା

ପରେ ସେ ଏକ ଦୀର୍ଘ ସେବାମୂଳକ ଯାତ୍ରା ଆରମ୍ଭ କଲେ । ପ୍ରାୟତଃ ସେ ସମସ୍ତ ବୈଷ୍ଣବ କ୍ଷେତ୍ର ପରିଦର୍ଶନ କରିଛନ୍ତି । ସେ ଯେଉଁ ସ୍ଥାନକୁ ଯାଆନ୍ତି ସେଠାରେ ସେ ବୈଷ୍ଣବ ଧର୍ମର ସାରତତ୍ତ୍ୱ ଏବଂ ବିଶିଷ୍ଟଦ୍ୱୈତ ଦର୍ଶନ ଉପସ୍ଥାପନା କରୁଥିଲେ । ନାମ୍ମଆଲବାରଙ୍କ ଜନ୍ମସ୍ଥାନ ଥିରୁକ୍କୁରୁହୁରଠାରେ ସେ ନାମଆଲବାରଙ୍କ ଚିରସ୍ଥାୟୀ ସ୍ମୃତି ରକ୍ଷା ପାଇଁ ଥିରୁକ୍କୁରୁହଇ ପିରାନ୍ ପିଲାନ୍ ଯେ କି ଶ୍ରୀ ଶୈଳ ପୁରଣଙ୍କ ପୁତ୍ରଙ୍କୁ 'ଥିରୁଭୋଇ ମୋଜି' ସମ୍ବନ୍ଧରେ ବ୍ୟଖ୍ୟାନ ଲେଖିବାକୁ ନିର୍ଦ୍ଦେଶ ଦେଇଥିଲେ । ଯାହା ବ୍ରହ୍ମସୂତ୍ରର ସାରାଂଶ । ସେ ଯେବେ ଥିରୁପାଥିକୁ ଆଗମନ କଲେ ସେଠାରେ ଶୈବ ଓ ବୈଷ୍ଣବଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଲାଗି ରହିଥିଲା, ମୁଖ୍ୟ ଦେବତା ଭାବେ ବିଷ୍ଣୁ କିମ୍ବା ଶିବ କିଏ ସ୍ଥାନ ଲାଭ କରିବେ । ରାମାନୁଜ ଆଲୌକିକ ଶକ୍ତି ବଳରେ ସେମାନଙ୍କ ସଂଶୟ ଊର୍ଦ୍ଧ୍ୱରେ ସ୍ଥାପିତ କଲେ ଯେ କେବଳ ନାରାୟଣ ହିଁ ସେଠାରେ ଅବସ୍ଥାପିତ ହେବେ । ରାମାନୁଜ ତାଙ୍କ ଗୁରୁ ଯମୁନାଚାର୍ଯ୍ୟଙ୍କର ତୃତୀୟ ଇଚ୍ଛା ପୂର୍ତ୍ତି ପାଇଁ ସେ ବ୍ୟାସ ଏବଂ ପରାଶର ମୁନିଙ୍କ ସ୍ମୃତି ନିମିତ୍ତ କିଛି କାର୍ଯ୍ୟ କଲେ । ସେ କୁରାଥା ଆଲବାନ ଏବଂ ଆନ୍ଦଲମ୍ମାଙ୍କ ଯମଜ ସନ୍ତାନର ନାମକରଣ ପରାଶର ଭଟ୍ଟ ଏବଂ ବ୍ୟାସଭଟ୍ଟର ରଖିଥିଲେ । ଯେବେ ରମାନୁଜ ତିରୁମାଳାଙ୍କ ପୁଷ୍ପୋଦ୍ୟାନକୁ ଦେଖିବାକୁ ଗଲେ ଆନନ୍ଦଦଲଓ୍ୱାନ କେବଳ ମାତ୍ର ତାଙ୍କ ସାକ୍ଷାତ୍ କରିବାକୁ ଆସିଲେ । ସେ ସମୟରେ ତିରୁମାଳା ଘନ ଅରଣ୍ୟାବୃତ୍ତ ଥିଲା । ଯେବେ ସେ ଉଦ୍ୟାନ ନିର୍ମାଣ ଆରମ୍ଭ କଲେ, ତାଙ୍କ ପତ୍ନୀ ଗର୍ଭବାସ ଥିଲେ ମଧ୍ୟ ସେ ତାଙ୍କୁ ସହଯୋଗ କରୁଥିଲେ । ଆନନ୍ଦଦଲଓ୍ୱାନ ଏହା ସହିପାରିଲା ନାହିଁ, ତାଙ୍କ ହାତରେ ଥିବା ହତିଆର ତାଙ୍କୁ ଫୋପାଡ଼ିଲେ ଏବଂ ତାହା ତାଙ୍କ ଓଠରେ ବାଜିଲା, ରକ୍ତଧାର ବହିଗଲା ଏବଂ ସେ ଦୌଡ଼ି ପଳାଇଲେ । ପରଦିନ ଆନନ୍ଦଦଲଓ୍ୱାନ ଜାଣିଲେ ଯେ ସେ ସେହି ହତିଆର ପ୍ରଭୁଙ୍କୁ ପକାଇଛନ୍ତି, ଯେ ତାଙ୍କୁ ସାହାଯ୍ୟ କରୁଥିଲେ । ମନ୍ଦିରରେ ଯାଇ ଦେଖନ୍ତି ତ ବିଗ୍ରହର ଦାଢ଼ିରୁ ରକ୍ତ ଝରିଛି । ସେ ନିଜକୁ ଅପରାଧି ବୋଲି ଭାବିଲେ ଏବଂ କର୍ପୂରରେ ସେ ରକ୍ତ ଓ ଦାଢ଼ିକୁ ଆଚ୍ଛାଦିତ କରିଦେଲେ । ଏବେ ମଧ୍ୟ ତାଙ୍କ କର୍ପୂର ଆଚ୍ଛାଦିତ ଦାଢ଼ି ଦେଖିବାକୁ ମିଳେ ।

ବିପଦ ଆରମ୍ଭ ହୋଇଗଲା ଯେବେ କ୍ରିମିକାନ୍ତ ଚୋଳ ଜଣେ ଶୈବ, ଶ୍ରୀବୈଷ୍ଣବଙ୍କୁ ଅସୁବିଧାରେ ପକାଇବାର ଉଦ୍ୟମ କଲେ । ରାମାନୁଜଙ୍କୁ କୋର୍ଟରେ ହାଜର ହେବାପାଇଁ ସମାନ ହେଲା । କିନ୍ତୁ ତାଙ୍କ ଶିଷ୍ୟ କୁରେଶ ଖୁସି ହୋଇପାରିଲେ

ନାହିଁ । କୁରେଶ ରାମାନୁଜଙ୍କୁ କର୍ଣ୍ଣାଟକ ଦିଗରେ ପ୍ରେରିତ କରି ନିଜେ ରାମାନୁଜଙ୍କ ବେଶଧାରଣ କରି ମହାପୁରୁଷଙ୍କୁ ସଂଗରେ ଧରି ରାଜାଙ୍କ ପାଖକୁ ଗଲେ । ସେମାନେ ଶୈବଧର୍ମକୁ ଗ୍ରହଣ କରିପାରୁ ନଥିବାରୁ ରାଜା ତାଙ୍କ ଆଖି ତାଡ଼ିଦେବାକୁ କହିଲେ । କୁରେଶ ତାଙ୍କ ଆଖି ତାଡ଼ିବାକୁ ଦେଲେ ନାହିଁ, ସେ ନିଜେ ଆଖି ତାଡ଼ିଦେଲେ, କିନ୍ତୁ ମହାପୁରଣ ବୃଦ୍ଧ ହୋଇ ଯାଇଥିବାରୁ ସେ ରାଜାଙ୍କର ନିଷ୍ଠୁର ଆଚରଣ ସହ୍ୟ କରି ନପାରି ସେହିଠାରେ ମୃତ୍ୟୁବରଣ କଲେ । କୁରେଶ ପରେ ଶ୍ରୀରଂଗକୁ ଫେରି ଆସିଲେ ।

ଶ୍ରୀରଂଗ ଛାଡ଼ିବା ପରେ ରାମାନୁଜ ଯଦାଦ୍ରି, ଶାଳୀଗ୍ରାମ ଏବଂ ଥୋନ୍ଦନୁରୁ ବିଠ୍ଠଳଦେବ ଥୋନ୍ଦନୁର ରାଜା ଯେ ଜୈନ ଧର୍ମାବଲମ୍ବୀ ଥିଲେ ସେ ବୈଷ୍ଣବ ଧର୍ମରେ ପରିବର୍ତ୍ତିତ ହୋଇ ବିଷ୍ଣୁବର୍ଦ୍ଧନ ନାମରେ ରାମାନୁଜଙ୍କ ଦ୍ୱାରା ନାମିତ ହୋଇଥିଲେ । ଦିନେ ରାତିରେ ଶ୍ରୀଦେବ ରାମାନୁଜଙ୍କୁ ଦେଖାଦେଇ ତାଙ୍କୁ ମେଲକୋଟ୍ ଯିବାକୁ ଆଜ୍ଞାକଲେ । ରାଜାଙ୍କ ସହାୟତାରେ ଭୂଗର୍ଭସ୍ଥିତ ଏକ ମୂର୍ତ୍ତି ବାହାର କରି ମନ୍ଦିର ନିର୍ମାଣ କରାଇ ୧୧୦୦ ଖ୍ରୀ.ଅ.ରେ ଚାଲୁବନରାୟଣ ନାମରେ ସିଂହାସନରେ ସ୍ଥାପିତ କରାଇଥିଲେ ।

ରାମାନୁଜ ରାମପ୍ରିୟଙ୍କର ଉତ୍ସବ ମୂର୍ତ୍ତି ଦିଲ୍ଲୀ ବାଦଶାହଙ୍କ ପାଖରେ ଥିବାର ସନ୍ଧାନ ନେଇ ସେଠାକୁ ଯାଇ ତାଙ୍କ କନ୍ୟା ବେବିଲଚୁମା ଠାରୁ ତାହା ପ୍ରାପ୍ତ ହୋଇଥିଲେ । ରାମପ୍ରିୟଙ୍କ ମୂର୍ତ୍ତି ନାଚିରଙ୍କ ମୂର୍ତ୍ତି ନିକଟରେ ସ୍ଥାପିତ ହୋଇଥିଲା । ମେଲକୋଟ ନିକଟରେ ରାମାନୁଜଙ୍କ ଦ୍ୱାରା ଯତିରାଜ ମଠ ସ୍ଥାପିତ ହୋଇଥିଲା । ସେହିଠାରେ ସେ ଦୀର୍ଘ ୧୨ ବର୍ଷ ଅବସ୍ଥାପିତ ହୋଇଥିଲା । ସେହିଠାରେ ଶ୍ରୀଭାଷ୍ୟ ଏବଂ ଗୀତାଭାଷ୍ୟ ଶିକ୍ଷା ଦେଉଥିଲେ । ତାଙ୍କ ଶିଷ୍ୟ ନିର୍ମାଣ କରିଥିବା ଏବଂ ତାଙ୍କ ମନୋମୁତାବକ ହୋଇଥିବା ମୂର୍ତ୍ତିକୁ ସେ ଆଲିଂଗନ କରିଥିଲେ ।

କ୍ରିମିକାନ୍ତ ଚୋଳଙ୍କ ମୃତ୍ୟୁପରେ ରାମାନୁଜ ଶ୍ରୀରଂଗ ବାହୁଡ଼ି ଆସିଲେ ଏବଂ ରାଜରୋଷରେ ଚକ୍ଷୁ ହରାଇଥିବା କୁରେଶଙ୍କୁ ସାକ୍ଷାତ୍ କଲେ । କୁରେଶଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ପରାଶର ଭଟ୍ଟର ଦ୍ୱିତୀୟ ଗୁରୁଭାବେ ପ୍ରତିଷ୍ଠିତ ହେଲେ । (ରାମାନୁଜ ଏବଂ ଏମ୍ବରଙ୍କ ପରେ) । ଏପରିକି ଆଜି ମଧ୍ୟ ରାମାନୁଜଙ୍କର ଶ୍ରୀପାଦତୀର୍ଥ ପୋଖରୀ ପାଖରେ ପୂଜିତ ତଥା ସମ୍ମାନିତ ହେଉଅଛି । ସେ ବୈଷ୍ଣବ

ଧର୍ମର ପ୍ରଚାର- ପ୍ରସାର ନିମିତ୍ତ ୭୪ଟି ସିଂହାସନାଦି ପଥିକ ସ୍ଥାପନ କରିଥିଲେ । ତାଙ୍କ ଜୀବିତାବସ୍ଥାରେ ତାଙ୍କ ଶିଷ୍ୟମାନେ ତିନିଗୋଟି ପ୍ରତିମୂର୍ତ୍ତି ନିର୍ମାଣ କରିଥିଲେ । ସ୍ୱୟଂ ରାମାନୁଜ ତାହାର ସ୍ଥାପନା କରିଥିଲେ । ସେଗୁଡ଼ିକ ଶ୍ରୀପେରାମ୍ବୁଦୁର, ମେଲକୋଟ ଏବଂ ଶ୍ରୀରଂଗମ୍ ଠାରେ ଅବସ୍ଥିତ ।

ସେ ୧୧୩୭ଖ୍ରୀଅ.ରେ ବ୍ରହ୍ମଲୀନ ହୋଇଥିଲେ । ଅନ୍ତିମ ସମୟରେ ଯେଉଁ ଛ'ଗୋଟି ବିଷୟ ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ ସେଗୁଡ଼ିକ ହେଲା-

୧. ଶ୍ରୀଭାଷ୍ୟର ଅଧ୍ୟୟନ ଏବଂ ତା'ର ଅର୍ଥ ଜାଣିବା ।

୨. ତାହା ହୋଇ ନପାରିଲେ ଦିବ୍ୟ ପ୍ରବନ୍ଧ ପାଠକରି ତା'ର ଅର୍ଥ ଜାଣିବା ।

୩. ଯଦି ତାହା ନହେଲା- ଦିବ୍ୟ ଦର୍ଶନ ନିମିତ୍ତ ମନ୍ଦିରକୁ ଯିବା ଏବଂ ସେଠାରେ ପୂଜା ଏବଂ ଅନ୍ୟ ଆବଶ୍ୟକୀୟ ସେବା କରିବା ।

୪. ତାହା ନହୋଇ ପାରିଲେ ଗୁରୁ ପରଂପରା ସାଧନା ।

୫. ତାହା ଯଦି ନହୋଇ ପାରିଲା- ବାସ୍ତବ ଶ୍ରୀବୈଷ୍ଣବଙ୍କ ସେବା କରିବା ।

୬. ଏ ସମସ୍ତ ନହୋଇ ପାରିଲେ ଅତି କମ୍‌ରେ ମିଲକୋଟେରେ କୁଟୀର ନିର୍ମାଣ କରି ସେହିଠାରେ ରହିବା ।



# ସନ୍ଥ ଅରକ୍ଷିତ ଦାସ

## (ଖ୍ରୀ.ଅ. ୧୭୭୨- ୧୮୦୩)

ସନ୍ଥ ଅରକ୍ଷିତ ଦାସ ବଡ଼ ଖେମୁଣ୍ଡି ରାଜପରିବାରରେ ଜନ୍ମଗ୍ରହଣ କରିଥିଲେ । ସାଂସାରିକ ଐଶ୍ୱର୍ଯ୍ୟ ବିରକ୍ତ ହୋଇ ତୀର୍ଥ ପର୍ଯ୍ୟଟନ କ୍ରମରେ ପୁରୁଷୋତ୍ତମ କ୍ଷେତ୍ରରେ ପହଞ୍ଚିଲେ । ସେଠାରେ ବଗିଚାମାଳୀ ତାଙ୍କୁ ଚୋରବୋଲି ପ୍ରହାର କରିଥିଲେ । ପ୍ରବଜ୍ୟା ସମୟରେ ନିଜ ମନରୁ ଶିଷ୍ଟ କୁଳାଭିମାନ ସ୍ୱତଃ ନଷ୍ଟ ହେବା ସହିତ ଜାତି କୁଳ ନିର୍ବିଶେଷରେ ସମସ୍ତଙ୍କଠାରୁ ଖାଦ୍ୟ ଗ୍ରହଣ କରିଛନ୍ତି । ଫଳତଃ ନାମରୂପର ବିଭେଦତାର ଊର୍ଦ୍ଧ୍ୱକୁ ଯିବାରେ ସାମର୍ଥ୍ୟ ଲାଭ କରିଅଛନ୍ତି ।

ଅଠର ବର୍ଷ ବୟସରେ ଘର ଛାଡ଼ିଥିଲେ ଏବଂ ପ୍ରବଜ୍ୟାର କାଳ ମଧ୍ୟ ଅଠର ବର୍ଷ ମଧ୍ୟରେ ଯାବତୀୟ ଅଭିମାନ ଶୂନ୍ୟ ହୋଇ ପରମ ଅଭିମୁଖୀ ହୋଇ ଅବିଭକ୍ତ କଟକ ଜିଲ୍ଲା ସଂପ୍ରତି କଟକ- କେନ୍ଦ୍ରାପଡ଼ା- ଯାଜପୁର ଜିଲ୍ଲା ସୀମାନ୍ତ ଓଲାଷୁଣୀ ପର୍ବତର ଏକ ଗୁମ୍ଫାକୁ ନିଜର ଆସ୍ଥାନ କ୍ଷେତ୍ର ଭାବେ ଚୟନ କରିଥିଲେ । ସେହିଠାରେ ସେ ଦେହର ରକ୍ଷା କରିଥିଲେ । ସେହି ଅଂଚଳରେ ଓଲାଶୁଣୀ ଗୁମ୍ଫା ଏକ ପ୍ରସିଦ୍ଧ ତୀର୍ଥର ମାନ୍ୟତା ପ୍ରାପ୍ତ ହୋଇଛି ।

ଅରକ୍ଷିତ ଦାସଙ୍କର ଗ୍ରନ୍ଥମାନଙ୍କ ମଧ୍ୟରୁ ମହୀମଣ୍ଡଳ ଗୀତା ବୃହତ୍ତମ ଓ ସର୍ବପ୍ରଧାନ । ଏହି ଗ୍ରନ୍ଥରେ ମନ- ଚୈତନ୍ୟ ସଂବାଦ ଆଧାରରେ ଚରିତ । ପ୍ରଶ୍ନକର୍ତ୍ତା ମନ ଏବଂ ଗୁରୁ ଆସନରେ 'ଚୈତନ୍ୟ' । ଅରକ୍ଷିତ ଦାସ 'ଚୈତନ୍ୟ'କୁ ଏକ ତତ୍ତ୍ୱଗତ 'ଅଭିଧା'ରେ ପ୍ରୟୋଗ କରିଥିବାର ଜଣାଯାଏ ।

ସୃଷ୍ଟିର ଆଦିକାରଣ ଭାବେ ବ୍ରହ୍ମା, ବିଷ୍ଣୁ, ଶିବ, ଶୂନ୍ୟ ଦେହୀ ବୋଲି କୁହାଯାଇଛି । ତ୍ରିଦେବ ଏକ ତତ୍ତ୍ୱ ବା ବିଚାର ଆଧାରିତ । ବସ୍ତୁତଃ ସେ ସମସ୍ତ ମନ୍ଦିର, ବିଗ୍ରହ, ଚିନ୍ତନ ଏବଂ ପୂଜାପାଠର ବିଧାନଠାରୁ ବହୁ ଊର୍ଦ୍ଧ୍ୱରେ ଶୂନ୍ୟଦେହୀ ବୋଲି କଥିତ । ମହୀମଣ୍ଡଳ ଗୀତାର ପଞ୍ଚମ ଅଧ୍ୟାୟରେ ମହାଶୂନ୍ୟ ଓ ବ୍ରହ୍ମ ଉଭୟଙ୍କୁ ସୃଷ୍ଟିର କାରଣ ବୋଲି ବର୍ଣ୍ଣନା କରିଅଛନ୍ତି ।

ମହାଶୂନ୍ୟରୁ ପଞ୍ଚଭୂତ, ଜାତ ହୋଇଛି ଏ ସମସ୍ତ ।
ଏ ପଞ୍ଚଭୂତ ଭିନ୍ନଭିନ୍ନ, ନୁହେଁଟି ଶୁଣ ହୋ ସୁମନ ।
ଲୀଳା ନିମନ୍ତେ ଭିନ୍ନ ହେଲେ, ସଂସାରେ ଖେଳ ଲଗାଇଲେ ।
ଖେଳ ସରିଲେ ସର୍ବେ ଯାନ୍ତି, ଏକା ସାଂଗରେ ସେ ଚଳନ୍ତି ।

(ପଞ୍ଚମ ଅଧ୍ୟାୟ)

ଚୈତନ୍ୟ ପୁରୁଷଙ୍କ ସୃଷ୍ଟି ସଂରଚନା ତଥା ସର୍ବମୟତ୍ୱ ପ୍ରତିପାଦନ କରିବାକୁ ଯାଇ ଲେଖିଛନ୍ତି-

ନିରଂଜନଟି ମୋର ନାମ, ନାରାୟଣଟି ବୋଲି ପୁଣ ।
ଅତ୍ରାହି ଭଂଜନ ହୋଇଲି, ଗୋପୀ ଜୀବନ ବୋଲାଇଲି ।
ମୁଁ ରାଧା ପତି ବିଦ୍ୟାଧର, ରୁକ୍ମିଣୀ ପତି ନାମ ମୋର ।
ମୁଁ ମହାପ୍ରଭୁ ଶୂନ୍ୟନାଥ, ଅଚିନ୍ତାମଣି ମୁହିଁ ସତ୍ୟ ।
ସୂତ୍ର ଶାସ୍ତ୍ରଟି ମୁହିଁ ପୁଣ, ଜପ ସମର୍ପ ମୁହିଁ ଜାଣ ।
ଭକ୍ତି ପ୍ରେମଟି ମୁହିଁ ହେଲି, ନବଧା ଭକ୍ତି ବୋଲାଇଲି ।

ତତ୍ତ୍ୱ, ବିଚାର ଯେପରି ଶୂନ୍ୟନାଥ, ଅଚିନ୍ତାମଣି, ସତ୍ୟ, ଜପ ସମର୍ପଣ ଇଷ୍ଟ, ସେହିପରି ପୌରାଣିକ ଆଧାରରେ ରାଧାପତି ରୁକ୍ମିଣୀ ପତି ମଧ୍ୟ ସେହି । ପୁନଃ ସୂତ୍ର ଏବଂ ଶାସ୍ତ୍ର ମଧ୍ୟ ସେ ମନୁଷ୍ୟଠାରେ ଥିବା ପ୍ରେମ, ଭକ୍ତି ଏବଂ ନବଧାଭକ୍ତି ତାଙ୍କ ଭିନ୍ନ ଅନ୍ୟ କେହି ନୁହେଁ । ଭଗବତ୍ ଗୀତା ଦଶମ ଅଧ୍ୟାୟରେ ପ୍ରକଟିତ ଭାବକୁ ଏଠାରେ ଲକ୍ଷ୍ୟ କରାଯାଇପାରେ ।

ସୃଷ୍ଟି ଆରମ୍ଭରେ ପରଂବ୍ରହ୍ମଙ୍କର ନିର୍ଦ୍ଦେଶରେ ପ୍ରାଣୀଜଗତର ବିସ୍ତାର ହେଲା, ପାରଂପାରିକ ଦୃଷ୍ଟିରୁ ଜୀବ ହେଉଛନ୍ତି ଚାରିଖାନି- ଏମାନେ ଚଳନ୍ତା ଭଦ । ନିଶ୍ଚଳ- ଚଉଦ, ଉଡ଼ା- ଚଉଦ, ବୁଡ଼ା ଚଉଦ, ଏପରି ମୋଟି ଛପନକୋଟି ଜୀବ ।

ସ୍ଥାବର ଜୀବଜନ୍ତୁ ଯେତେ, ଆଜ୍ଞାରୁ ଜନ୍ମିଲେ ସମସ୍ତେ ।
ଆଜ୍ଞା ଯେ ମୁନିଗଣ ପାଇ, ଗୋପରେ ସ୍ତିରୀରୂପ ହୋଇ ।
(୧୮ ଅଧ୍ୟାୟ)

ସେହି ଆଜ୍ଞାରୁ ବୌଦ୍ଧ ରୂପ ହେଲୁ । ଶ୍ରୀନୀଳକନ୍ଦେ ବିଜେକଲୁ ।
ଏମନ୍ତ ଗର୍ଭ ଗୁଣତାର, କେହି ନଜାଣେ ଅଗୋଚର
ଅକଳିତ ଗର୍ଭ ତା' ଦେହୀ, ମାଦଳ ରୂପରେ ଅଟଇ ।
ସେ ମାଦଳର ଯେ ମହିମା, କେହି ନାଜାଣେ ତା'ର ସୀମା
ମହାଶୂନ୍ୟଟି ତା' ଶରୀର, ତା' ଗର୍ଭୁ ଆଜ୍ଞାଯେ କାହାର ।
(୨୮ ଅଧ୍ୟାୟ)

ମହାଶୂନ୍ୟ ହେଉଛି ମୂଳାଧାର । ତହିଁରୁ ଓଁକାର ଏବଂ ଅ+ଉ+ମ ରୁତ୍ରିଦେବ ଏବଂ ଦୃଶ୍ୟମାନ ଜଗତର ସୃଷ୍ଟି । ଏ ପ୍ରସଂଗ ଋକ୍‌ବେଦ ଦଶମ ମଣ୍ଡଳ 'ପୁରୁଷସୂକ୍ତ' ଏବଂ 'ନାସଦୀୟ ସୂକ୍ତ'ରେ ପ୍ରତିପାଦିତ ।

ଓଡ଼ିଶାର ପୂର୍ବ କବିମାନଙ୍କ ବର୍ଣ୍ଣନାରେ ଜଗନ୍ନାଥଙ୍କଠାରୁ ଶ୍ରୀକୃଷ୍ଣ ସୃଷ୍ଟ ଗୋଟିଏ ବିଚାର ଦେଖିବାକୁ ମିଳେ । 'କଳାକୁ ଷୋଳକଳା କରି, ଗୋପେ ବିହରେ ନରହରି । ପୁନଶ୍ଚ ଶ୍ରୀକୃଷ୍ଣ ସମସ୍ତ ଅବତାର ମୂଳ 'ଦଶାନ୍ କୃତି କୃତେ କୃଷ୍ଣାୟତୁଭ୍ୟନମଃ' ଅନ୍ୟ ଏକ ବିଚାର ପ୍ରଚଳିତ ଥିଲା । କିନ୍ତୁ ମନ୍ତ୍ର ଅରକ୍ଷିତ ସେହି 'ଅଗୋଚର' 'ଅକଳିତ ଗର୍ଭ' ନିର୍ଦ୍ଦେଶରେ ଦଶାବତାର ଏବଂ ଶ୍ରୀଜଗନ୍ନାଥଙ୍କ ସୃଷ୍ଟି ହୋଇଥିବା ଦର୍ଶାଇ ଅଛନ୍ତି । ଅଦ୍ୱୈତ ଦର୍ଶନ ଅନୁସାରେ ସୃଷ୍ଟି କ୍ରିୟାରେ ପ୍ରଥମେ ଶୂନ୍ୟ= ଅଦୃଶ୍ୟରୁ ଦୃଶାଦୃଶ୍ୟ ଭୂତ ସୃଷ୍ଟି ହୋଇଅଛନ୍ତି । ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ପୃଥ୍ୱୀର ସୃଷ୍ଟି ହୋଇଅଛି ।

କ୍ଷରଂ ପ୍ରଧାନଂ ଅମୃାକ୍ଷରଂ ହରଃ
କ୍ଷରାତ୍ମାନୌ ଈଶତେ ଦେବଏକଃ- (ଶ୍ୱେତାଶ୍ୱେତର ଉ: ୧/୧୦)

କ୍ଷର ହିଁ ପ୍ରଧାନ, ଅକ୍ଷର ଅମୃତ, ଯେଉଁ ଅଦ୍ୱିତୀୟ ଦେବ କ୍ଷର ଓ ଆତ୍ମାର ପ୍ରଭୁ, ସେହି ପରମାତ୍ମା ହର ହିଁ ସଦାନନ୍ଦ ସ୍ୱରୂପ । ବାହ୍ୟାଚାର ବେଶଧାରୀ ସନ୍ନ୍ୟାସୀ ବୋଲାଉଥିବା ବ୍ୟକ୍ତିଗତ ନାନା କାରଣରୁ ବୈରାଗ୍ୟ ବେଶ ଧାରଣ କରିଥାନ୍ତି । ମହୀମଣ୍ଡଳ ଗୀତାରେ ଏହାର ବର୍ଣ୍ଣନା ଏହିପରି ।

କେ ଅବା ଅନ୍ନ ନପାଇଣ, କୌପୀନ ମାରି ଯାନ୍ତି ପୁଣ ।
କି ଅବା ବିଭା ନହୋଇଲେ, ଘରକୁ ତେଜି ଯାନ୍ତି ଭଲେ ।
ବୋଲନ୍ତି ଘରେ କିମ୍ପା ଥିବା, କୌପୀନ ମାରିଣ ଫେରିବା ।
କେ ଅବା କଳି ଗୋଳ କରି, କୌପୀନ ମାରି ଯାନ୍ତି ଫେରି ।
କେ ଅବା ଅପବାଦ ପାଇ, କୌପୀନ ମାର ସାରିଯାଇ ।
କେ ଅବା ପାଇଟି ଚିନ୍ତାରେ, କୌପୀନ ମାରି ସେହୁ ଫେରେ ।
କେ ଅବା ପର ବୁଦ୍ଧି କରି, କୌପୀନ ମାରି ଯାନ୍ତି ଫେରି ।
କାହାର ପୁତ୍ର ଯେ ନୋହିଲେ, ଘରକୁ ତେଜି ଯାନ୍ତି ଭଲେ ।
କେ ଅବା ଶିଖା ଶିଖି ହୋଇ, କୌପୀନ ମାରି ସଂଗେ ଯାଇ ।
କେ ଅବା ରୋଗ ପାଇ ଦେହେ, କୌପୀନ ମାରି ଫେରିଯାଏ ।
\+ + + + + +
କେ ଅବା ଜ୍ଞାନ ପାଇଦେହେ, ପଳାନ୍ତି ଘର ଛାଡ଼ି କହେ ।
ଗୁରୁ ଖୋଜି ସେବା କରଇ, ତାଙ୍କଠାରୁ କୌପୀନ ନେଇ ।
ଗୁରୁ ଯା ଶିଖାଇ ଦିଅନ୍ତି, ତହିଁରେ ମଜ୍ଜିଥାଇ ନିତି ।
ସେଟି ତୁମ୍ଭଙ୍କୁ ନ ଚିହ୍ନଇ, ଭକତି ପାଇବ ସେ କାହିଁ ?
ମୁଁ ହିଁ ଯେ ଏତେ ଯେ କଥାରେ, ଗୃହ ତେଜି ନାହିଁ ମନରେ ।

ଉପର୍ଯ୍ୟୁକ୍ତ କାରଣମାନଙ୍କ ମଧ୍ୟରୁ କୌଣସିଟି ପାଇଁ ସେ ଗୃହତ୍ୟାଗୀ ହୋଇ ନାହାଁନ୍ତି । ଈଶ୍ୱର ପ୍ରାପ୍ତିର ଦୃଢ଼ ଆକାଂକ୍ଷା ତାଙ୍କୁ ଏ ସରଣୀରେ ସନ୍ଧାନୀ କରିଛି । ସକାମ ଭକ୍ତିରେ ଈଶ୍ୱରଙ୍କ ବିବିଧ ଶକ୍ତିର ପୂଜନ ବାସ୍ତବ ଭକ୍ତି ପର୍ଯ୍ୟାୟଭୁକ୍ତ ନୁହେଁ । 'କର ନିଷ୍କାମ ଭକ୍ତି ଗୋ' ବୋଲି ମହିମା ସନ୍ଥ ଭୀମଭୋଇ କହିଛନ୍ତି । ଭଗବଦ୍ ଗୀତା (ଅ. ୧୭/୪-୫)ରେ ମଧ୍ୟ ପୂଜନ ଭଜନର ଶ୍ରେଣୀ ବିଭାଜନ କରାଯାଇଛି ।

ଯଜନ୍ତେ ସାତ୍ତ୍ୱିକା ଦେବାନ୍ ଯକ୍ଷ ରକ୍ଷାଂସି ରାଜସାଃ
ପ୍ରେତାନ୍ ଭୂତଗଣାଂଶ୍ଚାନ୍ୟେ ଯଜନ୍ତେ ତାମସା ଜନାଃ (୧୭/୪)
ଅଶାସ୍ତ୍ର ବିହିତଂ ଘୋରଂ ତପ୍ୟନ୍ତେ ଯେ ତପୋଜନାଃ
ଦମ୍ଭାହଂକାର ସଂଯୁକ୍ତାଃ କାମରାଗ ବଳାନ୍ୱିତା । (୧୭/୫)

ସାତ୍ତ୍ୱିକ ଲୋକେ ଦେବତାମାନଙ୍କୁ, ରାଜସ ଲୋକେ ଯକ୍ଷ ଓ ରାକ୍ଷସମାନଙ୍କୁ ଏବଂ ତାମ୍‌ସା ଲୋକେ ପ୍ରେତ, ଭୂତଙ୍କୁ ପୂଜା କରନ୍ତି । (୪) ଯେଉଁମାନେ ଶାସ୍ତ୍ରବିଧି

ରହିତ କେବଳ ମନଃକଳ୍ପିତ ଘୋର ତପ ଆଚରଣ କରନ୍ତି ତଥା ଦମ୍ଭ, ଅହଂକାର ଯୁକ୍ତ ହୋଇ କାମନା, ଆସକ୍ତି ଓ ବଳର ଅଭିମାନର ମଧ୍ୟ ଜଡ଼ିତ ରହନ୍ତି । (୫)

କେ ଅବା ଈଶ୍ୱର ପୂଜନ୍ତି, ତୁମ୍ଭ ଭକତି ନ ଜାଣନ୍ତି ।
କେ ଅବା ଜଟା ମୁଣ୍ଡେ ବହେ, ତୁମ୍ଭ ଭକତି ନାହିଁ ଦେହେ ।
କେ ଅବା ସଖୀ ରୂପହ୍ୱନ୍ତି, ତୁମ୍ଭ ଭକତି ନ ଜାଣନ୍ତି ।
କେ ଅବା ଦୁର୍ଗା ସେବା କରେ, ତୁମ୍ଭ ଭକତି ନାହିଁ ତାରେ ।

ଭକ୍ତି ଈଶ୍ୱର ଆରାଧନାର ଶ୍ରେଷ୍ଠ ମାର୍ଗ । ଏ ସଂବଂଧରେ ମହୀମଣ୍ଡଳ ଗୀତାରେ ସନ୍ଥ ମହତ୍ମାଙ୍କ ବାଣୀ ଏହିପରି-

ଆହେ ସୁଜନମାନେ କହି, ଭକ୍ତିରେ ଥଳ କୂଳ ନାହିଁ ।
ପ୍ରଭୁଙ୍କ ଦୟା ଯାରେ ଶୁଣ, ସେ ସ୍ଥଳ ପାରିବସେ ପୁଣ ।
ନୋହିଲେ ମୂଳ ତହିଁ ନାହିଁ, ଅଥଳ ଯୋଗ ସେ ଅଟଇ ।
ଆଉ ଯୋଗରେ ସ୍ଥଳ ଅଛି, ଭକ୍ତିରେ ସ୍ଥଳ ନାହିଁ କିଛି ।

ଭାରତବର୍ଷର ସଂଥ ସାହିତ୍ୟରେ ଭକ୍ତିର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । ଉତ୍ତମା ଭକ୍ତିର ସୁନ୍ଦର ବର୍ଣ୍ଣନା 'ନାରଦ ପଞ୍ଚରାତ୍ର'ରୁ ଦେଖନ୍ତୁ-

ସର୍ବୋପାଧି ବିନିର୍ମୁକ୍ତଂ ତତ୍ପର ତ୍ୱେନ ନିର୍ମଳମ୍ ।
ହୃଷୀକେଶ ହୃଷୀକେଶ ସେବନଂ ଭକ୍ତି ରୁଚ୍ୟତେ ।

ଚଉରାଅଶୀ ଲକ୍ଷ ଯୋନି ଭ୍ରମଣ କରି ଜୀବ ମନୁଷ୍ୟ ଭାବେ ଏବେ ଜନ୍ମଲାଭ କରିଛି । ଜୀବ ଯେ ବ୍ରହ୍ମଙ୍କର ଅଂଶ । ଏହା ଜାଣି ନପାରି ଦେହାଭିମାନ ବଶତଃ ଇନ୍ଦ୍ରିୟ ଓ ଶରୀରକୁ ମୁଁ ବୋଲି ଭାବୁଛି । ଜୀବନର ବାସ୍ତବ ଲକ୍ଷ୍ୟ ପରମାତ୍ମାଙ୍କ ସହ ଏକ୍ୱ ହେବା । ଏ ପ୍ରସଂଗରେ ମହୀମଣ୍ଡଳ ଗୀତାରେ ସନ୍ଥ କହିଛନ୍ତି-

ପର ଘରେ ତୁ ରହିଛୁ, ଆପଣା ଘର ନଜାଣୁଛୁ ।
ଆପଣା ଘର ହେତୁ କର, ପର ଘରରେ ତୁ ବିହର ।
× × × × × ×
ଦେବତା ଏହି ଦେହେଛନ୍ତି, ଏହା ନଜାଣେ ମୂଢ଼ମତି ।
ପିତଳ କାଷ୍ଠ ପାଷାଣକୁ, ଦେବତା ବୋଲି ପୂଜେ ତାକୁ । (୩୮ ଅଧ୍ୟାୟ)

ଏ ସଂବଂଧରେ ଉପନିଷଦର ବର୍ଣ୍ଣନା ଦେଖନ୍ତୁ-

ଦେହୋ ଦେବାଳୟଃ ପ୍ରୋକ୍ତଃ ସଜୀବଃ କେବଳଃ ଶିବଃ

ତ୍ୟଜେଦଜ୍ଞାନ ନିର୍ମାଲ୍ୟଂ ସୋଽହଂ ଭାବେନ ପୂଜୟେତ୍ (ସ୍କନ୍ଦ. ଉପନିଷଦ)
ପୁନଃ- ଶଙ୍କରାଚାର୍ଯ୍ୟଙ୍କ ଉକ୍ତିରୁ ଲକ୍ଷ କରନ୍ତି-

'ଚିଦାନନ୍ଦ ରୂପଃ ଶବୋଽହଂ ଶିବୋଽହମ୍'
ତୋ ନାମ ଚାରିବେଦ ଧ୍ୟାନ୍ତି, ଚାରିଦିଗରେ ସେ ଫେରନ୍ତି ।
ତୋ ନାମ ଜଗନ୍ନାଥଧାୟୀ, ପୂର୍ବ ଦ୍ୱାରକୁ ସେ ଜଗଇ ।
ରାମ ଯେ ତୋ ନାମ ଚିନ୍ତିଲେ, ଦକ୍ଷିଣ ଦ୍ୱାରେ ଦ୍ୱାରୀ ହେଲେ ।
କୃଷ୍ଣ ଯେ ତୋ ନାମ ଚିନ୍ତନ, ପଶ୍ଚିମ ଦ୍ୱାର ସେ ଜଗନ୍ତି ।
ନାରାୟଣ ଯେ ନାମଧାୟୀ, ଉତ୍ତର ଦ୍ୱାରା ସେ ଜଗଇ ।

ଏହିପରି ସେହି ଅବ୍ୟକ୍ତ ପୁରୁଷଙ୍କ ଶକ୍ତିକୁ ଧାରଣ କରି ଶାସ୍ତ୍ର, ପୁରାଣର ଦେବତାଗଣ ସ୍ୱ ସ୍ୱ କର୍ମରେ ନିରତ ହେଉଛନ୍ତି । ସେହି ପଥରେ ଯିବା ପାଇଁ ଏକମାତ୍ର ପାଥେୟ 'ଭକ୍ତି' । ଏଠାରେ ବିଗ୍ରହ ପରିକଳ୍ପନା କିମ୍ବା ଉପଚାର ପୂଜା ସମ୍ବନ୍ଧରେ ଲେଶ ମାତ୍ର ସୂଚନା ନାହିଁ ।

ଏ ସଂବଂଧରେ ତୈତ୍ତିରୀୟୋପନିଷଦ୍‌ର ବର୍ଣ୍ଣନା ଦେଖନ୍ତି ।

ଯତୋବା ଇମାନି ଭୂତାନି ଜାୟନ୍ତେ ଘେନ ଜାତା ନି ଜୀବନ୍ତି ।
ଯତ୍ପ୍ରଯନ୍ତ୍ୟଭିସଂ ବିଶନ୍ତି, ତଦ୍ୱିଜିଜ୍ଞସସ୍ୱ, ତଦ୍ ବ୍ରହ୍ମେତି । (୩/୧/୧)

ଯହିଁରୁ ସମସ୍ତ ଚର- ଅଚର, ଜଡ- ଚେତନ ଉତ୍ପନ୍ନ ହୋଇ, ଯାହାର ସହଯୋଗର ବଳ ପ୍ରାପ୍ତିକରି ଜୀବନ୍ତ ହୋଇଥାନ୍ତି, ବା ଜୀବନୋପଯୋଗୀ କ୍ରିୟା କରିଥାନ୍ତି, ମହାପ୍ରଳୟ ସମୟରେ ଯହିଁରେ ଏ ସମସ୍ତ ଚରାଚର ପ୍ରାଣୀ ବିଲୀନ ଯାଆନ୍ତି, ତାଙ୍କୁ ବାସ୍ତବରେ ତୁ ଚିନ୍ତା କର । ସେ ହେଉଛନ୍ତି ବ୍ରହ୍ମ ।

ପୁନଃ ଯେତୋ ବାଚାନିବର୍ତନ୍ତେ, ଅପ୍ରାପ୍ୟ ମନସାସହ
ଆନନ୍ଦଂ ବ୍ରହ୍ମଣୋଂ ବିଦ୍ୱାନ୍ ନ ବିଭେତି କଦାଚ ନେତି ।

ଯେଉଁଠି ମନ ସହିତ ବାଣୀ ଆଦି ଇନ୍ଦ୍ରିୟ ତାକୁ ନପାଇ କରି ଲେଉଟି ଆସନ୍ତି, ସେହି ବ୍ରହ୍ମକୁ ଆନନ୍ଦକୁ ଜାଣିଲା ବ୍ୟକ୍ତି କେବେ ମଧ ଭୟ କରେ ନାହିଁ । ଅର୍ଥାତ୍ ସେହି ବ୍ରହ୍ମଙ୍କ ସ୍ୱରୂପ ପ୍ରକାଶ କରିବା ପାଇଁ ମନ, ବାଣୀ, ସମର୍ଥ ନୁହଁନ୍ତ, ଅତଏବ ସେ ଅବ୍ୟକ୍ତ । ଯେ ଅମୂର୍ତ୍ତି ତାଙ୍କୁ ମୂର୍ତ୍ତି ମଧ୍ୟରେ କିପରି ସୀମାବଦ୍ଧ କରାଯିବ ବା କରାଯାଇପାରିବ ? ବେଦାନ୍ତର ଏହି ଅତ୍ୟନ୍ତ ଯୁକ୍ତି ସଂଗତ ଏବଂ ଉଦାର ତତ୍ତ୍ୱଟିର ପରିପୋଷକ କରିଛନ୍ତି, ସନ୍ଥ ଅରକ୍ଷିତ ତାଙ୍କ ମହୀମଣ୍ଡଳ

ଗୀତାର ଛତ୍ରେ ଛତ୍ରେ । ସୂର୍ଯ୍ୟ, ଚନ୍ଦ୍ର, ପବନ, ଅନଳ, ପୃଥିବୀ ପ୍ରଭୃତି ପ୍ରକୃତି ସହ ଏକାତ୍ମତା ରକ୍ଷାକରି ଜୀବନରେ ବିଚରଣ କରିବାର ପ୍ରେରଣା ଲକ୍ଷ୍ୟଣୀୟ ।

ଦେଖ ଆକାଶ ଶୂନ୍ୟେ ଥାଇ, ସେ ଭାବେ ରହ ମୁଁ କହଇ ।
ଦେଖ ଏ ସୂର୍ଯ୍ୟ ଘୋଟି ଅଛି, ତା' ତେଜ କାହିଁ ନଛାଡ଼ିଛି ।
ତୁହିଟି ସେହି ଭାବେ ରହ, ତେବେ ରହିବ ସିନା ଦେହ ।

(୧୭ଜଣ ଅଧ୍ୟାୟ)

ପରମେଶ୍ୱରଙ୍କ ସୃଷ୍ଟି ସୂର୍ଯ୍ୟ, ଚନ୍ଦ୍ରମାଦି, ସେହି ଅନୁକ୍ରମରେ ମନୁଷ୍ୟ ମଧ ପରମେଶ୍ୱରଙ୍କର ସୃଷ୍ଟି । ଅତଏବ ପିଣ୍ଡ- ବ୍ରହ୍ମାଣ୍ଡ ମଧରେ ଘୋର ସାମଂଜସ୍ୟ ବିଦ୍ୟମାନ ।

ପିଣ୍ଡ ବ୍ରହ୍ମାଣ୍ଡ ଏକମତ, ଜାଣନ୍ତି ସୁଜ୍ଞାନୀ ପଣ୍ଡିତ ।

ସୁତରାଂ ଜୀବନ ଧାରଣ ବର୍ଦ୍ଧନ ଏବଂ ବିକାଶ ପାଇଁ ପ୍ରକୃତି ଅନୁଗତ ହେବା ବିଧେୟ । ଏହି ପ୍ରସଂଗକୁ ଭାଗବତରେ ଚର୍ଚ୍ଚା କରିବାକୁ ଯାଇ କୁହାଯାଇଛି-

ପୃଥିବୀ ବାୟୁରାକାଶ ମାପୋଽଗ୍ନିଶ୍ଚନ୍ଦ୍ରମା ରବିଃ
କପୋତୋଽଜଗରଃ ସିନ୍ଧୁଃ ପତଙ୍ଗୋ ମଧୁକୃଦ୍ ଗଜଃ ।
ମଧୁହା ହରିଣୋ ମୀନଃ ପିଙ୍ଗଳା କୁରରୋଽର୍ଭକଃ
କୁମାରୀ ଶରକୃତ୍ ସର୍ପ ଊର୍ଣ୍ଣନାଭିଃ ସୁପେଶକୃତ୍ ॥ ୩୪ ॥

(ଭାଗବତ, ୧୧ଶ ସ୍କନ୍ଧ ୭ମ ଅଧ୍ୟାୟ)

ଜଗନ୍ନାଥ ଦାସଙ୍କ ବର୍ଣ୍ଣନା ଏହିପରି-

ପୃଥିବୀ ପବନ ଅନଳ । ଆବର ଆକାଶ ମଣ୍ଡଳ ।
ରବି ଶଶାଙ୍କ ଆପସିନ୍ଧୁ । ଭ୍ରମର ସର୍ବ ପୁଷ୍ପ ବନ୍ଧୁ ।
କପୋତ ପକ୍ଷୀ ଗୁରୁ ମୋର । ପତଂଗ ସର୍ପ ଅଜଗର ।
ମୀନ ପିଂଗଳା ବେଶ୍ୟାନାରୀ । କୁରର କୁମର କୁମାରୀ ।
ହରିଣ ଉନାଭ କରି । ଶର କାରକ ମଧୁହାରୀ । ।
ଆବର କୀଟ ପେଶସ୍କାରୀ, ମୁଁ ଏତେ ଗୁରୁ ଅଛି କରି ॥ ୩୩/୩୪ ॥

(ଓ.ଭା. ୧୧ଶ. ୮ମ. ଅଧ୍ୟାୟ)

ପ୍ରକୃତି ବା (ଭୂତ) ଯାହା ମନୁଷ୍ୟ ବା ଜୀବ ସୃଷ୍ଟି ପୂର୍ବରୁ ନିର୍ମିତ ହୋଇ ସାରିଥିଲା ଏବଂ ମନୁଷ୍ୟ ମଧ ସେହି ଭୂତ (ପଞ୍ଚଭୂତ) ଦ୍ୱାରା ସୃଷ୍ଟି । ସୁତରାଂ ମନୁଷ୍ୟ

ସେମାଙ୍କ ଗୁଣ ଧର୍ମ ଗ୍ରହଣ କରିବା ଦ୍ୱାରା ସ୍ୱାଭାବିକ ଦୃଷ୍ଟିରୁ ପରମେଶ୍ୱରଙ୍କ ଦିଗରେ ଉନ୍ମୁଖ ହୋଇ ପାରିବ । ଏଠାରେ ସୂଚାଇ ଦେବା ଉଚିତ ଯେ 'କୃତ୍ରିମତା' ସକଳ ପ୍ରକାର ଅନାଚାର, ଦୁରାଚାରର ଉଦ୍‌ଗମ ସ୍ଥଳ । ସ୍ୱାଭାବିକତା, ପ୍ରାକୃତିକତା ଦ୍ୱାରା ଶରୀର-ମନ-ପ୍ରାଣ ଆଦିର ସ୍ୱଚ୍ଛଳତା ତଥା ମାନବ ଜୀବନର ସଫଳତା ଦିଗରେ ବାସ୍ତବ ମାର୍ଗ ଉନ୍ମୋଚିତ ହୋଇଯିବ । ସଂକୀର୍ଣ୍ଣ ଚେତନାରୁ ବିଶ୍ୱତୋମୁଖୀ, ସାର୍ବଜନୀନ କଲ୍ୟାଣର ମାର୍ଗ ଉଦ୍‌ଘାଟିତ ହୋଇଯିବ । 'ମହୀମଣ୍ଡଳ ଗୀତା'ର ୬୭ଶ ଅଧ୍ୟାୟ ଗଦ୍ୟରେ ଲିଖିତ । ପ୍ରାଚୀନ ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶର ବସ୍ତୁତଃ ଏହା ଏକ ସ୍ମରଣୀୟ ସୃଷ୍ଟି ।

ଅଦେଖା ଦେଖିବ, ଅତୋଳା ତୋଳିବ, ଅମପା ମାପିବ, ଅସାଧ ସାଧିବ, ଅଭକ୍ଷ ଭକ୍ଷିବ, ଅଜପା ଜପିବ, ଅକର୍ମ କରିବ- ଏତେ କର୍ମ କରିବ- ଏତେ କର୍ମ କରିପାରିଲେ ବ୍ରହ୍ମକୁ ଚିହ୍ନିବ ।

+ + + + + +

କେବେ ଭୟ ନକରଇ, ମନେ ନଗଣଇ, ଶୁଣହୋ ମନ ଭକ୍ତିର ମହିମା, କିଛି ମନେ ନଜାଣଇ, କେବଳ ବ୍ରହ୍ମକୁ ଜାଣଇ, ବ୍ରହ୍ମ ବ୍ୟତିରେକେ କାହାକୁ ନଜାଣଇ, ଜଗତଯାକ- ବ୍ରହ୍ମ ମଣଇ, ଏକ ବ୍ରହ୍ମକୁ ଭାବଇ- ବ୍ରହ୍ମକୁ ସଂଗ କରିଥାଇ, ସେ ବ୍ରହ୍ମକୁ ଜାଣଇ, ବ୍ରହ୍ମକୁ ଧ୍ୟାନ, ବ୍ରହ୍ମରେ ସ୍ମରଣ, ବ୍ରହ୍ମରେ ଉପାସନା, ବ୍ରହ୍ମରେ ରଚନା, ବ୍ରହ୍ମରେ ଗାୟନ, ବ୍ରହ୍ମରେ ଲୀନ ହୋଇ ।

ଜାତି, ଧର୍ମ, ଭାଷାର ଉର୍ଦ୍ଧ୍ୱରେ ସକଳ ମନୁଷ୍ୟର ଏକ ସାଧାରଣ ଆକାଂକ୍ଷା ରହିଛି, ସମସ୍ତ ବିଭେଦ, ବ୍ୟତିକ୍ରମର ଶୀର୍ଷରେ ଯାହା ସମସ୍ତଙ୍କର କାମ୍ୟ, ଯାହାକୁ ପ୍ରାପ୍ତ ହେଲେ ଆଉ କିଛି ପ୍ରାପ୍ତିର ଆଶା ରହିବ ନାହିଁ । ସେହିପରି ଅବ୍ୟୟ, ଅକ୍ଷୟ, ନିତ୍ୟ, ସନାତନ, ଶୁଦ୍ଧ ବୁଦ୍ଧଙ୍କୁ ଧ୍ୟାନ କରିବାକୁ ସୂଚାଇଛନ୍ତି ।

ଅକ୍ଷର ଯେବେ ସେବି ଥିବୁ, ସର୍ବ ଭାଷାକୁ ତୁ ଜାଣିବୁ ।
ସର୍ବ ଭାଷାକୁ ତୁ ଜାଣିଲେ, ଭକ୍ତି ପ୍ରାପତ ହେବ ଭଲେ ।
ମୁହିଁ ଅକ୍ଷର ବ୍ରହ୍ମ ହେଲି, ମହାଶୂନ୍ୟଟି ବୋଲାଇଲି ।

ସମସ୍ତ ସ୍ୱରବର୍ଣ୍ଣ ମଧ୍ୟରେ ଆଦିସ୍ୱର ହେଉଛି 'ଅ' । ଗୀତା ଅଧ୍ୟାୟ ୧୦ ଶ୍ଳୋକ ୩୩ରେ ଅର୍ଜୁନକୁ ଆପଣା ବିଭୂତି ଦିଗ୍‌ଦର୍ଶନ କରାଇବା ପାଇଁ କହିଛନ୍ତି 'ଅକ୍ଷରାଣା

ମକାରୋଽସ୍ମି' ମୁଁ ଅକ୍ଷରମାନଙ୍କର ଅକାର । ଅର୍ଥାତ୍ ସମସ୍ତ ବାଣୀରେ ଯେଉଁ ଆଦିସ୍ୱର 'ଅ' କାର ରହିଛି, ସେ ହେଉଛି ମୁଁ । ବେଦରେ ମଧ୍ୟ କୁହାଯାଇଛି 'ଆକାରୋବୈ ସର୍ବବାକ୍' ଅର୍ଥାତ୍ ସଂପୂର୍ଣ୍ଣବାଣୀ ହେଉଛି ଆକାର ସ୍ୱରୂପ । ସର୍ବଭାଷା ଜାଣିବାର ତାତ୍ପର୍ଯ୍ୟ ବ୍ୟକ୍ତିର ପ୍ରୟୋଜନ ଅଭିବ୍ୟକ୍ତିର ସୂଚନା ପ୍ରାପ୍ତି । ଏହା 'ଯେ ମାଂ ପଶ୍ୟତି ସର୍ବତ୍ର ସର୍ବଂଚମୟୀ ପଶ୍ୟତି' (ଗୀତା) (ଅ. ୬/୩୦) ଯେଉଁ ବ୍ୟକ୍ତି ସକଳ ପ୍ରାଣୀଠାରେ ଆତ୍ମାରୂପରେ ମୋତେ ଅର୍ଥାତ୍ ବାସୁଦେବଙ୍କୁ ହିଁ ବ୍ୟାପୀ ରହିଥିବା ଦେଖନ୍ତି ଓ ସକଳ ପ୍ରାଣୀଙ୍କୁ ମୋର ଅର୍ଥାତ୍ ବାସୁଦେବଙ୍କ ଅନ୍ତର୍ଗତ ଥିବା ଦେଖନ୍ତି, ତାଙ୍କ ପାଇଁ ମୁଁ ଅଦୃଶ୍ୟ ହୁଏ ନାହିଁ କିମ୍ବା ସେ ମୋ ପାଇଁ ଅଦୃଶ୍ୟ ହୁଅନ୍ତି ନାହିଁ । ୩୦, ସେ ଅକ୍ଷର ବ୍ରହ୍ମ ହେବା ଏବଂ ମହାଶୂନ୍ୟ ହେବା ଯେଉଁ ସୂଚନା ଦେଇଛନ୍ତି ତାହା ମଧ୍ୟ ବେଦାନ୍ତ ସମର୍ଥିତ । 'ବ୍ରହ୍ମବିଦ୍ ବ୍ରହ୍ମୈବ ଭବତି' । ବ୍ରହ୍ମବିଦ୍ ସ୍ୱୟଂ ବ୍ରହ୍ମ ସ୍ୱରୂପ । ଜଗତ୍ ଗୁରୁ ଶଂକର 'ଜୀବ ବ୍ରହ୍ମୈବନାପରଃ' କହି ଜୀବ ଏବଂ ବ୍ରହ୍ମ ମଧ୍ୟରେ ଏକାତ୍ମତା ନିଦର୍ଶନ କରି ଅଛନ୍ତି ।

ବ୍ରହ୍ମ ବା ଇଦମଗ୍ର ଆସୀତ୍ତଦାତ୍ମା ନ ମେ ବା ବତେ । ଅହଂ ବ୍ରହ୍ମାସ୍ମୀତ ତସ୍ମାତସ୍ପର୍ବଂ

ମଭବତ୍ତଦ୍ୟୋ ଯୋ ଦେବାନାଂ ପ୍ରତ୍ୟବୁଧ୍ୟତ ଦ ଏବ ତଦ୍ ଭବତ୍ .....ତ ଦିଦମପ୍ୟେତର୍ହି

ଯ ଏବଂ ବେଦାହଂ ବ୍ରହ୍ମାସ୍ମିତି ସ ଇଦଂ ସର୍ବଂ ଭବତି ତସ୍ୟ ହ ନଦେବାଶ୍ଚ୍ୟ ନାଭୁତ୍ୟା ଇଶତେ ।

(ତୈତ୍ତିରୀୟୋପନିଷଦ୍- ୧/୪/୧୦)

ପ୍ରଥମେ ଏହା ବ୍ରହ୍ମ ଥିଲା । ସେ ସ୍ୱୟଂକୁ ଜାଣିଲେ ଯେ ମୁଁ ବ୍ରହ୍ମ । ଅତଃ ତାହା ସର୍ବ ହୋଇଗଲା । ତାହାକୁ ଦେବତାମାନଙ୍କ ମଧ୍ୟରୁ ଯିଏ ଜାଣିଲା ସେ ତଦ୍ରୁପ ହୋଇଗଲା । ସେହିପରି ଏହି ବ୍ରହ୍ମକୁ ଯେ ପ୍ରାପ୍ତ ଶୁଦ୍ଧ ଜ୍ଞାନଦ୍ୱାରା ଏହିପରି ଜାଣିଲା ଯେ 'ମୁଁ ହେଉଛି ବ୍ରହ୍ମ' ତେବେ ସେ ମଧ୍ୟ ସର୍ବ ହୋଇଗଲା, ବ୍ରହ୍ମ ହୋଇଗଲା, 'ନେହ ନାନାସ୍ତି କିଞ୍ଚନ' । 'ମହୀମଣ୍ଡଳ ଗୀତା' ଏବେ ଇଂରାଜୀ ଭାଷାନ୍ତର ହୋଇଛି ।



# ସନ୍ଥ ହାଡ଼ିଦାସ- (ଛତିଆବଟ)

ଉତ୍କଳୀୟ ସନ୍ଥ ପରଂପରାରେ ବିଖ୍ୟାତ ପଞ୍ଚସଖାଙ୍କ ଧର୍ମ- ଧାରା ଆଧାରରେ ବିଭିନ୍ନ ସ୍ଥାନରେ ସାଧୁମାନଙ୍କର ଆବିର୍ଭାବ ଘଟିଥିବା ଜଣାଯାଏ । ସେହି ସୂତ୍ରରେ ଛତିଆବଟର ପ୍ରତିଷ୍ଠାତା ରୂପେ ହାଡ଼ି ଦାସ (ଖ୍ରୀ ୧୭୩୨- ୧୮୩୨) ଚିରସ୍ମରଣୀୟ ହୋଇ ରହିବେ । ପଞ୍ଚସଖାଙ୍କ ପରେ ପରେ ଓଡ଼ିଶାର ଧର୍ମୀୟ ତଥା ସାଂସ୍କୃତିକ କ୍ଷେତ୍ରରେ ଘୋର ବିପର୍ଯ୍ୟୟ ଦେଖାଦେଲା । ଶ୍ରୀଚୈତନ୍ୟଙ୍କ ପ୍ରଚାରିତ ଶୁଦ୍ଧାଭକ୍ତି, ରାଜାନୁଗ୍ରହ ଲାଭ କରିବା ସହ ଅପେକ୍ଷାକୃତ ସହଜ ପନ୍ଥା ହୋଇଥିବାରୁ ବିଶେଷ କରି ଓଡ଼ିଶାର ଉପକୂଳ ଅଂଚଳରେ ଏହି ଭକ୍ତି- ବନ୍ୟା ପ୍ରବାହିତ ହେବାକୁ ଲାଗିଲା । ଫଳରେ ଉତ୍କଳୀୟ ଜ୍ଞାନମିଶ୍ରା ଭକ୍ତି ସ୍ୱାଭାବିକ ଭାବେ ଅବହେଳିତ ହୋଇଥିବା ଲକ୍ଷ୍ୟ କରାଯାଇପାରେ । ମତ, ପନ୍ଥା ଅନୁସାରେ ଧର୍ମୀୟ ଧାରା ବହୁଧା ବିଭାଜିତ ହେବା ସହିତ କୃତିମ୍ରତା ପୂଜା- ପଦ୍ଧତିରେ ଶାଶ୍ୱତ ଆରାଧନାର ମାର୍ଗକୁ ସଂକୁଚିତ କରି ଦିଆଗଲା । ଜାତି ଭେଦର କଠୋରତା ହେତୁ ସମାଜର ଐକ୍ୟ ବାଧାପ୍ରାପ୍ତ । ଠିକ୍ ଏହି ସମୟରେ ବ୍ରିଟିସମାନଙ୍କ ଶାସନ ଏବଂ ଖ୍ରୀଷ୍ଟିୟାନ ଧର୍ମର ପ୍ରଚାର ପ୍ରସାର ତଥା ପୁସ୍ତକ (ଛାପାବହି) ବହୁଳ ସଂଖ୍ୟାରେ ପରିପ୍ରକାଶ ହେତୁ ହିନ୍ଦୁ ଧର୍ମ ଉପରେ ଶକ୍ତ ଆଘାତର ସମୟ ବୋଲି ବୋଲିବାକୁ ହେବ ।

ଏହି ସମୟରେ ସନ୍ଥ ହାଡ଼ି ଦାସଙ୍କର ଆର୍ବିଭାବ । ଯାଜପୁର ଜିଲ୍ଲା ଅନ୍ତର୍ଗତ ଛତିଆର ଅଦୂରବର୍ତ୍ତୀ ଚମ୍ପାପୁର ଗ୍ରାମରେ ମାଘମାସ- ମକର ସଂକ୍ରାନ୍ତିରେ ଜନ୍ମଗ୍ରହଣ କରିଥିଲେ । ସେ ତାଙ୍କ ପିତା ଚେମେଇ ଓଝା, ମାତା ଦେବକୀ ଓ ନିଜ ନାମ ହାଡ଼ି ବୋଲି ବର୍ଣ୍ଣନା କରିଅଛନ୍ତି । ହାଡ଼ିଦାସଙ୍କ ପୂର୍ବଜନ୍ମ ନେଇଥିବା ସନ୍ତାନଗଣ ନଷ୍ଟ ହୋଇ ଯାଇଥିବାରୁ ତାଙ୍କ ପିତା-ମାତା ଉତ୍କଳୀୟ ଲୋକଚଳଣି ଦୃଷ୍ଟିରୁ କୌଣସି ଏକ ଦେବତାଙ୍କୁ ଉତ୍ସର୍ଗ କରି 'ହାଡ଼ି' ନାମ ପ୍ରଦାନ କରିଥିଲେ ।

କବି ଶୂଦ୍ର କୁଳ ସଂଭୂତ ଏବଂ କମାର ଜାତିରେ ଜନ୍ମ ନେଇଥିବାରୁ ଅନେକତ୍ର ନିଜକୁ କାରିଗର ଓ ବନ୍ଧାଣୀ ରୂପେ ପରିଚୟ ଦେଇଅଛନ୍ତି । ସେ ଶାଳ କାର୍ଯ୍ୟ କରି ଜୀବିକା ନିର୍ବାହ କରୁଥିଲେ । କୌଣସି କାରଣରୁ ସେ ଛତିଆକୁ ଉଠିଆସି ଲତା ଗୁଳ୍ମ ବେଷ୍ଟିତ ପାହାଡ଼ ସ୍ଥିତ ବଟବୃକ୍ଷ ନିକଟରେ ବସା କରି ଲୌହ କର୍ମ କରିବାକୁ ଲାଗିଲେ । ତତ୍‌କାଳୀନ ଗ୍ରାମ ଚାଟଶାଳୀର ଶିକ୍ଷା ବ୍ୟତୀତ କବି ବେଶୀ କିଛି ବିଦ୍ୟା ଅଧ୍ୟୟନ କରିପାରିନଥିଲେ । ଭାଗବତରୁ ପ୍ରେରଣା ଲାଭକରି ସେ କବିତ୍ୱ ଶକ୍ତିର ଅଧିକାରୀ ହୋଇପାରିଥିଲେ ବୋଲି ଗ୍ରନ୍ଥର ଅନେକ ସ୍ଥାନରେ ସୂଚନା ଦେଇଛନ୍ତି । ଯଥା ସମୟରେ ବୟଃ ପ୍ରାପ୍ତ ହେବାପରେ ମସ୍ତରାମ ନାମକ ଜନୈକ ମଣିମା ସାଧୁଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ଦୀକ୍ଷା ଗ୍ରହଣ ପରେ ନିଜର କୁଳ- ସଂଜ୍ଞା ପରିବର୍ତ୍ତିତ ହୋଇ 'ଦାସ' ସଂଜ୍ଞା ଧାରଣ କଲେ । ସେହି ଦିନଠାରୁ ନିଜକୁ ହାଡ଼ିଦାସ, ହରିଦାସ ନାମରେ ପରିଚିତ କରାଇ ଅଛନ୍ତି । ହରିଙ୍କର ଦାସ, ଭୃତ୍ୟ ବା ଚରଣ ସେବକ ।

ବାଲ୍ୟକାଳରେ ପିତୃ ବିୟୋଗ, ଯୌବନରେ ପତ୍ନୀ ବିୟୋଗ ପରେ ପୁନଃ ଚମ୍ପାପୁର ଗ୍ରାମ ଦାମୋଦର ମହାରଣାଙ୍କ କନ୍ୟା ପଦ୍ମାବତୀ= ତୁଳକୁ ବିବାହ କରିଥିଲେ । ସ୍ୱଭାବତଃ ତାଙ୍କର ଶାରୀରିକ ଅସୁସ୍ଥତା ଲାଗି ରହୁଥିଲା । ଫଳରେ ଚଳଣି ପାଇଁ ଯେତିକି ଅର୍ଥର ପ୍ରୟୋଜନ ତାହା ମଧ ଉପାର୍ଜନ କରିବାକୁ ସେ କ୍ଷମ ହୋଇ ପାରୁନଥିଲେ । ରାତ୍ରିରେ ଦୀପ ଜାଳିବା ପାଇଁ ତେଲ ମଧ ନଥାଏ । ତାଳବରଡ଼ା କୁଡ଼ିଆ ସେଥିରେ ଛିଣ୍ଡା କତରାରେ ରାତି ବିତିଥିବାର ବର୍ଣ୍ଣନା ତାଙ୍କ ରଚନାବଳୀରୁ ସୂଚିତ ହୁଏ ।

ଜୀବନର ବହୁ ସମୟ ବିଭୁ ଆରାଧନାରେ ଅତିବାହିତ ହେଉଥିଲା । ପିଲାଦିନରୁ ତାଙ୍କର ଦୃଢ଼ ଈଶ୍ୱର ବିଶ୍ୱାସ ଥିବାର ଜଣାଯାଏ । ଜାତି ଭେଦର ବିଲୋପ ସାଧନ ପାଇଁ, ଏକ ବ୍ରହ୍ମଙ୍କର ସନ୍ତାନ ବିଚାରରେ ସେ ସୁଦୃଢ଼ ଥିଲେ । ସମଦର୍ଶୀ ଚିନ୍ତାଧାରା ତତ୍‌କାଳୀନ ସମାଜର କୁଳୀନ ଶାସନୀ ବ୍ରାହ୍ମଣଙ୍କ ପକ୍ଷରେ ଅସହ୍ୟ ହୋଇଥିଲା । ଦର୍ପଣୀ ଗଡ଼ର ତତ୍‌କାଳୀନ ମୁସଲମାନ ଶାସକ ଗୁଲଜାର ହୋସେନ୍‌ଙ୍କ ନିକଟରେ ଅଭିଯୋଗ କରିଥିଲେ । ଗୁଲଜାର ହୋସେନ କବିଙ୍କୁ ଡକାଇ ପଠାଇଲେ । ତାଙ୍କ ଆହ୍ୱାନରେ ସେ ପାଗଳ ପରି ହାତରେ କାଠସରା ଧରି ଗଡ଼ରେ ପହଞ୍ଚିଲେ । ସେଠାରେ ବ୍ରାହ୍ମଣ ନିନ୍ଦାରେ କୈଫିୟତ୍ ତଲବ୍

କଲେ । ସେ ଜଗନ୍ନାଥଙ୍କ ପୀଠ ଶ୍ରୀ ନୀଳାଚଳରେ ମହାପ୍ରସାଦ ସେବନରେ ଜାତି ଭେଦ ନଥିବା କଥା ସୂଚାଇଲେ । ସେ ବିଭିନ୍ନ ଜାତିର ଲୋକଙ୍କ ସହ ଭୋଜନ କରୁଥିଲେ ସୁଦ୍ଧା ତାହାକୁ କୈବଲ୍ୟ ଜ୍ଞାନରେ ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରି ସେବା କରୁଥିବାରୁ ତହିଁ ସେ ଜାତିଭେଦ ମାନନ୍ତି ନାହିଁ । କୈବଲ୍ୟର ପ୍ରମାଣ ଜିଜ୍ଞାସା ହୋସେନ୍ କରିବାରୁ- ହାତରେ ଧରିଥିବା କାଠ ସରାରୁ ମହାପ୍ରସାଦ ବାହାର କରି ସମସ୍ତଙ୍କୁ ବିତରଣ କରିବାକୁ ଲାଗିଲେ । ସେହି ଅଭିଯୋଗକାରୀ ବ୍ରାହ୍ମଣମାନେ ସେହିଠାରେ ତାଙ୍କ ହାତରୁ ମହାପ୍ରସାଦ କରିଥିଲେ । କବିଙ୍କ ଆଲୌକିକ ଶକ୍ତିର ମୁଗ୍‌ଧ ହୋଇ ହୋସେନ୍ ତାଙ୍କୁ କିଛି ଦାନ ଦେବାକୁ ଇଚ୍ଛା ପ୍ରକଟ କଲେ ।

ସୁତରାଂ ଛତିଆ ପାହାଡ଼ ସ୍ଥିତ ବଟବୃକ୍ଷ ମୂଳ ସ୍ଥାନଟିକୁ ଦେବାପାଇଁ କବି ତାଙ୍କୁ ଅନୁରୋଧ କଲେ । ତହୁଁ ଶାସକ ସେହି ଡୁବୁରି ଖଣ୍ଡିକ ନିଷ୍କର ଭାବେ ତାଙ୍କୁ ଦାନ କରିଥିଲେ । ଅଧୁନା ତାହା ଛତିଆବଟ ନାମରେ ଖ୍ୟାତ । ସଂପ୍ରତି ମହାପୁରୁଷଙ୍କ ନାମରେ କଲେଜ ପ୍ରତିଷ୍ଠିତ ହୋଇ ତାଙ୍କ ନାମ ପ୍ରଚାରରେ ସହାୟକ ହୋଇଛି ।

ମହତ୍ମା ହାଡ଼ିଦାସ ପଞ୍ଚସଖା ମାର୍ଗର ଅନୁବର୍ତ୍ତୀ ଥିଲେ । ତାଙ୍କର ଅନେକ ଗ୍ରନ୍ଥ ପଞ୍ଚସଖାଙ୍କ ନାମରେ ଉତ୍ସର୍ଗ କରିଅଛନ୍ତି । ପଞ୍ଚସଖାଙ୍କ ମଧ୍ୟରୁ ଅଚ୍ୟୁତ ଓ ଅନନ୍ତଙ୍କ ନାମରେ ସେ ଗ୍ରନ୍ଥର ଏକାଧିକ ସ୍ଥାନରେ ଭଣତି କରିଥିବା ଦେଖାଯାଏ । କେତେକ ସ୍ଥାନରେ ହରି- ହରିଆ, ହାଡ଼ି- ହାଡ଼ିଆ ଭାବରେ ନିଜକୁ ପରିଚିତ କରାଇ ଅଛନ୍ତି । ପିତାମାତାଙ୍କ ପ୍ରଦତ୍ତ ନାମ ହାଡ଼ି ଏବଂ ଦୀକ୍ଷା ଗ୍ରହଣ ପରେ ନାମ ହେଲା ହରିଦାସ । ବସ୍ତୁତଃ ଏକ ବ୍ୟକ୍ତିର ନାମ ସାଧନାରେ ସିଦ୍ଧିଲାଭ କରି ବହୁ ଆଲୌକିକ ଶକ୍ତିର ଅଧିକାରୀ ହୋଇଥିଲେ ହେଁ ତାଙ୍କ ଗ୍ରନ୍ଥ ସମୂହରେ ବିନୟୋକ୍ତି ଦେଖିବାକୁ ମିଳେ । ତାଙ୍କ କାବ୍ୟ- କବିତାର ସ୍ଫୁରଣ ଦୈବୀ ଅନୁଗ୍ରହରୁ ହୋଇଥିବା ପ୍ରକାଶ କରିଅଛନ୍ତି ।

ସମାଜର ପ୍ରତ୍ୟେକ ବର୍ଗରୁ ସେ ଶିଷ୍ୟ ଗ୍ରହଣ କରି ଅଛନ୍ତି । ମନୁଷ୍ୟକୃତ ସାମାଜିକ ଭେଦ ବନ୍ଧନକୁ ସେ ଅସ୍ୱୀକାର କରିଅଛନ୍ତି । ସମାଜ ସଂସ୍କାର ମହାପୁରୁଷଙ୍କର ଅନ୍ୟ ଏକ ବୈପ୍ଳବିକ ପଦକ୍ଷେପ । ତାଙ୍କର ମୃତ୍ୟୁ ଥିଲା ଇଚ୍ଛାମୃତ୍ୟୁ । ମାର୍ଗଶିର ପୂର୍ଣ୍ଣିମା- ରବିବାର ଦିନ ନିର୍ବିକଳ୍ପ ସମାଧିରେ ସେ ଗୋଲାକ ବାସୀ ହୋଇଥିଲେ ।

ଗ୍ରନ୍ଥରଚନା- କେତେ ଖଣ୍ଡ ଗ୍ରନ୍ଥ ରଚନା କରିଛନ୍ତି ତାହା କହିବା ସଂଭବ ନୁହେଁ । ବର୍ଣ୍ଣିତ ବିବରଣୀ ଆଧାରରେ, ଲକ୍ଷ୍ମୀଧର ବିଳାସ, ଶଂଖନାଭି, ବଟବୃତ୍ତ, ହନୁମାନ ସଂହିତା, ଦର୍ଶନ, ଚିଟାଉ, ଶ୍ରୀମୁଖ ବଚନ ଓ ଚବିଶ ଗୀତା ଆଦି ରଚନା କରିଛନ୍ତି । ଏଥି ସହିତ ବ୍ୟାସ ବିଶେଷ ଅନନ୍ତ ଗୁପ୍ତଟୀକା, ଅନନ୍ତଗୋଇ, ଭାବନାବର, କ୍ଷେତ୍ରମହାତ୍ମ୍ୟ, ଗୃହସ୍ୟମ, ଶଂଖ ନାଭି, ଭୈରବ ସ୍ତୁତି, ନୀଳମାଧବ ଗୀତା ଓ କାଳଜ୍ଞାନ । ତାଙ୍କ ବିରଚିତ ରଚନାବଳୀକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରି ପାରିବା (୧) ବୃହତ୍ ରଚନାବଳୀ (୨) ଗୀତିକବିତା ।

(୧) ଶଂଖନାଭି- ଶ୍ରୀକ୍ଷେତ୍ରରେ ଅନ୍ୟନାମ ଶଂଖନାଭି । (ଶଂଖନାଭି ମଣ୍ଡଳରେ ବେନିନେତ୍ର ପଖାଳିବା) । ଏହି ଶଂଖନାଭି କ୍ଷେତ୍ରରେ ଅଗ୍ରଭାଗରେ ନୀଳକଣ୍ଠ, ମଧଭାଗରେ ମାଉସୀମା', ଏହାର ନାଭିଦେଶରେ ରୋହିଣୀ କୁଣ୍ଡ, ଅକ୍ଷୟବଟ ଓ ଶ୍ରୀଜଗନ୍ନାଥଙ୍କ ରତ୍ନସିଂହାସନ ବିଦ୍ୟମାନ । ଏହି ଗ୍ରନ୍ଥ ୨୧ ଅଧ୍ୟାୟ ବିଶିଷ୍ଟ । ରାଜା ଇନ୍ଦ୍ରଦ୍ୟୁମ୍ନ ଏବଂ ବ୍ରହ୍ମାଙ୍କ ପ୍ରଶ୍ନୋତ୍ତର ମାଧମରେ ଶ୍ରୀକ୍ଷେତ୍ରର ଗୌରବ ତଥା ଜଗନ୍ନାଥ ତତ୍ତ୍ୱ ବର୍ଣ୍ଣିତ । ଗ୍ରନ୍ଥାରମ୍ଭରେ କବି ଗଣେଶ ଓ କାଶୀବିଶ୍ୱନାଥଙ୍କୁ ସ୍ତୁତି ନିବେଦନ କରିଛନ୍ତି । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ବଡ଼ ଦେଉଳ ନିର୍ମାଣ, ବ୍ରହ୍ମାଙ୍କ ଦ୍ୱାରା ଦାରୁ ବିଗ୍ରହ ପ୍ରତିଷ୍ଠା ଏବଂ ସେବା ପୂଜାର ସଂରଚନା ପ୍ରଭୃତି ବିପଦ ଭାବେ ବର୍ଣ୍ଣିତ ।

(୨) ବ୍ୟାସ ବିକ୍ଷେ- ପୁରାଣ ଶୈଳୀରେ ରଚିତ ଏକ ତତ୍ତ୍ୱ ଗ୍ରନ୍ଥ । ମହର୍ଷି ବ୍ୟାସ ଦେବଙ୍କ ବର୍ଣ୍ଣିତ ବିଷୟାନୁସରଣରେ ଏହି ଗ୍ରନ୍ଥ ରଚିତ ହୋଇଥିବାରୁ ଏହାର ନାମ ବ୍ୟାସ ବିକ୍ଷେ । ସାତ ଅଧ୍ୟାୟରେ ଗ୍ରନ୍ଥ ସମାପ୍ତି ହୋଇଛି । ଭାଗବତ ବୃତ୍ତ ବା ଗୁଜ୍ଜରୀ ରାଗରେ ଲିଖିତ । କବି ଏଥିରେ ଗିରିଜା, କାଶୀ ବିଶ୍ୱନାଥ, ଜଗନ୍ନାଥ, କମଳା, ବିମଳା, ସରସ୍ୱତୀ, ଅଷ୍ଟପାଟବଂଶୀ, ବଳଦେବ, ସୁଭଦ୍ରା, ସୁଦର୍ଶନ, ଗଣେଶ ଓ କାର୍ତ୍ତିକେୟଙ୍କୁ ନମସ୍କାର ପୂର୍ବକ ଗ୍ରନ୍ଥାରମ୍ଭ କରିଛନ୍ତି । ଚକ୍ରତୀର୍ଥଠାରେ ସମ୍ବେତ ମୁହିବୃନ୍ଦଙ୍କ ଅନୁରୋଧ କ୍ରମେ ଧ୍ରୁବ ସେମାନଙ୍କୁ ବିଷ୍ଣୁଙ୍କର ବିଭେଦ ତତ୍ତ୍ୱ ବ୍ୟାଖ୍ୟାନ କରାଇଅଛନ୍ତି । ପୁଣ୍ୟଲାଭର ସତ୍କର୍ମ, ମାୟାବଦ୍ଧ ଜୀବର ବ୍ୟାକୁଳତା, ବିଷ୍ଣୁଗର୍ଭ ବୃତ୍ତାନ୍ତ, କଳିଯୁଗର ଗତି ଏବଂ ବିଭିନ୍ନ ଦେବତାମାନଙ୍କର ଗର୍ବଗଂଜନ ବିଷ୍ଣୁଙ୍କ ଦ୍ୱାରା କିପରି ହୋଇପାରିଛି, ସେ ସଂପର୍କରେ ଆଲୋଚିତ ହୋଇଛି ।

(୩) ଅନନ୍ତ ଗୁପ୍ତ ଟୀକା- କୌଣସି ଦୁର୍ବୋଧ, ବିଷୟ ପ୍ରସଂଗର ସରଳୀକୃତ ଓ ସଂକ୍ଷେପିକୃତ ପ୍ରକାର ଶୈଳୀକୁ ଟୀକା କୁହାଯାଏ । ମହାକବି କାଳିଦାସଙ୍କ ରଚନାର ଟୀକା ମଲ୍ଲୀନାଥ କରିଛନ୍ତି । ସମଗ୍ର ଭାରତବର୍ଷରେ ଭାଗବତର ଅନେକ ଟୀକା ରଚିତ ହୋଇଛି । ତନ୍ମଧ୍ୟରୁ ସୁଦର୍ଶନ ସୁରୀଙ୍କର ଶୁକପକ୍ଷୀୟ, ବୀର ରାଘବାଚାର୍ଯ୍ୟ ପ୍ରଣିତ- ଭାଗବତ ଚନ୍ଦ୍ର ଚନ୍ଦ୍ରିକା (ରାମାନୁଜମତ), ବିଜୟଧ୍ୱଜଙ୍କ ପଦରତ୍ନାବଳୀ (ମାଧ୍ୱମତ), ଶୁକଦେବାଚାର୍ଯ୍ୟଙ୍କର ସିଦ୍ଧାନ୍ତ ପ୍ରଦୀପ (ନିମ୍ବାର୍କମତ), ବଲ୍ଲଭାଚାର୍ଯ୍ୟଙ୍କର ସୁବୋଧିନୀ ତଥା ଗିରିଧରାଚାର୍ଯ୍ୟଙ୍କର ଆଧ୍ୟାତ୍ମିକଟୀକା (ବଲ୍ଲଭମତ), ଶ୍ରୀ ସନାତନଙ୍କର ଭାଗବତର ଦଶମ ସ୍କନ୍ଧ ଉପରେ ବୃହତ୍ ବୈଷ୍ଣବ ତୋଷିଣୀ ନାମ୍ନୀ ଟୀକା (ଚୈତନ୍ୟ ତମତ) ପ୍ରଭୃତି ସର୍ବଭାରତୀୟ ପ୍ରସିଦ୍ଧ ଟୀକା ଓ ଟୀକାକାରଙ୍କ ଖ୍ୟାତି ଭୁବନ ବଦିତ ।

ବଳରାମ ଦାସଙ୍କ ସପ୍ତାଙ୍ଗ ଯୋଗସାର ଟୀକା, ଜଗନ୍ନାଥ ଦାସଙ୍କ ପଦ୍ମକଳ୍ପ ଟୀକା ଓ ଟୀକା ଭାଗବତ, ଯୋଗୀନ୍ଦ୍ର ବୈବଞ୍ଚଙ୍କ ଟୀକା ଗୋବିନ୍ଦଚନ୍ଦ୍ର ଓଡ଼ିଶାରେ ସୁପ୍ରସିଦ୍ଧ ।

ସାଧାରଣ ପାଠକ ନିକଟରେ ପ୍ରଚ୍ଛନ୍ନ ହୋଇ ରହିଥିବା ବ୍ରହ୍ମଜ୍ଞାନ ସଂବଂଧୀୟ ଗୁପ୍ତ, ରହସ୍ୟକୁ କବି ଅନନ୍ତ (ବଳରାମ)ଙ୍କ ମୁଖରେ ପ୍ରକାଶ କରାଇ ଥିବାରୁ ଗ୍ରନ୍ଥର ନାମ 'ଅନନ୍ତ ଗୁପ୍ତ ଟୀକା' ରଖିଛନ୍ତି । ଗ୍ରନ୍ଥାରମ୍ଭରେ ଗିରିଜାଙ୍କୁ ସ୍ତୁତି କରିଛନ୍ତି । ଏହି ଗ୍ରନ୍ଥ ଚତୁର୍ଦ୍ଦଶ ଅଧ୍ୟାୟ ସଂବଳିତ ।

ପଞ୍ଚସଂଖାଙ୍କ ଧାରାର ହୋଇ ଏଥିରେ ଭକ୍ତ ଲକ୍ଷଣ ଓ ଭଗବାନଙ୍କ ସଂପର୍କ, ଶ୍ରୀଜଗନ୍ନାଥଙ୍କ ଶ୍ରେଷ୍ଠତ୍ୱ, ବ୍ରହ୍ମଜ୍ଞାନ, ନିର୍ଗୁଣ ବ୍ରହ୍ମଙ୍କ ମହିମା, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ, ମାତୃଗର୍ଭଜ୍ଞାନ ସତ୍‌ସଂଗର ଫଳ, ପାପପୁଣ୍ୟ ବିବେଚନା ବିଧାନ, ପୁଣ୍ୟାର୍ଜନ ପାଇଁ ସଦାଚାର ଆବଶ୍ୟକତା, ଶ୍ରୀ ରଥଯାତ୍ରାର ବିବରଣୀ, ଶ୍ରୀକ୍ଷେତ୍ର ମହାତ୍ମ୍ୟ, କର୍ମଫଳ ଭୋଗ, ଯୋଗତତ୍ତ୍ୱ ଓ ବିଭିନ୍ନ ତତ୍ତ୍ୱ ଉପଦେଶ ସଂପର୍କରେ କବିଙ୍କ ବର୍ଣ୍ଣନା ଅତ୍ୟନ୍ତ ହୃଦ୍ୟ । ଗ୍ରନ୍ଥ ବିଷୟ ପ୍ରସଂଗରେ ସେ ଉତ୍କଳୀୟ ଜ୍ଞାନ ମିଶ୍ରା ଭକ୍ତିର ଉତ୍ତର ସାଧକ ଥିବାର ସ୍ପଷ୍ଟ ପ୍ରମାଣ ମିଳିଥାଏ ।

(୪) ଅନନ୍ତ ଗୋଇ- ପ୍ରାଚୀନ ସାହିତ୍ୟର ସମୀକ୍ଷକମାନେ ଏହି ପୁସ୍ତକଟିକୁ ମହାପୁରୁଷ ଅଚ୍ୟୁତଙ୍କ ରଚନାର ଅନ୍ତର୍ଭୁକ୍ତ କରିଅଛନ୍ତି । ମାତ୍ର ଡଃ ରତ୍ନାକର ସାହୁଙ୍କ ପ୍ରମାଣ ଅନୁସାରେ ଏହା ହାଡ଼ିଦାସଙ୍କ ଲେଖନୀ ପ୍ରସୂତ ବୋଲି ମନେହୁଏ ।

ନୀଳାଚଳ ବିହାରୀ ଶ୍ରୀଜଗନ୍ନାଥଙ୍କୁ ବନ୍ଦନା କରି କବିତାଙ୍କର ଗ୍ରନ୍ଥାରମ୍ଭ କରିଛନ୍ତି । କଳିଯୁଗର ଭୟଙ୍କର ରୂପ ବର୍ଣ୍ଣିତ ହୋଇଛି । ଦୁଷ୍ଟମାନଙ୍କର ତାଡ଼ନାରେ ସନ୍ଥଜନମାନେ ତ୍ରାହି ଡକା ଛାଡ଼ିବା ସହ ସମୂହ ଭାବେ ହଂସ ମନ୍ତ୍ର (ଅଜପା ଗାୟତ୍ରୀ) ଜପ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।

ଭାବନାବର- ୧୯୪୧ ମସିହାରେ ଓଡ଼ିଶା କୋହିନୁର ପ୍ରେସରୁ ପ୍ରକାଶିତ । କିନ୍ତୁ ବାସ୍ତବ ପୋଥି ଅନୁସନ୍ଧାନରେ ଜଣାଯାଏ ଏହା ଛବିଶ ଅଧ୍ୟାୟ ବିଶିଷ୍ଟ । ପ୍ରକାଶିତ ପୁସ୍ତକରେ ଏହା ଦ୍ୱାଦଶ ଅଧ୍ୟାୟ । କବି ଜଣେ ଶ୍ରେଷ୍ଠ ଭକ୍ତ ଭାବେ ଭଗବାନଙ୍କର ଗୁଣ କୀର୍ତ୍ତନ କରିବାକୁ ଯାଇ ଈଶ୍ୱରଙ୍କୁ ପ୍ରୀତିପୂର୍ଣ୍ଣ ଉର୍ସନା ଶୁଣାଇଛନ୍ତି । ସମାଜର ସକଳ ଶ୍ରେଣୀର ବ୍ୟକ୍ତି ଈଶ୍ୱରଙ୍କ ନାମ ଗାନ କଲେ ସେମାନଙ୍କର କଲ୍ୟାଣ ହେବାର ସଦୁପଦେଶ ଦେଇଛନ୍ତି ।

(୫)ଲକ୍ଷ୍ମୀଧର ବିଳାସ- ଉକ୍ତ ଗ୍ରନ୍ଥଟିକୁ ସମୀକ୍ଷକ ବୃନ୍ଦ ଅଚ୍ୟୁତାନନ୍ଦଙ୍କ ରଚନା ବୋଲି ଉଲ୍ଲେଖ କରିଅଛନ୍ତି । ମାତ୍ର ଆଭ୍ୟନ୍ତରୀଣ ପ୍ରମାଣ ବଳରେ ଏହା ହାଡ଼ିଦାସଙ୍କ ରଚନା ଭାବେ ସିଦ୍ଧ । ବର୍ଣ୍ଣିତ ସ୍ଥାନ ଯଥା ମଣିନାଗ, ଯଶରାଜନଗର (ପୁର), ଦୈବିଲୀ, ତାରେଶ୍ୱର, ଅଡ଼ମ୍ବର, ଆଦି ସ୍ଥାନ ଛତିଆ ନିକଟବର୍ତ୍ତୀ ।

ଲକ୍ଷ୍ମୀଧର= ଶ୍ରୀକୃଷ୍ଣ, କଳିଯୁଗରେ ମ୍ଳେଚ୍ଛ ସଂହାର ନିମନ୍ତେ ବିଷ୍ଣୁଙ୍କ ଲୀଳା ବା ବିଳାସର ଚିତ୍ର ଏହି ଗ୍ରନ୍ଥରେ ବର୍ଣ୍ଣିତ ହୋଇଥିବାରୁ କବି ଗ୍ରନ୍ଥର ନାମ ଲକ୍ଷ୍ମୀଧର ବିଳାସ ରଖିଛନ୍ତି । ଏହା ଭବିଷ୍ୟତ ସମୟରେ ଘଟିବାକୁ ଯାଉଥିବା ଅଭାବନୀୟ ଘଟଣାକୁ ଉପସ୍ଥାପିତ କରିଅଛନ୍ତି । କବିଙ୍କର ଦୃଷ୍ଟି ଏକ ସୁସ୍ଥ ସମାଜ ପରିକଳ୍ପନାରେ ପ୍ରସାରିତ ହୋଇଛି ।

(୬) କ୍ଷେତ୍ରମହାତ୍ମ୍ୟ- ଶ୍ରୀକ୍ଷେତ୍ର ମହିମା ପ୍ରଖ୍ୟାପନ କରି ଶତାବ୍ଦୀ ଶତାବ୍ଦୀଧରି ସଂସ୍କୃତ ଓ ଓଡ଼ିଆ କବିମାନେ ବହୁ କାବ୍ୟ, ପୁରାଣ ରଚନା କରିଅଛନ୍ତି । ଲୋକନାଥ ବିଦ୍ୟାଧରଙ୍କ ନୀଳାଦ୍ରି ମହୋତ୍ସବ, ମହାଦେବ ଦାସଙ୍କ 'ନୀଳାଦ୍ରି ମହୋଦୟ', ଉପେନ୍ଦ୍ରଭଂଜଙ୍କ 'ପୁରୁଷୋତ୍ତମ ମହାତ୍ମ୍ୟ' ପୀତାମ୍ବର ଦାସଙ୍କ ନୃସିଂହ ପୁରାଣର ସପ୍ତମ ରତ୍ନାକରରେ 'ନୀଳଗିରି ମହାତ୍ମ୍ୟ', ସୁରଂଗୀ ଅଧୀଶ୍ୱର ଶ୍ରୀ ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନଙ୍କ 'ପୁରୀକ୍ଷେତ୍ର' ଶ୍ରୀକ୍ଷେତ୍ର ପ୍ରଶସ୍ତିର ଅନ୍ୟ ଏକ କୃତି ।

ହାଡ଼ିଦାସ ଏହି ଗ୍ରନ୍ଥରେ ପୁରୁଷୋତ୍ତମ ପୀଠର ସର୍ବଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । ନିତ୍ୟ ଗୋଲୋକ ରୂପେ ଖ୍ୟାତି ଲଭିଥିବା ଏହି ପବିତ୍ର ସ୍ଥାନରେ

ଯମଙ୍କର ମଧ ପ୍ରବେଶାଧିକାର ନାହିଁ । ପଞ୍ଚକୋଷ ଆୟତନ ବିଶିଷ୍ଟ ଏହି ଧାମକୁ ବ୍ରହ୍ମା ଇନ୍ଦ୍ରାଦି ଦେବଗଣ ଜଗନ୍ନାଥଙ୍କୁ ଉପାସନା କରିବା ପାଇଁ ଆସିଥାନ୍ତି । ତୀର୍ଥ ଶିରୋମଣି ଭାବେ ଏହାକୁ ପ୍ରତିଷ୍ଠିତ କରିବାର ପ୍ରୟାସୀ ହୋଇଛନ୍ତି ।

(୭) ଗୃହସମ- ଏହା ଦୁଇ ଅଧ୍ୟାୟ ସଂବଳିତ ଏକ ପାରିବାରିକ କାବ୍ୟ । ପ୍ରାୟତଃ ଘଟୁଥିବା ଏକ ସାଧାରଣ ଘଟଣାକୁ ନେଇ ଏ କାବ୍ୟ ରଚିତ ହୋଇଥିବାରୁ ଏହାର ନାମ ଗୃହସମ ହୋଇଛି । ନିଜର ପତ୍ନୀ ପଦ୍ମାବତୀ ପଦେ ପଦେ ସ୍ୱାମୀଙ୍କୁ ଆଘାତ, ତିରସ୍କାର ଦେଇଛନ୍ତି । କିନ୍ତୁ ପତ୍ନୀଙ୍କର ଏତାଦୃଶ ଆଚରଣକୁ ପ୍ରଭୁଙ୍କ ପରୀକ୍ଷା ବୋଲି ଧରିନେଇ ନିଜର ଈଶ୍ୱରୀୟ ନିଷ୍ଠାର ପରାକାଷ୍ଠା ପ୍ରଦର୍ଶନ କରିଅଛନ୍ତି ।

(୮) ମାଳିକା- ସମଗ୍ର ବିଶ୍ୱର ପ୍ରମୁଖ ଧର୍ମମାନଙ୍କର ଭବିଷ୍ୟତ ପୃଥିବୀର ଅଭାବନୀୟ ଦୃଶ୍ୟାବଳୀ ସଂପର୍କରେ ସୂଚନା ରହିଛି । ବସ୍ତୁତଃ ଲୋକମାନଙ୍କ ମଧ୍ୟରୁ ଦେବତ୍ୱ, ସଦାଚାର, ସଦ୍‌ଗୁଣ କ୍ରମଶଃ ଅବକ୍ଷୟ ହୋଇ ଦାନବତ୍ୱର ପ୍ରାବଲ୍ୟ ଅଧିକରୁ ଅଧିକ ହେବାରେ ଲାଗିଛି ।

ସଂସ୍କୃତ ପୁରାଣମାନଙ୍କର ଭବିଷ୍ୟତ ଜଗତର ଚିତ୍ର ପ୍ରଦତ୍ତ । ଭାଗବତ, ବିଷ୍ଣୁପୁରାଣ ଇତ୍ୟାଦି ଏ ସଂପର୍କରେ ଅନୁସଂଧେୟ ।

ମାଳିକାର ଅର୍ଥ ଭବିଷ୍ୟତବାଣୀ । ପ୍ରାଚୀନ ଇହୁଦୀ ପ୍ରଫେଟ୍‌ମାନଙ୍କ ତୁଲ୍ୟ ଓଡ଼ିଶାର ସନ୍ଥକବିଗଣ ସ୍ୱୀୟ ଦିବ୍ୟ ସାଧନା ବଳରେ ଅନାଗତ ଭବିଷ୍ୟତର ସ୍ଥିତି ଲକ୍ଷ୍ୟ କରି ସୁସ୍ଥ ସମାଜର ଚିନ୍ତାରେ ଅସୀମ, ପରମଙ୍କୁ ଧ୍ୟାନ କରିବାକୁ ସୂଚନା ଦେଇଛନ୍ତି ଏବଂ ଭଗବତ୍ ବିଶ୍ୱାସୀ ସାଧୁମାନେ ସଂକଟ ବେଳରେ ବିଭକୃପାରୁ ପରିତ୍ରାଣ ପାଇଯିବେ ତଥା ସୁସ୍ଥ ସମାଜ ଗଠିତ ହୋଇ ପାରିବ । ପ୍ରକାରାନ୍ତରେ ଜନସମାଜକୁ ସର୍ବୋତ୍‌କୃଷ୍ଟ ପନ୍ଥା ଈଶ୍ୱର ଶରଣାପନ୍ନ ହେବାକୁ ନିର୍ଦ୍ଦେଶ ଦେଇଛନ୍ତି ।

(୭) ସ୍ତୁତି- ଇଂରାଜୀ ସାହିତ୍ୟରେ ଏହି ଧରଣର ରଚନାକୁ ହିମ୍ (HYMN) କୁହାଯାଏ । ପ୍ରାଚୀନ ଗ୍ରୀସ୍‌ରେ ବିଖ୍ୟାତ ବ୍ୟକ୍ତି, ବୀର ଏବଂ ଦେବତାଙ୍କ ଉଦ୍ଦେଶ୍ୟରେ ରଚିତ ଗୀତିକାକୁ 'ହିମ୍' କହୁଥିଲେ । ବୈଦିକ ସ୍ତୁତିକୁ 'ଋଚା' କୁହାଯାଏ । ପ୍ରାଚୀନ ଓଡ଼ିଆ ସାହିତ୍ୟ ଏହି ପ୍ରକାର ରଚନା ପ୍ରାୟ ପ୍ରତ୍ୟେକ କବିଙ୍କ କୃତିରେ ଦେଖିବାକୁ ମିଳିଥାଏ । ହାଡ଼ିଦାସଙ୍କ ରଚନାବଳୀ ମଧ୍ୟରେ ସ୍ତୁତି ଓ ଶଂଖନାଭି ଭୈରବ ସ୍ତୁତି ଉପଲବ୍ଧ । ପ୍ରଥମରେ ସେ ଈଶ୍ୱର ତତ୍ତ୍ୱ ସଂପର୍କୀତ

ତାତ୍ତ୍ୱିକ ବ୍ୟାଖ୍ୟାନ ଏବଂ ଶଂଖନାଭି ଭୈରବ ସ୍ତୁତିରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ଭାବେ ପରିକଳ୍ପନା କରି ତାଙ୍କ ପ୍ରଶସ୍ତି ଗାନ କରିଛନ୍ତି ।

(୮) ଜଣାଣ- ଭକ୍ତି ଗୀତିକାର ଏହା ଏକ ରୂପ । ଯହିଁରେ ଭକ୍ତ ଭଗବାନ୍‌ଙ୍କର ଅତି ନିକଟତର ହେବାର ପରିକଳ୍ପନା କରିଥାଏ । ସୁତରାଂ ପ୍ରଭୁଙ୍କ ଗୁଣ ଗାନ କରିବା ସହିତ ନିଜର ଦୁଃଖ ଦୈନ୍ୟରୁ ନିସ୍ତାର ପାଇବା ପାଇଁ ପ୍ରଭୁଙ୍କ ପାଖରେ ଅନୁଯୋଗ ଏପରିକି ଗାଳି ଦେବାକୁ ମଧ୍ୟ ପଶ୍ଚାତ୍‌ପଦ ହୁଏ ନାହିଁ । ଭକ୍ତିର ଶାଣିତ କାବ୍ୟ କେତେ ଆତ୍ମୀୟତା ହୋଇପାରେ ଓଡ଼ିଆ ଜଣାଣରେ ଏହାର ପ୍ରକୃତ ଦୃଷ୍ଟି ଓ ଦର୍ଶନକୁ ପ୍ରତ୍ୟକ୍ଷୀଭୂତ କରିହେବ । ହାଡ଼ିଦାସଙ୍କ ରଚନାରେ ସେ ଇଷ୍ଟଙ୍କୁ ସ୍ତୁତି ଏବଂ ଭର୍ତ୍ସନା କରିଅଛନ୍ତି, ଏପରିକି ତତ୍‌କାଳୀନ ଶାସକ ଗୁଲଜାର ହୋସେନଙ୍କ ପ୍ରଶସ୍ତି ମଧ୍ୟ ଗାନ କରି ପାରନ୍ତି ।

(୯) ଚଉତିଶା- 'କ' ଠାରୁ 'କ୍ଷ' ଚଉତିରିଶି ଗୋଟି ବ୍ୟଂଜନ ବର୍ଣ୍ଣର ପଦ ବା ପାଦର ଆଦ୍ୟରେ ରଖି ଯେଉଁ ଛନ୍ଦୋବଦ୍ଧ ରଚନା କରାଯାଏ ତାହା ଚଉତିଶା ନାମରେ କଥିତ । ସଂସ୍କୃତ ସାହିତ୍ୟରେ ଏ ଧରଣର ରଚନା ରହିଛି । ହିନ୍ଦୀ ତଥା ମରାଠୀ ସାହିତ୍ୟରେ ଚଉତିଶାରୀତିରେ ରଚନା ଦୃଷ୍ଟିଗୋଚର ହୁଏ । ସନ୍ଥ ହାଡ଼ିଦାସଙ୍କ ଚଉତିଶାଗୁଡ଼ିକୁ ବିଷୟବସ୍ତୁ ଆଧାରରେ ଚାରିଭାଗରେ ବିଭାଜନ କରିପାରିବା- ଜଣାଣ ଚଉତିଶା, ମାଳିକା ଚଉତିଶା, ଶରୀର ଭେଦ ଚଉତିଶା ଓ ତତ୍ତ୍ୱମୂଳକ ଚଉତିଶା ।

(୧୦) ଭଜନ- ଭଜନରେ ଇଷ୍ଟଙ୍କର ଗୁଣ କୀର୍ତ୍ତନ କରାଯାଇଥାଏ । ବେଦାନ୍ତ ଦର୍ଶନ, ଯୋଗତତ୍ତ୍ୱ ପ୍ରଭୃତି ଏହାର ଆଧାର ହୋଇପାରେ । ହାଡ଼ିଦାସଙ୍କ ରଚିତ ଭଜନଗୁଡ଼ିକୁ ସଗୁଣ, ନିର୍ଗୁଣ ଭେଦରେ ଦୁଇ ଭାଗରେ ବିଭକ୍ତ କରିପାରିବା । ସଗୁଣ ଭଜନରେ ରୂପ, ଗୁଣ, ଲୀଳା ମାଧୁରୀର ବର୍ଣ୍ଣନା ଏବଂ ନୁର୍ଗୁଣ ଭଜନରେ ବ୍ରହ୍ମ ତତ୍ତ୍ୱର ନିଗୂଢ଼ ପରିପ୍ରକାଶିତ ହୋଇଥାଏ । ସେହିପରି ଶରୀର ଭେଦ ମୂଳକ ରଚନାରେ ସଂସାରର ଅଳୀକତା ଦର୍ଶାଇ ଈଶ୍ୱରାଭିମୁଖୀ ହେବା ପାଇଁ ଦିଗ୍‌ଦର୍ଶନ ଦେଇଛନ୍ତି ।

(୧୧) ନୀଳମାଧବ ଗୀତା- ନୀଳମାଧବ ଆଖ୍ୟାନ ଅବଲମ୍ବନରେ ଓଡ଼ିଆ ଭାଷାରେ ବହୁତ କିଛି ରଚିତ ହୋଇଛି । ସଂସ୍କୃତ ସ୍କନ୍ଦ ପୁରାଣ ଏବଂ ସାରଳା ମହାଭାରତରେ ମୂଳ କଥାବସ୍ତୁରେ ସ୍ୱୀୟ ମୌଳିକତାର ପୁଟଦେଇ ଉତ୍କଳୀୟ

ଜନମାନସରେ ପ୍ରତିଷ୍ଠାପିତ କରି ପାରିଥିଲେ । ଜଗନ୍ନାଥ ଦାସଙ୍କ ଦାରୁବ୍ରହ୍ମଗୀତା, ନୀଳାମ୍ବର ଦାସ, ଶିଶୁକୃଷ୍ଣଦାସ ଏବଂ ରାମ ଦାସଙ୍କ ଦେଉଳତୋଳା ପ୍ରଭୃତିରେ ନୀଳମାଧବ ବୃତ୍ତାନ୍ତ ବର୍ଣ୍ଣିତ । ହାଡ଼ିଦାସ ସ୍ୱଜନ୍ମଭୂମିର ମହତ୍ତ୍ୱ ପ୍ରତିଷ୍ଠା କରିବା ପାଇଁ ଛତିଆବଟକୁ ନୀଳମାଧବଙ୍କ ପୀଠଭାବେ ପରିକଳ୍ପନା କରିଛନ୍ତି । ଛତିଆ ନିକଟ ଅମରାବତୀ କଟକକୁ ଶବରରାଜା ବିଶ୍ୱାବସୁକୁ ବାସସ୍ଥଳୀ ଭାବେ ଚିତ୍ରିତ କରିଛନ୍ତି । ଏତଦ୍‌ଭିନ୍ନ ମୂଳ କଥାର ଅନୁସରଣ କରି କାହାଣୀଟିକୁ ଅଗ୍ରଗତି କରାଇ ନେଇଛନ୍ତି । କାହାଣୀରେ ନୂତନତ୍ୱ ଲକ୍ଷିତ ହୁଏ ନାହିଁ ।

(୧୨) ହନୁମନ୍ତଗୀତା- ଶ୍ରୀହରି ଓ ହନୁମାନଙ୍କର ପ୍ରଶ୍ନୋତ୍ତର ମାଧ୍ୟମରେ ଏ ଗୀତିକାଟି ସୃଷ୍ଟି । ଏଥିରେ ତତ୍ତ୍ୱଜ୍ଞାନ ବିମୁଖ ବାହ୍ୟାଡ଼ମ୍ବର ବୈଷ୍ଣବ ମାନଙ୍କୁ ନିନ୍ଦା କରାଯାଇଛି । ସାଧୁବେଶ ଧାରୀ ଭଣ୍ଡ ଦୁରାଚାରୀ ମାନଙ୍କ ଅସଲ ସ୍ୱରୂପକୁ ପଦାରେ ପକାଇ ଦେଇଛନ୍ତି । କାମିନୀ କାଞ୍ଚନ ଆକର୍ଷଣରେ ସାଧୁବେଶରେ ମଧ୍ୟ ଛନ୍ଦି ହୋଇଥିବା ବର୍ଣ୍ଣନା କରିଛନ୍ତି । ଭକ୍ତ ଏବଂ ଭଗବାନଙ୍କ ମଧ୍ୟରେ ସଂପର୍କ କେବଳ ଭାବ, ଭାବକୁ ଗ୍ରହଣ କରିଥାନ୍ତି ଭାବଗ୍ରାହୀ ।

(୧୩) ସ୍ୱରଶାସ୍ତ୍ର ଏବଂ କାଳଜ୍ଞାନ- ସ୍ୱରଶାସ୍ତ୍ର ୧୪ ପଦ ବିଶିଷ୍ଟ କବିତା ଏବଂ କାଳଜ୍ଞାନ ଦୁଇ ଛନ୍ଦ ବିଶିଷ୍ଟ ପୁସ୍ତିକା ବସ୍ତୁତଃ ବିଷୟ ବିଚାର ଦୃଷ୍ଟିରୁ ଗୋଟିଏ ପର୍ଯ୍ୟାୟର । ସ୍ୱର (ଶ୍ୱାସ)ର ଗତିକୁ ଲକ୍ଷ୍ୟ କରିବା, ଉଦୟ ଅସ୍ତକୁ ଜାଣିବା, ତଦନୁସାରେ ବିବିଧ କାର୍ଯ୍ୟ ସଂପାଦନ କରିପାରିବାର ସୂତ୍ର ଉକ୍ତ ଗ୍ରନ୍ଥରେ ପ୍ରତିପାଦିତ । ସାତବାର, ପକ୍ଷ, ମାସ ଇତ୍ୟାଦିରେ ସ୍ୱର ଶାସ୍ତ୍ରର ବିଧାନ ସାଧନାର ଶୀର୍ଷସ୍ତରୀୟ, ଖାଲି ଉତ୍କଳୀୟ କାହିଁକି ସମଗ୍ର ଭାତରବର୍ଷ ତଥା ଭାରତ ବାହାରେ ଉନ୍ନତକୋଟୀର ସନ୍ଥମାନେ ଏହି ବିଦ୍ୟାକୁ ଧାରଣ କରିଥାନ୍ତି । ସକଳ ବିଦ୍ୟା ମଧ୍ୟରେ ଶିରୋମଣି ବା ଶ୍ରେଷ୍ଠ ବିଦ୍ୟା ଏହା କୁହାଯିବାରେ ଦ୍ୟୁରୁକ୍ତି ନାହିଁ ।

ଗୋରଖନାଥଙ୍କର ସପ୍ତାଂଗ ଯୋଗଧାରଣମ୍, ବଳରାମ ଦାସଙ୍କର ସପ୍ତାଂଗ ଯୋଗସାର ଟୀକା ବୀର ସିଂହଙ୍କ ସପ୍ତାଂଗ ଆଦି ଗ୍ରନ୍ଥ ଏ ସଂପର୍କରେ ପ୍ରମୁଖ । 'ସ୍ୱରୋଦୟଲେଶ' ଅନୁସରଣରେ ଯଶୋବନ୍ତ ଦାସଙ୍କ ଶିବ ସ୍ୱରୋଦୟ ଏହି ଧାରାରେ ଏ ପ୍ରାମାଣିକ ଗ୍ରନ୍ଥ । କବିଙ୍କ କ୍ଷୁଦ୍ର ରଚନାରେ ସେ ଏହାର ସୂତ୍ର ଉପସ୍ଥାପନା କରିଛନ୍ତି ।

ରଥଯାତ୍ରା ଗୀତ- ରଥଯାତ୍ରା କହିଲେ ପୁରୀର ଶ୍ରୀଜଗନ୍ନାଥଙ୍କର ଗୁଣ୍ଡିଚା ଯାତ୍ରାକୁ

ବୁଝାଏ । ଏହାର ତୁଳନା ଅନ୍ୟତ୍ର କରାଯାଇ ନପାରେ । ଓଡ଼ିଶାର ଓ ବାହାରେ ଥିବା ବିଭିନ୍ନ ସ୍ଥାନର ରଥଯାତ୍ରାକୁ ଆଧାର କରି କବିମାନେ ବିବିଧ ଶୈଳୀରେ କାବ୍ୟକୃତିମାନ ରଚନା କରିଛନ୍ତି । ଶ୍ରୀଜଗନ୍ନାଥଙ୍କ ଶ୍ରେଷ୍ଠ ଭକ୍ତ ହାଡ଼ିଦାସ ସେହି ପରଂପରାରେ ଶ୍ରୀକ୍ଷେତ୍ର- ଶ୍ରୀଜଗନ୍ନାଥଙ୍କ ମହାତ୍ମ୍ୟ ପ୍ରଖ୍ୟାପନରେ ଏହିପରି ଗୀତର ଅବତାରଣା କରି ନିଜ ଜଗନ୍ନାଥ ପ୍ରାଣତାର ପରିଚୟ ଦେଇଛନ୍ତି ।

(୧୪) ଅବକାଶ- ହାଡ଼ିଦାସଙ୍କ ଅବକାଶ ଗୀତିକାଟି ଶ୍ରୀକୃଷ୍ଣଙ୍କ ଗୁଣାବଳୀ ଆଧାରିତ । ଶାଶୁ- ନଣନ୍ଦଙ୍କ ଅଗୋଚରରେ ରାଧିକାଙ୍କ ଗୃହରେ ରାତ୍ରିରେ ଅବସ୍ଥାନ ଏବଂ ରାତ୍ରି- ଅବସାନ ହୁଅନ୍ତେ ପୁଣି ତାଙ୍କୁ ବିଦାୟ ଦେବାକୁ ଯାଇ ଚତୁରୀ ରାଧାଙ୍କର ମଧୁର ଭର୍ତ୍ସନା ଖୁବ୍ ଆନନ୍ଦଦାୟକ । ସେହି ତିରସ୍କାର ମଧ୍ୟରେ ରାଧାଙ୍କର କୃଷ୍ଣଙ୍କ ପ୍ରତି ଗଭୀର ଶ୍ରଦ୍ଧା ପ୍ରକଟ ହୋଇଛି ।

(୧୫) ମାଳଶ୍ରୀ- ଦେବୀ ବଂଦନା ଗୀତକୁ ମାଳଶ୍ରୀ କୁହାଯାଏ । ମହାକବି ସାରଳାଦାସଙ୍କୁ ସମୟରୁ ଏହି ଧାରା ଲକ୍ଷ୍ୟଣୀୟ । ଦ୍ୱିଜ ନାରାୟଣ, ବାଲୁଙ୍କେଶ୍ୱର ମର୍ଦ୍ଦରାଜ, ହରିହର ମର୍ଦ୍ଦରାଜ ପ୍ରଭୃତି ପ୍ରାଚୀନ କବିମାନେ ମାଳଶ୍ରୀ ରଚନା ଧାରାକୁ ଅବ୍ୟାହତ ରଖିଥିଲେ । ହାଡ଼ିଦାସଙ୍କ 'ମାଳଶ୍ରୀ' ଗୀତର ସ୍ୱର ତାଳ ଓ ଗାନ ପଦ୍ଧତି ଅନ୍ୟ କବି ମାନଙ୍କଠାରୁ ସ୍ୱତନ୍ତ୍ର । କେତେକଙ୍କ ମତରେ 'ମାଳଶ୍ରୀ' ଗୀତ ରଚନା ପାଇଁ ସ୍ୱତନ୍ତ୍ର ବୃତ୍ତର ପ୍ରୟୋଗ କରାଯାଉଥିଲା । ଏହାର ବିଷୟବସ୍ତୁ ମାଳିକା ବା ଭବିଷ୍ୟତ ସମୟରେ ଘଟିବାକୁ ଥିବା ବିବିଧ ଘଟଣା ଆଧାରରେ ଲିଖିତ । କଳିଯୁଗରେ ଅଧର୍ମର ବିନାଶ ନିମନ୍ତେ ଭଗବାନ୍ କଲ୍‌କୀଙ୍କର ଅବତାର ଧାରଣ କରି ମ୍ଳେଚ୍ଛ ସଂହାର କରିବେ ଓ ସତ୍ୟ ଧର୍ମର ପ୍ରତିଷ୍ଠା ହୋଇ ଭକ୍ତମାନଙ୍କୁ ପାଳନ କରିବାର ସୂଚନା ଏଥିରେ ନିହିତ ।

କବିଙ୍କ ଧର୍ମ- ଦର୍ଶନ- ହାଡ଼ିଦାସଙ୍କ ରଚିତ ପୁସ୍ତକମାନଙ୍କରେ ସେ ଉତ୍କଳୀୟ ଯୋଗାଶ୍ରୟୀ ଜ୍ଞାନମାର୍ଗୀ ବୈଷ୍ଣବ ଧାରାର ଜଣେ ମୂର୍ଦ୍ଧନା ସିଦ୍ଧ ପୁରୁଷ । ଓଡ଼ିଶାର ଆରାଧ୍ୟ ଶ୍ରୀଜଗନ୍ନାଥ ହିଁ ତାଙ୍କ ବ୍ରହ୍ମମୟ ସ୍ୱରୂପ ପୂର୍ଣ୍ଣବ୍ରହ୍ମ । ଶ୍ରୀକ୍ଷେତ୍ର ହେଉଛି ସର୍ବତୀର୍ଥ ମୁକୁଟମଣି । ଶ୍ରୀଜଗନ୍ନାଥଙ୍କଠାରୁ ସଚରାଚର ବ୍ରହ୍ମାଣ୍ଡ ସୃଷ୍ଟି ।

ନୀଳାଚଳ କ୍ଷେତ୍ରରେ ମହିମା ସୃଷ୍ଟିକର୍ତ୍ତା ବ୍ରହ୍ମା ଓ ମହାଯୋଗୀ ମହାଦେବଙ୍କୁ ମଧ୍ୟ ଅଗୋଚର । ସୃଷ୍ଟି ପ୍ରଳୟ କାଳରେ ଏହି ସ୍ଥାନ ମଧ୍ୟ ବିରାଜିତ ଥିଲା । ଏହାର ପ୍ରତ୍ୟେକ ରେଣୁ ମଧ୍ୟ ଅତୀବ ପବିତ୍ର । ବ୍ରହ୍ମଙ୍କର ସଗୁଣ, ନିର୍ଗୁଣ ପ୍ରକାଶ ମଧ୍ୟରୁ

ସେ ନିର୍ଗୁଣ ଧାରାକୁ ଶ୍ରେଷ୍ଠ ବିଚାର କରିଅଛନ୍ତି । ପୁରୁଷୋତ୍ତମଙ୍କୁ ନିତ୍ୟ, ସର୍ବଭାବର ଅତୀତ, ଶୁଦ୍ଧ, ନିରାକାର, ନିରଂଜନ, ଜ୍ଞାନମୟ, ଜ୍ୟୋତିର୍ମୟ, ସଚ୍ଚିଦାନନ୍ଦ ରୂପେ ବିଚାର କରିଅଛନ୍ତି । ଏହି ନିର୍ଗୁଣ ବ୍ରହ୍ମ ଲୀଳାରସର ଆସ୍ୱାଦନ ପାଇଁ ଜଗତରେ ଅବତାର ଗ୍ରହଣ କରିବାକୁ ହୋଇଥାଏ । ସୁତରାଂ ଅବତାର ତଥା ସଗୁଣବାଦର ପ୍ରତିଷ୍ଠା କରିଅଛନ୍ତି । ହରେରାମ୍ ମନ୍ତ୍ରର ଉଚ୍ଚାରଣରେ ମନୁଷ୍ୟର ସକଳ ପାପରାଶ ଦିଗ୍‌ଧିଭୂତ ହୋଇଥାଏ । କଳୁଷ ମୁକ୍ତ ହୋଇ ଭଗବତ୍ ସାନ୍ନିଧ ଲାଭ ପାଇଁ ଭାଜନ ହୋଇଥାଏ ।

ମହାତ୍ମା ହାଡ଼ିଦାସଙ୍କ ଗ୍ରନ୍ଥ ରାଜିର ଅନେକ ସ୍ଥଳରେ ଜ୍ଞାନର ଶ୍ରେଷ୍ଠତା ନିରୂପଣ କରିଛନ୍ତି । ଭଗବତ୍ ଗୀତାରେ କୁହାଯାଇଛି ନହିଜ୍ଞାନେନ ସଦୃଶ ପବିତ୍ର ମିହ ବିଦ୍ୟମତେ–

"ଜ୍ଞାନାମୃତେନ ତୃପ୍ତସ୍ୟ କୃତ କୃତସ୍ୟ ଯୋଗୀନଃ
ନୈ ବାସ୍ତି କିଞ୍ଚିତ୍ କର୍ତ୍ତବ୍ୟ ମସ୍ତିଚେତ୍ ନସତ୍‌ତ୍ତ୍ୱବିତ୍"

(ଜାବାଳ ଦର୍ଶୋନୋପନିଷଦ ୧/୨୩)

ଜ୍ଞାନାମୃତ ଦ୍ୱାରା ତୃପ୍ତି ଲାଭ କରିବା ପ୍ରସଂଗ ଚର୍ଚ୍ଚିତ । ଯଥାର୍ଥ ଜ୍ଞାନଲାଭ ପରେ ଆଉ କିଛି କର୍ତ୍ତବ୍ୟ ରହିଗଲା ଯିଏ ଭାବେ ତାହାର ଜ୍ଞାନ ସିଦ୍ଧ ହୋଇ ନାହିଁ । ଜ୍ଞାନାଗ୍ନି ଦ୍ୱାରା କର୍ମଦୋଷ ନିବାରିତ ହୋଇଥାଏ । 'ଅହଂ ବ୍ରହ୍ମାସ୍ମି' 'ଅୟଂଆତ୍ମାବ୍ରହ୍ମ' 'ପ୍ରଜ୍ଞାନଂବ୍ରହ୍ମ', 'ତତ୍ତ୍ୱମସି', 'ସୋଽହମ୍' 'ଶିବୋଽହମ୍' ଇତ୍ୟାଦି ମହାବାକ୍ୟରେ ଆତ୍ମାପରମାତ୍ମାଙ୍କ ମଧରେ ଏକତ୍ୱ ପ୍ରତିପାଦିତ । ବେଦାନ୍ତ ଦର୍ଶନର ଜ୍ଞାନ ଏବଂ ତତ୍ ସହିତ ଭକ୍ତିର ସମନ୍ୱୟରେ ଈଶ୍ୱର ସାକ୍ଷାତ୍‌କାର ପାଇଁ ମାର୍ଗ ସୁଗମ ହେବା ପ୍ରସଂଗ କବି ସୂଚାଇଛନ୍ତି ।

ଉତ୍କଳୀୟ ବୈଷ୍ଣବ ଧାରାରେ ପିଣ୍ଡ ବ୍ରହ୍ମାଣ୍ଡରେ ଏକତ୍ୱ ପ୍ରତିପାଦନ କବିଙ୍କ ରଚନାବଳୀରେ ବହୁ ସ୍ଥାନରେ ପରିଲକ୍ଷିତ । ଷଡ଼ଚକ୍ର ସାଧନ, ବ୍ରହ୍ମରନ୍ଧ୍ରର ସହସ୍ରାରରେ ପ୍ରଭୁଙ୍କ ଦର୍ଶନ ଦ୍ୱାରା ସାଧକକୁ ପରମ ଶାନ୍ତି ପ୍ରାପ୍ତ ହୁଏ । ଯାହା ଅନ୍ୟ କୌଣସି ସାଂସାରିକ ବ୍ୟକ୍ତି ବା ବସ୍ତୁଠାରୁ ମିଳି ପାରି ନଥାଏ । ସୁତରାଂ ଈଶ୍ୱର ଦର୍ଶନ ଦିଗରେ ପବନ ସାଧନା ହିଁ ଶ୍ରେଷ୍ଠ ଯୋଗ । ଏହି ଧାରାରେ କେତେକ ସ୍ଥଳରେ ସ୍ପଷ୍ଟ ବର୍ଣ୍ଣନା ଏବଂ ଅନ୍ୟ କେତେକ ସ୍ଥଳରେ ସାଂକେତିକ ବର୍ଣ୍ଣନା ହୋଇଅଛି ।

ସମଗ୍ର ପରଦୃଶ୍ୟମାନ ଜଗତ ଈଶ୍ୱରଙ୍କ ପ୍ରକାଶିତ ରୂପ ବା ଈଶ୍ୱର ସୃଷ୍ଟି । ତାଙ୍କ ରଚନାରେ ବହୁ ଦେବଦେବୀ ଥିଲେ ହେଁ, ସେମାନେ ବ୍ରହ୍ମର କାର୍ଯ୍ୟ ସତ୍ତା ରୂପେ ବିଚାର କରିଛନ୍ତି ଏବଂ ସମସ୍ତ ସୃଷ୍ଟି ସେହି ପରମ ପୁରୁଷଙ୍କଠାରୁ ହୋଇଥିବା ବିଚାର କରିଛନ୍ତି । ଈଶ୍ୱର ଇନ୍ଦ୍ରିୟାତୀତ ଏବଂ ମନ- ଭାବନାରେ ଅତୀତ । ସେହି ଅଚିନ୍ତ୍ୟ ପୁରୁଷ ପରମାତ୍ମା ସର୍ବବ୍ୟାପକ । ଅଦ୍ୱୈତ ଚିନ୍ତନରେ 'ସର୍ବଂ ଖଲ୍ୱିଦଂ ବ୍ରହ୍ମ' ଅର୍ଥାତ୍ ସମସ୍ତ ଜଗତ୍ ବ୍ରହ୍ମମୟ । ପରମବ୍ରହ୍ମ ସାର୍ବଜ୍ଞାତା, ସର୍ବ ଶକ୍ତିମାନ, ସର୍ବଦ୍ରଷ୍ଟା, ସମଗ୍ର ବିଶ୍ୱକୁ ଆବୃତ୍ତ କରି ରଖିଛନ୍ତି-

ସର୍ବତଃ ପାଣିପାଦଂ ତତ୍ସର୍ବତୋଽକ୍ଷି ଶିରୋ ମୁଖମ୍ ।
ସର୍ବତଃ ଶ୍ରୁତି ମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି । (ଶ୍ୱେତା. ୩/୧୬)

ଚେତନ ଜୀବ, ବନସ୍ପତି, ଜଡ଼, ସ୍ଥାବର, ଜଂଗମ ସର୍ବତ୍ର ପରମାତ୍ମାଙ୍କ ପ୍ରକାଶ ପରିପୂର୍ଣ୍ଣ ଭାବେ ରହିଛି । ଏହି ବିଚାର କେବଳ ଉଦାର ଚେତନା ସଂପନ୍ନ, ଦିବ୍ୟ ଚେତନ ସ୍ତରରେ ଥିବା ମହାନୁଭବମାନେ ହିଁ ପରିଜ୍ଞାତ ହୋଇପାରନ୍ତି । ସେ ଦୃଷ୍ଟିରୁ ଆମର ଆଲୋଚ୍ୟ ହାଡ଼ିଦାସଙ୍କ ମହାନୁଭବର ପରିପ୍ରକାଶ ତାଙ୍କ କବିତାରେ ଝରିପଡ଼ିଛି ଦିବ୍ୟଧାମର ଉର୍ଦ୍ଧ୍ୱୟିତ ଚେତନର ସ୍ଫୁଲିଂଗ କିଛି ପରିମାଣରେ କବିତା କଲ୍ଲୋଳିନୀ ଭାବରେ ।

କର୍ମବାଦରେ ହାଡ଼ିଦାସଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ସତକର୍ମ ଦ୍ୱାରା ଜୀବ ବିମଳ ସ୍ତରରେ ପହଂଚି ପାରେ ଏବଂ ତତ୍‌ପରେ ଦିବ୍ୟ ଚେତନାର ପଥ ଉନ୍ମୁକ୍ତ ହୋଇଥାଏ । ସୁତରାଂ ସଦାଚାରୀ ହେବା ଧର୍ମ ଆଧାରରେ ପ୍ରଥମ ସିଦ୍ଧାନ୍ତ ଯେ ଅତୀତ ବର୍ତ୍ତମାନ ଓ ଭବିଷ୍ୟତରେ ଅପରିବର୍ତ୍ତନୀୟ, ସ୍ଥିର, ନିର୍ବିକାର ତାହା ହିଁ ସତ୍ୟ । ପ୍ରତି ଯୁଗରେ ଦିବ୍ୟଦ୍ରଷ୍ଟାମାନେ ଦେଶ କାଳ ଭେଦରେ ସତ୍ୟର ଆଶ୍ରୟ ହୋଇଥାନ୍ତି । ସେ ଦୃଷ୍ଟିରୁ ଯୁଗପୁରୁଷ ହାଡ଼ିଦାସ ସତ୍ୟାଶ୍ରୟୀ ଏବଂ ସତ୍ୟ ହିଁ ଈଶ୍ୱରଙ୍କ ସ୍ୱରୂପ, ସେହି ପଥର ଯାତ୍ରୀ ହେବାକୁ ମୁକ୍ତିକାମୀମାନଙ୍କୁ ଆହ୍ୱାନ କରିଅଛନ୍ତି ।

ପୂର୍ବଜନ୍ମର ତପଃଫଳ, ସଂସ୍କାର, ଅଧିତବ୍ୟ ଜ୍ଞାନ ଇତ୍ୟାଦି ଆଧାରରେ ବ୍ୟକ୍ତି କୌଣସି ଆଧ୍ୟାତ୍ମିକ ପଥରେ ଅଗ୍ରସର ହୋଇଥାଏ । ସମାନ ଶିକ୍ଷାଗତ ଯୋଗ୍ୟତା ଏବଂ ସାମାଜିକ ସ୍ଥିତିରେ ମଧ୍ୟ ପୂର୍ବ ସଂସ୍କାର ହେତୁ ଜଣେ ସେ ଦିଗରେ ଦ୍ରୁତ ଅଗ୍ରସର ହେଉଥିଲେ ମଧ୍ୟ ଅପର ଜଣକ ମନ୍ଦ ବୁଦ୍ଧି ହୋଇଥିବା

ଦେଖାଯାଏ । କିନ୍ତୁ ଆଧାତ୍ମିକ ପଥରେ ପାଦ ଥାପିଲେ ସ୍ୱତଃ ନାନାବିଧ ପରିବର୍ତ୍ତନ ଲକ୍ଷ୍ୟ କରିହେବ । ଆତ୍ମାର ଆହ୍ୱାନରେ ତାଙ୍କ ସାଂସାରିକ ମୋହ ନାଶ ହୋଇଥିଲା, ସେଥିପାଇଁ ସେ ପାପ- ପୁଣ୍ୟ, ସୁଖ- ଦୁଃଖ ପ୍ରଭୃତିର ଊର୍ଦ୍ଧ୍ୱାୟିତ ଚିନ୍ତନରେ ନିଜକୁ ସ୍ଥିତି କରାଇବା ତାଙ୍କ କବିତାରେ ପ୍ରକଟିତ ହୋଇଛି ।

**ସାହିତ୍ୟିକ ଦୃଷ୍ଟି-** କବି ଲୌକିକ ପ୍ରସଂଗ ବିଷୟୀଭୂତ କରି କବିତା ରଚନାରେ ପ୍ରୟାସୀ ହୋଇ ନାହାଁନ୍ତି । ମନୁଷ୍ୟର ଚରମ ତଥା ପରମ ଲାଭ ଈଶ୍ୱରାଭିମୁଖୀନତା ତଥା ମୁକ୍ତି ବା ମୋକ୍ଷ ପଥରେ ଯାତ୍ରୀ ହୋଇ ଚରମ ସ୍ଥିତିରେ ଉପସ୍ଥିତି ହେବାର ଉତ୍‌ପ୍ରେରଣା ଦେବାର ଲକ୍ଷ୍ୟ ନେଇ ତାଙ୍କ କବିତା, ତାଙ୍କ ରଚନା । ଯୋଗମାର୍ଗରେ ଗତି କରିଥିବା ନାନା ଅନୁଭୂତି ମାଧ୍ୟମରେ ସେ ଜିଜ୍ଞାସୁ ଭକ୍ତମାନଙ୍କୁ ଉଦ୍‌ବୁଦ୍ଧ କରିଛନ୍ତି । ତାଙ୍କ କବିତାରେ ସ୍ୱାଭାବିକତା, ସ୍ୱଚ୍ଛନ୍ଦତା, ସରଳତାକୁ ଯେକେହି ଲକ୍ଷ୍ୟ କରିପାରିବେ । ତେଣୁ କଳ୍ପନାଶ୍ରୟୀ ସାହିତ୍ୟିକମାନଙ୍କଠାରୁ ତାଙ୍କ ରଚନା ସ୍ୱତନ୍ତ୍ର । ପାଣ୍ଡିତ୍ୟ କିମ୍ବା ଅଳଂକରଣର ବିଚିତ୍ରତା ଦେଖିବାକୁ ମିଳେ ନାହିଁ । କିନ୍ତୁ ସ୍ୱାଭାବିକ ଭାବାବେଗରେ ଗତି ସମୟରେ ଉପମା, ରୂପକ, ଅର୍ଥାନ୍ତର ନ୍ୟାସ, ଦୀପକ ପ୍ରଭୃତି ଅର୍ଥାଳଂକାରମାନଙ୍କୁ ପାଠକ ଭେଟିଥାଏ । ତାଙ୍କ କବିତା ସଂଭାର ମଧ୍ୟରେ ଭକ୍ତି ଭାବ ହିଁ ପ୍ରମୁଖ ସ୍ଥାନ ଅଧିକାର କରିଛି । ସୁତରାଂ ସମଗ୍ର ଭାରତବର୍ଷରେ ସନ୍ଥ ଧାରାରେ କାବ୍ୟ ପ୍ରବାହରେ ଯେଉ ସବୁ ଭାବ- ଭାବନା, ଚିନ୍ତା- ଚେତନା ପ୍ରଭୃତି ଲକ୍ଷ୍ୟ କରିହୁଏ, ସେ ସମସ୍ତ ହାଡ଼ିଦାସଙ୍କ ରଚନାରେ ଉପଲବ୍‌ଧ । ବର୍ଣ୍ଣନା ଅନୁରୋଧରେ ଶୃଂଗାର ହାସ୍ୟ , ବୀର, କରୁଣ, ରୌଦ୍ର, ଭୟାନକ, ବିଭତ୍ସ, ଅଦ୍ଭୁତ, ଶାନ୍ତି ରସର ଅବତାରଣାରେ ନିଜ ଲେଖନୀକୁ କଲ୍ଲୋଳିତ କରି ଅଛନ୍ତି ।

ପରିଶେଷରେ ଆମେ ଏତିକି କହିପାରିବା ଯେ ଯୁଗ ସଂଧିର ସଂକଟ ବେଳରେ ଧର୍ମ- ଦର୍ଶନର ସେହି ମୂଳ ସୂତ୍ରଟିକୁ ଧରି- ଧରାଇ ଦେବାକୁ ସତତ ତତ୍‌ପର ଥିଲେ । କେବଳ ଜଣେ କବି ଭାବିରେ ନୁହେଁ, ଜଣେ ସମାଜ ସଂସ୍କାରକ ଭାବେ କାଳ କାଳକୁ ଅବିସ୍ମରଣୀୟ ହୋଇ ରହିବେ । ତାଙ୍କ ସଂପର୍କରେ ପ୍ରଚାର- ପ୍ରସାର ଆଶାନୁରୂପ ହୋଇଛି ବୋଲି ମନେହୁଏ ନାହିଁ ।



# ସନ୍ଥ ପର୍ଶୁରାମ ବିହାରୀ

ଯାଜପୁର ଜିଲ୍ଲା (କଳାଶ୍ରୀ) ଗୋପାଳପୁର ଗ୍ରାମରେ ସନ୍ଥ ପର୍ଶୁରାମ ବିହାରୀଙ୍କର ଆବିର୍ଭାବ ହୁଏ । ଜନ୍ମ ସମୟକୁ (୧୬୫୦ ଖ୍ରୀ.ଅ.ରୁ) ମଧ୍ୟରେ ଏ ଯାବତ ସ୍ଥିରିକୃତ ହୋଇଛି । ମାତା ବିମଳାଦେବୀ ଓ ପିତା ଶୁକଦେବଙ୍କର ସେ ଦ୍ୱିତୀୟ ସନ୍ତାନ । ଶୈଶବ ଅବସ୍ଥାରେ ମାତୃ ବିୟୋଗ ଘଟିଲା । ବୈରାଗ୍ୟ ଭାବାବିଷ୍ଟ ପିତା ତପସ୍ୟା ନିମନ୍ତେ ବଡ଼ିହ ପର୍ବତକୁ ଗୃହତ୍ୟାଗୀ ହୋଇ ଚାଲିଲେ । ନିଜ ପ୍ରଚେଷ୍ଟାରେ ଯତ୍‌କିଂଚିତ୍ ଶିକ୍ଷାଲାଭ କରିଥିଲେ । ସମୟକ୍ରମେ ସେ ପୁରାଣ, ବେଦ- ଉପନିଷଦ, ଯୋଗଶାସ୍ତ୍ର ଓ ସଂଗୀତ ଶାସ୍ତ୍ରରେ ଅବଗାହୀ ହୋଇଥିଲେ ।

ଉତ୍କଳୀୟ ଜ୍ଞାନମିଶ୍ରା, ଯୋଗ- ଆଧାରିତ ବୈଷ୍ଣବ ଧର୍ମର ସେ ଅନୁବର୍ତ୍ତୀ ଥିଲେ । ଅସିଆ ପର୍ବତମାଳାର ପାଦରେ, ଗୋପାଳପୁରଠାରେ ସେ ଆଶ୍ରମ ନିର୍ମାଣ କରି ଧର୍ମ- ଦର୍ଶନ- ସାହିତ୍ୟ- ସଂଗୀତର ଚର୍ଚ୍ଚା କରିବା ସହିତ ସମାଜ ସଂସ୍କାରରେ ମନୋନିବେଶ କରିଥିଲେ । ଓଡ଼ିଶାର ଗଡ଼ଜାତ ଏବଂ ଉତ୍ତର ଓଡ଼ିଶାରେ ସେ ବିହାରୀ ଗୋସେଇଁ ନାମରେ ବିଖ୍ୟାତ ହୋଇଥିଲେ ।

ତାଙ୍କ ରଚନାବଳୀ ମଧ୍ୟରେ ଜ୍ଞାନଗୀତା, ବ୍ରହ୍ମଜ୍ଞାନଗୀତା, ଆତ୍ମପରଚେଗୀତା, ଭଗବତ୍ ଗୀତାର ଓଡ଼ିଶା ଅନୁବାଦ, ଗୋ ଚିକିତ୍ସାଶାସ୍ତ୍ର, ଶ୍ରେଣୀ ନିର୍ଣ୍ଣୟ ଓ ଶତାଧିକ ତତ୍ତ୍ୱଜ୍ଞାନପୂର୍ଣ୍ଣ ଭଜନ, ଜଣାଣ, ସ୍ତୁତି, ଚଉତିଶା ଆଦି ଆଧ୍ୟାତ୍ମିକ ବୈଚାରିକ ରଚନା କରି ଓଡ଼ିଶାର ସନ୍ଥ ସାହିତ୍ୟକୁ ସମୃଦ୍ଧ କରିବା ସହ ଭକ୍ତି କଲ୍ଲୋଳକୁ ପୁଷ୍କଳ କରିଅଛନ୍ତି ।

ବାଣାବତୀ କଟକ- ସୋମବଂଶୀ କ୍ଷେତ୍ରୀୟ କୁଳରେ ଜାତ । ବାଲିପଡ଼ିଆ ସ୍ଥିତ ଅନ୍ତର୍ଯାମୀ ପଟ୍ଟନାୟକଙ୍କ କନ୍ୟା ତୁଳସୀଦେବୀଙ୍କୁ ସେ ବିବାହ କରିଥିଲେ । ଯୋଗଶାସ୍ତ୍ର, ପିଣ୍ଡ- ବ୍ରହ୍ମାଣ୍ଡ ତତ୍ତ୍ୱର ପୋଷକ ଥିଲେ । ଶ୍ରୀ ଜଗନ୍ନାଥ ତାଙ୍କର ଇଷ୍ଟ ବୋଲି ବହୁ ସ୍ଥାନରେ ସୂଚିତ କରିଛନ୍ତି ।

ସଂକେତ ଭାଷାରେ ଆଧ୍ୟାତ୍ମିକ ଭଜନ, ବ୍ରହ୍ମତତ୍ତ୍ୱର ବର୍ଣ୍ଣନାର ଧାରା ଓଡ଼ିଆ ସନ୍ଥ ସାହିତ୍ୟରେ ଖୁବ୍ ପ୍ରଚଳିତ । ଚର୍ଯ୍ୟା ଗୀତିକାର କବିମାନେ ବହୁ ଧାରାରେ 'କାତରୁ ବର ପଞ୍ଚବିଡ଼ାଳ' ପ୍ରଭୃତି ରଚନା କରି ବାହ୍ୟ ଅର୍ଥଠାରୁ ଅଭିପ୍ସିତ ଅର୍ଥର ସ୍ୱତନ୍ତ୍ରତା ରକ୍ଷା କରିଥିଲେ । ପଞ୍ଚସଖା ସାହିତ୍ୟରେ ଏହି ଧାରା ପରିପୁଷ୍ଟ ହୋଇଥିବା ଲକ୍ଷ୍ୟ କରାଯାଇପାରେ ।

ସନ୍ଥ ପର୍ଶୁରାମ ବିହାରୀ ଜଣେ ସିଦ୍ଧ ମହାପୁରୁଷ ଏବଂ ତାଙ୍କର ରଚନାରେ ବ୍ୟକ୍ତି ଚେତନାର ବିକାଶ, ସୁସ୍ଥ ସାମାଜିକ ଜୀବନର ପରିକଳ୍ପନା ସହିତ ଯୋଗମାର୍ଗରେ ଉତ୍କର୍ଷ ତଥା ଅନୁଭୂତି ସରଳ ଭାଷାରେ ବ୍ୟାଖାନ କରି ସାଧକମାନଙ୍କ ପାଇଁ ଆଲୋକିତ ସରଣୀର ଉଦଘାଟନ କରିଅଛନ୍ତି ।

ତାଙ୍କ ଭଜନଗୁଡ଼ିକର ଲୋକପ୍ରିୟତା ଅନସ୍ୱୀକାର୍ଯ୍ୟ । ଆହେ ଚକାଡୋଳା, ଭକ୍ତ ଭାବକୁ....., ହଂସ ଖେଳୁଛିରେ କଳପ ବଟରେ ରହି, ରାଧିକା ବୋଇଲେ ଦୂତୀ ଗୋ ମୋତେ ଜର କରିଛି, କପିଳା ବୋଲିଣ ଗାଈ ସେ ସଦା ସର୍ବଦା ଯୁବା, ବୋହୂ ଚାଲି ନଜାଣଇ ଲୋ- ପାଦ ପଡୁଥାଏ ବଙ୍କା, ବାଇମନ ହରି ଭଜୁଥା, ବୋହୂ ମୋ ବାଳ ତରୁଣ, ବୋହୂର ଅପାର ଗୁଣ, ହରେ ରାମକୃଷ୍ଣ ମୁରତି, ନିତ୍ୟେ ଜପହୋ ଜୀବ, ଆହେ ଚକାଡ଼ୋଳା, ପ୍ରଭୃତି ଭଜନଗୁଡ଼ିକ ଅତ୍ୟନ୍ତ ଜନପ୍ରିୟ । ଓଡ଼ିଶାର ବିଖ୍ୟାତ କଣ୍ଠଶିଳ୍ପୀମାନଙ୍କଠାରୁ ଗ୍ରାମର ବୈଠକୀ ସଂଗୀତ ଆସରରେ ସନ୍ଥ କବିଙ୍କ ରଚନା ଶ୍ରୋତା, ପାଠକମାନଙ୍କୁ ଏକ ନୈସର୍ଗିକ ଆନନ୍ଦ ରାଜ୍ୟକୁ ଘେନିଯିବା ସହିତ ବୈରାଗ୍ୟ ସଂଚାର ନିମିତ୍ତ ସହାୟତା କରିଥାଏ ।

ଶରୀର ମଧ୍ୟରେ ଥିବା ପଞ୍ଚ ପ୍ରାଣ, (ଦଶପ୍ରାଣ)ର ଯୌଗିକ ସ୍ଥିତି, ବ୍ରହ୍ମରନ୍ଧ୍ର ଏବଂ ସହସ୍ରାର ମଧ୍ୟରେ ପରଂବ୍ରହ୍ମ ଦର୍ଶନ ଇତ୍ୟାଦି ଯୋଗ ପ୍ରକ୍ରିୟାକୁ ଗାଈ, ବୋହୂ, ପାରା ପ୍ରଭୃତି ଲୌକିକ ବସ୍ତୁ କରିବାର ପ୍ରାୟାସ କରିଛନ୍ତି ।

ଶ୍ରୀକ୍ଷେତ୍ର ନିବାସୀ ଶ୍ରୀଜଗନ୍ନାଥ ରତ୍ନସିଂହାସନ ମଣ୍ଡନ କରି ବଡ଼ଦେଉଳରେ ବିରାଜମାନ କରିଥିବା ସତ୍ୟସ୍ଥିତିକୁ କବି ରୂପକ ମାଧ୍ୟମରେ ବ୍ୟକ୍ତ କରିବାକୁ ଯାଇ କହିଛନ୍ତି-

ଲଲାଟ ଚକ୍ରେ ବେନିଦଳ । ପୁରୁଷୋତ୍ତମ ମଧ୍ୟୁନିର ।
ମୁଖମଣ୍ଡଳ ଯାହା କହି । ସେ ସିଂହାସନ ହୋ ଅଟଇ ।
ନାସା ଗରୁଡ଼ ଚିହ୍ନ ଜାଣ । ତାହାର ପଛେ କର ଧ୍ୟାନ ।
ଧବଳ ପତ୍ର ନୀଳଜ୍ୟୋତି । ଚାରିରୂପେ ବିରାଜୁଛନ୍ତି ।

ସନ୍ଥ କବିଙ୍କ ସୃଷ୍ଟିରେ ଜୀବ- ପରମ, ଗୁରୁତତ୍ତ୍ୱ, ରାଧାକୃଷ୍ଣ, ଶ୍ରୀଜଗନ୍ନାଥ, ଷଡ଼ଚକ୍ର ସାଧନା, ନିତ୍ୟରାସ, ସାମାଜିକ ବ୍ୟବସ୍ଥା ଏବଂ ଭବିଷ୍ୟତ ସମୟର ସଂକେତ ପ୍ରଭୃତି ପରିସ୍ଫୁଟ ହୋଇଛି କଳା ମଂଜୁଳ ରୂପରେ ।

ଈଶ୍ୱରୀୟ କୃପା ପ୍ରାପ୍ତି ହେବା ପାଇଁ ନିଜକୁ ସର୍ବ ପ୍ରଥମେ ଭାଜନ କରିବାକୁ ହେବ ଯୋଗ ସାଧନ, ସଦାଚାର ଦ୍ୱାରା ସତ୍ତ୍ୱଗୁଣର ବିକାଶ ବିଧି ମୁତାବକ କରି ପାରିଲେ, ପୁନଃ ଗୁରୁକୃପା ଲାଭ ଦ୍ୱାରା ଈଶ୍ୱରୀୟ ରାଜ୍ୟରେ ପ୍ରବେଶ ଅନୁକୂଳ ହୋଇପାରିବ । ସାଧନା ମାର୍ଗ ହି ସିଦ୍ଧି ଲାଭର ଏକମାତ୍ର ଉପାୟ । ସନ୍ଥକବିଙ୍କ ଦିବ୍ୟ ଚେତନାରେ ସୁନ୍ଦର ସମାଜ ପରିକଳ୍ପନା ତାଙ୍କ ଭାବାବେଗକୁ ପରିପ୍ରକାଶ କରିବା ସହିତ ଜଣେ ଆଶାବାଦୀ ଉତ୍କଳୀୟ ସନ୍ଥଙ୍କୁ ଆମେ ତଦୀୟ ରଚନାବଳୀ ମଧ୍ୟରେ ଲକ୍ଷ୍ୟ କରିଥାଉଁ ।



# ଠାକୁର ଶ୍ରୀ ଅଭିରାମ ପରମହଂସ

୧୯୦୪ ମସିହା ମକର ମାସ ପଞ୍ଚଦିନ ତ୍ରିବେଣୀ ଅମାବାସ୍ୟା ତିଥିରେ ପୁରୀଜିଲ୍ଲା ଅନ୍ତର୍ଗତ କରମଲା ଭୋଇପଡ଼ା ଗ୍ରାମରେ ଅଭିରାମ ପରମହଂସ ଦେବଙ୍କ ଆବିର୍ଭାବ ହୋଇଥିଲା । ମାତା ରାଧାଦେବୀ ଓ ପିତା ସତ୍ୟବାଦୀଙ୍କ ତୃତୀୟ ସନ୍ତାନ । ଜନ୍ମରୁ ଅଲୌକିକ ଘଟଣାମାନ ତାଙ୍କଠାରେ ଦେଖିବାକୁ ମିଳିଥିଲା । ସେହି ଗ୍ରାମର ପଡ଼ୋଶୀ ସନ୍ତାନହୀନା ମାତା ସୁବ୍ରତା- ଏବଂ ଅର୍ଜୁନଙ୍କ କୋଳକୁ ଟେକି ଦେଇଥିଲେ । ସେମାନେ ଠାକୁରଙ୍କ ନାମ ରଖିଥିଲେ ବିନୋରୀ କିନ୍ତୁ ଏକବିଂଶ ଦିବସ ନାମ କରଣରେ ତାଙ୍କ ନାମ ଅଭିରାମ ରଖାଯାଇଥିଲା ।

ଜନ୍ମିତ ପିତା ସତ୍ୟବାଦୀ ଜଣେ ଜ୍ୟୋତିଷବିତ୍ ଥିବାରୁ ଠାକୁରଙ୍କ କୋଷ୍ଠୀ ଗଣନାକରି ଭବିଷ୍ୟତ ବାଣୀ କରିଥିଲେ । କୋଷ୍ଠୀ ଏହିପରି- ମୀନଲଗ୍ନରେ ବୃହସ୍ପତି ଏବଂ କେତୁ, ସପ୍ତମରେ ରାହୁ, ଦଶମରେ ବୁଧ- ଶୁକ୍ର, ଏକାଦଶରେ ରବି, ଚନ୍ଦ୍ର, ଶନି ଏବଂ ଦ୍ୱାଦଶ ଭାବରେ କୁମ୍ଭଘରେ ମଂଗଳ । ଆପଣା କୋଷ୍ଠୀକୁ ଏକ କବିତାରେ ପ୍ରକାଶ କରିଛନ୍ତି । ବିଧିର ବିଚିତ୍ର ନିୟମରେ ସୁବ୍ରତା ଏବଂ ଅର୍ଜୁନଙ୍କର ଅଳ୍ପ ବ୍ୟବଧାନରେ ମୃତ୍ୟୁବରଣ କରିବାରୁ ଠାକୁର ପୁନଃ ନିଜର ପରିବାରକୁ ଫେରି ଆସିଛନ୍ତି ।

ପିତା ସତ୍ୟବାଦୀ ବ୍ରହ୍ମପୁରରେ ଅବଧାନୀ ବୃତ୍ତି କରୁଥିଲେ । ସେହି ସ୍ଥାନକୁ ଅଭିରାମକୁ ବାଲ୍ୟଶିକ୍ଷା ନିମନ୍ତେ ଘେନିଯାଇଥିଲେ କିନ୍ତୁ ପାଠପଢ଼ାରେ ଅମନଯୋଗୀ ହୋଇ ଫେରିଆସିଲେ ଏବଂ ଅନୁଷ୍ଠାନିକ ବିଦ୍ୟାଶିକ୍ଷା ଏହିଠାରେ ହିଁ ସମାପ୍ତ ହୋଇଥିଲା । ଅପରପକ୍ଷେ ଯୋଗ ସାଧନା, ଆସନ, ପ୍ରାଣାୟାମ, ଧ୍ୟାନ, ସମାଧିରେ ନିମଗ୍ନ ହେଲେ । ବାସସ୍ଥାନଠାରୁ କିଞ୍ଚିତ ଦୂରବର୍ତ୍ତୀ କୁଟୀର ହେଲା ସାଧନା ମନ୍ଦିର ।

ଖାଣ୍ଡବ ବନରେ କିଛିକାଳ ଏକାନ୍ତ ବାସ ଏବଂ ଯୋଗ ସାଧାନାରେ ସିଦ୍ଧି ଲାଭ କଲେ । ବନଦୁର୍ଗା ପୌର୍ଣ୍ଣମାସୀଙ୍କ କୃପାଲାଭ କଲେ ତଥା ପୌର୍ଣ୍ଣମାସୀ ତାଙ୍କ ଗୁରୁ ହୋଇଥିବା ତାଙ୍କ ରଚନାବଳୀ ମଧ୍ୟରେ ବହୁ ସ୍ଥାନରେ ସୂଚାଇଛନ୍ତି । ଏହାପରେ ଗଂଜାମର ପାର୍ବତ୍ୟ ଅଂଚଳରୁ ଆରମ୍ଭ କରି ଢେଙ୍କାନାଳର କପିଳାସ, ସପ୍ତଶଯ୍ୟା, ସୁକିନ୍ଦା, କଟକ ଜିଲ୍ଲାର ଜଳୌକା, ମହାବିନାୟକ, ଚଣ୍ଡିଖୋଲ ପର୍ବତମାନ ପରିଭ୍ରମଣ କରିଥିଲେ । ସିଦ୍ଧଗିରି ଜଳୌକାର ହାଡ଼ିଦାସଙ୍କ ଆଶ୍ରମରେ କିଛିକାଳ ଅତିବାହିତ କରିଥିବା ଜଣାଯାଏ ।

କଲିକତା ଯାତ୍ରା କରି ଶଙ୍କରାଏଲ ଚଟକଳ ଶ୍ରମିକ ଭାବେ କାର୍ଯ୍ୟ କରୁଥିବା ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାର ଅନ୍ୟକାର୍ଯ୍ୟ ନିଯୁକ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ଆଧ୍ୟାତ୍ମିକ ଜ୍ଞାନର ପରିପ୍ରଚାର କରି ସେଠାରୁ ବୈକୁଣ୍ଠ ବାବାଙ୍କୁ ସଂଧାନ କରିଥିଲେ । ସେଠାରେ ଶ୍ରମିକ ଭାବରେ (ନାମକୁମାତ୍ର) ଅବସ୍ଥାନ କରି ପୁନଃ ଭୋଇପଡ଼ାକୁ ପ୍ରତ୍ୟାବର୍ତ୍ତନ କଲେ । ଏବେ ଗାଁ ମୁଣ୍ଡ ଶ୍ମଶାନଠାରେ ଆଶ୍ରମ ପ୍ରତିଷ୍ଠା ହେଲା । ସାଧୁର ଲକ୍ଷଣ ସମ୍ବନ୍ଧରେ ଠାକୁର ଲେଖିଛନ୍ତି–

ସାଧୁ ବୋଲିଣ ଯାକୁକହି, ଅକ୍ରୋଧୀ ବଇରାଗୀ ସେହି ।
ଜିତେନ୍ଦ୍ରିୟ ଦୟାକ୍ଷମାରେ, ଭାବି ଦେଖଇ ସମାନରେ ।
ନିର୍ଲୋଭୀ ଦାନୀ ଭୟଶୂନ୍ୟ, ରହଇ ଅମୋକ କାନନ ।
ବୈକୁଣ୍ଠ ବାବା ଉଲ୍ଲେଖିତ ସାଧୁ ଲକ୍ଷଣ ଆଧାରିତ ଥିଲେ ।

୧୯୨୭ ମସିହା ବେଳକୁ ଝାଟିମାଟିରେ କେତୋଟି ଘର ସାଧୁମାନଙ୍କ ରହିବା ପାଇଁ କରାଯାଇଥିଲା । ସର୍ବରାକାରଙ୍କ ଆକ୍ରୋଶରେ ତାହା ନଷ୍ଟ ହୋଇଗଲା । ପରେ ୧୯୩୬ ମସିହାବେଳକୁ କରମଳାର ସ୍ଥାୟୀ ଆଶ୍ରମ ନିର୍ମାଣ ସମୟରେ ସର୍ବରାକାର ସିନ୍ଧୁ ପ୍ରଧାନଙ୍କ ସହଯୋଗ ମିଳିଥିଲା ।

ଏବେ ଆଶ୍ରମ ଆଶ୍ରିତ ସନ୍ନ୍ୟାସୀମାନଙ୍କୁ ସାଥୀରେ ଧରି ଏକାକ୍ଷର ବ୍ରହ୍ମ ନାମର ପ୍ରଚାର ପୂର୍ବକ ସେବା, ତ୍ୟାଗ, ଦୟା, ଦାନ ଇତ୍ୟାଦି ମହତ ତତ୍ତ୍ୱର ପ୍ରଚାରରେ ବାହାରିଲେ ପ୍ରବର୍ଜ୍ୟାରେ । ତାଙ୍କୁ ଯେପରି ଦୃଶ୍ୟ ହୋଇଗଲା ବିରୂପା ନଦୀ ତଟରେ ତୋଟାମାଳ ମଧ୍ୟରେ ଥିବା ଇଛାପୁର ଗ୍ରାମ, ତାହାହିଁ ଉପଯୁକ୍ତ ସାଧନା ସ୍ଥଳ ଏବଂ ପ୍ରଚାର ପ୍ରସାର ପାଇଁ ଯଥାର୍ଥ ସ୍ଥାନ । କଲିକତାର ପୂର୍ବରୁ ପରିଚିତ ଚକ୍ରଧର ନାୟକ ଚଟକଳର ଶ୍ରମଜୀବୀ, ତାଙ୍କ ଗାଁ । ପୂର୍ବଦିନ ସ୍ୱପ୍ନରେ

ଠାକୁରେ ତାଙ୍କୁ ଦେଖା ଦେଇଛନ୍ତି, ସେ ଠାକୁରଙ୍କ ବାଟକୁ ଚାହିଁ ବସିଛନ୍ତି ନିର୍ବିଶେଷ ନୟନରେ । କସ୍ତୁରୀ ବାବା, ଭରତ ବାବା, ବୈକୁଣ୍ଠ ବାବାଙ୍କ ସହ ଠାକୁର ଅଭିରାମ ପରମହଂସ ଆସି ପହଞ୍ଚିଗଲେ । ସପ୍ତାହେ ଧରି ସତ୍‌ସଂଗ ଚାଲିଲା ପରେ ସେହି ଗାଁ' ଆମ୍ବ ତୋଟାରେ କୁଟୀର ନିର୍ମାଣ ହେଲା । ତୋଟା ଧାରରେ ବିରୂପା ନଈ । ତେଣୁ ଭକ୍ତମାନଙ୍କର ସମାବେଶ, ସ୍ନାନ, ମାର୍ଜନା, ତର୍ପଣ ଇତ୍ୟାଦି ପାଇଁ ଯଥେଷ୍ଟ ସୁବିଧା ମିଳିଗଲା । ସ୍ଥାନୀୟ ଭକ୍ତମାନଙ୍କର ଆଗମନ, ନଦୀପାରିର ଭକ୍ତମାନଙ୍କର ଆଶ୍ରମକୁ ଅବାରିତ ଭାବେ ସ୍ରୋତ ଚାଲିଲା । ଇଚ୍ଛାପୁରର ଆବାଳବୃଦ୍ଧ ବନୀତା ତାଙ୍କର ପ୍ରିୟ ହୋଇଯାଇଥିଲେ । ଏବେ ବି ଇଚ୍ଛାପୁର ମାଟି ଠାକୁରଙ୍କ ସ୍ମାରକୀ ବହନ କରିଛି ।

୧୯୨୭-୩୧ ଚାରିବର୍ଷ ବାଳ ଠାକୁର ଇଚ୍ଛାପୁର ଅଂଚଳରେ ପଦଯାତ୍ରା କରି ସତ୍‌ସଂଗମାନଙ୍କରେ ଧର୍ମୋପଦେଶ ପ୍ରଦାନ କରିଥିଲେ । ଏଥି ସହିତ ଗ୍ରାମ୍ୟ କଳାକାରମାନଙ୍କ କଣ୍ଠରୁ ତାଙ୍କ ରଚିତ ଭଜନ ତଥା ତାଙ୍କ ତୃଣମୂଳ ସ୍ତରରୁ ପ୍ରତିଷ୍ଠିତ କରିପାରିଥିଲା । ଏହି ସମୟରେ ତାଙ୍କ ବହୁ ଭଜନ ତଥା ତାଙ୍କ ବିଖ୍ୟାତ ସୃଷ୍ଟି କଳି ଭାଗବତ ରଚିତ ହେଉଥାଏ । ସମୟେ ସମୟେ ସତ୍‌ସଂଗମାନଙ୍କରେ କଳିଭାଗବତର ପଠନ ବ୍ୟାଖ୍ୟାନ କରି କରାଉଥିଲେ । ମହାତ୍ମାଗାନ୍ଧୀଙ୍କର ସ୍ୱରାଜ, ସତ୍ୟାଗ୍ରହ ଇତ୍ୟାଦି ଶବ୍ଦ ଆଧାତ୍ମିକ ଅର୍ଥରେ ପ୍ରଯୁକ୍ତ ହୋଇଛି । ତାହାର ବ୍ୟାଖ୍ୟାନ କରୁଥିଲେ । ସ୍ପଷ୍ଟଭାବେ କହିବାକୁ ଗଲେ ସ୍ୱାଧୀନତା ସଂଗ୍ରାମର ସଚେତନତା ସତସଂଗ ମାଧ୍ୟମରେ ହେଉଥିଲା । କାରଣ ସେ ଦୂରଦ୍ରଷ୍ଟା ମହାପୁରୁଷ ପରାଧୀନରୁ ମୁକ୍ତ ହେବାରୁ ପ୍ରେରଣା ଜନସାଧାରଣ ମଧ୍ୟରେ ଦେବା ସବୁମନ୍ତେ ଯଥାର୍ଥ । ଦିବ୍ୟଦ୍ରଷ୍ଟା ପୁରୁଷ ଏହା ଫଳ ସ୍ୱରୂପ ନିଜପ୍ରତି ଥିବା ଦଣ୍ଡକୁ ମଧ୍ୟ ଗ୍ରହଣ କରିବାକୁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇସାରିଥିଲେ । ଠାକୁରଙ୍କ ଧର୍ମ ପ୍ରଚାର ଶୈଳୀ ଯେତିକି ତାତ୍‌ପର୍ଯ୍ୟପୂର୍ଣ୍ଣ, ତାଙ୍କ ସାମାଜିକ ସଂସ୍କାର ପାଇଁ ସ୍ୱତନ୍ତ୍ର ଉପଦେଶ ସେହିପରି ଗୁରୁତ୍ୱପୂର୍ଣ୍ଣ । ଭ୍ରମଣ ସମୟରେ ନିଶାନିବାରଣ, ନାରୀଜାଗରଣ, ଅସ୍ପୃଶ୍ୟତା ନିରାକରଣ, ସର୍ବଧର୍ମ ସଦ୍‌ଭାବ ଇତ୍ୟାଦି ସଂପର୍କରେ ସଫଳ ପ୍ରୟାସ କରିଥିଲେ ।

ପରମ ପୁରୁଷ ଶ୍ରୀନାରାୟଣଙ୍କ ଅଭୟ ପଦପଙ୍କଜକୁ ଭକ୍ତ ମନ ମଧ୍ୟରେ ସଦାସର୍ବଦା ଧାରଣ କରିପାରିଲେ ସାଂସାରିକ ତ୍ରିତାପରୁ ନିସ୍ତାର ପାଇବା ସହିତ

ପାରଲୌକିକ ସୁଖର ସଂଧାନୀ ହୋଇ ପାରିବ । ସେହି ଅଭୟ ପାଦ ଠାକୁରଙ୍କ ଭାଷାରେ ଏହିପରି-

ସପତ ସାଗର ଯାର ପାଦେ ରହିଥାଇ
ଚୌରାଅଶୀ କାଠିଗଂଗା ଯା ପାଦୁ ବହଇ ।
ବାମନାବତାରେ ବ୍ରହ୍ମା ପାଦ ପଖାଳିଲା
ଗଂଗା ଶୁଖିଗଲା ପାଦ ଧଉତ ନୋହିଲା ।
ସେହି ପଦକମଳରେ ରହିଥାଉ ଧ୍ୟାନ
ଅଭିରାମ ସେ ପାଦରେ ରଖିଥାଉ ମନ ।

ଭାରତବର୍ଷରେ ସ୍ୱାଧୀନତା ସଂଗ୍ରାମର ଦୁଇଟି ପର୍ଯ୍ୟାୟ ଯଥା- ୧. ଅସହଯୋଗ ଆନ୍ଦୋଳନ, ୨. ୧୯୩୦ରେ (ଆଇନ ଅମାନ୍ୟ) ଲବଣ ସତ୍ୟାଗ୍ରହ ଦୁଇ ଦୁଇଟା ଜନସାଧାରଣ ସଂପୃକ୍ତି ଆନ୍ଦୋଳନ ହୋଇ ସାରିଥିଲା । ସମାଜର ତଳସ୍ତରରେ ସଂପୃକ୍ତ ରଖୁଥିବା ଜଣେ ଦୂରଦ୍ରଷ୍ଟା କିପରି ନିରବରେ ଏ ସବୁ ଦେଖି ସହିପାରିଥାନ୍ତେ ? ବ୍ରିଟିସ ସରକାରଙ୍କ ଅତ୍ୟାଚାର, ଲୋକମାନଙ୍କ ଉପରେ ଜୁଲୁମ, ତୁହାକୁ ତୁହା କରଭାରରେ ଲୋକେ ଭୀତ, ସଂତ୍ରସ୍ତ । ସେମାନଙ୍କ ମନରେ ନୈତିକ ବଳ ସୃଷ୍ଟି କରିବା ଏବଂ ଈଶ୍ୱର ପ୍ରାପ୍ତି ବା ସ୍ୱାଧୀନତା ପ୍ରାପ୍ତି ପାଇଁ 'ନିର୍ଭୟ' ହେବାକୁ ଶିଖାଉଥିଲେ । ବାରମ୍ବାର ବିଭିନ୍ନ ସ୍ଥାନରେ ଜମିଦାରମାନଙ୍କର 'ହାକିମୀ' ମନୋବୃତ୍ତିର ପରିବର୍ତ୍ତନ କରି ସେମାନଙ୍କୁ ସେବା, ତ୍ୟାଗ ମନ୍ତ୍ରରେ ଦୀକ୍ଷିତ କରାଇ ଲୋକ କଲ୍ୟାଣକର ମାର୍ଗରେ ଚାଳିତ କରିବାର ପ୍ରେରଣା ସେମାନଙ୍କୁ ଦେଇଛନ୍ତି । ଫଳରେ ଜମିଦାର- ରୟତ ମଧ୍ୟରେ ବ୍ୟବଧାନ ଊଣାହୋଇଛି । ସ୍ୱାଧୀନତା ସଂଗ୍ରାମ ପାଇଁ ଏହି ମାନସିକ ପଟ୍ଟଭୂମିରୁ କଳି ଭାଗବତର ସୃଷ୍ଟି ।

ମାହାଙ୍ଗା ଥାନା ଅଫିସର ଦୁର୍ଗାନନ୍ଦ ବାବୁ ପ୍ରଥମେ କଳିଭାଗବତ ବହି ସଂଗ୍ରହ କରି ଅଭିରାମ ପରମହଂସ ଦେବଙ୍କୁ ଦେଶଦ୍ରୋହୀ ବୋଲି ଅଭିଯୁକ୍ତ କରିଥିଲେ ଖନ୍ଦୋଳ ଗ୍ରାମ ସତ୍‌ସଂଗରୁ । ସାତଦିନ ଭିତରେ ସେ ଅଂଚଳ ଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦେଇଥିଲେ । ଅପର ପକ୍ଷେ କଳି ଭାଗବତରୁ ଆପତ୍ତିମୂଳକ ଅଂଶର ଇଂରାଜୀ ଅନୁବାଦ କରି ତା- ୦୨/୦୨/ ୧୯୩୪ ରିଖରେ ବିହାର ଓଡ଼ିଶା କମିଶନରଙ୍କ ଅଫିସ୍‌କୁ ପ୍ରେରିତ କଲେ । ରିପୋର୍ଟ ଆଧାରରେ ସେ

ଅଭିରାମଙ୍କ ବିରୁଦ୍ଧରେ ରାଜଦ୍ରୋହ, ବିଦ୍ରୋହ ଇତ୍ୟାଦି ଗୁରୁତର ଅଭିଯୋଗ ମାନ ଖ୍ୟାତ କଲେ । ସେହି ଅନୁସାରେ ମାନ୍ଦ୍ରାଜ ସରକାରଙ୍କର ମୁଖ୍ୟ ଶାସନ ସଚିବ ବ୍ରାକେନ୍ ସାହେବ ଭାଗବତର ଲେଖକ, ପ୍ରକାଶକ ଓ ମୁଦ୍ରାକାରଙ୍କ ବିରୁଦ୍ଧରେ ମାମଲା ରୁଜୁକଲେ । 'କଳିଭାଗବତ' ପୁସ୍ତକ ଗଂଜାମର ଶଶୀଭୂଷଣ ରଥଙ୍କ 'ଆଶା' ପ୍ରେସ୍‌ରେ ଛପା ହୋଇଥିବାରୁ ମାମଲାର ବିଚାର ପାଇଁ ଛତ୍ରପୁର ନ୍ୟାୟଳୟକୁ ପଠାଗଲା । ଛତ୍ରପୁର ବିଚରାଳୟରେ ବିଚାର ହୋଇ ମାଜିଷ୍ଟ୍ରେଟ କଳିଭାଗବତକୁ ସରକାରୀ ବିରୋଧୀ ବୋଲି ଘୋଷଣା କରି ବହିଟିକୁ ବାଜ୍ୟାପ୍ତି କରିବା ପାଇଁ ନିର୍ଦ୍ଦେଶ ଦେଲେ । ପ୍ରକାଶନ ଦେଶପ୍ରେମୀ ଶଶୀଭୂଷଣ ରଥ ଏବଂ ମୁଦ୍ରାକାର ଶ୍ରୀଯୁକ୍ତ ଗନ୍ତାୟତଙ୍କ ବିରୁଦ୍ଧରେ ମୋକଦ୍ଦମା ରଜୁ କରାଗଲା । କଳିଭାଗବତ ହେଉଛି ବ୍ରିଟିସ୍ ଶାସନର ସାର୍ବଭୌମତ୍ୱକୁ ଅବମାନନା କରୁଥିବା ରାଜଦ୍ରୋହଦ୍ୟୋତକ ଗ୍ରନ୍ଥ ଏବଂ ଏହାର ପ୍ରଣେତା ଠାକୁର ଅଭିରାମ ପରମହଂସ ହେଉଛନ୍ତି ଜଣେ ରାଜଦ୍ରୋହୀ ସାଧୁ । (Case under, C.P.C. rule 195 Sec 124 dated 20.9.1934. "They said publication contained several passage and seditious matters intended to bring into hatred and contempt of his Majesty the king Emperor and government established by low in British India.")

ଦେଶଦ୍ରୋହୀଙ୍କୁ ସମୁଚିତ ଦଣ୍ଡ ଦେବାକୁ ଶାସନକଳର ଲମ୍ବାହାତ-

ମାହାଙ୍ଗା ଥାନାରୁ କଟକଥାନା, ପୁରୀ, ଛତ୍ରପୁର, ପରିଶେଷରେ ବ୍ରହ୍ମପୁର ଜେଲ ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା । ତେଣୁ ଓଡ଼ିଶାର ରାଜନୈତିକ ପ୍ରମୁଖ ନେତୃବୃନ୍ଦ ଏହି ଘଟଣାର ଖବର ରଖିଥିବା ଏବଂ କେତେକ ସିଧାସଳଖ ସଂପର୍କ ରଖିଥିବା ସ୍ପଷ୍ଟ ଅନୁମେୟ ।

ସେପ୍ଟେମ୍ବର ମାସ ୨୯ ତାରିଖ, ୧୯୩୪ ମସିହାର ସେହି ସ୍ମରଣୀୟ ଦିନ, ଯେଉଁ ଦିନ ରାଜଦ୍ରୋହ ଅପରାଧରେ ଅଭିଯୁକ୍ତ ଓଡ଼ିଆ ସନ୍ନ୍ୟାସୀଙ୍କ ବିଚାର ଆରମ୍ଭ ହେଲା । ଡିକ୍‌ସନ୍ ସାହେବଙ୍କ ଇଜଲାସ୍‌ରେ ବିଚାର ଆରମ୍ଭ ହେଲା । ଏହି ସଂବେଦନଶୀଳ ଘଟଣାକୁ ଦେଖିବା ପାଇଁ ତଥା ସଂପୃକ୍ତ 'ପଦ'ଗୁଡ଼ିକର ବ୍ୟାଖ୍ୟାନ କରିବା ପାଇଁ ଐତିହାସିକ ସାହିତ୍ୟିକ ଆଡ଼ଭୋକେଟ ଜଗବଂଧୁ ସିଂହ, କଳିକତା

ବିଶ୍ୱବିଦ୍ୟାଳୟର ଅଧ୍ୟାପକ ପଣ୍ଡିତ ବିନାୟକ ମିଶ୍ର ଉପସ୍ଥିତ ରହୁଥିଲେ । 'ନ୍ୟୁ ଇଣ୍ଡିଆ' ଓ 'ଆଶା' ପ୍ରେସ୍‌ର ମାଲିକ ଶଶୀଭୂଷଣ ରଥ ଓ କଳିଭାଗବତର ମୁଦ୍ରାକାର ଶ୍ୟାମସୁନ୍ଦର ଗନ୍ତାୟତଙ୍କ ପକ୍ଷରୁ ଓକିଲ ଲିଙ୍ଗରାଜ ପାଣିଗ୍ରାହୀ, (ପରେ ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି) ଲଢୁଥିଲେ । ପଣ୍ଡିତ ନୀଳକଣ୍ଠ ଦାସ, ବିଶ୍ୱନାଥ ଦାସ (ପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ତଥା ଗଭର୍ଣ୍ଣର) ମଧ୍ୟ ଉପସ୍ଥିତ ରହିଥିଲେ ।

ଅଦାଲତରେ ଜେରା ଆରମ୍ଭ କରିଛନ୍ତି ଜଜ୍ ଡିକ୍‌ସନ୍ ସାହେବ- ତୁମ ନାମ କ'ଣ ? ରୁ ଦ୍ୱିତୀୟ ପ୍ରଶ୍ନରେ 'ଜଣେ ସନ୍ନ୍ୟାସୀ ହୋଇ ରାଜଦ୍ରୋହ କଲ କାହିଁକି ?ରୁ ସ୍ପଷ୍ଟ ପ୍ରମାଣିତ ହୋଇଯାଉଛି ଯେ ବିଚାର ହେବା ପୂର୍ବରୁ ଜଜ୍ ସାହେବ ଠାକୁର ଅଭିରାମଙ୍କୁ ଦେଶଦ୍ରୋହୀ ବୋଲି ଧରି ନେଇଛନ୍ତି । ପରିଣାମ ତ ଯାହା ସ୍ପଷ୍ଟ ଦେଖାଯାଉଛି, କିନ୍ତୁ ସାଧାରଣ ଲୋକଙ୍କୁ ନ୍ୟାୟାଳୟର ବିଧି ଦେଖେଇବା ପାଇଁ ଅଢ଼େଇ ମାସ କାଳ ତାରିଖପରେ ତାରିଖ ଗଡ଼ିଗଡ଼ି ସେପ୍ଟେମ୍ବର ୨୯, ୧୯୩୪ରୁ ଡିସେମ୍ବର ୧୨/୧୯୩୪ ଯାଏ ଚାଲିଥିଲା । ଡିସେମ୍ବର ୩୧/ ୧୯୩୪ରେ ରାୟ ଅନୁସାରେ ତାଙ୍କୁ ଶଶୀଭୂଷଣ ରଥ ଯେ କି 'କଳିଭାଗବତ' ବହିର ପ୍ରକାଶକ ଥିଲେ । ତାଙ୍କୁ, ଏକବର୍ଷ କାରାଦଣ୍ଡ ହେଲା । ପ୍ରଥମେ ବ୍ରହ୍ମପୁର ଜେଲ୍ ଏବଂ ଦୁଇଦିନ ପରେ ରାଜ ମହେନ୍ଦ୍ରୀ ଜେଲକୁ ଯିବାକୁ ହେବ । ରାଜ ମହେନ୍ଦ୍ରୀ ଜେଲ୍‌ରେ ୧୯୩୫ ଜାନୁୟାରୀ ୯ ତାରିଖରୁ ନଭେମ୍ବର ମାସ ସେଠାରେ ବନ୍ଦୀ ଜୀବନ କଟାଇଥିଲେ ।ଏହି ଆଦେଶନାମା ବିରୁଦ୍ଧରେ ତତ୍‌କାଳୀନ୍ ପ୍ରଖ୍ୟାତ ଆଡ୍‌ଭୋକେଟ ବାବୁ ଜଗନ୍ନାଥ ଦାସ (ଯେ କି ପରେ ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ଓ ସୁପ୍ରିମକୋର୍ଟ ବିଚାରପତି ହୋଇଥିଲେ) ମାନ୍ଦ୍ରାଜ ହାଇକୋର୍ଟରେ ଅପିଲ କଲେ । ମାତ୍ର ତାଙ୍କ ଅପିଲ ଖାରଜ ହେଲା ।

ଆପତ୍ତି ଜନକ ପଦାବଳୀ ଏହିପରି- ଯାହାକୁ ଦେଶଦ୍ରୋହ ଆଖ୍ୟା ଦିଆଯାଇ ଠାକୁରଙ୍କୁ ଦେଶଦ୍ରୋହୀ ବୋଲି ବିଚାର କରାଯାଇଥିଲା ।

ପାଞ୍ଚ ମନଟି ଯାକୁ କହି । ପଞ୍ଚମ ଜର୍ଜ ସେ ଅଟଇ ॥
ଗୋରା ପଲଟଣା ଯାକୁ କହି । ପଚିଶ ପ୍ରକୃତିଟି ସେହି ॥
ଏହିଟି ବିଦେଶୀ ଅଟନ୍ତି । ସ୍ୱରାଜ୍ୟ ଉଜାଡ଼ିଣ ଦ୍ୟନ୍ତି ॥
ଯେତେକ ସତ୍ୟାଗ୍ରହୀ ଥିଲେ । ମହାତ୍ମା ସଂଗେ ସଂଗୀ ହେଲେ ॥
ଲାଗିବ ଭାରତରେ ନାଟ । ନରହେ ଭାରତ ସମ୍ରାଟ ॥

ଇଉରୋପିଆୟାନ ଯିବେ ଛାଡ଼ି । ମୋହନ ସିନା ଦେବେ କାଢ଼ି ॥
ଅଣଚାଳିଶା ହୋଇଥିଲା । ଏଥିରେ ରାଜା ନଚେତିଲା ॥
ଚାଳିଶାରେ ତ ନ ବସିବ । ଏକ ଚାଳିଶାରେ ନଥିବ ॥
ଲୋଭରେ ପାଞ୍ଚମନ କଲା । ଏକରୁ ପାଞ୍ଚଗୋଟି ହେଲା ॥
ଏହେଲା ପଞ୍ଚମ ସମ୍ରାଟ । ପୃଥ୍ୱୀ କି ହୋଇଲା ସେ କଷ୍ଟ ॥
ଯେଣୁ ହେଲା ପ୍ରଜା କଣ୍ଟକୀ । ଅଧର୍ମ ଧରେ ତା' ତଣ୍ଟିକି ॥
ସତ୍ୟାଗ୍ରହୀ ହୋଇଲେ ମେଳି । ଅନ୍ତର ହୋଇଯିବ କଳି ॥

ପଣ୍ଡିତ ନୀଳକଣ୍ଠ ଦାସ ଏହି ମାମଲାର ବିଚାର ସମୟରେ କୋର୍ଟରେ ଉପସ୍ଥିତ ଥିଲେ । ଠାକୁରଙ୍କ ଆସନ୍ନ ଜେଲ ନିଶ୍ଚିତ ଜାଣି କିପରି ଆଗାମୀ ଦୁଃଖ ଯନ୍ତଣାର ଉର୍ଦ୍ଧ୍ୱକୁ ଯାଇ ପ୍ରଶାନ୍ତ ଭାବେ ରହି ପାରିଥିଲେ, ଏ ସଂପର୍କରେ ଶ୍ରୀମଦ୍‌ଭାଗବତ ଗୀତାର ଗୀତା ପ୍ରବେଶ ୩୨୦ ପୃଷ୍ଠାରେ ଏକ ସ୍ୱତନ୍ତ୍ର ଅଧ୍ୟାୟରେ ଲେଖିଛନ୍ତି- "ଜଣେ ଯୁବକ ସନ୍ନ୍ୟାସୀ କଳିଭାଗବତ ବୋଲି ଏହି ଓଡ଼ିଶାର ପ୍ରାଚୀନ ଶରୀର ସାଧନା ଯୋଗ ସଂକେତରେ ଗୋଟିଏ ଗ୍ରନ୍ଥ ଲେଖିଥିଲେ । ସେ ପ୍ରସଂଗ କ୍ରମେ ବ୍ୟାପାରୀ ଇନ୍ଦ୍ରିୟମାନଙ୍କର ରାଗା ପଞ୍ଚମ ଜର୍ଜ ବୋଲି ଲେଖି ଦେଇଥିଲେ । ସେଥିପାଇଁ ତାଙ୍କ ନାମରେ ରାଜଦ୍ରୋହ ଦଫାରେ ମକଦମା ହୋଇଥିଲା । ଲେଖକ ସେ ମକଦ୍ଦମା ଦେଖିବାକୁ ଯାଇଥିଲେ । ହଠାତ୍ ସେ ଗ୍ରନ୍ଥକୁ ପଢ଼ିବାକୁ ହେଲା । କିଛି ବୁଝାଗଲା ନାହିଁ । 'କଳିଭାଗବତ' କାରଙ୍କର ଅସଂଖ୍ୟ ଶିଷ୍ୟ, ମାତ୍ର ବେଶ୍ ଲକ୍ଷ୍ୟ କରିବାର ବସ୍ତୁ, ସେହି ଯୁବକ ସନ୍ନ୍ୟାସୀ ଦିନପରେ ଦିନ କଚେରିରେ ଠିଆ ହୋଇଛନ୍ତି । ଦୀର୍ଘକାଳ ଜେଲଯିବେ ବୋଲି ଜାଣନ୍ତି । ମାତ୍ର ମୁଖରେ ସର୍ବଦା ସେଇ ସ୍ୱଚ୍ଛନ୍ଦ ସ୍ନେହରେଖା । ପରିଧାନରେ କଷାୟ ପଛବସ୍ତ୍ର ଓ ଦୁଇଟି କଠାଉ । ଗୋଟାକ ବେଳେ କଚେରିରୁ ଫେରି ଦୁଇଖଣ୍ଡ ରୋଟି ଖାଆନ୍ତି । ଲୋକଟିକୁ ଦେଖିଲେ ଆଦର ତଥା ଭକ୍ତି ମନକୁହୁଏ ।

ବ୍ୟକ୍ତିତ୍ୱବାନ ମନସ୍ୱୀ ସେ ଯୁବକ ସାଧୁଟି ମନରୁ ଯିବାର ବସ୍ତୁ ନୁହେଁ । ବିପଦ ହିଁ ଯୋଗୀର ତଥା ମନୁଷ୍ୟର ପରୀକ୍ଷା ସ୍ଥଳ । ଉତ୍କଳର ସଂସ୍କୃତି ଧାରାର ପ୍ରତୀକ ଯଥାର୍ଥରେ ପୁରାଣର ଅବତଂସ ।

ହେଲେ ହେଁ, ଯୁବକ ସାଧୁ ଏ ଦେଶର ପରଂପରାରେ ନିଜକୁ ମିଶାଇ ଦେଇଛନ୍ତି । ସେ ଲୋକଙ୍କର ଲୋକ । ଦର୍ପୀ, ଦାମ୍ଭିକ ପଣ୍ଡିତଙ୍କ ଲୋକ ନୁହଁନ୍ତି ।

ଦେଶର ପଲ୍ଲୀ ତାଙ୍କ ରାଜ୍ୟ । ସେଠାରେ ତାଙ୍କର ମୁଖପଦ୍ମ ନିର୍ଗଳିତ ଜୀବ ପରମତତ୍ତ୍ୱ ସଂକେତରେ ଶୁଣିବାକୁ ତୃଷିତ । ସେଇ ଏ ଭୂମିର ଧର୍ମନେତା । କାହାରି ଧର୍ମ ଅବା ବିଶ୍ୱାସରେ ବିରୋଧ ବା ବିରାଗ ତାଙ୍କର ନାହିଁ । ସେଇ ଏକା ଧର୍ମରେ, ଆଚାରରେ ଯଥାର୍ଥ ସାମ୍ୟ ଓ ସମାଧାନର ଏଇପରି ଜୀବନ୍ତ ଓ ଜ୍ୱଳନ୍ତ ଜ୍ୟୋତିମାନେ ଏଦେଶ ଓ ସଂସ୍କୃତିର ଯଥାର୍ଥ ମେରୁଦଣ୍ଡ ।

ବିଚାର ଆରମ୍ଭରୁ ହିଁ ସେ ନିଜର ବନ୍ଦୀରେ ରହୁଥିଲେ । ବିଚାର ଚାଲୁଥିବାବେଳେ ନିଜର ସମସ୍ତ ପୂଜାର୍ଚ୍ଚନ ଆଦି କାର୍ଯ୍ୟ କରୁଥିଲେ । ଅଦାଲତରୁ ବାହାରକୁ ଆସି ସନ୍ନ୍ୟାସୀ, ଶିଷ୍ୟ, ଭକ୍ତ ଏବଂ ବ୍ରହ୍ମପୁର ଅଂଚଳର ଗଣ୍ୟମାନ୍ୟ ବ୍ୟକ୍ତ ଏବଂ ଅସଂଖ୍ୟ ଜନତାଙ୍କୁ ସାହାସ୍ୟ ବଦନରେ ସାକ୍ଷାତ କରୁଥିଲେ । ଚିରପ୍ରଶାନ୍ତି, ନିର୍ଭିକତା ତାଙ୍କର ବ୍ୟକ୍ତିତ୍ୱକୁ ଦୀପ୍ତିମାନ କରୁଥିଲେ ।

ମକଦ୍ଦମାର ଅନ୍ୟ ଏକ ଦିଗ ହେଲା କଳିଭାଗବତ ଗ୍ରନ୍ଥ କେବଳ ତାଙ୍କ ଭକ୍ତମାନଙ୍କର ଆଦର ପାଠ୍ୟ ହୋଇ ରହିଲା ନାହିଁ । ଅଧିକରୁ ଅଧିକ ବୁଦ୍ଧିଜୀବୀ, ରାଜନେତାମାନଙ୍କର ଧ୍ୟେୟ ହେଲା । ଏହାର ପ୍ରସାର ଓଡ଼ିଶାରୁ ବଂଗଳାକୁ ବିସ୍ତୃତି ଲାଭ କରି ପ୍ରସାରିତ ହେବା ସହିତ ଜାତୀୟତାର ବାର୍ତ୍ତା ବିବିଧ ସ୍ତରକୁ ଆନ୍ଦୋଳିତ କରିଥିଲା । ଠାକୁର ଆଧ୍ୟାତ୍ମିକ ଜାଗୃତିର ନିରାପଦ ବେଷ୍ଟନୀ ମଧ୍ୟରୁ ଜାତୀୟ ସଂଗ୍ରାମର ବୃହତ୍ତମ କ୍ଷେତ୍ରକୁ ବାହାରି ଯାଇ ନିଜକୁ ବହୁ ବ୍ୟାପକ କରିପାରିଛନ୍ତି ।

କୃଷ୍ଣା– ଅଗରୁ ଯେଉଁଠି ରହିବ ସେଠାରେ ମହକ ପ୍ରସରିଯିବ । ସେ ଅଦାଲତ ହେଉ, ଦେବାଳୟ ହେଉ କିମ୍ବା ଜେଲଖାନା । ହୁଏତ ଠାକୁର ସେଦିନ ଦିବ୍ୟଦୃଷ୍ଟିରେ ଦେଖିପାରୁଥିଲେ ତାଙ୍କ ଏକାନ୍ତ କାମନା କରୁଥିବା ଭକ୍ତଙ୍କ ମଧ୍ୟରୁ କେତେକ ଜେଲରେ ରହିଛନ୍ତି । ଠାକୁର ସେମାନଙ୍କୁ ଦିବ୍ୟେତା ହେବାପାଇଁ ସ୍ୱଇଚ୍ଛାରେ ଦୁର୍ଦ୍ଦିନକୁ ବରଣ କରିନେଇଛନ୍ତି ଏବଂ ଜେଲରେ ଥିବା ବନ୍ଦୀମାନଙ୍କୁ ଧନ୍ୟ କରିଛନ୍ତି । ମୃତ୍ୟୁର ଚକ୍ରରୁ ନିସ୍ତାର ପାଇଁ ମାର୍ଗ ଦର୍ଶନ କରିଛନ୍ତି । ଠାକୁରଙ୍କ ଜେଲ ଜୀବନର ଅବଧି ଏକବର୍ଷ ବୋଲି କୋର୍ଟ ରାୟ ଦେଇଥିଲେ କିନ୍ତୁ ଏକମାସ ଏଗାରଦିନ ପୂର୍ବରୁ ତାଙ୍କୁ ମୁକ୍ତ କରାଗଲା । ମହାପୁରୁଷଙ୍କ ବିଭୂତି ଅଧିକାରୀମାନଙ୍କୁ ଅନ୍ତର୍ଲୋକକୁ ପ୍ରଭାବିତ କରିଥିଲା ।

ଜେଲରୁ ମୁକ୍ତ ହେବା ପୂର୍ବଦିନ ସଂଧ୍ୟାରେ ବସାଘରେ ସନ୍ନ୍ୟାସୀ, ସ୍ଥାନୀୟ ଶିଷ୍ୟ ଏବଂ ବ୍ରହ୍ମପୁର ଅଂଚଳରୁ ଯାଇଥିବା ଅନୁଗତ ଶିଷ୍ୟଭକ୍ତମାନେ ଏକତ୍ର

ହୋଇ ଏକ ବିଚାର ବିମର୍ଷ କର ସହରରେ ଶୋଭାଯାତ୍ରା କରାଇବାର ବ୍ୟବସ୍ଥା କରାଗଲା । ଏ ସଂବାଦ ପ୍ରଚାର ପାଇଁ ସାମ୍ବାଦିକଙ୍କୁ ମଧ୍ୟ ସୂଚନା ଦିଆଯାଇଥିଲା ।

'ସତ୍ୟନାରାୟଣ ସ୍ୱାମୀଙ୍କର ଜୟ' ଧ୍ୱନିରେ ଠାକୁରଙ୍କୁ ଅପେକ୍ଷାରତ ଭକ୍ତବୃନ୍ଦ ସ୍ୱାଗତ କଲେ । ପୁଷ୍ପବୃଷ୍ଟି ହେଉଛି । ଏପରି ଅଭାବନୀୟ ଦୃଶ୍ୟ ଦେଖି ଜେଲର ମହାଶୟ ଠାକୁରଙ୍କ ପାଦତଳେ ଲୋଟିଗଲେ ଏବଂ ବିଦାୟ ମାଗିଲେ । ଗୋଟିଏ କାର୍‌ରେ ବସିଲେ । ଅନ୍ୟ ସନ୍ନ୍ୟାସୀ, ଭକ୍ତମାନେ ଅନ୍ୟ ଗାଡ଼ିଗୁଡ଼ିକରେ ବସି ଚାଲିଲେ । ପୁଣ୍ୟତୋୟା ଗୋଦାବରୀ ତୀରରେ ଶ୍ରୀଶ୍ରୀ ଠାକୁର ସ୍ନାନାଦି ନିତ୍ୟକର୍ମ ସମାପନ କଲେ । ରାଜ ମହେନ୍ଦ୍ରୀର ଦୁଇ ଅଜ୍ଞାତ ଭକ୍ତଙ୍କ ଅନୁରୋଧରେ ସେଠାରେ ଗୋଟିଏ ଦିନ ଅତିବାହିତ କରି ବ୍ରହ୍ମପୁର ଅଭିମୁଖେ ଅଗ୍ରସର ହେଲେ । ବ୍ରହ୍ମପୁରରେ ପହଂଚିବା ମାତ୍ରେ ପୂର୍ବରୁ ପ୍ରସ୍ତୁତ ଥିବା ଭକ୍ତମାନଙ୍କର ଭବ୍ୟ ଆୟୋଜନ ସ୍ୱାଗତ ପର୍ବ ଅତି ଉତ୍ସାହ ପୂର୍ଣ୍ଣ ଓ ଦର୍ଶନୀୟ ଥିଲା । ସେଠାରେ ଦୁଇ ତିନିଦିନ ଅତିବାହିତ କରି ପ୍ରଖ୍ୟାତ ଦେବୀ ତାରାତାରିଣୀ, ରସଲଣ୍ଡାର ଅଧିଷ୍ଠାତ୍ରୀ ମା' ସିଦ୍ଧେଶ୍ୱରୀଙ୍କୁ ସନ୍ନ୍ୟାସୀମାନଙ୍କ ଗହଣରେ ଯାଇଥିଲେ । ପରେ ଭୁଷଣ୍ଡପୁର ମତ୍ସ୍ୟଜୀବି ଭକ୍ତମାନେ ଠାକୁରଙ୍କ ଉପସ୍ଥିତିରେ ଆନନ୍ଦ ବିଭୋର ହୋଇ ବିବିଧ ବାଦ୍ୟ ସହ ଗ୍ରାମ ପରିକ୍ରମା କରାଇଥିଲେ ଏବଂ ସେଠାରେ ଠାକୁର ଗୋଟିଏ ଦିନ ଅତିବାହିତ କରି ନୌକାରେ କରମଳା ଅଭିମୁଖରେ ବାହାରିଲେ ।

କରମଳା ଆଶ୍ରମ ଆଶ୍ରିତ ଭକ୍ତ ଏବଂ ଗ୍ରାମର ସମବୟସ୍କ, ଶ୍ରଦ୍ଧାଳୁମାନେ ବିବିଧ ବାଦ୍ୟଯନ୍ତ୍ର ସହ ବଂଦାପନା ପାଇଁ ସମସ୍ତ ବ୍ୟବସ୍ଥା କରି ସାରିଥିଲେ । ରାଧାମା' ବଂଦାପନାଥାଳି ଧରି ପୁତ୍ରର ଆଗମନକୁ ଅପେକ୍ଷା କରିଥାନ୍ତି । ନୌକା ଆସି ପହଂଚିଲା ବାଦ୍ୟରୋଳ, ମୁଖରୋଳ ଆନନ୍ଦ ଯେପରି ସୀମା ଲଂଘନ କରିଗଲା । ରାଧା ମା'ଙ୍କ କାନ୍ଧ ଉପରେ ଠାକୁର ଆଉଜିଗଲେ ଅଭାବନୀୟ ସେ ଦୃଶ୍ୟ । ଶୋଭାଯାତ୍ରାରେ ଘାଟକୂଳରୁ ଆଶ୍ରମକୁ ଅଣାଇଲା । ଆଶ୍ରମର ପ୍ରତ୍ୟେକ ସଜୀବ ନିର୍ଜୀବଙ୍କ ମଧ୍ୟରେ ନୂତନ ତରଂଗ ଖେଳିଗଲା ।

୧୯୩୬ ମସିହା ପ୍ରାରଂଭରେ ଠାକୁର ଆଶ୍ରମରେ ପହଂଚିଲେ । ଦେଶାଟନ, ପ୍ରବର୍ଜ୍ୟା ଶେଷ କରି ବନ୍ଦୀମାନଙ୍କୁ ମଧ୍ୟ ଜ୍ଞାନଲୋକରେ ଉଦ୍‌ଭାସିତ କରିଥିବାରୁ ତାଙ୍କ ଉଦ୍ଦେଶ୍ୟ ଏକ ପ୍ରକାର ପୂର୍ଣ୍ଣ ହୋଇଛି । ଏବେ ଆଶ୍ରମରେ ସାରସ୍ୱତ ସୃଜନ ଯାହା ଯୁଗଯୁଗକୁ ଜନସମାଜକୁ ଉଦ୍‌ବୁଦ୍ଧ କରିବ ସେହିପରି

ସୃଷ୍ଟିରେ ମନୋନିବେଶ କଲେ । ଆଶ୍ରମ ବିକାଶ ପାଇଁ ମଧ୍ୟ ସମୟ ଦେବାକୁ ହୋଇଛି, ସେ ଦେଖିପାରିଛନ୍ତି ଆଗାମୀ ଦିନରେ ଏଠାରେ ବହୁ ଭକ୍ତ ସମାବେଶ ହେବ, ସେଥିପାଇଁ ବ୍ୟବସ୍ଥା ଦରକାର ଏହି ବିଚାରରେ ଆଶ୍ରମରେ ରହିବାର ସ୍ଥିର କରିନେଲେ । ଆଶ୍ରିତ ସନ୍ନ୍ୟାସୀମାନଙ୍କୁ ପ୍ରଶିକ୍ଷିତ କରାଇବାର ଏହାଥିଲା ଏକ ଅପୂର୍ବ ସୁଯୋଗ । ଠାକୁର ଅନେକ ପୁସ୍ତକ ସରଳ ପଦ୍ୟାତ୍ମକ ରୀତିରେ ରଚନା କରିଅଛନ୍ତି । ଯାହା ଅତ୍ୟନ୍ତ ହୃଦୟସ୍ପର୍ଶୀ ଏବଂ ଅନେକ ଗାନଯୋଗ୍ୟ । ଆଧ୍ୟାତ୍ମିକ, ଦାର୍ଶନିକ ତଥା ସମର୍ପଣ ଭାବ ଆଧାରିତ । ଭଗବତ୍ ଗୀତାରେ ଯେଉଁ ଚାରି ପ୍ରକାର ଭକ୍ତଙ୍କ ଉଲ୍ଲେଖ ଅଛି- ଆର୍ତ୍ତୀ, ଅର୍ଥାର୍ଥୀ, ଜିଜ୍ଞାସୁ ଏବଂ ଜ୍ଞାନୀ ଏ ସମସ୍ତ ପ୍ରକାର ଭକ୍ତଙ୍କ ଯୋଗ୍ୟତା ଅଧିକାରୀ ଭେଦରେ ରଚନାବଳୀ ମଧ୍ୟରେ ମନୋଜ୍ଞ ତତ୍ତ୍ୱ ସଂପୂଟିତ କରିଅଛନ୍ତି । ପୁନଃ ବୈଷ୍ଣବ ନବଧା ଭକ୍ତି ଭେଦରେ ଭଜନାବଳୀରେ ଅନୁପମ ଭାବେ ସ୍ଥାନିତ କରିଅଛନ୍ତି । ଏ ଯାବତ୍ ତାଙ୍କର ୪୧ (ଏକଚାଳିଶ) ଖଣ୍ଡ ପୁସ୍ତକ/ ପୁସ୍ତିକା ପ୍ରକାଶିତ ହୋଇଅଛି । ସେଗୁଡ଼ିକ ମଧ୍ୟରୁ 'ଦୁର୍ଗା ମାଧବ ସ୍ତବ', 'ଜ୍ଞାନ ପ୍ରେମ ସାଗର', 'ଭଜନ ଆନନ୍ଦ ଲହରୀ', 'ଭଜନ ସାର' ଏବଂ ଆଉ କେତେକ ସଂପୂର୍ଣ୍ଣ ଭକ୍ତିରସାପ୍ଳୁତ ସଂଗୀତ । ବୈଷ୍ଣବ ଗୀତା ଧର୍ମୀୟ ବିଧି ନିଷେଧ ଆଧାରିତ ଗ୍ରନ୍ଥ । ସନାତନ ଧର୍ମାର୍ଥ ଗୀତା, ଅମୃତଗୀତା, ସନାତନ ଗୀତା, ଗୁରୁଗୀତା ପ୍ରଭୃତି ଗ୍ରନ୍ଥରେ ଧର୍ମୀୟ ଦର୍ଶନର ନିର୍ଯ୍ୟାସ ପ୍ରତିପାଦିତ ହୋଇଛି । ରାସୋତ୍ସବ ଏବଂ ଲୀଳା ମଣ୍ଡଳ ଗ୍ରନ୍ଥ ଦ୍ୱୟରେ 'ଯୋଗ'ର ବିବିଧ ମାର୍ଗ, ଧାରା ଓ ଧାରଣାର ବ୍ୟାପକ ଚର୍ଚ୍ଚା ହୋଇଛି ତଥା ରାସଲୀଳାର ଗୋପୀ ଏବଂ ଶ୍ରୀକୃଷ୍ଣଙ୍କ ଯୌଗିକ ବିଚାରର ଅନ୍ୱୟ ହୋଇଛି । ତାଙ୍କର ଅନ୍ତିମ କୃତି ଭକ୍ତି କଲ୍ଲୋଳରେ ବିବିଧ ଧର୍ମୀୟ ଦର୍ଶନର ବିଚାର ବିମର୍ଷ କରାଯାଇଅଛି, ତଥା ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ବିଶ୍ଳେଷଣ କରାଯାଇଅଛି ।

ଠାକୁର ଜଣେ ଉତ୍ତମ ବାଦ୍ୟଶିଳ୍ପୀ ଏବଂ ଉଚ୍ଚକୋଟୀର ଗାୟକ ଥିଲେ । ତାଙ୍କ ସଂଗୀତ- ମୂର୍ଚ୍ଛନା ଶ୍ରୁତି ସୁଖକର ଏବଂ ଆନନ୍ଦଦାୟୀ । ସେ ଭକ୍ତମାନଙ୍କୁ ଭଜନ ଗାନର ଶୈଳୀ ଏବଂ ପ୍ରାର୍ଥନା ବିଧାନ ସଂପର୍କରେ ପ୍ରଶିକ୍ଷଣ ଦେଉଥିଲେ । ତାଙ୍କ ଆକର୍ଷଣୀୟ ବ୍ୟକ୍ତିତ୍ୱ ଦ୍ୱାରା ଓଡ଼ିଶାର କୋଣ ଅନୁକୋଣରୁ ଲକ୍ଷ ଲକ୍ଷ ନରନାରୀ ଆକୃଷ୍ଟ ହୋଇ ଶାନ୍ତି ଆନନ୍ଦାଶ୍ରମକୁ ଚାଲି ଆସୁଥିଲା । ସେ ସମୟରେ ସେଠାକୁ ଯିବାକୁ ହେଲେ ବହୁଶ୍ରମ କରିବାକୁ ହେଉଥିଲା । ପୁରୀଠାରୁ ୩୫ କି.ମି ଚାଲିକରି ଯିବାକୁ ହେଉଥିଲା ।

୧୯୩୬ଠାରୁ ସେ ଦେଶାଟନ ତ୍ୟାଗକରି ଶାନ୍ତି ଆନନ୍ଦାଶ୍ରମ କରମଳାରେ ଶାନ୍ତି, ଆନନ୍ଦ ଏବଂ ଅଲୌକିକ ବିଭୂତିର ଉତ୍ସ ଭାବେ ଅବସ୍ଥାପିତ ହୋଇଥିଲେ । ଭକ୍ତ ଓ ସନ୍ନ୍ୟାସୀମାନଙ୍କୁ ଆଶୀର୍ବାଦ ପ୍ରଦାନ କରିଚାଲିଥିଲେ । ତାଙ୍କ ପାର୍ଥିବ ଶରୀର ପାତ ୨୭ ନଭେମ୍ବର ୧୯୬୩ କାର୍ତ୍ତିକ ଶୁକ୍ଳ ଏକାଦଶୀ ଯାବତ୍ ।

ସନ୍ଥ, ମହାପୁରୁଷ, ଅବତାର ଆଦିଙ୍କ ଲୀଳା ପ୍ରକଟ ସମୟରେ ଅସଂଖ୍ୟ ଅଲୌକିକ ଘଟଣା ସଚରାଚର ଦେଖାଯାଇଥାଏ । କେବଳ ହିନ୍ଦୁ ଧର୍ମର ସାଧୁମାନଙ୍କଠାରେ ଏହାର ଆରୋପ ନୁହେଁ, ସକଳ ଧର୍ମରେ ଏହି ଅଲୌକିକ କାହାଣୀ ଶୁଣିବାକୁ ମିଳେ । ସାଧାରଣ ସ୍ତରର ଭକ୍ତମାନଙ୍କ ପାଇଁ ଏହା ଅତ୍ୟନ୍ତ ରୋଚକ ଓ ସ୍ମରଣୀୟ ହୋଇଥାଏ । କିଛି ଅଲୌକିକ, ଘଟଣାକୁ ଦୈବୀଶକ୍ତିର ପରିପ୍ରକାଶ ବୋଲି ଭାବିଥାନ୍ତି ଏବଂ ତହିଁରୁ ତାଙ୍କର ଆଧାତ୍ମିକ ଯାତ୍ରା ଆରମ୍ଭ ହୋଇଥାଏ ଓ ସାଧୁ ମହାତ୍ମାଙ୍କ ଉପରେ ବିଶ୍ୱାସ ଦୃଢ଼ୀଭୂତ ହୋଇଥିବାର ଦେଖାଯାଏ ।

ମହାପୁରୁଷ ଠାକୁର ଅଭିରାମଙ୍କ ଜନ୍ମ କାଳରୁ ଏ ପ୍ରକାର ଅଲୌକିକତା ପରିଦୃଷ୍ଟ ହୋଇଛି । ଶିଶୁ ଜନ୍ମର ଦ୍ୱିତୀୟ ଦିନ ଜଣେ ହିନ୍ଦୁସ୍ତାନୀ ସନ୍ନ୍ୟାସୀଙ୍କ ଆଗମନ ଏବଂ 'ଅଭିରାମ' ନାମ କରଣରେ ବିସ୍ମୟ ଖେଳିଯାଇଛି ପିତା ସତ୍ୟବାଦୀଙ୍କର ତଥା ସାଧୁ ମହାତ୍ମାଙ୍କର ଆକସ୍ମିକ ଅନ୍ତର୍ଦ୍ଧାନ ଘଟଣାକୁ ଆହୁରି ରହସ୍ୟ କୁହେଳି ମଧ୍ୟକୁ ଘେନିଯାଇଛି । ସେ ରହସ୍ୟ ସେହିପରି ଅନୁଦ୍‌ଘାଟିତ ରହିଛି ।

ରୁଦ୍ଧ କୋଠରୀ ମଧ୍ୟରେ ସମାଧିସ୍ଥ ଅବସ୍ଥାରେ ଶୂନ୍ୟରେ ଅବସ୍ଥାନ କରିବା, ଚାଳ ଉପରୁ ଦେଖିବା ଦୃଶ୍ୟ ଯେତିକି କୌତୂହଳପ୍ରଦ ସେତିକି ବିସ୍ମୟକର । ଏହି ଘଟଣାରୁ ତାଙ୍କ ଦୈବୀ ଶକ୍ତିର ଦୃଢ଼ତା ପ୍ରତିପାଦିତ ହୋଇଛି ।

ବିଭିନ୍ନ ସମୟ ଓ ସ୍ଥାନରେ ଆଳତି (କଲିକତା, ଇଚ୍ଛାପୁର, କରମଳା ଓ ଅନ୍ୟ କେତେକ ସ୍ଥାନରେ) ସମୟରେ ଠାକୁର ଅଭିରାମଙ୍କ ସ୍ଥାନରେ ରାଧାକୃଷ୍ଣ, ଜଗନ୍ନାଥ, ମୁରଲୀଧାରୀ ଭାବରେ ଭକ୍ତମାନଙ୍କୁ ଦେଖାଦେବା ବସ୍ତୁତଃ ତାଙ୍କ ଆଲୌକିକ ଶକ୍ତିର ଗୋଟିଏ, ଗୋଟିଏ ଦୃଷ୍ଟାନ୍ତ ।

ଇଚ୍ଛାପୁରରେ ଅବସ୍ଥାନ କାଳରେ ଅସଂଖ୍ୟ ବିସ୍ମୟକର ଦୈବୀଲୀଳା ପ୍ରକଟ କରିଛନ୍ତି । କେତେକ ପତ୍ରିକା- ପୁସ୍ତକମାନଙ୍କରେ ପ୍ରକାଶିତ ଅନ୍ୟବହୁ

ଆଖ୍ୟାନ ସ୍ଥାନୀୟ ଭକ୍ତମାନଙ୍କ ଅଂଗେ ନିଭା କଥା ହୋଇଛି । ଘଟଣାଟି ଏହିପରି- ବିରୂପା ନଦୀ ସେପାଖ ଗାଁ'ରୁ ପତିପତ୍ନୀ ଦୁହେଁ ଠାକୁରଙ୍କ ପାଇଁ ପୋଡ଼ପିଠାଟିଏ ପୋଡ଼ି ଠାକୁରଙ୍କ ପାଖକୁ ଆସୁଥାନ୍ତି । ନଈରେ ପାଣି କମ୍ ହେତୁ ପାଣି ଆସିଲେ । କିଛି ବାଟ ଆସିଛନ୍ତି ପାଣି ଅଧିକ ହେଲା । ଏଣେ ପିଠା ମୁଣ୍ଡ ଉପରେ ରହିଛି । ସେ ବାଟରୁ ଫେରିଆସି ଅନ୍ୟକିଛି ଦୂରରେ ଅତିକ୍ରମ କରିବାକୁ ଗଲାବେଳେ ସେଇ ଅବସ୍ଥା ହେଲା । ଏବେ ପତିପତ୍ନୀ ବିକଳ ହୋଇ ଠାକୁରଙ୍କୁ ସ୍ମରଣ କଲେ ଏବେ ସେମାନେ ବାଲିବନ୍ତରେ ଅଣ୍ଟାଏ ପାଣିରେ ଆସି ଆଶ୍ରମ ପାଖରେ ପହଂଚି ଠାକୁରଙ୍କୁ ସମସ୍ତ ଜଣାଇବା ପୂର୍ବରୁ ପ୍ରଣାମୀ ପରେ ପରେ ଠାକୁର ସ୍ୱୟଂ ପାଟରେ ଘଟିଥିବା ସବୁ ଘଟଣା ଜଣାଇଥିଲେ । ରହସ୍ୟମୟ ଠାକୁର ଭକ୍ତର ମନକଥା ବୁଝିଥାନ୍ତି ଅବିଳମ୍ବେ ।

ଇଚ୍ଛାପୁରର ଜଣେ ଅନୁଭବୀ ଭକ୍ତଙ୍କଠାରୁ ଶୁଣିବାକୁ ମିଳିଥିଲା- ନଈରେ ପିଲାଙ୍କ ସଂଗେ ବିଭିନ୍ନ ପ୍ରକାର ସନ୍ତରଣରେ ମଧ୍ୟ ଆଲୌକିକତା ରହିଥିଲା, ଏପଟେ ବୁଡ଼ି ସେପଟରେ ଉଠିବା ସଂଗେସଂଗେ ଅନ୍ତର୍ଦ୍ଧାନ ହୋଇଯିବା ଇତ୍ୟାଦି । ପୁନଃ ସମବୟସ୍କମାନଙ୍କ ସହ ବାଗୁଡ଼ି ଖେଳିବା- ଅନୁଭବୀ କହିବା ଅନୁସାରେ ଠାକୁରଙ୍କୁ କେବେ ଧରିହେବ ନାହିଁ । ସେ କାନି ବାଟେ ଅନ୍ୟ ଖେଳାଳୀଙ୍କୁ ପରାସ୍ତ କରି ଦିଅନ୍ତି । ସେଥିରେ ମଧ୍ୟ ଅଲୌକିକତା ଲକ୍ଷଣୀୟ ।

ଏକ ସମୟରେ ଦୁଇଟି ସ୍ଥାନରେ ଅବସ୍ଥାନ- ଶ୍ରୀକୃଷ୍ଣ ଚୌଧୁରୀ- ଘର ଇଟାମୁଣ୍ଡୁଳି, ସେ ଦେଖୁଛନ୍ତି "ଆଶ୍ଚର୍ଯ୍ୟ ହେଲେ ଚୌଧୁରୀ, ଇଏ କେମିତି ସଂଭବ ? ଆମ୍ବତୋଟାର ବାବାଜୀ ଏଠିଆସି ପହଂଚିଲା କେମିତି ? ମୁଁ ଯାହା କରୁଛି, ଯାହା ଭାବୁଛି ଜାଣିପାରୁଛି କିପରି ?

× × × × × × ×

ସେ ସ୍ପଷ୍ଟ ଅନୁଭବ କଲେ ବାବାଜୀ ସାଧାରଣ ମନୁଷ୍ୟ ନୁହଁନ୍ତି ସେ ଦେବପୁରୁଷ ସେ ନାରାୟଣ !

× × × × × × ×

ପଟାମୁଣ୍ଡାଇ ନିକଟବର୍ତ୍ତୀ ବକୁରିଆ ଗ୍ରାମରେ ପ୍ରସାଦ ସେବନ ସମୟରେ ବିସ୍ମୟକର ଘଟଣା । ୩୦୦ ଲୋକଙ୍କର ପାଇଁ ପ୍ରସାଦ ପ୍ରସ୍ତୁତ ହୋଇଥିଲା

୨୦୦ ଲୋକଙ୍କୁ ଦେଖି ଗ୍ରାମବାସୀଙ୍କର ଭାଳେଣି ପଡ଼ିଗଲା । ଠାକୁର ଦୟାକଲେ- 'ସେତିକି ଖାଦ୍ୟ ଚଳିବ, ତୁମେମାନେ ପ୍ରସାଦ ବାଣ୍ଟିବା ଆରମ୍ଭକର, ପେଟଭରି ଖାଇବାକୁ ଦିଅ, ଅସୁବିଧା ହବନି ।' ଆଶ୍ଚର୍ଯ୍ୟର କଥା ପ୍ରାୟ ୨୦୦୦ଲୋକ ପ୍ରସାଦ ପାଇ ଗଲାପରେ ମଧ୍ୟ ଆହୁରି ପ୍ରସାଦ ବଳିପଡ଼ିଲା । ଏହିତ ପ୍ରଭୁଙ୍କ ବିଭୂତି ଲୀଳାର ମହିମା ।

× × × × × × ×

ବଲୁରିଆ ନିକଟ ଫୁଲପାଟଣା ଗ୍ରାମରେ ଠାକୁର ପହଁଚିଲେ, ନଈର କିଛି ଅଂଶ ବାହାରି ବିରାଟ ପୋଖରୀ ପ୍ରାୟ । ଜଳାଶୟରେ ବନ୍ୟାରେ ଦୁଇଟା ବଉଳା କୁମ୍ଭୀର ନଦୀରୁ ଉଠିଆସି ସେଠାରେ ରହିଥାନ୍ତି । ବାଛୁରୀ, ଛେଳି, ମେଣ୍ଢା ଇତ୍ୟାଦିକୁ ଧରି ଖାଇଯାଆନ୍ତି । ଲୋକଙ୍କୁ ମଧ୍ୟ ଆକ୍ରମଣ କରି ସାରିଲେଣି । ସେହି ଜଳାଶୟରେ ସ୍ନାନ ମାର୍ଜନା ପାଇଁ ଠାକୁର ବାହାରିଲେ । ଗ୍ରାମବାସୀଙ୍କ ମଧ୍ୟରୁ କୁମ୍ଭୀରଙ୍କ ଉପସ୍ଥିତି ପାଇଁ ଠାକୁରଙ୍କୁ ସତର୍କ କରାଇ ଦେଲେ । ଠାକୁର ଜଳାଶୟ ନିକଟରେ ବଂଶୀବାଦନ କଲେ । ସେତେବେଳକୁ ଗ୍ରାମବାସୀମାନେ ସେଠାରେ ରୁଣ୍ଡ ହୋଇଲେଣି । ବଂଶୀସ୍ୱନ ଶୁଣି କୁମ୍ଭୀର ଦୁଇଟି ଭାସି ଉଠିଲେ । ଲୋକମାନେ 'ସତ୍ୟନାରାୟଣ ସ୍ୱାମୀ କି ଜୟ' ଧ୍ୱନି ଉଚ୍ଚାରଣ କଲେ । ଠାକୁର ତାଙ୍କୁ ଆଦେଶ ଦେଲେ- ହେ କୁମ୍ଭୀର ଦମ୍ପତି ! ତୁମକୁ ଠାକୁରଙ୍କର ଆଦେଶ- ଏ ଜଳାଶୟ ଛାଡ଼ି ଏହି ମୁହୂର୍ତ୍ତରେ ତୁମେ ନଦୀ ଗର୍ଭକୁ ଚାଲିଯାଅ । କୁମ୍ଭୀର ଦୁଇଟି ନଈବାଲିରେ ଘୁଷୁରି ଘୁଷୁରି ନଦୀ ଗର୍ଭକୁ ଚାଲିଗଲେ । ଲୋକମାନେ ଠାକୁରଙ୍କର ଏହି ଐଷୀ ଶକ୍ତି ଦେଖି ବିଶ୍ୱାସ କରିବାକୁ ଲାଗିଲେ, ଇଏ ସାଧାରଣ ବାବାଜୀ ନୁହଁନ୍ତି, ଯେ ହେଉଛନ୍ତି ଦେବ ପୁରୁଷ, ନାରାୟଣଙ୍କର ଗୁପ୍ତ ଅବତାର ।

ଠାକୁରଙ୍କର ଅସଂଖ୍ୟ ଦିବ୍ୟଲୀଳାରୁ ଅଳ୍ପ କେତୋଟି ଏଠାରେ ଅବତାରଣା କରାଗଲା ମାତ୍ର ।

# ଠାକୁର ଶ୍ରୀ ଅଭିରାମ ପରମହଂସ ରଚନାବଳୀ-

୧. ଆଧାତ୍ମ୍ୟ ମହାପୁରାଣ- ବୈକୁଣ୍ଠ ନାଥ ଦାସ- ଶାନ୍ତି ଆନନ୍ଦାଶ୍ରମ, ଶାନ୍ତିଧାମ, ପୁରୀ-୧୯୭୨ ।

୨. ଅମୃତ ଗୀତା, ଶ୍ରୀ ଅଭିରାମ ସତ୍‌ସଂଗ, ଶାନ୍ତି ଆନନ୍ଦାଶ୍ରମ ଶାନ୍ତିଧାମ, ପୁରୀ-୧୯୮୨ ।

୩. ଅଣସାଧନା ସଂହିତା- ଶ୍ରୀ ବୈକୁଣ୍ଠ ଚରଣ ଦାସ- କରମଳା, ପୁରୀ- ୧୯୫୭ ।

୪. ଅନ୍ତରଂଗ ସଂକୀର୍ତ୍ତନ ଓ ଶ୍ରୀଚୈତନ୍ୟ ଜ୍ଞାନ- ଶ୍ରୀ ବୈକୁଣ୍ଠ ନାଥ ଦାସ, ଶାନ୍ତି ଆନନ୍ଦାଶ୍ରମ, ଶାନ୍ତିଧାମ, ପୁରୀ- ୧୯୭୫ ।

୫. ବୈଷ୍ଣବ ଗୀତା- ଶ୍ରୀ ବୈକୁଣ୍ଠ ନାଥ ଦାସ, ଶାନ୍ତି ଆନନ୍ଦାଶ୍ରମ, ଶାନ୍ତିଧାମ, ପୁରୀ- ୧୯୭୨ ।

୬. ଭଜନ ଅମୃତ ଲହରୀ- ଶ୍ରୀ ବୈକୁଣ୍ଠ ନାଥ ଦାସ, ଶାନ୍ତି ଆନନ୍ଦାଶ୍ରମ, ଶାନ୍ତିଧାମ, ପୁରୀ- ୧୯୭୨ ।

୭. ଭଜନ ଆନନ୍ଦ ଲହରୀ- ଶ୍ରୀ ବୈକୁଣ୍ଠ ନାଥ ଦାସ, ଶାନ୍ତି ଆନନ୍ଦାଶ୍ରମ, ଶାନ୍ତିଧାମ, ପୁରୀ- ୧୯୮୩ ।

୮. ଭଜନ ଭାବାମୃତ- ଶ୍ରୀ ବୈକୁଣ୍ଠ ନାଥ ଦାସ, ଶାନ୍ତି ଆନନ୍ଦାଶ୍ରମ, କରମଳା ଯୋଡ଼ାପଦର ପୁରୀ- ସାଲ ୧୩୬୫ ।

୯. ଭଜନ ନୀଳପଦ୍ମ- ଶ୍ରୀ ଅଭିରାମ ସତ୍‌ସଂଗ, ଶାନ୍ତି ଆନନ୍ଦାଶ୍ରମ, ଶାନ୍ତିଧାମ, ପୁରୀ ।

୧୦. ଭଜନ ସାର- ଶ୍ରୀ ବୈକୁଣ୍ଠନାଥ ଦାସ- ଶାନ୍ତି ଆନନ୍ଦାଶ୍ରମ, କରମଳା, ପୁରୀ- ସାଲ ୧୩୬୪ ।

୧୧. ଭଜନ ସୁଧାସିନ୍ଧୁ- ଶ୍ରୀ ଅଭିରାମ ସତ୍‌ସଂଗ, ଶାନ୍ତି ଆନନ୍ଦାଶ୍ରମ, କରମଳା, ଶାନ୍ତିଧାମ, ପୁରୀ ।

୧୨. ଭକ୍ତି ପଞ୍ଚାମୃତ- ଶାନ୍ତି ଆନନ୍ଦାଶ୍ରମ କରମଳାମଠ, ପୁରୀ- ୧୯୫୦ ।

୧୩. ଭକ୍ତି ପ୍ରେମ ଲହରୀ- କରମଳା ମଠ, ପୁରୀ- ୧୯୫୦ ।

୧୪. ଭକ୍ତିର ସାବଳୀ- ଶ୍ରୀ ସୁବର୍ଣ୍ଣାନନ୍ଦ ଦାସ, ଶାନ୍ତି ଆନନ୍ଦଧାମ, କରମଳା, ପୁରୀ- ୧୯୫୧ ।

୧୫. ଭାବ କଲ୍ଲୋଳ- ଶାନ୍ତି ଆନନ୍ଦାଶ୍ରମ ଯୋଡ଼ାପଦର ପୁରୀ- ୧୯୬୦ ।

୧୬. ଚଉତିଶା ମଞ୍ଜୁଷା- ଶ୍ରୀମତୀ ପାଞ୍ଚାଳୀ କୁମାରୀ ମାତା, ଶାନ୍ତି ଆନନ୍ଦାଶ୍ରମ, କରମଳା, ପୁରୀ- ୧୯୫୧ ।

୧୭. ଦୁର୍ଗା ମାଧବ ସ୍ତବ- ଶ୍ରୀ ବୈକୁଣ୍ଠ ନାଥ ଦାସ- ଶାନ୍ତି ଆନନ୍ଦାଶ୍ରମ, କରମଳା, ପୁରୀ ।

୧୮. ଗଜେନ୍ଦ୍ର ଗୀତି- ଶ୍ରୀ ଗୁରୁଭାନନ୍ଦ୍ର, ଶାନ୍ତି ଆନନ୍ଦାଶ୍ରମ ଶାନ୍ତିଧାମ, ପୁରୀ ।

୧୯. ଗୀତିଗୋଲକ- ଶାନ୍ତି ଆନନ୍ଦାଶ୍ରମ କରମଳା ଯୋଡ଼ାପଦର, ପୁରୀ- ୧୯୬୨ ।

୨୦. ଗୁରୁଗୀତା ଓ ତତ୍ତ୍ୱଜ୍ଞାନ- ଶ୍ରୀ ଅଭିରାମ ସତ୍‌ସଂଗ, ଶାନ୍ତି ଆନନ୍ଦାଶ୍ରମ, କରମଳା, ପୁରୀ- ୧୯୮୨

୨୧. ହଂସ ମିଳନ- ଶ୍ରୀ ଭବନୀଶଙ୍କର, କରୁଣାମୟୀ, ବାରିପଦା ମୟୂରଭଂଜ ।

୨୨. ଜ୍ଞାନପ୍ରେମ ସାଗର- ଶ୍ରୀ ବୈକୁଣ୍ଠ ନାଥ ଦାସ, ଶାନ୍ତି ଆନନ୍ଦଶ୍ରମ, କରମଳା, ଶାନ୍ତିଧାମ, ପୁରୀ- ୧୯୮୧ ।

୨୩. କଳିଭାଗବତ- ଶ୍ରୀ ବୈକୁଣ୍ଠନାଥ ଦାସ, ଶାନ୍ତି ଆନନ୍ଦାଶ୍ରମ, ଶନ୍ତିଧାମ ପୁରୀ- ସାଲ ୧୩୭୮ ।

୨୪. ଲୀଳାମଣ୍ଡଳ- ଶ୍ରୀ ବୈକୁଣ୍ଠ ନାଥ ଦାସ, ଶାନ୍ତି ଆନନ୍ଦାଶ୍ରମ, କରମଳା, ପୁରୀ ।

୨୫. ମୃତ୍ୟୁ ଜୟଗୀତା- ଶ୍ରୀ ବୈକୁଣ୍ଠନାଥ ଦାସ, ଶାନ୍ତି ଆନନ୍ଦାଶ୍ରମ, କରମଳା, ପୁରୀ- ୧୯୬୮ ।

୨୬. ନାବବୋଲି- ଶ୍ରୀମନ୍ କାହ୍ନୁ, ଶାନ୍ତି ଆନନ୍ଦଧାମ- ଯୋଡ଼ାପଦର, ପୁରୀ- ସାଲ- ୧୩୫୭ ।

୨୭. ଫଣି ରାହାସ- ଶ୍ରୀବୈକୁଣ୍ଠ ନାଥ ଦାସ, ଶାନ୍ତି ଆନନ୍ଦଶ୍ରମ, କରମଳା, ପୁରୀ ।

୨୮. ପୂଜାପଦ୍ଧତି ଓ ପର୍ବଗୀତ- ଶ୍ରୀଭାଗବତ୍ ଗୋଷ୍ଠୀ- ଶାନ୍ତି ଆନନ୍ଦଶ୍ରମ କରମଳା, ପୁରୀ- ୧୯୬୬ ।

୨୯. ରାସୋତ୍ସବ- ଶ୍ରୀବୈକୁଣ୍ଠନାଥ ଦାସ, ଶାନ୍ତି ଆନନ୍ଦାଶ୍ରମ, କରମଳା, ପୁରୀ- ୧୯୬୬ ।

୩୦. ସହଜ ସେବା ବା ଜୀବର ସ୍ତୁତି- ଶ୍ରୀ ଅଭିରାମ ସତ୍‌ସଂଗ, ଶାନ୍ତି ଆନନ୍ଦାଶ୍ରମ, ଶାନ୍ତିଧାମ, ପୁରୀ ।

୩୧. ସନାତନ ଧର୍ମାର୍ଥ ଗୀତା- ଶ୍ରୀ ଅଭିରାମ ସତ୍‌ସଂଗ, ଶାନ୍ତି ଆନନ୍ଦାଶ୍ରମ ଶାନ୍ତିଧାମ, ପୁରୀ- ୧୯୮୩ ।

୩୨. ସନାତନ ଗୀତା- ଶ୍ରୀ ଅର୍ଜୁନ ଦାସ, ଶାନ୍ତି ଆନନ୍ଦାଶ୍ରମ ଶାନ୍ତିଧାମ, ପୁରୀ- ୧୯୬୦ ।

୩୩. ଶରୀର ବିଜ୍ଞାନ- ଶ୍ରୀ ବୈକୁଣ୍ଠ ନାଥ ଦାସ, ଶାନ୍ତି ଆନନ୍ଦାଶ୍ରମ, କରମଳା, ପୁରୀ

୩୪. ଶ୍ରୀଭକ୍ତି କଲ୍ଲୋଳ ପ୍ରଥମଭାଗ, ଶ୍ରୀ ଅଭିରାମ ସତ୍‌ସଂଗ, ଶାନ୍ତି ଆନନ୍ଦାଶ୍ରମ, ଶାନ୍ତିଧାମ, ପୁରୀ- ୧୯୮୩ ।

୩୫. ଶ୍ରୀଭକ୍ତି କଲ୍ଲୋଳ, ଦ୍ୱିତୀୟ ଭାଗ, ଶାନ୍ତି ଆନନ୍ଦାଶ୍ରମ ଯୋଡ଼ାପଦର, ପୁରୀ- ସାଲ ୧୩୬୯ ।

୩୬. ଶ୍ରୀଭକ୍ତି କଲ୍ଲୋଳ, ତୃତୀୟ ଭାଗ- ଶ୍ରୀଭାଗୀ ସାନ୍ତରା ଚନ୍ଦନପୁର, ପୁରୀ- ସାଲ୧୩୬୯ ।

୩୭. ଶ୍ରୀଚୈତନ୍ୟ ଟୀକା- ଲକ୍ଷ୍ମୀ ଇନଷ୍ଟିଚ୍ୟୁଭଟ୍- ନୂଆବଜାର କଟକ ୪ ।

୩୮. ଶ୍ରୀକୃଷ୍ଣ କୌତୁକ ଗୀତା- ଶ୍ରୀରାମ ଚନ୍ଦ୍ରଦେବ ଅନଙ୍ଗଭୀମ କେଶରୀ ଗଜପତି ରାଜାସାହେବ, ବଡ଼ଖେମୁଣ୍ଡି- ୧୯୫୨ ।

୩୯. ଶ୍ରୀମତୀ ଯୋଗାଭିସାର- ଶ୍ରୀମତୀ କୃଷ୍ଣକୁମାରୀ ମାତା, ଶାନ୍ତି ଆନନ୍ଦାଶ୍ରମ, କରମଳା, ପୁରୀ- ୧୯୪୭ ।

୪୦. ସ୍ତୁତିରତ୍ନହାର- ଶ୍ରୀଗୁରୁ ଭାନନ୍ଦ ଶାନ୍ତି ଆନନ୍ଦାଶ୍ରମ, ପୁରୀ ।

୪୧. ଯୋଗାଭିସାର- ରମା ପ୍ରସନ୍ନା ଏବଂ ରାଧାଶ୍ୟାମ ପଟ୍ଟନାୟକ, ବଳରାମ ପୁର, ତଳଗଡ଼, କଟକ

ସହାୟକ ଗ୍ରନ୍ଥସୂଚୀ-

୧. ଲୀଳାବତାର ଅଭିରାମ- ପ୍ରଥମଭାଗ- ସଂପାଦନାମଣ୍ଡଳୀ- ପ୍ର. କେନ୍ଦ୍ରୀୟ ଶତବାର୍ଷିକୀ ଉତ୍ସବ କମିଟି- ଶାନ୍ତିଧାମ, କରମଳା- ୨୦୦୪ ।

୨. ଶ୍ରୀଶ୍ରୀଶ୍ରୀ ଅଭିରାମ ପରମହଂସ ଦେବଙ୍କ ଚରିତାମୃତ- ଦ୍ୱିତୀୟଭାଗ- ପ୍ରଣେତା- ବାବାଜୀ ଶ୍ରୀ ଚକ୍ରଧରଦାସ- (୧୯୯୫) ।

୩. ସହଜ ସେବା- ପ୍ରଣେତା ପଦ୍ମନାଭ ତ୍ରୀପାଠୀ- ଶ୍ରୀ ଶାନ୍ତି ଆନନ୍ଦାଶ୍ରମ- ତପୋବନ ଖଣ୍ଡଗିରି (୨୦୦୩ ।)

୪. The philosophy of Thakur Sri. Abhiram Paramahamsa- by N. Mohanty- 1987.



# ସନ୍ଥ ଉଦାସ ଯମୁନା ଦାସ

## (ଏକ ସୂଚନାତ୍ମକ ଆଲେଖ୍ୟ)

ଶ୍ରୀଶ୍ରୀ ଯମୁନା ଦାସ ୧୩୩୦ ସାଲ ଖ୍ରୀ.ଅ. ୧୯୨୩ ଶ୍ରାବଣ ଏକାଦଶୀ ବୁଧବାର ଏକ ଶୁଭ ମୁହୂର୍ତ୍ତରେ ମାତା ଶାରଳାଦେବୀ ଏବଂ ପି. ଯୋଗୀଦାସଙ୍କ କୋଳମଣ୍ଡନ କରନ୍ତି ଯାଜପୁର ଜିଲ୍ଲା ବଡ଼ଚଣା ଅନ୍ତର୍ଗତ ଚଣ୍ଡୀତଳ ଗ୍ରାମରେ । ଜନ୍ମ ପୂର୍ବରୁ ତାଙ୍କ ପାଞ୍ଚ ଭାଇ- ଭଗ୍ନୀଙ୍କ ମୃତ୍ୟୁ ହୋଇଥିବାରୁ ମାତା ବଟପୁଟବାସୀଙ୍କୁ ଆରାଧନା କରି ଏହି ସଂତାନ ପ୍ରାପ୍ତି ହୋଇଥିବାରୁ ନାମ ରଖାଗଲା ବଟକୃଷ୍ଣ । ଜନ୍ମ ସମୟରେ ବୃଦ୍ଧାଙ୍ଗୁଳିର ଅଗ୍ରଭାଗ ଅନାମିକାର ମୂଳପଟରେ ସଂଯୁକ୍ତ ହୋଇଥିଲା । ଏପରି ଘଟଣା ଭାରତର ଅନ୍ୟ କେତେକ ସନ୍ଥଙ୍କ ଜନ୍ମ ସମୟରେ ହୋଇଥିବାର ଜଣାଯାଏ ।

ଗ୍ରାମ ଚାଟଶାଳୀରେ ତିନିବର୍ଷ ଅଧୟନ ପରେ ଭାଗବତ ପ୍ରଭୃତି ପୁରାଣ ଗ୍ରନ୍ଥ ଅଧୟନ ପାଇଁ ଜ୍ଞାନ ଲାଭ ହେବାରୁ ତଥା ଅବଧାନଙ୍କୁ ଦେୟ ଦେଇ ନପାରିବାରୁ ପାଠପଢ଼ା ସେତିକିରେ ରହିଲା-

କି ପାଠ ବା ଆଉ ପଢ଼ିଥାନ୍ତେ- ତାଙ୍କ ଭାଷାରେ
କିପାଠ ପଢ଼ିବି ଗୁରୁ ଶୂନ୍ୟବାସୀ ଥାଉଁ ?

-(ଉ- ଆତ୍ମଜୀବନୀ ପ୍ରଥମ ଅଧ୍ୟାୟ)

ତତ୍‌କାଳୀନ ସମୟରେ ଅନ୍ୟ କୃଷକ ପରିବାରର ପିଲାମାନଙ୍କ ପରି ପିତାଙ୍କୁ କୃଷିକର୍ମରେ ସହଯୋଗ କରିଛନ୍ତି । କୃଷିକ୍ଷେତ୍ରରେ କାମ କରିବା ଅବସରରେ ପ୍ରଭୁଙ୍କଠାରେ ଲୟ ରହିଥାଏ । ସଂସାରତ୍ୟାଗୀ ହୋଇ ବୈରାଗୀ ହୋଇଯିବା ଆଶଂକାରେ ଜନନୀ ଦୁଃଖିତ ହୁଅନ୍ତି, କିନ୍ତୁ ପିତାଙ୍କ ଦୃଢ଼ୋକ୍ତି ଯେ ଯିଏ ଯାହା ହେବାର ଥିବ, ତାହାହିଁ ହେବ । କାହାରିକୁ ବାଧ ରଖାଯାଇ ନପାରେ । ସଂସ୍କାରିତ ତଥା ଧର୍ମ ପରାୟଣ ପରିବାରକୁ ବିବିଧ କାରଣରୁ ଅତିଥିମାନଙ୍କର

ଆଗମନ ହୁଏ । ସାଧୁ, ସନ୍ନ୍ୟାସୀମାନଙ୍କ ଆଗମନରେ ବଟକୃଷ୍ଣ ଖୁସି ହେଉଥାନ୍ତି । ମଝିରେ ମଝିରେ ଜଳୌକା, ଛତିଆ, ସିଦ୍ଧିଗିରି ପ୍ରଭୃତି ଆଶ୍ରମମାନଙ୍କୁ ଯାଇ ତଥା ସାଧୁମାନଙ୍କ ସହ ଆଳାପ ଆଲୋଚନା ଦ୍ୱାରା ବୈରାଗ୍ୟ, ଆଧ୍ୟାତ୍ମିକ ବିଚାରକୁ ପୁଷ୍କଳ କରିବାରେ ଲାଗିଥାନ୍ତି ।

ଗାଁ' ନିକଟରେ ପାହାଡ଼, ସେଠାରୁ ଅନ୍ୟ ଗ୍ରାମବାସୀଙ୍କ ପରି ଜାଣେନି କାଠ ସଂଗ୍ରହ କରି ଆଣନ୍ତି । ଦିନକର ଘଟଣା, ଜଂଗଲକୁ ଜାଳେଣି ସଂଗ୍ରହ କରିବା ପାଇଁ ଯାଇଛନ୍ତି ଶ୍ରମକ୍ଳାନ୍ତ ହେତୁ ଗଛ ଛାଇରେ ଶୋଇପଡ଼ିଲେ । ନିଦ୍ରା ଭାଙ୍ଗିଲା ବେଳକୁ ଦେଖନ୍ତିତ ଏକ ବିଷଧର ନାଗ ଫଣାଟେକି ତାଙ୍କୁ ଜଗିରହିଛି । ଅନ୍ୟ ବଣ୍ୟଜୀବଙ୍କଠାରୁ ରକ୍ଷାକରିବାର ଚେଷ୍ଟାରେ ଫଣାଟେକି ରହିଛି । ତାଙ୍କ ନିଦ୍ରାଭାଙ୍ଗି ଯିବା ସହିତ ସର୍ପ ଅନ୍ତର୍ଦ୍ଧାନ ହୋଇଗଲା । ଏହି ଦୃଶ୍ୟ ତରୁଣ ବଟକୃଷ୍ଣଙ୍କ ମନରେ ଗଭୀର ରେଖାପାତ କରିଛି । ଏହା ପ୍ରଭୁଙ୍କ ଆଶୀର୍ବାଦ କିମ୍ବା ମାୟା । ଗୃହତ୍ୟାଗ କରିବା ପାଇଁ ଏହା ତତ୍‌କାଳୀନ କାରଣ ହୋଇଛି । ଗୃହ ଆକର୍ଷଣ ତାଙ୍କ ପାଇଁ ଶିଥିଳ ହୋଇ ଯାଇଛି, ଅସୀମର ଆହ୍ୱାନରେ ସେ ପୂର୍ବ ସିଦ୍ଧାଚାର୍ଯ୍ୟମାନଙ୍କ ତପସ୍ଥଳୀମାନଙ୍କୁ ଯୋଗ ସାଧନା ପାଇଁ ବାହାରି ଯାଇଛନ୍ତି । ସେହି କ୍ରମରେ ଜାହ୍ନଗିରି, ସୁକୁଦଲାପୁର, ଖଣ୍ଡଗିରି ପ୍ରଭୃତି ଆଶ୍ରମମାନଙ୍କର କାୟତ୍‌କାଳ ଅତିବାହିତ କରି ଜମାୟିତ ଧର୍ମଧ୍ୱଜୀଙ୍କ ଗୋଷ୍ଠୀରେ ତିନିବର୍ଷ ଅତିବାହିତ କରିଦେଇଛନ୍ତି । ତାଙ୍କ ଭାଷାରେ-

**ଭୋଗ ଅଂଶ ନୁହେଁ ଦେହ ଯୋଗତା ପ୍ରଧାନ**
**ବନଗିରି ନଦୀପାଶ କରତୁ ସାଧନ । (୨/୫୩)**

ପ୍ରାଚୀନ ସାଧୁ ପରଂପରାକୁ ଆଧାର କରି ସମଗ୍ର ଭାରତବର୍ଷର ତୀର୍ଥ କ୍ଷେତ୍ରମାନ ପରିବ୍ରାଜକ ଭାବେ ପରିଭ୍ରମଣ କରିଛନ୍ତି ସେହି ପ୍ରଭୁଙ୍କ ସଂଧାନରେ- ପଞ୍ଜାବ, ହରିଦ୍ୱାର, ଗୋପ, ବୃନ୍ଦାବନ, ମଥୁରା, ଅଯୋଧ୍ୟା, କାଶୀ, ଗୋମୁଖୀ, ଗଂଗା, ତ୍ରିବେଣୀ, ବାଂଛାବଟ, କପିଳମୁନି ଆଶ୍ରମ (ଗଂଗା ସାଗର ସଂଗମ) ପ୍ରଭୃତି ପରିଭ୍ରମଣ ପୂର୍ବକ ଗଂଗା, ଯମୁନା ତଟରେ ବହୁବାର ସମାଧି ମଗ୍ନ ହୋଇଛନ୍ତି ।

ଏକବିଂଶ ବର୍ଷ ବୟସରେ ବାଙ୍କୁଡ଼ା ଜିଲ୍ଲାରେ ଗୁରୁ ଅନ୍ୱେଷଣରେ ପ୍ରବେଶ କଲେ । ସେଠାରେ ତୁଡୁକୀ ଆଶ୍ରମରେ ପାଞ୍ଚଜଣ ସାଧୁଙ୍କ ମେଳରେ

କିଛିକାଳ ଅତିବାହିତ କଲେ । ଶିବ ଦାସ ବାବାଙ୍କ ସଂଗେ ପ୍ରୟାଗ କୁମ୍ଭ ମେଳା ପରିଦର୍ଶନ, ଭରଦ୍ୱାଜ ମୁନିଙ୍କ ଆଶ୍ରମ ଅକ୍ଷୟ ବଟ ପ୍ରଭୃତି ଦର୍ଶନ କରିବାର ଅବକାଶ ମିଳିଲା । ବାଂଛାବଟ ମୂଳରେ ବିଶ୍ରାମ କରି ଗୁରୁପ୍ରାପ୍ତି କାମନା କଲେ । ସେହି ବଟମୂଳରେ ଯେଉଁ କାମନା କରାଯାଏ ତାହା ଅଚିରେ ପୂର୍ଣ୍ଣ ହୁଏ, ଏହି ବିଶ୍ୱାସ ରହିଛି । ସ୍ୱପ୍ନରେ ଜଣେ ସାଧୁଙ୍କ ନିର୍ଦ୍ଦେଶକ୍ରମେ କାଶୀ କ୍ଷେତ୍ରର ଅସୀଘାଟରେ ଥିବା ଉଦାସ ମଠର ଶାନ୍ତିବାବାଙ୍କ ନିକଟକୁ ଚାଲିଲେ, ଶ୍ରୀଗୁଣ୍ଡିଚା ଦିନ ମୁଣ୍ଡନ ଏବଂ ବାନା କୌପୀନ ଗୁରୁଙ୍କଠାରୁ ଗ୍ରହଣ କଲେ । ସେହି ଦିନରୁ ସନ୍ନ୍ୟାସୀ, ଗୋତ୍ର ଅଚ୍ୟୁତ ହେଲେ । ବଟକୃଷ୍ଣ ନାମ ଚିରଦିନ ପାଇଁ ଲୋପ ହୋଇ ଉଦାସ ଯମୁନା ଦାସ ହେଲା । ଗୁରୁ ସାଥୀରେ ଘେନି ଚାରିଧାମ ଯାତ୍ରା କରିଥିଲେ ।

ହରିଦ୍ୱାରରେ କୁମ୍ଭମେଳା ଦର୍ଶନ । ନିଜ ଭିତରେ ଥିବା ଭୟଂକର ପ୍ରକୃତି ଯାହା ମୁନୁଷ୍ୟକୁ ସଦା ଅଧୋଗାମୀ କରାଇବାରେ ସହାୟକ ହୋଇଥାଏ । ବିଭିନ୍ନ ପରିବେଶ ପରିସ୍ଥିତିରେ ମନକୁ ଆୟତ୍ତ କରିବାର ପ୍ରଶିକ୍ଷଣ କେବଳ ଦେଶାଟନ ଦ୍ୱାରା ହିଁ ସଂଭବ । କାରଣ ମଠରେ ଗୋଟିଏ ସ୍ଥାନରେ ବିବିଧ ପରିସ୍ଥିତି ସୃଷ୍ଟି ସଂଭବ ନୁହେଁ । 'ପ୍ରକୃତିଗଣ ଅଟନ୍ତି ମହାଭୟଙ୍କର । ଏହାଙ୍କୁ ଆୟତ୍ତ ପାଇଁ ଭ୍ରମେ ଦେଶାନ୍ତର' (୩/୧୩) ।

ଗଂଗା ପ୍ରବେଶ ଯୋଗ- ୪ର୍ଥ ଅଧ୍ୟାୟର ନାମ । ପଞ୍ଜାବରୁ ଗୟାରେ ଆସି ପହଂଚିଛନ୍ତି, ଶ୍ରୀରାମଙ୍କର ପାଦଚିହ୍ନ ଦର୍ଶନ ଏକ ସ୍ମରଣୀୟ ଘଟଣା ହୋଇଛି । ସେଠାରୁ ଚିତ୍ରକୂଟକୁ ଯାତ୍ରା କରିଛନ୍ତି । ଚିତ୍ରକୂଟ ପର୍ବତଶୀର୍ଷ ମନ୍ଦିରରେ ରାମ ଲକ୍ଷ୍ମଣ ସୀତାଙ୍କ ବିଗ୍ରହ ଦେଖି ତୃପ୍ତି ଲାଭ କରିଅଛନ୍ତି । ବନ ପର୍ବତ ତାଙ୍କୁ ରାମମୟ ଦୃଶ୍ୟ ହୋଇଛି । ବ୍ରହ୍ମ ଚେତନାରେ ତାଙ୍କ ମନ ପ୍ରାଣ ଭରି ଯାଇଛି । ଆତ୍ମକଲ୍ୟାଣ, ଆତ୍ମମୁକ୍ତି, ମୋକ୍ଷ ଅପେକ୍ଷା ବିଶ୍ୱକଲ୍ୟାଣ ବିଚାର ତାଙ୍କ ମନରେ ଉଦ୍ରେକ ହୋଇଛି- ପଦଟି ଦେଖନ୍ତୁ-

**ନିଜ ପାଇଁ ଯୋଗ ସିଦ୍ଧ ନୁହଁଇ ଉଚିତ**
**ଜଗତ ଉଦ୍ଧାର ଧ୍ୟାନ ସମାଧି ସିଦ୍ଧାନ୍ତ- (ଅ. ୪/୧୩୦)**

**ପଞ୍ଚମଅଧ୍ୟାୟ-** (କପିଳମୁନି ଆଶ୍ରମ ଦର୍ଶନଯୋଗ) ଧ୍ୟାନର ଏକ ଚରମ ସ୍ଥିତିରେ ତାଙ୍କର ଅନୁଭୂତି ବାଣୀରେ ବ୍ୟକ୍ତ ହେବା ଅସଂଭବ । ବ୍ୟକ୍ତ କରିବାକୁ ଯାଇ କହିଛନ୍ତି-

'ଶିଶୁମନା ଶେଷଦିଶେ ହେଉଛି କଳି
ବଚନୁ ଅତୀତ ସେହି ନୁହେଁ କାହାଭଳି' ।

ପ୍ରାଣର ବ୍ୟାକୁଳତା, ପରମଙ୍କ ସହ ଏକାକାର ହେବାର ଦୁର୍ବାର ଅଭୀପ୍ସାର ଯେଉଁ ଯନ୍ତଣା ତାକୁ କିଏ ବା ଶୁଣିବ ? ସେହି ସ୍ରଷ୍ଟା ଦ୍ରଷ୍ଟା ପୁରୁଷ ଏକମାତ୍ର ସାକ୍ଷୀ ଯେ ହୃଦ ଦାବାନଳକୁ ନିର୍ବାପିତ କରିପାରିବେ ।

ଏ ମାୟା ସଂସାରେ ଏକା ଦ୍ରଷ୍ଟା ପଦ ସାର
ଲିଭାଇବେ ହୃଦଦାହ ଭାବୁଛି ଅନ୍ତର- (୫ମ ଅଧ୍ୟାୟ)

କପିଳ ମୁନିଙ୍କ ଆଶ୍ରମରେ ଧ୍ୟାନ ସମାଧି ସଂପର୍କରେ ବ୍ୟକ୍ତବାଣୀର ପରିପ୍ରକାଶ ସୁନ୍ଦରଭାବେ ରୂପାୟିତ ହୋଇଛି ।

**ଷଷ୍ଠ** ଅଧ୍ୟାୟ- (ପଞ୍ଜାବ ଭ୍ରମଣରେ କର୍ମଯୋଗ) ନୂତନ କ୍ଷେତ୍ର, ପରିବେଶ ମନ ଉପରେ ଗଭୀର ପ୍ରଭାବ ଲକ୍ଷ୍ୟଣୀୟ । ଏହି ସମୟରେ ସାଧକ ବାହ୍ୟ ପରିସ୍ଥିତିକୁ ପ୍ରାଧାନ୍ୟ ନଦେଇ ଅନ୍ତର୍ଦୃଷ୍ଟି ବଳରେ ଆଭ୍ୟନ୍ତରକୁ ପରୀକ୍ଷା କରିବାରେ ଲାଗିଛନ୍ତି । ଧର୍ମ, ଜାତି ମଧ୍ୟରେ ଯେଉଁ ଈଶ୍ୱରୀୟ ସତ୍ତା, ବ୍ରହ୍ମମୟ ସତ୍ତା ସମସ୍ତଙ୍କଠାରେ ବିଦ୍ୟମାନ ତାକୁ ସେ ଲକ୍ଷ୍ୟ କରିଛନ୍ତି ।

ପରମପିତାର ପୁଅ ଝିଅ ଆମେ ସବୁ । କର୍ମକରି ଏକଭାବେ ତାଙ୍କ ପାଶେ ଯିବୁ । (୬/୮୪) ପରମେଶ୍ୱରଙ୍କ ଇଚ୍ଛା ଅଜ୍ଞାତ, ମନୁଷ୍ୟ ନିଜ ଇଚ୍ଛା ଫଳବତୀ ହେବା ଆଶା କରିଥାଏ, କିନ୍ତୁ ସର୍ବତ୍ର ଈଶ୍ୱରଙ୍କ ଇଚ୍ଛା ବଳବତୀ ହେବାର ଦେଖାଯାଏ ।

ତୋର ଇଚ୍ଛା ଛଡ଼ା ମୋର ଇଚ୍ଛା ତିଳେ ନାହିଁ
ତୋ ଇଚ୍ଛା ପୂରଣ ତୁହି କର ଭାବଗ୍ରାହୀ ॥ (୬/୧୧୧)

**ସପ୍ତମ** ଅଧ୍ୟାୟ- (ଅଯୋଧ୍ୟାରେ ଯୋଗ ସାଧନ) ପଞ୍ଜାବରେ ଛ'ମାସ ବିଭିନ୍ନ ତୀର୍ଥକ୍ଷେତ୍ର ଧର୍ମାନୁଷ୍ଠାନମାନଙ୍କରେ ଘଟିତ ଆନ୍ତରିକ ଅନୁଭୂତକୁ ସଂଗରେ ଧରି ଅଯୋଧ୍ୟାରେ ପ୍ରବେଶ କରୁଛନ୍ତି । ସାଧନାର ଆରୋହଣ କ୍ରମରେ ନୂତନ ସ୍ୱାଦ, ତଥା ବିଚାରର ଅନୁଭୂତି ଉପସ୍ଥିତ ହୋଇଥାଏ । ସେହିପରି ଏକ ଅମୂଲ୍ୟ ଅନୁଭୂତିକୁ ସନ୍ଥ ମହାତ୍ମା ପ୍ରକାଶ କରନ୍ତି ଏହିପରି-

ଶ୍ରଦ୍ଧାକୁ ଖୋଜିଲେ ବୁଡ଼ି ଅନ୍ତରେ ମୋହର
ଶ୍ରଦ୍ଧାବିନା ଭାବଗ୍ରାହୀ ନୁହଁନ୍ତି କାହାର । (୭/୧୭)

ସାଂସାରିକ ବିବିଧ କାରଣରୁ ମନୁଷ୍ୟ ମନ ମଧ୍ୟରେ ଅହଂକାର ଦେଖାଦିଏ । ସେହି ଅହଂକାର ହିଁ ବିଭୁ ଦର୍ଶନ ସରଣୀରେ ପ୍ରଧାନ ପ୍ରତିବଂଧକ ହୋଇ ଉଭାହୁଏ । ସାଧକ ସେଥିପାଇଁ ସତର୍କ ହେବା ନିତାନ୍ତ ପ୍ରୟୋଜନ-

ଭକ୍ତିର ପ୍ରତିବଂଧକ ଅହଂକାର ଯାଉ
ଏହି ଅନ୍ଧକାର ଘୋଟେ ତୁମ୍ଭେ ଥାଉଁ ଥାଉଁ । (୧୭/୨୭)

ଅଷ୍ଟମ ଅଧ୍ୟାୟ- ସନ୍ନ୍ୟାସୀ ଆଶ୍ରମ ତ୍ୟାଗକରି ସଂସାରର କଲ୍ୟାଣ କରିବା ଉଦ୍ଦେଶ୍ୟରେ ଦେଶାଟନରେ ବାହାରିଲେ, ନାନାଘାତ ପ୍ରତିଘାତ ତଥା ନୂତନ ଅନୁଭୂତି ପ୍ରାପ୍ତିର କ୍ଷେତ୍ର ପ୍ରାପ୍ତ କଲେ । ସେହି ଅଭିଜ୍ଞାତ ଉର୍ଦ୍ଧ୍ୱଗାମୀ ହେବାକୁ ତାକୁ ପ୍ରେରିତ କରିଥାଏ ।

ମଠ ଭୋଗ ବାସନାକୁ କଲେ ପରିତ୍ୟାଗ
ମିଳିବ ଭକତି ଯୋଗ ତ୍ୟାଗ ବଇରାଗ । (୮/୫)

ନବମ ଅଧ୍ୟାୟ- (ତ୍ରିବେଣୀ ଘାଟରେ ସାଧନାଯୋଗ) ଲୟଯୋଗ ।

ଯୋଗର କଠୋର ପ୍ରଦେଶକୁ ଗମନ କରିବାକୁ ହେଲେ ପ୍ରକୃତି ସହ ନିଜକୁ ସଂପୂର୍ଣ୍ଣ ପ୍ରାକୃତିକ ସ୍ତରକୁ ଘେନିଯିବାକୁ ହେବ । 'ପଦ୍ମମୂଳ ଖାଇ ନଦୀଜଳ କରିପାନ' । 'ଖେଚିରି ମୁଦ୍ରା', 'ମୂଳବଧ' ଯୋଗର ଆନ୍ତରିକ ସ୍ତର ଏବଂ ବାୟୁ ସାଧନାରେ ନିଜକୁ ଦୃଢ଼ ଭାବେ ସ୍ଥାପିତ କରି ପ୍ରଭୁଙ୍କ କୃପାଭିକ୍ଷା କରିଛନ୍ତି । ପ୍ରଭୁଙ୍କ ପାଦପଦ୍ମରେ ଅନୁନୟ କରି କହୁଛନ୍ତି-

ଜଗତରେ ଯେତେ ଦୋଷ ସବୁ ମୁଁ କରିଛି
ତଥାପି ମୋ ପାଇଁ କ୍ଷମା ତୋ ପାଦରେ ଅଛି । (୯/୪୭)

ସୂକ୍ଷ୍ମ ଶରୀରର ବର୍ଣ୍ଣନା- ବାସ୍ତବ ଈଶ୍ୱରୀୟ ଘଟଣା ଏବଂ ଆମକୁ ତାହା କିପରି ଭ୍ରାନ୍ତ ଦୃଶ୍ୟ- ଅନୁଭବ୍ୟ ହେଉଛି ତାହାର ଏକ ଦୃଷ୍ଟାନ୍ତ ଦେବାକୁ ଯାଇ କହୁଛନ୍ତି-

ସୂର୍ଯ୍ୟଙ୍କରଠାରେ ନାହିଁ ଦିନରାତି କିଛି
ତଥାପି ଦିବସ ରାତ୍ର ଆମକୁ ହେଉଛି । (୯/୧୩୫)

ଜନ୍ମ ମୃତ୍ୟୁ ଚକ୍ରରେ ବାରବାର ଜନ୍ମ- ମୃତ୍ୟୁ ଲଭି ଅପାର କାଳରୁ ଚଉରାଅଶୀ ଲକ୍ଷ ଜୀବନ ବ୍ୟତୀତ ହୋଇଗଲା । ଏହା କିପରି ସମାପ୍ତ ହେବ, ଏକ ସୂତ୍ର ମାଧ୍ୟମରେ ସନ୍ଥ ଏହାକୁ ବ୍ୟକ୍ତ କରୁଛନ୍ତି ।

କର୍ମଶେଷ ବିନା ଜନ୍ମାନ୍ତର ଶେଷନାହିଁ
କର୍ମସୂତ୍ର ଛାଡ଼ିଗଲେ ଆକାର ଭଂଗଇ । (୯/୧୩୭)

ଦଶମ ଅଧ୍ୟାୟ- (ବିଷ୍ଣୁପୁର ଆଶ୍ରମରେ ଯୋଗ ସାଧକ) ଶରୀର ଚକ୍ର ମଧ୍ୟରେ ବାୟୁର ସ୍ଥିତି ଏବଂ ତଦନୁସାରେ ତା'ର କାର୍ଯ୍ୟ ଏ ସମସ୍ତ ବର୍ଣ୍ଣନା ଉକ୍ତ ଅଧ୍ୟାୟର ପ୍ରମୁଖ ଆଲୋଚ୍ୟ ।

ଅନୁଭବ ବାଣୀରେ ଯୋଗକୁ ବ୍ୟାଖ୍ୟାନ କରିବାକୁ ଯାଇ କହୁଛନ୍ତି-

"ଅବୋଧଗମ୍ୟ ଏ ଯୋଗ କହେ ଅଭିଜ୍ଞାତ । ଯୋଗ ଅର୍ଥ ଶାଶ୍ୱତଙ୍କୁ ଜାଣିବା ନିରତ ।" (୧୦/୧୦୭) (ମନୁଷ୍ୟ) ସାଧକର ସକଳ ଅନୁଭବ ବ୍ୟକ୍ତ କରିବା ସଂଭବ ନୁହେଁ । ଯାହା ବ୍ୟକ୍ତ ହୋଇପାରିବ ସେହିପରି ସାରଭୂତ ବାଣୀ ପ୍ରକଟିଛି-

ଯୁକ୍ତି ତର୍କଦ୍ୱାରା ନାହିଁ ପ୍ରଭୁର ଦର୍ଶନ
ପ୍ରତ୍ୟକ୍ଷ ଦର୍ଶନ ଧ୍ୟାନ ଅନୁଭବ ଭିନ୍ନ । (୧୦/୧୬୫)

ଅନୁଭବ ସର୍ବଶ୍ରେଷ୍ଠ । ଶୁଣିବା, ପଢ଼ିବାଠାରୁ ଏହା ଯେ ଅଧିକ ମାର୍ମିକ ଏଥିରେ ସଂଦେହ କାହିଁ ?

ଏକାଦଶ ଅଧ୍ୟାୟ- (ବିଷ୍ଣୁପୁରରୁ ନାନା ସ୍ଥାନ ଭ୍ରମଣଯୋଗ)

ମନୁଷ୍ୟର ବିଚାର, ସ୍ୱାର୍ଥ, ଭାବନା ସଂକୁଚିତ ହୋଇଗଲେ ଅହଂତ୍ୱ-ମମତ୍ୱରେ ବାନ୍ଧି ହୋଇଯାଏ । ଉର୍ଦ୍ଧ୍ୱକୁ ଯେଉଁ ସାଧକମାନଙ୍କର ଯୌଗୀକ ସ୍ଥିତି ହୋଇ ସାରିଛି ସେମାନଙ୍କ ପାଖରେ ସଂକୀର୍ଣ୍ଣ ବଂଧନୀ, ବାଡ଼, ପାଚେରୀ ନଥାଏ, ସୁତରାଂ ସେମାନେ ସମଦର୍ଶୀ ହୋଇଥାନ୍ତି । ସେହି ଭାବର ବ୍ୟକ୍ତରୂପକୁ ଦେଖନ୍ତୁ-

"ସତ୍ୟର ବିଶ୍ୱାସ ମୂଳଧର୍ମ ସନାତନ । ଏକ ପରିବାର ରବି ତଳେ ଜୀବଗଣ" (୩୯/୧୧) ଉପନିଷଦର 'ବାସୁଧୈବ କୁଟୁମ୍ବକମ୍' ଭାବ ପ୍ରକଟିତ ହୋଇଛି । ଜୀବର ସେବାଦ୍ୱାରା ଯେଉଁ ମହତ ଅନୁଭୂତି ପ୍ରାପ୍ତ ହୁଏ, ତାହା ଅନ୍ୟତ୍ର ଦୁର୍ଲଭ ।

ଜୀବ ସେବା ବିନା ଯେତେ ପୂଜା ହୁଏ ମୂର୍ତ୍ତି
ତିଳେ ମାତ୍ର ସେ ପୂଜାରେ ନୁହେଁ ଆତ୍ମା ଶାନ୍ତି । (୫୦/୧୧)

ସେଦିନ ଜୟଦେବ ଗୋସ୍ୱାମୀ 'ଦେହି ପଦ ପଲ୍ଲବ ମୁଦାର' ବୋଲି

କହିଥିଲେ ସେହି ଅନନ୍ୟ ଭାବରେ ସନ୍ଥବାଣୀ ପ୍ରସରି ଆସିଛି-

ସଦୟେ ଲଗାଅ ପ୍ରଭୁ ମୋ' ଶିରେ ତୋ ପାଦ
ଘୁଂଚିବ ଅଶେଷ ଜନ୍ମ ମୋ' ମୋହ ପ୍ରମାଦ । (୯୪/୧୧)

ପ୍ରଭୁଙ୍କର ଅଭୟ ପାଦ ଯଦି ମସ୍ତକରେ ସ୍ପର୍ଶ ହୋଇଥାଏ, ତେବେ ଏ ଜନ୍ମ ଏ ଜୀବନ ଧନ୍ୟ ହୋଇଯିବ । ଏ ଜୀବ କୃତାର୍ଥ ହୋଇଯିବ । ସାର୍ଥକ ହୋଇଯିବ ନରଜନ୍ମ । ଆବାଗମ ଚକ୍ରରୁ ମିଳିଯିବ ମୁକ୍ତି, ନିସ୍ତାର ।

**୧୨. ଦ୍ୱାଦଶ ଅଧ୍ୟାୟ- ପୁନରାୟ ଉତ୍କଳ ଭ୍ରମଣ ଯୋଗ**

ମେଦିନୀପୁରରୁ ବାଲେଶ୍ୱର ମଧ୍ୟଦେଇ ଓଡ଼ିଶା ଭୂଇଁରେ ପାଦ ଥାପିଲେ । ବାଲେଶ୍ୱର ନୀଳଗିରିରେ ଯାଇ ପହଂଚିଛନ୍ତି-

ନୀଳଗିରି ଦରୀ କୋଳେ ଅନୁଭବେ ବସି
ନଫୁଟଇ ବାଣୀ ପ୍ରାଣ ଗହୀରକୁ ତୋଷି । (୧୪)

ମନୁଷ୍ୟ ସମାଜରେ ଜଟିଳତା କୁଟୀଳତାର ବିନାଶ ଏବଂ ବିଷୟ ବୈରାଗ୍ୟ ତଥା ଶ୍ରବଣ ମମନ ଧ୍ୟାନ ଦ୍ୱାରା ଆତ୍ମାର ବିକାଶ ହେବା ନିମିତ୍ତ ପ୍ରଭୁ ପଦ କଂଜରେ ପ୍ରାର୍ଥୀ ହୋଇଛନ୍ତି । ଉଦାସଙ୍କ ଭାବନାର ପ୍ରକାଶ ଦେଖନ୍ତୁ-

ଜନତା କଷଣ ନଫେଡ଼ିଲେ ଶୂନ୍ୟପ୍ରାଣ
ମନୁଷ୍ୟ ଜନ୍ମ ହେବାର ହେବ ଅକାରଣ । (୧୨/୪୫)

ନୀଳଗିରି ପର୍ବତରେ ଶୟନ କରିଥିବା ଅବସ୍ଥାରେ ଉତ୍‌ଫଣ ସର୍ପ ତାଙ୍କୁ ଜଗି ରହିଥିଲା ନିଦ୍ରା ତୁଟିଯିବାରୁ ସର୍ପ ଉଭେଇ ଗଲା । ପରେ ଏକୋଇଶ ଦିନ ଲୟଯୋଗରେ ବିତିଗଲା ୨୨ଶ ଦିନରେ ଶୂନ୍ୟବାଣୀ ଶୁଣିବାକୁ ପାଇଛନ୍ତି ।

ସମଗ୍ର ଭାରତ ପ୍ରବର୍ଜ୍ୟା କରିବା ପରେ ଉତ୍କଳ ଭୂମିର ଆକର୍ଷଣ ସ୍ୱତନ୍ତ୍ରତା ଅନୁଭବ କରି ଭାବ ଗଦ୍‌ଗଦ୍ କଣ୍ଠରେ ଗାଇ ଚାଲିଛନ୍ତି-

ଉତ୍କଳର ଗିରିଝର ସରସ ସରିତ
ଉତ୍କଳ ଅବଗାହନ ମହାଭାଗ୍ୟବନ୍ତ । (୧୨/୫)

ପୁନଃ-

ଭାରତର ଗିରି ନଦୀ ଭ୍ରମିନାନା ସ୍ଥାନ
ପହଞ୍ଚିଛନ୍ତି ପାଦପୀଠ ଉତ୍କଳ ପ୍ରଧାନ । (୧୨/୧୧)

ଧବଳଗିରିରେ ଏକବିଂଶ ଦିବସ ଗୋଟିଏ ଆସନରେ ବାୟୁ ସେବନରେ ଧ୍ୟାନାବସ୍ଥାରେ ଅତିବାହିତ କରନ୍ତି । ବୌଦ୍ଧ ସାଧନାସ୍ଥଳୀ ଲଳିତଗିରିରେ ଉପସ୍ଥିତ ହେଲେ । ବିଶ୍ୱ ସମୁଦାୟର କଲ୍ୟାଣ ପାଇଁ ଦେଢ଼ ମାସ ତପଶ୍ଚର୍ଯ୍ୟା ନିରତ ହେଲେ । ସେଠାରୁ ସନ୍ଥ ଅରକ୍ଷିତ ଦାସଙ୍କ ସାଧନାସ୍ଥଳୀ ଓଲାଷୁଣୀ ପାହାଡ଼ରେ ପ୍ରବେଶ କରନ୍ତି ।

ସେ ଗୁଂଫା ମଧରେ ସପ୍ତଦିନ କଲି ଧ୍ୟାନ
ହଂସ ସ୍ୱହଂସକୁ ଡେକି ପରମ ଭଜନ । (୧୨/୫୯)

ସାତଦିନ ତପସ୍ୟା ସମାପ୍ତ କରି ରତ୍ନଗିରି ସେ ପହଂଚିଛନ୍ତି । ସେ ସ୍ଥାନର ଆଧ୍ୟାତ୍ମିକ ବୈଶିଷ୍ଟ୍ୟ ସଂପର୍କରେ ସୂଚନା ଦେବାକୁ ଯାଇ କହିଛନ୍ତି-

ବିକାର ବିନା ସେ ସ୍ଥାନ ମହାପୁଣ୍ୟପୀଠ
କ୍ଷଣକେ ଲାଗଇ ଧ୍ୟାନ ନକରିଣ ମଠ । (୧୨/୬୬)

ତିନିମାସ ଅବଧି ସେଠାରେ ତପସ୍ୟା କରି ଉଦୟଗିରିକୁ ଆଗମନ କରିଛନ୍ତି । ବାଜେଣୀ ଗୁମ୍ଫା, ନଳିଦାଗିରି, ରସୁଣିଆଗିରି, ଢୁବୁରି ପ୍ରଭୃତି ପାର୍ବତ୍ୟ ଦିବ୍ୟକ୍ଷେତ୍ରମାନଙ୍କରେ ଯୋଗ୍ୟ ସାଧନା ତତ୍‌ପର ହୋଇଛନ୍ତି । ରସୁଣିଆ ପର୍ବତର ଅନୁଭୂତି ବ୍ୟାଖ୍ୟାନ କରିବାକୁ ଯାଇ ଲେଖିଛନ୍ତି-

ବ୍ୟାଘ୍ର ରୂପୀ ଭଗବାନ ତୁମରି ପରୀକ୍ଷା
ଏକାନ୍ତରେ ସାୟଂ କାଳେ ଦେଲ ମୋତେ ଦେଖ । (୧୩/୧୦୫)

ବାଂଶବଣରେ ଏକାନ୍ତବାସ ଅବସ୍ଥାରେ ଏକୋଇଶ ଦିନ ଧ୍ୟାନ ଆସନରେ ଅତିବାହିତ । ଧ୍ୟାନ ଯୋଗର ଅନୁଭୂତି, ଅବ୍ୟକ୍ତ, ଅପ୍ରକାଶ୍ୟ ତେଣୁ ତାହାର ବର୍ଣ୍ଣନା ଅସଂଭବ । ଦାନଗିରି, ଜହ୍ନଗିରିରେ ଯୋଗ ସାଧନ କିଛି କାଳଗତ ହୋଇଛି ଏବଂ ନୂତନ ଅନୁଭବ ମଧ୍ୟ ପ୍ରାପ୍ତ ହୋଇଛି । ସିଦ୍ଧଗିରି ଜଳୌକା ଯୁଗଯୁଗର ତପଃସ୍ଥଳି, ସେଠାରେ ସନ୍ଥପ୍ରବର କିଛିକାଳ ଯୋଗ ସାଧନାରେ ନୂତନ ଅନୁଭୂତି ସଂଗ୍ରହ କରିଛନ୍ତି ।

ଧ୍ୟାନଭଗ୍ନେ ବଙ୍କୁନାଳ ବାହ୍ୟକୁ ଫେରଲି
ଚିଲ ଏକ ଶିର ପରେ ବସିଛି ଜାଣିଲି । (୧୩/ ୧୫୨)

× × × × × ×

ନିରଂଜନ ଦାସ ଭଗ୍ନ ମଠ ନିକଟରେ
ଚିଲ ସର୍ପ ବିଷ୍ଣୁରୂପୀ ସବାର ମୋ' ପରେ । (୧୫୫)

ବିଷ୍ଣୁଙ୍କର ପରୀକ୍ଷା ବିଚାରି ମନକୁ ଦୃଢ଼ କରିଛନ୍ତି । ଅବିଚଳିତ ଭାବେ ଧ୍ୟାନ ଏବଂ ପ୍ରଭୁଙ୍କ ବିଭୂତିକୁ ଅନୁଭବକୁ ଆଣିଛନ୍ତି ।

**ଚତୁର୍ଦ୍ଦଶ ଅଧ୍ୟାୟ-** ଧନିଆଗିରି, ଅମରାବତୀ ଶୈଳରେ ଧ୍ୟାନରେ ଅତିବାହିତ ହୋଇଛି । ପରମାତ୍ମାଙ୍କ ସହିତ ଏକାକାର ହେବାର ଦିବ୍ୟ ଅନୁଭୂତି ଅବ୍ୟକ୍ତ ବୋଲି ସୂଚାଇଛନ୍ତି । ଅଁଳାଝରିରେ ଧ୍ୟାନସ୍ଥ ଅବସ୍ଥାରେ ଥିଲାବେଳେ ଦୁରାଚାରୀ ଗ୍ରାମବାସୀ କଣ୍ଟାଛାଟି ଦେଇଛନ୍ତି । ପଣସଇ ପର୍ବତକୁ ଯାଇ ଧ୍ୟାନ କରୁଥିଲା ଅବସ୍ଥାରେ ଭାଲୁଟିଏ ଆସି ଶୁଙ୍ଘିଦେଇ ଚାଲିଗଲା ।

ଅର୍ଦ୍ଧ ଧ୍ୟାନ କାଳେ ବନେ ଭାଲୁ ଏକ ଆସି
ମୋ ଶରୀର ଶୁଙ୍ଘିକରି ପ୍ରାଣେ ହେଲା ଖୁସି- (୧୪/୧୧୮)

ଏକବିଂଶ ଦିନ ତପଶ୍ଚର୍ଯ୍ୟା ପରେ ଓହ୍ଲାଇ ଆସିଛନ୍ତି ।

**୧୫. ପଂଚଦଶ ଅଧ୍ୟାୟ-** (ଅଁଳାଝରି କୁଟୀର ଯୋଗ) କୁଟୀରରେ ଯୋଗ-ଧ୍ୟାନସ୍ଥ ଅବସ୍ଥାରେ ଥିଲାବେଳେ ନରମୁଣ୍ଡ ମଳ, ଆବର୍ଜନା ଆଣି ମୁଣ୍ଡରେ ଥୋଇ ଚାଲିଗଲେ । ସେଠାରୁ ପୁନଃ ଦ୍ୱିତୀୟ ବାର ପଣସେଇ ପର୍ବତକୁ ଯାଇଛନ୍ତି । ସେଠାରେ ଅବସ୍ଥାନ କାଳରେ ନାନା ଆଧ୍ୟାତ୍ମିକ ଅନୁଭୂତି ସଂଗ୍ରହ କରିବା ସହିତ ସେ ସମୟର ତିକ୍ତତାର ଚିତ୍ର ଦେବାକୁ ଯାଇ କହନ୍ତି-

**ପଣସଇ ଶଇଳରେ ସହି ଯୋଗ କ୍ଳେଶ**
**ଭଣିଲେ ଗୀତେ ଉଦାସ ଦାସଙ୍କର ଦାସ । (୧୨୧)**

**ଷୋଡ଼ଶ ଅଧ୍ୟାୟ-** (ନାନାସ୍ଥାନ ଭ୍ରମଣ ଯୋଗ) ଅଁଳାଝରିରୁ ବ୍ରାହ୍ମଣୀ ନଦୀ ପାରହୋଇ କାଶିପୁର ଉଦ୍ୟାନରେ ପହଂଚିଛନ୍ତି । ଆମ୍ରକାନନ ଏବଂ ଶିଳାପରି ନଦୀଜଳର ପ୍ଲାବନ ସନ୍ଥ ମହାପୁରୁଷଙ୍କୁ ଆଭିମୂତ କରିଛି । ଏକାନ୍ତ ଯୋଗ ସାଧନା ପାଇଁ ଉପଯୁକ୍ତ କ୍ଷେତ୍ର ବିଚାର କରି ସେଠାରେ ରହିଲେ । ଜୀବନ ଆଶା ଏକପ୍ରକାର ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇ କହୁଛନ୍ତି-

**ଜୀବନଟା ଖାଲି ମୋର ଦେଲି ଜଳାଞ୍ଜଳି**
**ଶେଷ ଦିନ ସ୍ରଷ୍ଟା ପାଦେ ଦେବି ପ୍ରାଣବଳୀ- (୧୬/୫୭)**

ବ୍ୟକ୍ତିର ମୁକ୍ତି ଅପେକ୍ଷା ସମୂହ କଲ୍ୟାଣ କାମନାରେ ବ୍ରତୀ ହୋଇ ପ୍ରଭୁଙ୍କୁ ନିବେଦନ କରିଛନ୍ତି ।

ସପ୍ତଦଶ ଅଧ୍ୟାୟ- ଗୋଡ଼ାଖଣ୍ଡ ବଂଧ ଗୁମ୍ଫାରେ ଭଜନ ପ୍ରସଂଗରେ ଯୋଗର ନିୟମ, ଯୋଗ ସମୟରେ ସାବଧାନତା ଆହାର ଇତ୍ୟାଦି ସଂପର୍କରେ ସୂଚିତ ହୋଇଛି ।

ଅଷ୍ଟଦଶ ଅଧ୍ୟାୟ- ମହାଖଳା ଚନ୍ଦଦଳମୂଳରେ ଆତ୍ମନିବେଦନ ।

ଦେଉ ନାହିଁ ବୋଲି କିଛି ନଶୁଣ ଗୁହାରୀ
ଯାହା ମୁଁ ଦେବାକୁ ଭାବେ ସେ ସର୍ବ ତୁମରି । (୧୮/୪୭)
ତୁମ ଦେବା ଶ୍ରଦ୍ଧାଞ୍ଜଳି ଫେରାଉଛି ଘେନ
ଏତିକି କେବଳ ମାତ୍ର ଚରଣେ ଅର୍ପଣ । (୪୮)

ମନୁଷ୍ୟ ଜନ୍ମର ସାର୍ଥକତା ସେତିକିବେଳେ ହେବ, ଯେବେ ସେ ଇନ୍ଦ୍ରିୟ ଭୋଗରୁ ଊର୍ଦ୍ଧ୍ୱକୁ ଉଠି ବିଶ୍ୱ ସେବାପାଇଁ ନିଜକୁ ସମର୍ପି ଦେବ ।

କୁଟୁମ୍ବ ବଂଧନ ପାଇଁ ଜୀବ ଆସି ନାହିଁ
ଆସିଛି ସାଧିବ ହିତ ଜଗତର ପାଇଁ । (୧୮/୭୫)

ଜୀବର ପରମ ଲକ୍ଷ୍ୟ ସିଦ୍ଧି ଦିଗରେ ଚିତ୍ତଶୁଦ୍ଧି, ଏକାଗ୍ରତା, ବିଶ୍ୱକଲ୍ୟାଣ ଚିନ୍ତା, ସର୍ବତ୍ର ବିଭୁଦର୍ଶନ ଆଦି ଯେଉଁ ସମସ୍ତ ସୋପାନ ରହିଛି, ସେ ସବୁରେ ପୂର୍ଣ୍ଣ ହେବାପାଇଁ, ସଦ୍‌ଗୁଣରାଜିରେ ମଣ୍ଡିତ ହେବାପାଇଁ ବିଭୁ ପଦାରବିନ୍ଦରେ ପ୍ରାର୍ଥନା କରିଅଛନ୍ତି ।

ବୈଷ୍ଣବ ଦର୍ଶନର ପାଦସେବା, ପାଦଧୂଳି ମସ୍ତକେ ଧାରଣ ଓ ପାଦଧୂଳିର ଅଶେଷ ମହାତ୍ମ୍ୟ ବର୍ଣ୍ଣିତ । ସେହି ଦୃଷ୍ଟିରୁ ବୈଷ୍ଣବ ଜନୋଚିତ ନ୍ୟୁନ ଭାବ ପ୍ରଦର୍ଶନ କରି କହୁଛନ୍ତି-

ସମସ୍ତଙ୍କ ପାଦଧୂଳି ମୋ' ଅଂଗରେ ବୋଳି
ହେବାପାଇଁ ଶକ୍ତି ଦିଅ କରୁଅଛି ଅଳି । (୧୮/୧୨୦)

ଊନବିଂଶ ଅଧ୍ୟାୟ- (କଣ୍ଟାପାଟଣାରେ ବହୁପାଦମୂଳରେ ଆତ୍ମାର ଜଣାଣ)- ଜୀବ ବହୁଘଟ ଭ୍ରମଣ କରି ଶେଷରେ ମନୁଷ୍ୟ ଯୋନି ପାପ୍ତ ହୋଇଛି । ମନୁଷ୍ୟ ନିଜ ଜୀବନରେ ସଦାଚାର ଧର୍ମ, ନୈତିକତାର ଆଧାରରେ ପ୍ରତି ପଦକ୍ଷେପରେ

ଅଗ୍ରସର ହେବା, ଅନ୍ୟ ଭାଷାରେ କହିଲେ ସମଗ୍ର ଜୀବନକୁ ଏକ ତପସ୍ୟା ବୋଲି ବିଚାର କରି ଚାଲିଲେ ହୁଏତ ଈଶ୍ୱର ସାକ୍ଷାତ୍‌କାର ହେବା ଅନୁକୂଳ ହୋଇପାରିବ-

ଧର୍ମଯୁକ୍ତ ନୈତିକତା ପୂର୍ଣ୍ଣ ନିରାପଦ । ସତ୍ୟର ସଂଗରେ ପ୍ରୀତି ପ୍ରାଣର ସଂପଦ (୧୧୯/୭୨)

× × × ×

ତବ ଚିନ୍ତା ଅହର୍ନିଶି ହୃଦେ ପାଉ ସ୍ଥାନ । ଭଣିଣେ ଗୀତେ ଉଦାସ ଯମୁନା ଅଜ୍ଞାନ ॥

ବିଂଶଅଧ୍ୟାୟ- ନିଚିନ୍ତା ଶୈଳରେ ଯୋଗ ପାଇଁ ଆତ୍ମନିବେଦନ

ଭଗବତ୍ ଜ୍ଞାନ, ଭଗବତ ପ୍ରେମ ଓ ବିଶୁଦ୍ଧ ଭକ୍ତି ଉଦୟ ନହେବା ପର୍ଯ୍ୟନ୍ତ, ଶରୀର ମୋହ ନାଶ ହୁଏ ନାହିଁ । ଶରୀର ମୋହ ନାଶ ନହେବା ପର୍ଯ୍ୟନ୍ତ ମନୁଷ୍ୟ ଭ୍ରାନ୍ତିରୁ ନିସ୍ତାର ପାଇପାରେ ନାହିଁ । କର୍ତ୍ତା ଭୋକ୍ତା ହୋଇ ପୁନଃ ପୁନଃ ମର୍ତ୍ତ୍ୟ ଭୂମିରେ ଜନ୍ମ ହେବାକୁ ବାଧ୍ୟ ହୋଇଥାଏ । ସୁତରାଂ କାମନା- କଲୁଷ ପରିହାର କରି ବିଶୁଦ୍ଧ ପ୍ରେମ ନିଷ୍କାମ ଭକ୍ତି କରିବାକୁ ସନ୍ଥ ପ୍ରବର ସୂଚନା ଦେଇଛନ୍ତି- ସଂସାରରୁ ଅମୃତତ୍ତ୍ୱ ଲାଭପାଇଁ ପ୍ରଭୁପାଦ ଏକମାତ୍ର ଆଶ୍ରା-

ପ୍ରାଣ ଆଲୋଡ଼ନ କରୁ ଚରଣ ତୁମ୍ଭର । ଅଚିନ୍ତନୀୟ ତୋ ପାଦ ନୀଳାମ୍ବୁ ସାଗର। (୨୦/୩୭)

× × × ×

ସଂସାରୀ ଲୋକକୁ ଶୁଦ୍ଧ ପ୍ରେମ ମିଳିବ କିପରି ? ପ୍ରଭୁଙ୍କୁ ଭକ୍ତିପୂତ ଅନ୍ତରରେ ଅନୁନୟ କରିଛନ୍ତି ।

ସମସ୍ତ ପ୍ରେମ ଅନ୍ତର ସମର୍ପିବା ପାଇଁ । ଶୁଦ୍ଧପ୍ରେମ ଭକ୍ତିବଳ ମାଗୁଛି ଗୋସାଇଁ । (୨୦/୭୪)

ଭଗବତ୍ ଗୀତାରେ କୁହାଯାଇଛି ଯେ କାମ, କ୍ରୋଧ, ଲୋଭ ଏହି ତିନିଗୋଟି ମନୁଷ୍ୟର ବିନାଶକାରୀ ଶତ୍ରୁ-

ଲୋଭ- ଲୋଭ ସମସ୍ତଙ୍କୁ କରୁଅଛି ଆତଙ୍କିତ । ତା' ଦାଉରୁ ରକ୍ଷାପାଇଁ ଜଣାଏ ନିରତ । (୮୬)

କ୍ରୋଧ- କ୍ରୋଧ ସଂଖ୍ୟା ବାରମ୍ବାର କରେ ଆକ୍ରମଣ । ଚିତ୍ତଶୁଦ୍ଧି ବିନା ଘଟେ ନାନାଦି କଷଣ । (୮୭)

ଦୈନ୍ୟଭାବ- ଦାସଙ୍କର ଦାସ ହେବି ଦିଅ ସେବା ପ୍ରାଣ । ମର୍ତ୍ତ୍ୟପୁର କ୍ରୀତଦାସ ଅଟେ ମୋ' ଜୀବନ । (୧୨୪)

ସଂସାର ସକଳ ପ୍ରାଣୀଙ୍କର ସେବାରେ ଜୀବନଉତ୍ସର୍ଗ କରି ଦେବାକୁ ପ୍ରଭୁଙ୍କୁ କୃପାଭିକ୍ଷା କରୁଛନ୍ତି ।

ଏକବିଂଶ ଅଧ୍ୟାୟ- ମହାଖଳା ଭଜନ କୁଟୀରରେ ଆତ୍ମନିବେଦନ । ବିଶ୍ୱ ମଧୁମୟ ହୋଇଉଠୁ, ବୈଦିକ ଋଷିଙ୍କର ଏହି ପ୍ରଦାତ୍ତ ଭାବନା ସନ୍ଥ ମହୋଦୟଙ୍କ କଣ୍ଠରେ ରୂପ ପାଇଛି, ଏହି ଭାବେ

ଅସତ୍ୟ ତରଂଗମାଳ ଗ୍ରାସୁଅଛି ତରୀ । କର୍ଣ୍ଣଧାର ବିନାମର୍ତ୍ତ୍ୟ ବଞ୍ଚିବ କିପରି ? (୨୧/୨୭)

× × × × × × ×

ଦେଶପ୍ରେମ ଭକ୍ତି ବନ୍ୟା ଖେଳୁ ପ୍ରାଣେ ପ୍ରାଣେ । ପ୍ରଭୁ ପ୍ରତି ଆକର୍ଷଣ ଟାଣୁ ଜୀବଗଣେ । (୪୫)

× × × × × × ×

ଦେଶ ସେବା ପ୍ରକୃତରେ ଈଶ୍ୱରଙ୍କ ସେବା । ଜୀବକୁ ସେବିଲେ ପ୍ରଭୁ ଲଭନ୍ତି ସେ ସେବା- ୫୬

× × × × × × ×

ମାତୃଭୂମି ପାଇଁ ଉତ୍ସର୍ଗୀକୃତ ମନୋଭାବ-

ଦେଶର ମଂଗଳ ପଥେ ହେବାପାଇଁ ବ୍ରତୀ । କର୍ମ ଆନନ୍ଦରେ ପ୍ରାଣ ସଂପୂର୍ଣ୍ଣ ଆହୁତି । (୬୩)

ଜୀବନର ସହଚର ଧର୍ମ ହୋଇ ରହୁ, ତା' ହେଲେ ମୁକ୍ତି ଦିଗରେ ଅଗ୍ରସର ହୋଇ ପାରିବା-

ନିଶୂନ ନୀରବ ଧର୍ମ ଚିରସାଥୀ ହେଉ । ଜୀବନର ଶେଷ ଶୁଆ ଉଦାରୋ ସମାଉ । (୨୬)

ଦ୍ୱାବିଂଶ ଅଧ୍ୟାୟ- (ତେନ୍ତୁଳିନାଳି ଗ୍ରାମରେ ଆତ୍ମ ନିବେଦନ)

କାଠଯୋଡ଼ି ତୀରସ୍ଥ ତେନ୍ତୁଳିନାଳି ଗ୍ରାମରେ ଅବସ୍ଥାନ କରୁଥାନ୍ତି । ଧ୍ୟାନସ୍ଥ ଅବସ୍ଥାରେ ସେ ଗାଁ'ର କିଛି ଦୁର୍ବୃତ୍ତ ତାଙ୍କ ଦକ୍ଷିଣ ଜାନୁରେ ଗଂଜେଇ ପାଇଁ ଜ୍ୱଳନ୍ତ ଟିକିଆ ରଖିଦେଲେ । ଧ୍ୟାନଭଗ୍ନ ହେବାରୁ ଜ୍ୱାଳା ଅନୁଭବ କଲେ । ପ୍ରଭୁଙ୍କ ନିକଟରେ ସେ କ୍ଷମା ପ୍ରାର୍ଥୀ ହେଲେ । ଏକୋଇଶ ଦିନ ସେଠାରେ ଅତିବାହିତ କରି ଅନ୍ୟତ୍ର ଗମନ କଲେ ।

ବଂଧନର ଅନ୍ୟ ଏକ କାରଣ ମୋହ- ମୋହର ବିନାଶରେ ହୃଦୟ ବିମଳ ହୋଇଯାଏ ।

ତୁମ ଭକ୍ତି ସର୍ବମୋହ ତୁଟାଇଣ ଦେଉ । ପରମ ଗତି ତୋ' ଦେବ ଇଚ୍ଛା ପୂର୍ଣ୍ଣ ହେଉ । (୨୨/୫୯)

କର୍ମ ସମର୍ପଣ ପାଇଁ ଗୀତାରେ ନିର୍ଦ୍ଦେଶ ଅଛି

ଅହୋ ରାତ୍ର ଅରଜିଲି ଯେତେ କର୍ମ ମୁହିଁ<br>
ଚରଣେ ଅର୍ପଣ କଲି ଘେନି ଭାବଗ୍ରାହୀ- (୨୨/୫୮)

ଅନ୍ୟର ହିତ ସାଧନ କରିବା ମାନବର ଉଚ୍ଚତର ବିଚାର- ଦେଖନ୍ତୁ-

ନିଜପାଇଁ ଜିଇବାଟି ଅଟେ ଅକାରଣ । ବଂଚୁଥିଲେ ଦେଶପାଇଁ ସେ ମହାଧନ । (୨୨/୮୭)

ପ୍ରଭୁଙ୍କ କୃପା ନହେଲେ ଦୁର୍ଜୟ ଶତ୍ରୁ ପରାହତ ହୋଇ ନପାରନ୍ତି । ସେଥିପାଇଁ ନିବେଦନ ହେଉଛି-

ମିଥ୍ୟା ମୋହ କ୍ଷଣିକର ନରହୁ ଶରଣ ।<br>
ଦୁର୍ଜୟ ପ୍ରକୃତି ପ୍ରଭୁ କରନ୍ତୁ ଦହନ । (୮୮)

ଜଣେ ଉଚ୍ଚାକୋଟୀର ସାଧକ ଏବଂ ସ୍ୱଦେଶ ବତ୍ସଳ ଆଦର୍ଶସନ୍ଥ, ନିରଂହକାର, ନିର୍ଲୋଭ ଏବଂ କ୍ଷମାମୟଙ୍କ ମହିମାମୟ ଜୀବନଚର୍ଚ୍ଚାରୁ ଆଧ୍ୟାତ୍ମିକ ଯାତ୍ରାର ତିକ୍ତ ଅନୁଭୂତିକୁ ଉକ୍ତ, ପାଠକଙ୍କ ନିକଟରେ ନିଷ୍କପଟ ଭାବେ ଉପସ୍ଥାପିତ କରିଯାଇଛନ୍ତି, ସନ୍ଥ ମହାପୁରୁଷ ଶ୍ରୀଶ୍ରୀ ଯମୁନାଦାସ ମହାରାଜ ୨୯୪୧ ପଦ ମାଧ୍ୟମରେ ।



# ପରିଶିଷ୍ଟ

## ଈଶ ପ୍ରାର୍ଥନା

ଶ୍ରୀ ଶଙ୍କର ଦେବ
(ଆସାମର ଷୋଡ଼ଶ ଶତକର ବିଖ୍ୟାତ ବୈଷ୍ଣବ ସନ୍ଥ)

ମଧୁ ଦାନବ ଦାରଣ ଦେବବରଂ
ବର ବାରିଜ ଲୋଚନ ଚକ୍ର- ଧରମ୍ ।
ଧରଣୀଧର ଧାରଣ ଧ୍ୟେୟପଦଂ
ପରମାର୍ଥ ଧିୟା ଶୁଭ ନାଶ କରମ୍ ।
କର ଚୂର୍ଣ୍ଣିତ ଚେଦିପ- ଭୂରିଭଗଂ
ଭଗଭୂଷଣ କାଙ୍କିତ- ପାଦ ଯୁଗମ୍ ।
ଯୁଗ ନାୟକ ନାଗର ବେଶରୁଚିଂ
ରୁଚି ରାଂଶୁ ପିଧାନ ଶରୀର ଶୁଚିମ୍ ।
ଶୁଚି ଚାମର- ବାୟୁ ନିସେବ୍ୟତନୁଂ
ତନୁ ମଧ୍ୟଗ ଦେହ ସୁବେଶହନୁମ୍ ।
ହନୁମନ୍ତ- ହରୀଶ ସହାୟରତଂ
ରତ ରାଗ ପରାୟଣ ଶତ୍ରୁ ନତମ୍ ।
ନତବର୍ତ୍ତୁଳ ପୀନ ସୁଦୀର୍ଘ ଭୁଜଂ
ଭୁଜ ଗାଧିପ ତଳପ ଶୟାନ ମଜମ୍ ।
ଅଜରାମର ବିଗ୍ରହ ବିଶ୍ୱଗୁରୁଂ
ଗୁରୁ ଗୋଧନ କାମଦ କଳ୍ପତରୁମ୍ ।
ତରୁଣୀ ମନ ମୋହନ ସର୍ବ ଶୁଭମ୍
ଶୁଭ ମଂଗଳ ଦାୟକ ନୀଳ ନିଭମ୍ ।
ଇଭ- କୁମ୍ଭଜ ମୌକ୍ତିକ ମାଲ୍ୟବହଂ
ବହୁଳୋର ସମିଷ୍ଟଦ ସର୍ବହରମ୍ ।
ସଦୟାୟତପଦ୍ମ ଦଳାକ୍ଷଚିଦଂ
ଚିତ୍‌ସୌଖ୍ୟ ବିନୋଦନ ବେଦ ବିଦମ୍ ।

ବିଦୁଷାଂ ମନମଣ୍ଡନ କମ୍ବୁଗଳଂ
ଗଳ ଶୋଭିତ କୌସ୍ତୁଭ ଭୀମବଳମ୍ ।
ବଳଭଦ୍ର ସହୋଦର ସଭ୍ୟ ବପୁଂ
ବପୁନିର୍ଜିତ ବିଶ୍ୱ ମୁରାଦି ରିପୁମ୍ ।
ରିପୁଯୁଥପ ଯୁଥପ ଦର୍ପହରଂ
ହରମୌଳି ନିଘୃଷ୍ଟ ପଦାମ୍ବୁରୁହମ୍ ।
ପରଲୋକ ସହାୟ ସହସ୍ରମୁଖଂ
ମୁଖରାଳି କୁଳାକୁଳି ମାଲ୍ୟସୁଖମ୍ ।
ସୁଖ ମୋକ୍ଷଦ ଦକ୍ଷ ରମା ରମଣଂ
ମନସା ପରି ମେୟ ସହସ୍ର ପଂଣମ୍ ।
ପ୍ରଣତୋଽସ୍ମି ନତୋଽସ୍ମି ନତୋସ୍ମି ହରିଂ
ହରି ବୈରି କୃତାମ୍ବନ ଭୋଗ୍ୟ ହରିମ୍ ।
ହରି କିଂକର ଶଂକର ଈଶପଦେ
ପଦମଛନ୍ ଗାୟତି ଚାମୃତଦେ ।

# ନାମ ମହିମା (ଭକ୍ତ ନରସୀ ମେହତା)

(କାଠିଆବାଡ଼- ଜୁନାଗଡ଼ ସହରରେ ବ୍ରାହ୍ମଣ କୁଳୋତ୍ପନ୍ନ ପରମ କୃଷ୍ଣଭକ୍ତ)

ନାରାୟଣନୁଂ ନାମ ନ ଲେତାଂ ବାରେ ତେନେ ତଜିୟେରେ
ମନସା ବାଚା କର୍ମଣା କରୀନେ ଲକ୍ଷ୍ମୀ ବରନେ ଭଜିୟେରେ ।
କୁଳନେ ତଜିୟେ, କୁଟୁମ୍ବନେ ତଜିୟେ, ତଜିୟେମାନେ ବାପରେ
ଭଗିନୀ ସୁତ ଦାରାନେ ତଜିୟେ, ଜେମ ତଜେ କଂଚୁକୀ ସାପରେ ।
ପ୍ରଥମ ପିତା ପ୍ରହଲ୍ଲାଦେ ତଜିୟୋ ନ ବ ତଜିୟୋ ହରି ନୁଂନାମରେ
ଭରତ ଶତ୍ରୁଘ୍ନ ତଜୀ ଜନେତା, ନ ବ ତଜିୟା ଶ୍ରୀରାମରେ ।
ଋଷି ପତ୍ନୀଏ ଶ୍ରୀହରି କାଜେ ତଜିୟା ନିଜ ଭରଥାରରେ
ତେମା ତେନୁଂ କଂଇୟେ ନ ଚାୟୁଂ ପାମୀ ପଦାରଥ ଚାରରେ ।
ବ୍ରଜ ବନିତା ବିଟ୍ଠଳନେ, କାଜେ ସର୍ବ ତଜୀ ନେ ଚାଲିରେ
ଭଣୈ ନରସୈୟୋ ବୃନ୍ଦାବନମାଂ ମୋହନ ସାଥେ ମାହାଲୀରେ ।

# ଶ୍ରୀଭଗବାନ୍ନାମାଷ୍ଟକମ୍

## (ଶ୍ରୀରୂପ ଗୋସ୍ୱାମୀ କୃତ)

ନିଖିଳ ଶ୍ରୁତି ମୌଳି ରତ୍ନମାଳା- ଦ୍ୟୁତି ନୀରାଜିତ ପାଦ ପଙ୍କଜାନ୍ତଃ
ଅପି ମୁକ୍ତ କୁଳୈରୂପାସ୍ୟମାନଂ ପରିତସ୍ତ୍ୱାଂ ହରିନାମ ! ସଂଶ୍ରୟାମି ।୧।
ଜୟ ନାମଧେୟ ମୁନିବୃନ୍ଦଗେୟ ଜନ ରଂଜନାୟ ପରମ କ୍ଷରାକୃତେ
ତ୍ୱମ ନାଦରାଦପି ମନାଗୁଦୀରିତଂ ନିଖିଲୋ ଗ୍ରତୋପ ପଟଲୀଂ ବିଲୁମ୍ପସି ।୨।
ଯଦା ଭାସୋଽପ୍ୟୁଦ୍ୟନକ ବନ୍ଦିତ ଭବଧ୍ୱାନ୍ତ ବିଭବୋ
ଦୃଶଂ ତତ୍ତ୍ୱାନ୍ଧ ନାମପି ଦିଶତି ଭକ୍ତି ପ୍ରଣୟିନୀମ୍ ।
ଜନ ସ୍ତସ୍ୟୋ ଦାତ୍ତଂ ଜଗତି ଭଗବନ୍ନାମ ତରଣେ
କୃତିତେ ନିର୍ବକ୍ତୁଂ କଇହ ମହିମାନଂ ପ୍ରଭବତି ।୩।
ଯଦ୍ ବ୍ରହ୍ମ ସାକ୍ଷାତ୍ କୃତି ନିଷ୍ଠୟାପି ବିନାଶ ମାୟାତି ବିନା ନ ଭୋଗୈଃ
ଅପୈତି ନାମ ସ୍ଫୁରଣେନ ତତ୍ତେ ଭପ୍ରାରବ୍ଧ କର୍ମେତି ବିରୌତି ବେଦଃ ।୪।
ଅଘ ଦମନ- ଯଶୋଦା ନନ୍ଦନୌ ନନ୍ଦସୁନୌ କମଳନୟନ ଗୋପୀଚନ୍ଦ୍ର- ବୃନ୍ଦାବନେନ୍ଦ୍ରାଃ
ପ୍ରଣତ କରଣ କୃଷ୍ଣାବିତ୍ୟେ ନେକ ସ୍ୱରୂପେ ତ୍ୱୟି ମମ ରତି ରୁଚୈ ର୍ବର୍ଦ୍ଧତାଂ ନାମଧେୟ ! ।୫।
ବାଚ୍ୟଂ ବାଚକ ମିତ୍ୟୁଦେତି ଭବତୋ ନାମ ସ୍ୱରୂପଦ୍ୱୟଂ
ପୂର୍ବସ୍ମାତ୍ ପରମେବ ହନ୍ତ କରୁଣଂ ତତ୍ରାପି ଜାନୀମହେ ।
ଯସ୍ତସ୍ମିନ୍ ବିହିତ୍ନାପ ରାଧନିବହଃ ପ୍ରାଣୀ ସମନ୍ତାଭବେ
ଦାସ୍ୟେ ନେଦ ସୁପାସ୍ୟ ସୋଽପି ହି ସଦାନନ୍ଦାମ୍ବୁଧୌ ମଜ୍ଜତି ।୬।
ସୁଦିତା ଶ୍ରିତଜନ ନାର୍ତି ରାଶୟେ ରମ୍ୟଚିଦ୍ ଘନ ସୁଖ ସ୍ୱରୂପିଣେ
ନାମ ଗୋକୁଳ ମହୋତ୍ସବାୟ ତେ କୃଷ୍ଣ ପୂର୍ଣ୍ଣ ବିପୁଷେ ନମୋ ନମଃ ।୭।
ନାରଦ ବୀଣୋଜ୍ଜୀବନଂ ସୁଧୋର୍ମି ନିର୍ଯାସ ମାଧୁରୀପୂର
ତ୍ୱଂ କୃଷ୍ଣନାମ ! କାମଂ ସ୍ଫୁର ମେ ରସନେ ସଦା ।୮।
ଶ୍ରୀ ରୂପ ଗୋସ୍ୱାମୀ ବିନିର୍ମିତେଽସ୍ମିନ୍ ନାମାଷ୍ଟକେ ଶ୍ରୀ ବନମାଳି ଦାସଃ
ଟୀକାମି ମାଂ ବ୍ୟାତନୁତେସ୍ମ ଭବ୍ୟାଂ ଭୂନେତ୍ର ଶୂନ୍ୟାକ୍ଷିମିତେ ବର୍ଷେ । ।୯।

(ଶ୍ରୀରୂପ ଗୋସ୍ୱାମୀଙ୍କ ଅଷ୍ଟକ ପ୍ରଦତ୍ତ, ବନମାଳୀ ଦାସଙ୍କ ତଦୁପରି ଟୀକା ବାହୁଲ୍ୟରୁ ଦିଆଯାଇ ନାହିଁ)



# ହରିନାମ ମହିମାଷ୍ଟକମ୍

ହରେର୍ନାମ୍ନା ଯେନ ବୁଡ଼ଦିଭପତି ର୍ମୁକ୍ତ ଶୁଗଭୂ
ଦନନ୍ତତ୍ୱଂ ଚାପ ଦ୍ରୁପଦ ତନୟା ବସ୍ତ୍ରାମପିବୈ ।
ବିନୋଦ୍ୟୋଗୈଃ ସିଦ୍ଧଂ ନରସି ମହତଃ କାର୍ଯ୍ୟମଖିଳଂ
ବିହାୟୈତନ୍ନା ମେଛସି ଶିବମୟେ ହା ନର କଥମ୍ ॥ (୧)

ଯେଉଁ ହରିନାମ ଦ୍ୱାରା ଜଳ ମଧ୍ୟରେ ରାଜରାଜ ମଧ୍ୟ ସମସ୍ତ ଶୋକରୁ ମୁକ୍ତ ହୋଇଗଲା, ଦ୍ରୌପଦୀଙ୍କ ବସ୍ତ୍ର ଅନନ୍ତ ହୋଇଗଲା, ଯେଉଁ ନାମ ପ୍ରଭାବରେ ଶ୍ରୀନରସି ମେହେଟାଙ୍କ ସମସ୍ତ କାର୍ଯ୍ୟ ବିନା ଉଦ୍ୟୋଗରେ ସିଦ୍ଧହେଲା, ହେ ମନୁଷ୍ୟ! ସେହି ହରିନାମକୁ ଛାଡ଼ି ତୁ ଆପଣା କଲ୍ୟାଣ କିପରି ଚାହୁଁଛୁ? (୧)

ଯତୋଽସ୍ମା ପ୍ୟୁତ୍ତୀର୍ଣ୍ଣଃ ସ୍ମୃଶଦ ପରନ୍ନୁର୍ମଜ୍ଜନ କରୋ
ଯତଃ ଶମ୍ଭୁର୍ଘୋରଂ ବିଷମପି ପପୌ ଭୂତ କୃପୟା ।
ଯତୋ ମୀରାଦୀନାମପି ଅମୃତକଲ୍ପଂ ତଦ୍ ଭବଦ୍
ବିହାୟୈ ତନ୍ନାମେଛସି ଶିବମୟେ ହାନର କଥମ୍ ॥ (୨)

ଅନ୍ୟକୁ ସାଥିରେ ନେଇ ବୁଡ଼ି ଯାଉଥିବା ପଥର ଯେଉଁ ହରିନାମ ସ୍ପର୍ଶରେ ତରିଯାଏ, ଶିବ ଯେଉଁ ହରିନାମ କୃପାରେ ଜୀବ ଉପରେ କୃପା କରି ହଳାହଳ ପାନ କରିଥିଲେ । ଯେଉଁ ହରିନାମ ପ୍ରତାପରେ ମୀରା ଆଦି ଭକ୍ତଙ୍କ ପାଇଁ ବିଷ ମଧ୍ୟ ଅମୃତ ହୋଇଗଲା, ହେ ମନୁଷ୍ୟ! ସେହି ହରିନାମକୁ ଛାଡ଼ି ତୁ କିପରି ଆପଣା କଲ୍ୟାଣ ଚାହୁଁଛୁ? (୨)

ଯତଃ ସିଦ୍ଧଶ୍ରେଣୀଷ୍ୱପି ପରମାନ ର୍ହ ମହିମା
କବିରୋଽସାବାସୀ ଦପି ଚ ରବିଦାସଶ୍ଚ ନିତରାମ ।
ସଦା ଯତ୍ପ୍ରେମ୍ଣାଽବୈନ୍ନ ତନୁମପି ଚୈତନ୍ୟ ଭଗବାନ୍
ବିହାୟୈ ତନ୍ନାମେଛସି ଶିବମୟେ ହା ନର କଥମ୍ । (୩)

ଯେଉଁ ହରିନାମରେ କବୀର ଦାସ ରୈଦାସ ସିଦ୍ଧଙ୍କ ଶ୍ରେଣୀରେ ପରମ ସମ୍ମାନନୀୟ ହୋଇଗଲେ; ଯେଉଁ ଶ୍ରୀକୃଷ୍ଣ ନାମ ପ୍ରଭାବରୁ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଶରୀର ଜ୍ଞାନ ରହେ ନାହିଁ; ଯେ ନାମ ପ୍ରଭାବରେ ଆପଣା ଶରୀରକୁ ମଧ୍ୟ ସଂଭାଳି ପାରନ୍ତି ନାହିଁ; ଭଗବତ୍ ପ୍ରେମ ଏବଂ ଭଗବତ୍ ଧ୍ୟାନଜନିତ ଅଦ୍‌ଭୁଦ ଆନନ୍ଦ ରସରେ ମଗ୍ନ ରହିଥାନ୍ତି, ସେହ ହରି ନାମକୁ ଛାଡ଼ି ତୁ କିପରି ଆପଣା କଲ୍ୟାଣ ଚାହୁଁଛ ? (୩)

ହରାମେତ୍ୟୁ କ୍ତ୍ୱାଽପ ହ୍ୟପି ଯବନ ଜାତିଃ ପ୍ରଭୁ ପଦଂ
ମରା ନାମ୍ନା ବ୍ୟାଧୋଽପ୍ୟଦହ ମୁନିରାଜୋଽ ଭବଦହୋ ।
ଯତଃ ଶ୍ରୀ ପ୍ରହ୍ଲାଦଃ ପରମ ବିପଦୋଘାଜ୍ଞ ମୁମୁଚେ
ବିହାୟୈ ତନ୍ନାମେଚ୍ଛସି ଶିବମୟେ ହାନର କଥମ୍ । (୪)

ହରିନାମର ଅତ୍ୟନ୍ତ ଅଦ୍‌ଭୁତ ପ୍ରଭାବରେ ମୃତ୍ୟୁ କାଳରେ 'ହାରାମ' କହିଥିବା ଯବନ ମଧ୍ୟ ଭଗବତ୍ ପଦ ପ୍ରାପ୍ତ ହୋଇଗଲା, ଯାହା ପ୍ରତାପରେ 'ମରା' (ରାମର ଓଲଟା) ମନ୍ତ୍ର ଜପକରି ବ୍ୟାଧ ବାଲ୍‌ମିକୀ ହୋଇଗଲା, ଯେଉଁ ହରି ନାମ ପ୍ରଭାବରେ ପହ୍ଲାଦ ପରମ ବିପତ୍ତିକୁ ତରିଗଲା, ସେହି ହରିନାମକୁ ଛାଡ଼ି ତୁ ଆପଣାର କଲ୍ୟାଣ କିପରି ଚାହୁଁଛ ? (୪)

ମୁନିର୍ଯୋଗୀ ଜ୍ଞାନୀ ପରମ ବୁଧମାନୀ ଚ ଯଦୃତେ
ନସିଦ୍ଧିଂ ଯାନ୍ତିତି ସ୍ଫୁଟ ମଭିହିତଂ ଶ୍ରୀ ଶୁକମୁଖୈଃ ।
ବିନା ଯତ୍ ଧର୍ମୋଽପି ପ୍ରଭବତୀ ଅଧର୍ମୋ ବିମୁଖନୁ
ର୍ବିହାୟେତନ୍ନାମେଚ୍ଛସି ଶିବମୟେ ହା ନର କଥମ୍ (୫)

ଯେଉଁ ହରିନାମ ବିନା ମୁନି, ଜ୍ଞାନୀ, ଯୋଗୀ ଏବଂ ପରମ ପଣ୍ଡିତାଭିମାନୀ ଆଦି ମଧ୍ୟ ସିଦ୍ଧିକୁ ପ୍ରାପ୍ତ ହୁଅନ୍ତି ନାହିଁ, ଯେଉଁ ହରି ନାମ ବିନା ବିମୁଖ ଜୀବକୃତ ଧର୍ମାଚରଣ ମଧ୍ୟ ଅଧର୍ମ ହୋଇଯାଏ, ସେହି ହରିନାମକୁ ଛାଡ଼ି ତୁ ଆପଣା କଲ୍ୟାଣ କିପରି ଚାହୁଁଛ ? (୫)

ସୁତସ୍ନେହାଦୁଚାର୍ଯ୍ୟ ଚଖଲୁ ଯଦା ଭାସ ମପିବା
ଅଜାମେଳଃ ପ୍ରାପନ୍ନୁନି ବରଦୁରାପଂ ପ୍ରଭୁ ପଦମ୍ ।
ଦଧଚ୍ଛେଷୋଽପି କ୍ଷ୍ମାମନିଶ ମପି ଯଦ୍ଵର୍ଣ୍ଣନପରୋ
ବିହାୟୈ ତନ୍ନାମେଚ୍ଛସି ଶିବମୟେ ହାନର କଥମ୍ ।। (୬)

ଯେଉଁ ହରିନାମର ଆଭାସ ପୁତ୍ରପାଇଁ ଉଚ୍ଚାରିତ 'ନାରାୟଣ' ନାମକ ପୁତ୍ର ସ୍ନେହରେ ଉଚ୍ଚାରଣ କରି ଅଜାମିଳ ମୁନିରାଜ ଦୁର୍ଲଭ ଭଗବତ୍ ପଦକୁ ପ୍ରାପ୍ତ ହୋଇଗଲା ।

ଶେଷ ପୃଥ୍ୱିକୁ ଧାରଣ କରି ମଧ୍ୟ ନିରନ୍ତର ଯାହାର ବର୍ଣ୍ଣନରେ ତତ୍ପର ରହିଥାନ୍ତି; ସେହି ହରି ନାମକୁ ଛାଡ଼ି ତୁ କିପରି ଆପଣା କଲ୍ୟାଣ ଚାହୁଁଛୁ ? (୬)

ଶିବାଜ୍ଞାତାଃ ସ୍ମୃତ୍ୱା ଯଦନଳ ଭୟାଦ୍‌ଭୀତ ହୃଦୟୋ
ବିମୁକ୍ତଃ କାଶ୍ୟାଂ ଶୌଣ୍ଡିକ ଗୃହଗତଃ କଣ୍ଟନବଟଃ ।
କରୋତୀଶୋ ମୁକ୍ତଂ ଯଦପି ଚ ବୀତୀର୍ଯ୍ୟାଖିଳନୃଣାଂ
ବିହାୟୈ ତନ୍ନାମେଚ୍ଛସି ଶିବମୟେ ହାନର କଥମ୍ ।। (୭)

ଶିବ ଆଜ୍ଞାରେ ଯେଉଁ ହରିନାମକୁ ସ୍ମରଣ କରି କାଶୀ ଅନ୍ତର୍ଗତ ମଦିରା ଭାଟିରେ ପଡ଼ିଥିବା ଅଗ୍ନିଭୟଭୀତ ଜାରପୁରୁଷ ମଧ୍ୟ ଅଗ୍ନିଭୟରୁ ମୁକ୍ତ ହେଲା, କାଶୀରେ ମୃତ୍ୟୁ ଲାଭ କରୁଥିବା ପ୍ରାଣୀମାନଙ୍କର ଯେଉଁ ଶ୍ରୀହରି ନାମକ ତାରକ ମନ୍ତ୍ର ଦେଇ ଶ୍ରୀବିଶ୍ୱନାଥଜୀ ମୁକ୍ତ କରିଦିଅନ୍ତି, ସେହିହରି ନାମକୁ ଛାଡ଼ି ତୁ କିପରି ଆପଣା କଲ୍ୟାଣ ଚାହୁଛୁ ? (୭)

ତନୌଧତ୍ତେ ଯଚ୍ଛୀପବନ ତନୟୋ ମଂଗଳ ମୟଂ
ଶିବାଦ୍ୟୈଃ ସର୍ବସ୍ୱଂ ଯଦୟ ଗଣନାଥେଷ୍ଟ ଫଳଦମ୍
ତୟା ସର୍ବାମ୍ନାୟ ବ୍ରତତି ସୁଫଳଂ ଚିନ୍ମୟ ମହୋ
ବିହାୟୈ ତନ୍ନାମେଚ୍ଛସି ଶିବମୟେ ହାନର କଥମ୍ । (୮)

ଯେଉଁ ମଂଗଳମୟ ଶ୍ରୀରାମନାମକୁ ପବନସୁତ ଶ୍ରୀହନୁମାନ ନିଜର ଶରୀରରେ ଧାରଣ କରିଥାନ୍ତି, ଯାହା ଶଂକର ଆଦିଙ୍କର ସର୍ବସ୍ୱରୂପ ହୋଇଥାଏ, ଶ୍ରୀଗଣେଶ (ଆଦ୍ୟ ପୂଜନୀୟ) ଇଷ୍ଟ ଫଳପ୍ରଦାନ କରିଥାନ୍ତି, ଯେ ସର୍ବବେଦ ରୂପ ଲତାର ସୁନ୍ଦର ଫଳ; ଏହିପରି ଶ୍ରୀ ହରିନାମକୁ ଛାଡ଼ି ହେ ନର ! ତୁ ଆପଣା କଲ୍ୟାଣ କିପରି ଚାହୁଁଛୁ ? (୮)

ଇତି ଶ୍ରୀଭଗବନ୍ନିମ୍ବାର୍କ ଚରଣାଶ୍ରିତ ରାଧିକା ଦାସ (ରାମପ୍ରସାଦ) କୃତୌ ହରିନାମ ମହିମାଷ୍ଟକ ଗ୍ରନ୍ଥଃ ସମାପ୍ତଃ ।



# କୈବଲ୍ୟାଷ୍ଟକମ୍

ମଧୁରଂ ମଧୁରେ ଭ୍ୟୋଽପି ମଂଗଳେ ଭ୍ୟୋଽପି ମଂଗଳମ୍
ପାବନଂ ପାବନେଭ୍ୟୋଽପି ହରେ ର୍ନାମୈବ କେବଳମ୍ । (୧)

କେବଳ ହରି ନାମ ହିଁ ମଧୁରରୁ ମଧ ଅଧିକ ମଧୁର, ମଂଗଳମୟଠାରୁ ମଧ ମଂଗଳମୟ ଏବଂ ପବିତ୍ରଠାରୁ ଅଧିକ ପବିତ୍ର । (୧)

ଆବ୍ରହ୍ମ ସ୍ତମ୍ବ ପର୍ଯ୍ୟନ୍ତଂ ସର୍ବଂମାୟାମୟଂଜଗତ୍
ସତ୍ୟଂସତ୍ୟଂ ପୁନଃ ସତ୍ୟଂ ହରେର୍ନାର୍ମୈବ କେବଳମ୍ । (୨)

ବ୍ରହ୍ମଠାରୁ ସ୍ତମ୍ବ ପର୍ଯ୍ୟନ୍ତ ସମଗ୍ର ସଂସାର ମୟାମୟ, କେବଳ ହରିଙ୍କ ନାମ ହିଁ ସତ୍ୟ, ନାମ ହିଁ ସତ୍ୟ, ପୁନଃ କହୁଅଛି ନାମ ହିଁ ସତ୍ୟ । (୨)

ସଗୁରୁଃ ସ ପିତା ଚାପି ସାମାତା ବାନ୍ଧବୋଽପିସଃ
ଶିକ୍ଷୟତେ ଚେତ୍ ସଦା ସ୍ମର୍ତୁଂ ହରେର୍ନାମୈବ କେବଳମ୍ । (୩)

ଯେ ସର୍ବଦା କେବଳ ହରିନାମ ସ୍ମରଣ କରି ବା ଶିଖାଇଥାଏ, ସେ ପିତା, ମାତା ଏବଂ ସେ ବଂଧୁ ।

ନିଃଶ୍ୱାସେ ନହି ବିଶ୍ୱାସଃ କଦା ରୁଦ୍ଧୋ ଭବିଷ୍ୟତି
କୀର୍ତ୍ତନୀୟମତୋ ବାଲ୍ୟାତ୍ ହରେର୍ନାମୈବ କେବଳମ୍ । (୪)

ଶ୍ୱାସକୁ କିଛି ବିଶ୍ୱାସ ନାହିଁ, କେବେ ରୁଦ୍ଧ ହୋଇଯିବ ଜଣାନାହିଁ । ଏଣୁ ବାଲ୍ୟାବସ୍ଥାରୁ କେବଳ ହରିନାମ କୀର୍ତ୍ତନ କରିବା ଉଚିତ୍ ।

ହରିଃ ସଦା ବସେତ୍ ତତ୍ର ଯତ୍ର ଭାଗବତା ଜନାଃ
ଗାୟନ୍ତି ଭକ୍ତି ଭାବେନ ହରେର୍ନାମୈବ କେବଳମ୍ । (୫)

ଯେଉଁଠି ଭକ୍ତବୃନ୍ଦ ଭକ୍ତିଭାବରେ କେବଳ ହରିନାମର ମାନ କରିଥାନ୍ତି, ସେଠାରେ ସର୍ବଦା ଭଗବାନ୍ ବିରାଜନ୍ତି । (୫)

ଆହୋ ଦୁଃଖ ମହାଦୁଃଖ ଦୁଃଖାଦ୍ ଦୁଃଖତରଂ ଯତଃ
କାଚାର୍ଥଂ ବିସ୍ମୃତଂ ରତ୍ନଂ ହରେର୍ନାମୈବ କେବଳମ୍ । (୬)

ଆହୋ ! ମହାନ୍ ଦୁଃଖ ! ଭୟଂକର କଷ୍ଟ !! ସବୁଠାରୁ ବଳି କଷ୍ଟ !!! ଯେ ବିଷୟରୂପୀ କାଚପାଇଁ ହରିନାମ ରୂପୀ ରତ୍ନକୁ ବିନାଶ କରିଦେଲା ।

ଦୀୟତାଂ ଦୀୟତାଂ କର୍ଣ୍ଣୋ ନୀୟତାଂ ନୀୟତାଂ ବଚଃ
ଗୀୟତାଂ ଗୀୟତାଂ ନିତ୍ୟଂ ହରେର୍ନାମୈବ କେବଳମ୍ । (୭)

କେବଳ ହରିନାମର ହିଁ ଶ୍ରବଣରେ କାନ ଲଗାଇ ଦିଅ, ବାଣୀରେ ବୋଲ, ଏବଂ ତାହାକୁ ନିରନ୍ତର ଗାନକର । (୭)

ତୃଣୀକୃତ୍ୟ ଜଗତ୍‌ସର୍ବଂ ରାଜତେ ସକଳୋ ପରି
ଚିଦାନନ୍ଦ ମୟଂ ଶୁଦ୍ଧଂ ହରେର୍ନାମୈବ କେବଳମ୍ । (୮)

ସଂପୂର୍ଣ୍ଣ ଜଗତକୁ ତୃଣତୁଲ୍ୟ କରି ସର୍ବୋପରି କେବଳ ହରିଙ୍କର ଶୁଦ୍ଧ ସଚ୍ଚିଦାନନ୍ଦ ଘନ ନାମ ହିଁ ବିରାଜିତ ହୋଇଥାଏ ।(୮)

॥ ଇତିକୈବଲ୍ୟାଷ୍ଟକଂ ସଂପୂର୍ଣ୍ଣମ୍ ॥





# ଧନ୍ୟାଷ୍ଟକମ୍

ତଜ୍ଞାନଂ ପ୍ରଶମକରଂ ଯଦିନ୍ଦ୍ରିୟାଣାଂ, ତଜ୍ଜ୍ଞେୟଂ ଯଦୁପନିଷତ୍‌ସୁ ନିଶ୍ଚିତାର୍ଥମ୍
ତେଧନ୍ୟା ଭୁବି ପରମାର୍ଥ ନିଶ୍ଚିତେ ହାଃ, ଶେଷାସ୍ତୁ ଭ୍ରମନିଲୟେ ପରିଭ୍ରମନ୍ତି ।(୧)

ଯେ ଇନ୍ଦ୍ରିୟକୁ ଶାନ୍ତି କରୁଥାଏ ତାହାକୁ ଜ୍ଞାନ କୁହାଯାଏ । ଯାହା ଉପନିଷଦର ନିଶ୍ଚିତ ଅର୍ଥ ହୋଇଥାଏ, ତାହା ହେଉଛି ଜ୍ଞେୟ । ଯାହାର ସମସ୍ତ ଚେଷ୍ଟା ପରମାର୍ଥ ଦୃଷ୍ଟିରେ ହିଁ ହୋଇଥାଏ, ସେ ସମଗ୍ର ପୃଥିବୀରେ ଧନ୍ୟ ଏବଂ ଅନ୍ୟ ସମସ୍ତେ ଭ୍ରମ ବଶତଃ ଏଣେ ତେଣେ ଭ୍ରମୁ ଅଛନ୍ତି ।

ଆଦୌ ବିଜିତ୍ୟ ବିଷୟାନ୍‌ମଦମୋହରାଗ ଦ୍ୱେଷାଦି ଶତ୍ରୁଗଣମାହୃତ ଯୋଗରାଜ୍ୟାଃ
ଜ୍ଞାତ୍ୱାମୃତଂ ସମନୁଭୂତ ପରାତ୍ମବିଦ୍ୟା- କାନ୍ତାସୁଖା ବତଗୃହେ ବିଚରନ୍ତି ଧନ୍ୟାଃ ।(୨)

ପ୍ରଥମ ବିଷୟ- ସମୂହ ତଥା ମଦ, ମୋହ, ରାଗ, ଦ୍ୱେଷ ଆଦି ଶତ୍ରୁମାନଙ୍କୁ ଜୟକରି ଯୋଗ ସାମ୍ରାଜ୍ୟକୁ ପ୍ରାପ୍ତିକରି, ଅମୃତ ପଦର ଜ୍ଞାନ ପ୍ରାପ୍ତ କରି, ବ୍ରହ୍ମବିଦ୍ୟା ରୂପିଣୀ କାନ୍ତାର ସୁଖାନୁଭବ କରି ଧରିନିଅ ଘରେ ବିଚରଣ କରିଥାନ୍ତି, ସେହି ଯୋଗୀଜନ ଧନ୍ୟ ।

ତ୍ୟକ୍ତ୍ୱା ଗୃହେ ରତି ମାଧୋଗତି ହେତୁଭୂତା ମାତ୍ମେଚ୍ଛୟୋପନିଷଦର୍ଥ ରସଂ ପିବନ୍ତଃ
ବୀତସ୍ପୃହା ବିଷୟ ଭୋଗପଦେ ବିରକ୍ତା ଧନ୍ୟାଶ୍ଚରନ୍ତି ବିଜନେଷୁ ବିରକ୍ତ ସଙ୍ଗାଃ ।(୩)

ଅଧୋଗତିର ହେତୁ ଭୂତ ଘରର ମୋହକୁ ଛାଡ଼ି ଆତ୍ମ ଜିଜ୍ଞାସାରେ ଉପନିଷଦର୍ଥ ଭୂତ ବ୍ରହ୍ମାନଂଦର ପାନକରି, ନିଃସ୍ପୃହ ହୋଇ ବିଷୟଯୋଗରୁ ବିରକ୍ତ ହୋଇ ନିଃସଂଗ ଭାବରେ ଜନଶୂନ୍ୟ ସ୍ଥାନରେ ବିଚରଣ କରନ୍ତି, ଏମାନେ ହେଉଛନ୍ତି ଧନ୍ୟ ।

ତ୍ୟକ୍ତ୍ୱା ସମାହ ମିତି ବନ୍ଧକରେ ପଦେଦ୍ୱେ ମାନାବମାନ ସଦୃଶାଃ ସମଦର୍ଶିନଶ୍ଚ
କର୍ତ୍ତାର ମନ୍ୟ ମବଗମ୍ୟ ତଦର୍ପିତାନି କୁର୍ବନ୍ତି କର୍ମ ପରିପାକ ଫଳାନି ଧନ୍ୟାଃ ।(୪)

ଯେ ମୁଁ ଏବଂ ମୋର ରୂପ ଦୁଇ ବଂଧନକାରୀ ଭାବକୁ ଛାଡ଼ି, ମାନ ଅପମାନକୁ ସମାନ ଜ୍ଞାନ କରି ତଥା ନିଜଠାରୁ ପୃଥକ୍ ଭୂତ କର୍ତ୍ତାକୁ ଜାଣି ସଂପୂର୍ଣ୍ଣ କର୍ମଫଳ ତାଙ୍କୁ ସମର୍ପଣ କରିଦିଏ ସେ ପୁରୁଷ ଧନ୍ୟ ।

ତ୍ୟକ୍ତୈଷଣାତ୍ର ଯମବେକ୍ଷିତ ମୋକ୍ଷମାର୍ଗା ଭୈକ୍ଷା ମୃତେନ ପରିକଳ୍ପିତ ଦେହଯାତ୍ରାଃ
ଜ୍ୟୋତିଃ ପରାତ୍ପରତରଂ ପରମାତ୍ମା ସଂଜ୍ଞଂ ଧନ୍ୟାଦ୍ୱିଜା ରହସି ହୃଦ୍ୟବଲୋକୟନ୍ତି ।(୫)

ଲୋକୈଷଣା, ପୁତ୍ରୈଷଣା, ବିତ୍ତୈଷଣା ତିନିକୁ ତ୍ୟାଗକରି ମୁକ୍ତିମାର୍ଗର ଅନୁଶୀଳନ କରି ଭିକ୍ଷାମୃତରେ ଶରୀର ଯାତ୍ରା ନିର୍ବାହ କରି ଯେ ପରମାତ୍ମ ସଂଜ୍ଞାକ ପରାତ୍ପର ଜ୍ୟୋତିକୁ ଏକାନ୍ତ ଦେଶରେ ଆପଣା ହୃଦୟରେ ଅବଲୋକନ କରିଥାଏ ସେ ଦ୍ୱିଜ ଧନ୍ୟ ।

ନାସନ୍ନ ସନ୍ନ ସଦସନ୍ନ ସହନ୍ନ ଚାଣୁ ନସ୍ତ୍ରୀ ପୁମାନ୍ନ ଚ ନପୁଂସକ ମେକ ବୀଜମ୍
ଯୈର୍ବ୍ରହ୍ମତତ୍ସମନୁପାସିତ ମେକ ଚିତ୍ତା ଧନ୍ୟା ବିରେଜୁ ରିତରେ ଭବପାଶବଦ୍ଧାଃ ।(୬)

ଯେ ଅସତ୍ ନୁହେଁ କି ସତ୍ ନୁହେଁ ଏବଂ ସଦମତ୍ ନୁହେଁ, ମହାନ୍ ନୁହେଁ, ଅଣୁ ନୁହେଁ, ସ୍ତ୍ରୀ ନୁହେଁ, ପୁରୁଷ ନୁହେଁ, ନପୁଂସକ ନୁହେଁ, ସଂସାରର ଏକମାତ୍ର କାରଣ ଅଟନ୍ତି, ସେହି ବ୍ରହ୍ମର ଉପାସନା ଯିଏ କରନ୍ତି, ଏକାଗ୍ର ଚିତ୍ତ ସେହିଁ ଧନ୍ୟ ପୁରୁଷ ସୁଶୋଭିତ ହୋଇଥାନ୍ତି, ଅନ୍ୟ ସମସ୍ତେ ସଂସାର ବଂଧନରେ ବାଂଧି ହୋଇଥାନ୍ତି ।

ଅଜ୍ଞାନ ତାଙ୍କ ପରିମଗ୍ନ ମପେତ ସାରଂ ଦୁଃଖାଳୟଂ ମରଣ ଜନ୍ମ ଜରାବସକ୍ତମ୍
ସଂସାର ବଂଧନ ମନିତ୍ୟମବେକ୍ଷ୍ୟ ଧନ୍ୟା ଜ୍ଞାନାସୀନା ତଦବଶୀର୍ଯ୍ୟ ବିନିଶ୍ଚୟନ୍ତୀ ।(୭)

ଯେ ତାଙ୍କର ଲିପ୍ତ ଅଜ୍ଞାନ, ନିଃସାର, ଦୁଃଖରୂପ, ଜନ୍ମ- ଜରା- ମରଣାଦି ସମନ୍ୱିତ ସଂସାର ବଂଧନକୁ ଅନିତ୍ୟ ଦେଖି ତାକୁ ଜ୍ଞାନରୂପୀ ଖଡ୍ଗ ଦ୍ୱାରା କାଟି ଆତ୍ମତତ୍ତ୍ୱକୁ ନିଶ୍ଚୟ କରିଥାନ୍ତି ସେହି ପୁରୁଷ ଧନ୍ୟ ।

ଶାନ୍ତୈରନନ୍ତ ମତିଭିର୍ମଧୁର ସ୍ୱଭାବୈ ରେକତ୍ୱ ନିଶ୍ଚିତ ମନୋଭିରପେତ ମୋହୈଃ ସାକଂ ବନେଷୁ ବିଜିତାତ୍ମ ପଦସ୍ୱରୂପଂ ଶାସ୍ତ୍ରେଷୁ ସମ୍ୟଗନିଶଂ ବିମୃଶନ୍ତି ଧନ୍ୟାଃ ।(୮)

ଯେ ମନଦ୍ୱାରା ନିଶ୍ଚୟ କରିଅଛନ୍ତି, ମୋହକୁ ତ୍ୟାଗ କରିଅଛନ୍ତି, ଏହିପରି ଶାନ୍ତ ଅନନ୍ୟ ମତି ଏବଂ କୋମଳ ଚିତ୍ତ ମହାତ୍ମାଙ୍କ ସହିତ, ଯେଉଁ ବ୍ୟକ୍ତି ବଣରେ ଶାସ୍ତ୍ରଦ୍ୱାରା ଆତ୍ମତତ୍ତ୍ୱର ନିରନ୍ତର ବିଚାର କରିଥାନ୍ତି, ସେମାନେ ଧନ୍ୟ । (୮)

ଅହିମିବ ଜନଯୋଗଂ ସର୍ବଦା ବର୍ଜୟେଦ୍ୟଃ କୁଣପମିବ ସୁନାରୀଂ ତ୍ୟକ୍ତୁକାମୋ ବିରାଗୀ ବିଷମିବ ବିଷୟାନ୍ ଯୋ ମନ୍ୟମାନୋ ଦୁରନ୍ତାନ୍ ଜୟତି ପରମହଂସୋ ମୁକ୍ତିଭାବଂ ସମେତ ।(୯)

ଯେ ଜନ ସମୂହକୁ ସଦା ସର୍ପ ସହବାସ ତୁଲ୍ୟ ତ୍ୟାଗକରେ, ସୁନ୍ଦର ସ୍ତ୍ରୀକୁ ବୈରାଗ୍ୟଭାବରେ ଶବ ପରି ଉପେକ୍ଷା କରିଥାଏ, ଦୁସ୍ତ୍ୟେଜ ବିଷୟକୁ ବିଷ ସମାନ ତ୍ୟାଗ କରିଥାଏ, ସେହି ପରମହଂସଙ୍କର ଜୟ ହେଉ, ଜୟହେଉ, ସେ ମୁକ୍ତି ପ୍ରାପ୍ତ ହୁଅନ୍ତି । (୯)

> ସଂପୂର୍ଣ୍ଣ ଜଗଦେବ ନନ୍ଦନବନଂ ସର୍ବେଽପି କଳ୍ପଦ୍ରୁମା
> ଗାଙ୍ଗବାରି ସମସ୍ତ ବାରି ନିବହାଃ ପୁଣ୍ୟାଃ ସମସ୍ତାଃ କ୍ରିୟାଃ
> ବାଚଃ ପ୍ରାକୃତ ସଂସ୍କୃତାଃ ଶ୍ରୁତିଶିରୋ ବାରାଣସୀ ମେଦିନୀ
> ସର୍ବା ବସ୍ଥିତିରସ୍ୟ ବସ୍ତୁ ବିଷୟା ଦୃଷ୍ଟେ ପରଂବ୍ରହ୍ମଣି । (୧୦)

ଯେ ପରଂବ୍ରହ୍ମଙ୍କର ସାକ୍ଷାତ୍କାର କରିନେଇଛନ୍ତି, ତାଙ୍କ ପାଇଁ ସାରା ସଂସାର ନନ୍ଦନବନ (ତୁଲ୍ୟ), ସମସ୍ତ ବୃକ୍ଷ କଳ୍ପବୃକ୍ଷ, ସଂପୂର୍ଣ୍ଣ ଜଳ ଗଂଗାଜଳ, ତାଙ୍କ ସମସ୍ତ କ୍ରିୟା ପବିତ୍ର । ତାଙ୍କ ବାଣୀ ପ୍ରାକୃତ ଅଥବା ସଂସ୍କୃତ ହେଉ ବେଦର ସାରଭୂତ । ତାଙ୍କ ପାଇଁ ସଂପୂର୍ଣ୍ଣ ଭୂମଣ୍ଡଳ କାଶୀ (ମୁକ୍ତିକ୍ଷେତ୍ର) ହିଁ ହୋଇଥାଏ । ତାଙ୍କର ସମସ୍ତ ଚେଷ୍ଟା ସକଳ ପରମାର୍ଥମୟୀ ହୋଇଥାଏ । (୧୦)

ଇତି ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ବିରଚିତଂ ଧନ୍ୟାଷ୍ଟକଂ ସଂପୂର୍ଣ୍ଣମ୍ ॥



# ଅଚ୍ୟୁତାଷ୍ଟକମ୍

ଅଚ୍ୟୁତଂ କେଶବଂ ରାମନାରାୟଣଂ କୃଷ୍ଣଦାମୋଦରଂ ବାସୁଦେବଂହରିମ୍
ଶ୍ରୀଧରଂ ମାଧବଂ ଗୋପୀକା ବଲ୍ଲଭଂ ଜାନକୀ ନାୟକଂ ରାମଚନ୍ଦ୍ରଂ ଭଜେ ।(୧)

ଅଚ୍ୟୁତ, କେଶବ, ରାମ, ନାରାୟଣ, କୃଷ୍ଣ, ଦାମୋଦର, ହରି, ଶ୍ରୀଧର, ମାଧବ, ଗୋପୀକା ବଲ୍ଲଭ ତଥା ଜାନକୀ ନାୟକ ରାମଚନ୍ଦ୍ରଙ୍କୁ ମୁଁ ଭଜନ କରୁଅଛି ।

ଅଚ୍ୟୁତଂ କେଶବଂ ସତ୍ୟଭାମାଧବଂ ମାଧବଂ ଶ୍ରୀଧରଂ ରାଧିକାଽଽ ରାଧିତମ୍
ଇନ୍ଦିରା ମନ୍ଦିରଂ ଚେତସା ସୁନ୍ଦରଂ ଦେବକୀନନ୍ଦନଂ ନନ୍ଦଜଂ ସଂଦଧେ । (୨)

ଅଚ୍ୟୁତ, କେଶବ, ସତ୍ୟଭାମାପତି, ଲକ୍ଷ୍ମୀପତି, ଶ୍ରୀଧର, ରାଧାଙ୍କଦ୍ୱାରା ଆରୋଧିତ, ଲକ୍ଷ୍ମୀନିବାସ, ପରମସୁନ୍ଦର, ଦେବକୀନନ୍ଦନ, ନନ୍ଦକୁମାରଙ୍କୁ ଚିତ୍ତରେ ଧ୍ୟାନ କରୁଅଛି ।

ବିଷ୍ଣୁବେ ଜିଷ୍ଣବେ ଶଂଖିନେ ଚକ୍ରିଣେ ରୁକ୍ମିଣୀ ରାଗିଣେ ଜାନକୀ ଜାନୟେ
ବଲ୍ଲଭୀ ବଲ୍ଲଭାୟାର୍ଚ୍ଚିତାୟାତ୍ମନେ କଂସ ବିଧ୍ୱଂସିନେ ବଂଶୀନେ ତେନମଃ । (୩)

ଯେ ହେଉଛନ୍ତି ବିଭୁ, ବିଜୟୀ, ଶଙ୍ଖ ଚକ୍ରଧାରୀ, ରୁକ୍ମିଣୀ ପରମପ୍ରେମୀ, ଜାନକୀ ଯାହାଙ୍କ ପତ୍ନୀ, ଯେ ବ୍ରଜଙ୍ଗନାଙ୍କ ପ୍ରାଣଧାର, ସେହି ପରମପୂଜ୍ୟ ଆତ୍ମ ସ୍ୱରୂପ, କଂସ ବିନାଶକ ମୁରଲୀ ମନୋହର ଆପଣଙ୍କୁ ନମସ୍କାର କରୁଅଛି ।

କୃଷ୍ଣ ଗୋବିନ୍ଦ ହେ ରାମ ନାରାୟଣ ଶ୍ରୀପତେ ବାସୁଦେବାଜିତ ଶ୍ରୀନିଧେ
ଅଚ୍ୟୁତାନନ୍ତହେ ମାଧବାଧୋକ୍ଷଜ ଦ୍ୱାରକା ନାୟକ ଦ୍ରୌପଦୀ ରକ୍ଷକ । (୪)

ହେ କୃଷ୍ଣ ! ହେ ଗୋବିନ୍ଦ ! ହେ ରାମ ! ହେ ନାରାୟଣ ! ହେ ରମାନାଥ ! ହେ ବାସୁଦେବ ! ହେ ଅଜେୟ ! ହେ ଶୋଭାଧାମ ! ହେ ଅଚ୍ୟୁତ ! ହେ ଅନନ୍ତ ! ହେ ମାଧବ ! ହେ ଅଧୋକ୍ଷଜ (ଇନ୍ଦ୍ରିୟାତୀତ) ! ହେ ଦ୍ୱାରକାନାଥ ! ହେ ଦ୍ରୌପଦୀ ରକ୍ଷକ ! (ମୋ ଉପରେ କୃପା କରନ୍ତୁ) ।

ରାକ୍ଷସ କ୍ଷୋଭିତଃ ସୀତୟା ଶୋଭିତୋ ଦଣ୍ଡକାରଣ୍ୟଭୂ ପୁଣ୍ୟତା କାରଣମ୍
ଲକ୍ଷ୍ମଣେ ନାନ୍ୱିତୋ ବାନରୈଃ ସେବିତୋଽଗସ୍ତ ସଂପୂଜିତୋ ରାଘବଃ ପାତୁମାମ୍ । (୫)

ଯେ ରାକ୍ଷସଙ୍କ ଉପରେ କୁପିତ, ସୀତାଙ୍କ ଦ୍ୱାରା ଶୋଭିତ, ଦଣ୍ଡକାରଣ୍ୟ ଭୂମିର ପବିତ୍ର କାରକ, ଲକ୍ଷ୍ମଣଙ୍କ ଦ୍ୱାରା ଅନୁଗତ, ବାନର ସେବିତ, ଅଗସ୍ତିଙ୍କ ଦ୍ୱାରା ପୂଜିତ, ସେହି ରଘୁବଂଶୀ ଶ୍ରୀରାମଚନ୍ଦ୍ର ମୋର ରକ୍ଷା କରନ୍ତୁ ।

ଧେନୁକାରିଷ୍ଟହାଽନିଷ୍ଟକୃଦ୍ଦ୍ୱେଷିଣାଂ କେଶିହା କଂସହୃଦ୍ ବଂଶୀକା ବାଦକଃ
ପୁତନା କୋପକଃ ସୂରଜା ଖେଲନୋ ବାଳ ଗୋପାଳକଃ ପାତୁମାଂ ସର୍ବଦା । (୬)

ଧେନୁକ ଏବଂ ଅରିଷ୍ଟାସୁର ଆଦିଙ୍କ ଅନିଷ୍ଟକାରୀ, ଶତ୍ରୁମାନଙ୍କର ବିନାଶକାରୀ, କେଶୀ ଓ କଂସର ବଧକାରୀ, ବଂଶୀ ବାଦନକାରୀ, ପୁତନା ଉପରେ କୋପ କରିଥିବା, ଯମୁନା ତଟ ବିହାରୀ, ବାଳ ଗୋପାଳ ମୋର ସଦା ରକ୍ଷାକରନ୍ତୁ ।

ବିଦ୍ୟୁଦୁଦ୍ୟୋତବତ୍ ପ୍ରସ୍ଫୁରଦ୍ ବାସସଂ ପ୍ରାବୃଡ଼ ମ୍ଭୋଦବତ୍ ପ୍ରୋଲ୍ଲସଦ୍‌ବିଗ୍ରହମ୍
ବନ୍ୟୟାମାଳୟା ଶୋଭିତୋରଃସ୍ଥଳଂ ଲୋହିତାଙ୍ଘ୍ରି ଦ୍ୱୟଂ ବାରିଜାକ୍ଷଂ ଭଜେ ।(୭)

ବିଦ୍ୟୁତ୍ ଆଲୋକ ସଦୃଶ ଯାହାଙ୍କର ପୀତାମ୍ବର ବିଭାସିତ ହୋଇ ରହିଛି, ବର୍ଷାକାଳୀନ ମେଘତୁଲ୍ୟ ଯାହାଙ୍କ ଶରୀର ଶୋଭମାନ, ଯାହାଙ୍କ ବକ୍ଷସ୍ଥଳ ବନମାଳାରେ ବିଭୂଷିତ ଏବଂ ଚରଣ ଯୁଗଳ ଅରୁଣ ବର୍ଣ୍ଣ, ସେହି କମଳନୟନ ହରିଙ୍କୁ ଆମେ ଭଜନ କରୁଅଛୁ ।

କୁଞ୍ଚିତୈଃ କୁନ୍ତଳୈ ର୍ଭ୍ରାଜ ମାନାନନଂ ରତ୍ନମୌଳିଂ ଲସତ୍ କୁଣ୍ଡଳଂ ଗଣ୍ଡୟୋଃ
ହାର କେୟୂରକଂ କଙ୍କଣ ପ୍ରୋଜ୍ଜ୍ୱଳଂ କିଙ୍କିଣୀ ମଂଜୁଳଂ ଶ୍ୟାମଳଂ ତଂଭଜେ ।(୮)

ଯାହାଙ୍କର ମୁଖ ଅସ୍ତବ୍ୟସ୍ତ ଅଳକାରେ ସୁଶୋଭିତ, ମସ୍ତକରେ ମଣିମୟ ମୁକୁଟ ଶୋଭିତ କର୍ଣ୍ଣରେ କୁଣ୍ଡଳ ସୁଶୋଭିତ, ଉଜ୍ଜ୍ୱଳହାର, କେୟୂର (ବାଜୁବଂଧ) କଙ୍କଣ ଓ କଙ୍କିଣୀ କଳାପରେ ସୁଶୋଭିତ, ସେହି ମଂଜୁଳ ମୂର୍ତ୍ତି ଶ୍ୟାମସୁନ୍ଦରଙ୍କୁ ଭଜନ କରୁଅଛି ।

ଅଚ୍ୟୁତ ସ୍ୟାଷ୍ଟକଂ ଯଃ ପଠେଦିଷ୍ଟଦଂ ପ୍ରେମତଃ ପ୍ରତ୍ୟହଂ ପୁରୁଷଃ ସସ୍ପୃହମ୍
ବୃତ୍ତତଃ ସୁନ୍ଦରଂ କର୍ତ୍ତୃ ବିଶ୍ୱମ୍ଭରଂ ତସ୍ୟ ବଶ୍ୟୋହରି ର୍ଜାୟତେ ସତ୍ୱରମ୍ ।(୯)

ଯେଉଁ ବ୍ୟକ୍ତି ଏହି ଅତି ସୁନ୍ଦର ଛନ୍ଦଯୁକ୍ତ ଏବଂ ଅଭୀଷ୍ଟ ଫଳଦାୟକ ଅଚ୍ୟୁତାଷ୍ଟକକୁ ପ୍ରେମ ଓ ଶ୍ରଦ୍ଧାରେ ପଢ଼ିବ, ବିଶ୍ୱମ୍ଭର, ବିଶ୍ୱକର୍ତ୍ତା ଶ୍ରୀହରି ଶୀଘ୍ର ତା'ର ବଶୀଭୂତ ହୋଇଯାଆନ୍ତି ।

।। ଇତି ଶ୍ରୀମଦ୍‌ଶଙ୍କରାଚାର୍ଯ୍ୟ ବିରଚିତ ଅଚ୍ୟୁତାଷ୍ଟକଂ ସଂପୂର୍ଣ୍ଣମ୍ ।।



# ଶ୍ରୀମଧୁରାଷ୍ଟକମ୍

ଅଧରଂ ମଧୁରଂ ବଦନଂ ମଧୁରଂ ନୟନଂ ମଧୁରଂ ହସିତଂ ମଧୁରମ୍
ହୃଦୟଂ ମଧୁରଂ ନୟନଂ ମଧୁରଂ ମଧୁରାଧିପତେ ରଖିଳଂ ମଧୁରମ୍ ।(୧)

ଶ୍ରୀ ମଧୁରାଧିପତିଙ୍କର ସବୁକିଛି ମଧୁର, ତାଙ୍କ ଅଧର ମଧୁର, ମୁଖ ମଧୁର, ନେତ୍ର ମଧୁର, ହାସ୍ୟ ମଧୁର, ହୃଦୟ ମଧୁର ଏବଂ ଗତିମଧ୍ୟ ମଧୁର ।

ବଚନଂ ମଧୁରଂ ଚରିତଂ ମଧୁରଂ ବମନଂ ମଧୁରଂ ବଳିତଂ ମଧୁରମ୍
ଚଳିତଂ ମଧୁରଂ ଭ୍ରମିତଂ ମଧୁରଂ ମଧୁରାଧିପତେ ରଖିଳଂ ମଧୁରମ୍ ।(୨)

ତାଙ୍କର ବଚନ ମଧୁର, ଚରିତ୍ର ମଧୁର, ବସ୍ତ୍ର ମଧୁର, ଅଗଂଭଂଗୀ ମଧୁର, ଚାଲି ମଧୁର, ଭ୍ରମଣ ମଧ୍ୟ ଅତି ମଧୁର, ଶ୍ରୀମଧୁରାଧିପତିଙ୍କର ସବୁକିଛି ମଧୁର ।

ବେଣୁ ର୍ମଧୁରୋ ରେଣୁର୍ମଧୁରଃ ପାଣିର୍ମଧୁରଃ ପାଦୌ ମଧୁରୌ
ନୃତ୍ୟଂ ମଧୁରଂ ସତ୍ୟଂ ମଧୁରଂ ମଧୁରାଧିପତେ ରଖିଳଂ ମଧୁରମ୍ ।(୩)

ତାଙ୍କ ବେଣୁ ମଧୁର, ଚରଣରଜ ମଧୁର, କର କମଳ ମଧୁର, ଚରଣ ମଧୁର, ନୃତ୍ୟ ମଧୁର ଏବଂ ସଖ୍ୟ ମଧ୍ୟ ମଧୁର, ଶ୍ରୀମଧୁରାଧିପତିଙ୍କର ସବୁକିଛି ମଧୁର ।

ଗୀତଂ ମଧୁରଂ ପୀତଂ ମଧୁରଂ ଭକ୍ତଂ ମଧୁରଂ ସୁପ୍ତଂ ମଧୁରମ୍
ରୂପଂ ମଧୁରଂ ତିଳକଂ ମଧୁରଂ ମଧୁରାଧିପତେ ରଖିଳଂ ମଧୁରମ୍ ।(୪)

ତାଙ୍କର ଗାନ ମଧୁର, ପାନ ମଧୁର, ଭୋଜନ ମଧୁର, ଶୟନ ମଧୁର, ରୂପ ମଧୁର ଓ ତିଳକ ମଧ୍ୟ ଅତ୍ୟନ୍ତ ମଧୁର, ଶ୍ରୀ ମଧୁରାଧିପତିଙ୍କର ସବୁକିଛି ମଧୁର ।

କରଣଂ ମଧୁରଂ ତରଣଂ ମଧୁରଂ ହରଣଂ ମଧୁରଂ ମଧୁରମ୍
ବମିତଂ ମଧୁରଂ ଶମିତଂ ମଧୁରଂ ମଧୁରାଧିପତେ ରଖିଳଂ ମଧୁରମ୍ ।(୫)

ତାଙ୍କର କାର୍ଯ୍ୟ ମଧୁର, ସନ୍ତରଣ ମଧୁର, ହରଣ କରିନେବା ମଧୁର, ରମଣ ମଧୁର, ଉଦ୍‌ଗାର ମଧୁର ଏବଂ ଶାନ୍ତି ମଧ ମଧୁର, ମଧୁରାଧିପତିଙ୍କର ସବୁକିଛି ମଧୁର ।

ଗୁଞ୍ଜା ମଧୁରା ମାଳା ମଧୁରା ଯମୁନା ମଧୁରା, ବୀଚି ମଧୁରା
ସଲିଳଂ ମଧୁରଂ କମଳଂ ମଧୁରଂ ମଧୁରାଧିପତେ ରଖିଳଂ ମଧୁରମ୍ ।(୬)

ତାଙ୍କର କାଇଁଚ ମାଳି ମଧୁର, ବନଫୁଲ ମାଳା ମଧୁର, ତାଙ୍କ ଯମୁନା ମଧୁର, ଯମୁନାର ତରଂଗ ମଧୁର, ଜଳ ମଧୁର କମଳ ମଧ ଅତ୍ୟନ୍ତ ମଧୁର, ମଧୁରାଧିପତିଙ୍କର ସବୁକିଛି ମଧୁର ।

ଗୋପା ମଧୁରା ଲୀଳା ମଧୁରା ଯୁକ୍ତଂ ମଧୁରଂ ଭକ୍ତଂ ମଧୁରମ୍
ଦୃଷ୍ଟଂ ମଧୁରଂ ଶିଷ୍ଟଂ ମଧୁରଂ ମଧୁରାଧିପତେ ରଖିଳଂ ମଧୁରମ୍ ।(୭)

ଗୋପୀମାନେ ମଧୁର, ତାଙ୍କର ଲୀଳା ମଧୁର, ତାଙ୍କ ସଂଯୋଗ ମଧୁର, ଭୋଗ ମଧୁର, ନିରୀକ୍ଷଣ ମଧୁର ଏବଂ ଶିଷ୍ଟାଚାର ଅତି ମଧୁର, ଶ୍ରୀ ମଧୁରାଧିପତିଙ୍କର ସବୁକିଛି ମଧୁର ।

ଗୋପା ମଧୁରା ଗାବୋମଧୁରା ଯଷ୍ଟିର୍ମଧୁରା ସୃଷ୍ଟିର୍ମଧୁରା
ଦଳିତଂ ମଧୁରଂ ଫଳିତଂ ମଧରଂ ମଧୁରାଧିପତେ ରଖିଳଂ ମଧୁରମ୍ ।(୮)

ଗୋପା ମଧୁର, ଧେନୁ ମଧୁର, ହାତର ପାଞ୍ଚଣ ବାଡ଼ି ମଧୁର, ସୃଷ୍ଟି ମଧୁର, ଦୁଷ୍ଟ ଦଳନ ମଧୁର ଓ ତା'ର ଫଳ ମଧ ଅତ୍ୟନ୍ତ ମଧୁର, ଶ୍ରୀମଧୁରାଧିପତିଙ୍କର ସବୁକିଛି ମଧୁର ।

।। ଇତି ଶ୍ରୀମଦ୍ ବଲ୍ଲଭାଚାର୍ଯ୍ୟ ବିରଚିତ ମଧୁରାଷ୍ଟକଂ ସଂପୂର୍ଣ୍ଣମ୍ ।।



# ଶ୍ରୀରାଧା- କୃପାକଟାକ୍ଷ ସ୍ତୋତ୍ର

ମୁନିନ୍ଦ୍ର ବୃନ୍ଦବନ୍ଦିତେ ତ୍ରିଲୋକ ଶୋକ ହାରିଣି
ପ୍ରସନ୍ନବକ୍ତ୍ର ପଙ୍କଜେ ନିକୁଂଜଭୂ ବିଳାସିନୀ ।
ବ୍ରଜେନ୍ଦ୍ର ଭାନୁନନ୍ଦିନୀ ବ୍ରଜେନ୍ଦ୍ର ସୁନୁ ସଂଗତେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷ ଭାଜନମ୍ । (୧)

ମୁନିନ୍ଦ୍ର ବୃନ୍ଦବଂଦିତ ତ୍ରିଲୋକ ଶୋକ ବିନାଶିନୀ ପଦ୍ମ ପ୍ରସନ୍ନା ନନା, ନିକୁଂଜ କାନନ ବିଳାସିନୀ, ବୃଷଭାନୁ ନନ୍ଦିନୀ ! ଯେ ନନ୍ଦସୁତଙ୍କ ସହ ଗମନ କରିଥାନ୍ତି, କେବେ ମୋତେ କୃପା କଟାକ୍ଷପାତରେ ଅନୁଗୃହୀତ କରାଇବେ ? (୧)

ଅଶୋକ ବୃକ୍ଷ ବଲ୍ଲରୀ ବିତାନ ମଣ୍ଡପ ସ୍ଥିତେ
ପ୍ରବାଳ ବାଳ ପଲ୍ଲବ ପ୍ରଭାରୁଣାଘ୍ରିଂ କୋମଳେ ।
ବରାଭୟସ୍ଫୁରତ୍କରେ ପ୍ରଭୁତ ସଂପଦାଳୟେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷ ଭାଜନମ୍ । (୨)

ଅଶୋକ ବୃକ୍ଷ ବଲ୍ଲରୀତୁଲ୍ୟ ଚନ୍ଦ୍ରାତପ ହୋଇଥିବା ମଣ୍ଡପରେ ରହିଛନ୍ତି । ପ୍ରବାଳ ତୁଲ୍ୟ (ରକ୍ତାଭ) ବାଳ ପଲ୍ଲବ ତାଙ୍କ ପଦ ଯୁଗଳର ରକ୍ତିମା ଏବଂ କୋମଳତାକୁ ଧାରଣ କରିଛି । କର ପଲ୍ଲବଦ୍ୱୟ ଅଭୟ ଏବଂ ବରପ୍ରଦାନ କରି (ଭକ୍ତଙ୍କୁ) ସଂପଦାଳୟକୁ ଘେନିଯାଉଛି । ସେ ଦେବୀ କେବେ ମୋତେ କୃପାକଟାକ୍ଷ ପାତରେ ଅନୁଗୃହୀତ କରାଇବେ ।

ଅନଙ୍ଗ ରଂଗ ମଂଗଳ ପ୍ରସଙ୍ଗ ଭଙ୍ଗୁର ଭ୍ରୁବୌଃ
ସବିଭ୍ରମଂ ସମଭ୍ରମଂ ଦୃଗନ୍ତ ବାଣ ପାତନୈଃ ।
ନିରନ୍ତରଂ ବଶୀକୃତ ପ୍ରତୀତ ନନ୍ଦନନ୍ଦନେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷ ଭାଜନମ୍ । (୩)

ଯାହାଙ୍କର ଭ୍ରୂଭଙ୍ଗରେ କନ୍ଦର୍ପଙ୍କର ମଂଗଳ ପ୍ରସଂଗଯୁକ୍ତ ହୋଇଥାଏ, ତାଙ୍କ ଶରାଘାତରେ ବିଭ୍ରମ ଏବଂ ସମଭ୍ରମ ହୁଏ, ଯେ ସର୍ବଦା ନନ୍ଦନନ୍ଦନଙ୍କୁ ବଶୀକୃତ କରିଥାନ୍ତି । ସେ ମୋତେ କୃପା କଟାକ୍ଷର ଭାଜନ କରିବେ ?

ତଡ଼ିତ୍ ସୁବର୍ଣ୍ଣ ଚମ୍ପକ ପ୍ରଦୀପ୍ତ ଗୌର ବିଗ୍ରହେ
ମୁଖପ୍ରଭା ପରାସ୍ତ କୋଟି ଶାରଦେନ୍ଦୁ ମଣ୍ଡଳେ ।
ବିଚିତ୍ର ଚିତ୍ର ସଂଚରଞ୍ଚକୋର ଶାବଲୋଚନେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷ ଭାଜନମ୍ । (୪)

ବଦ୍ୟୁତ୍, ସୁବର୍ଣ୍ଣ ଚମ୍ପକ ପରି ଗୌର ଶରୀର, କୋଟି ଶରତ୍‌ଚନ୍ଦ୍ରକୁ ଯାହାଙ୍କ ମୁଖମଣ୍ଡଳ ଜିଣିଯାଇଛି, ଯୁବଚକୋର ବିବିଧ ଉପାୟ ପ୍ରଭୃତି ଯାହାଙ୍କଠାରେ ସମାବିଷ୍ଟ, ସେ କେବେ ମୋତେ କୃପା କଟାକ୍ଷ ଭାଜନ କରି କୃତାର୍ଥ କରିବେ ।

ମଦୋନ୍ମଦାତି ଯୌବନେ ପ୍ରମୋଦମାନ ମଣ୍ଡିତେ
ପ୍ରିୟାନୁରାଗ ରଂଜିତେ କଳାବିଳାସ ପଣ୍ଡିତେ ।
ଅନନ୍ୟଧନ୍ୟ କୁଂଜରାଜ୍ୟ କାମକେଳି କୋବିଦେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷ ଭାଜନମ୍ । (୫)

ମଦନ- ଉନ୍ମାଦିତ ଯୌବନ ନାନା ଆନନ୍ଦ ମଣ୍ଡିତ, ପ୍ରିୟ ଅନୁରାଗ ରଂଜିତ କଳାବିଳାସ ନିପୁଣା, ସେ କୁଂଜ ମଧରେ କାମକେଳି କୋବିଦ । ସେ କେବେ ମୋତେ କୃପା କଟାକ୍ଷ ଭାଜନ କରିବେ ?

ଅଶେଷ ହାବଭାବ ଧୀର ହୀରହାର ଭୂଷିତେ
ପ୍ରଭୂତ ଶାତ କୁମ୍ଭ କୁମ୍ଭ କୁମ୍ଭୀ କୁମ୍ଭ ସୁସ୍ତନୀ
ପ୍ରଶସ୍ତ ମନ୍ଦହାସ୍ୟ ଚୂର୍ଣ୍ଣ ପୂର୍ଣ୍ଣ ସୌଖ୍ୟସାଗରେ
କଦା କରିଷ୍ୟସୀହ ମାଂ କୃପାକଟାକ୍ଷ ଭାଜନମ୍ । (୬)

ଅନ୍ତ ହାବ ଭାବ ପ୍ରବୀଣା ହୀରକ ହାର ଭୂଷଣା ହସ୍ତୀକୁମ୍ଭ, ସୁବର୍ଣ୍ଣ କୁମ୍ଭ ତୁଲ୍ୟ ଉନ୍ନତ ସ୍ତନୀ, ମନ୍ଦହାସ୍ୟ ଛଟା ସଂପୂର୍ଣ୍ଣ ଆନନ୍ଦ ସାଗରରୁ ବିସ୍ଫାରିତ ହୋଇପଡ଼ିଛି, ସେ (ବିରାଗନେ) କେବେ ମୋତେ କୃପାକଟାକ୍ଷରେ ଅନୁଗୃହୀତ କରିବେ ?

ମୃଣାଳ ବାଳବଲ୍ଲରୀ ତରଂଗ ରଂଗ ଦୋର୍ଲତେ
ଲତାଗ୍ର ଲାସ୍ୟ ଲୋଳନୀ ଲଲୋଚ ନାବ ଲୋକନେ
ଲଲଲ୍ଲୁ ଲନ୍ମିଳ ନ୍ମନୋଜ୍ଞ ମୁଗ୍ଧ ମୋହନାଶ୍ରୟେ
କଦା କରିଷ୍ୟସୀହ ମାଂ କୃପା ପଟାକ୍ଷ ଭାଜନମ୍ । (୭)

ଯାହାଙ୍କର ବାହୁ ବଲ୍ଲରୀ ମୃଦୁଳ, ଯଥା ମୃଣାଳ ଏବଂ ତରଂଗ ଦୋଳାୟତ । ତାଙ୍କ କରଂଗାୟିତ ଚାହାଣି ଅତୁଳ । ଯେଉଁ ଶ୍ୟାମସୁନ୍ଦର, ମୁଗ୍ଧ ମୋହନ ଯାହାଙ୍କ ସହ ତୁରନ୍ତ ପ୍ରେମ କ୍ରୀଡ଼ାକୁ ଗ୍ରହଣ କରି ନିଅନ୍ତି । ସେ କେବେ ମୋତେ କୃପାକଟାକ୍ଷରେ ଅନୁଗୃହୀତ କରିବେ ?

ସୁବର୍ଣ୍ଣ ମାଳିକାଞ୍ଚିତ ତ୍ରିରେଖ କମ୍ବୁ କଣ୍ଠଗ<br>
ତ୍ରିସୂତ୍ର ମଂଗଳୀଗୁଣ ତ୍ରିରତ୍ନ ଦୀପ୍ତି ଦୀଧିତେ ।<br>
ସଲୋଳ ନୀଳ କୁନ୍ତଳ ପ୍ରସୂନ ଗୁଚ୍ଛ ଗୁମ୍ଫତେ<br>
କଦା କରିଷ୍ୟସୀହ ମାଂ କୃପା କଟାକ୍ଷ ଭାଜନମ୍ । (୮)

ଯାହାଙ୍କ କମ୍ବୁକଣ୍ଠରେ ତ୍ରିରେଖାବଳୀ, ସୁବର୍ଣ୍ଣ ହାର ବେଷ୍ଟିତ ତ୍ରିସୂତ୍ର ମଂଗଳ ଦାନୀ ତ୍ରିରତ୍ନ ଦୀପ୍ତିମନ୍ତ, ତାଙ୍କର ଲୋଳ ନୀଳକୁନ୍ତଳ କୁସୁମ ଗୁଚ୍ଛ ବିମଣ୍ଡିତ । ସେ କେବେ ମୋତେ କୃପା କଟାକ୍ଷ ଭାଜନ କରି କୃତାର୍ଥ କରିବେ । (୮)

ନିତମ୍ବବିମ୍ବ ଲମ୍ବମାନ ପୁଷ୍ପ ମେଖଳା ଗୁଣେ<br>
ପ୍ରଶସ୍ତ ରତ୍ନ କିଙ୍କିଣୀ କଳାପ ମଧ୍ୟ ମଂଜୁଳେ ।<br>
କରୀନ୍ଦ୍ର ଶୁଣ୍ଡ ଦଣ୍ଡିକା ବରୋହ ସୌଭଗୋରୁକେ<br>
କଦା କରିଷ୍ୟସୀହ ମାଂ କୃପାକଟାକ୍ଷ ଭାଜନମ୍ । (୯)

ଉନ୍ନତ ନିତମ୍ବ ବିମ୍ବରେ ମେଖଳା ତୁଲ୍ୟ ପୁଷ୍ପମାଳା ବେଷ୍ଟତ, ରତ୍ନ ମେଖଳାର ମଧ୍ୟ ଭାଗରେ କିଙ୍କିଣୀ ଶବ୍ଦାୟମାନ, ହସ୍ତୀ ଶୁଣ୍ଢ ପ୍ରାୟ କ୍ରମ ସୂକ୍ଷ୍ମ ଜାନୁଯୁଗଳ ଅତ୍ୟନ୍ତ ମନୋରମ୍ । ସେ କେବେ ମୋତେ କୃପା କଟାକ୍ଷ ଭାଜନ ପୂର୍ବକ ଧନ୍ୟ କରିବେ ?(୯)

ଅନେକ ମନ୍ତ୍ରନାଦ ମଞ୍ଜୁ ନୂପୁରାରବ ସ୍ଖଳତ୍<br>
ସମାଜ ରାଜହଂସ ସବଂଶ ନିକ୍ୱଣରତି ଗୌରବେ ।<br>
ବିଲୋଳ ହେବ ବଲ୍ଲରୀ ବିଡ଼ମ୍ବି ଚାରୁ ଚଂକ୍ରମେ<br>
କଦା କରିଷ୍ୟସୀହ ମାଂ କୃପା କଟାକ୍ଷ ଭାଜନମ୍ । (୧୦)

ମଂଜୁଳ ନୂପୁର ଧ୍ୱନିରୁ ସତେ ଯେପରି ଅନେକ ମନ୍ତ୍ର ଶବ୍ଦାୟିତ ହୋଇ ଖସିପଡୁଛି, ସେହି ମଧୁର ଶବ୍ଦ ସତେ ଯେପରି ଅସଂଖ୍ୟ ରାଜହଂସଙ୍କର କଳଧ୍ୱନିକୁ ଗୌରବାନ୍ୱିତ କରୁଅଛି । ସୁବର୍ଣ୍ଣ ବଲ୍ଲରୀ କରୁଣାରେ ପରିପୂର୍ଣ୍ଣ । ସେ କେବେ ମୋତେ କୃପା କଟାକ୍ଷରେ ଧନ୍ୟ କରିବେ ?

ଅନନ୍ତ କୋଟି ବିଷ୍ଣୁଲୋକ ନମ୍ର ପଦ୍ମ ଜାର୍ଚ୍ଚିତ
ହେମାଦ୍ରିଜା ପୁଲମଜା ବିରଞ୍ଚି ଜାବର ପ୍ରଦେ
ଅପାର ସିଦ୍ଧି ଦିଗ୍‌ଧ ସତ୍ ପଦାଙ୍ଗୁଳି ନଖେ
କଦା କରିଷ୍ୟସୀହ ମାଂ କୃପା କଟାକ୍ଷ ଭାଜନମ୍ । (୧୧)

ଦେବୀ ପଦ୍ମଜା, ଯେ ଅନନ୍ତ ବିଷ୍ଣୁଲୋକର ରାଜରାଣୀ, ଯାହାଙ୍କ ନିକଟରେ ନତଶିର, ହେମାଦ୍ରିଜ (ପାର୍ବତୀ), ବ୍ରହ୍ମଜା ଏବଂ ପୁଲୋମାଙ୍କ ପୁତ୍ରୀ ଯାହାଙ୍କୁ ନମନ କରନ୍ତି, ଯାହାଙ୍କ ପାଦ ନଖରୁ ଅନନ୍ତଧାର, ସକଳ ସଂପଦ, ପରମଶକ୍ତି ପ୍ରବାହିତ ହେଉଅଛନ୍ତି, ଏକ ଜ୍ୟୋତିଧାରା, କରୁଣା ପରିପୂରିତ ଶକ୍ତି ଉତ୍ସ, ସେ କେବେ ମୋତେ କୃପାକଟାକ୍ଷରେ ଧନ୍ୟ କରିବେ ?

ମଖେଶ୍ୱରୀ କ୍ରିୟେଶ୍ୱରୀ ସ୍ୱଧେଶ୍ୱରୀ ସୁରେଶ୍ୱରୀ
ତ୍ରିବେଦ ଭାରତୀଶ୍ୱରୀ ପ୍ରମାଣ ଶାସନେଶ୍ୱରୀ
ରମେଶ୍ୱରୀ କ୍ଷମେଶ୍ୱରୀ ପ୍ରମୋଦ କାନନେଶ୍ୱରୀ
ବ୍ରଜଶ୍ୱରୀ ବ୍ରଜାଧିପେ ଶ୍ରୀରାଧିକେ ନମୋଽସ୍ତୁତେ । (୧୨)

ଯଜ୍ଞର ଅଧିଷ୍ଠାତ୍ରୀ, କ୍ରିୟାର ଅଧିଷ୍ଠାତ୍ରୀ, ପିତୃଗଣଙ୍କ ଅଧିଷ୍ଠାତ୍ରୀ, ଦେବାଧିଶ୍ୱରୀ, ବେଦଭାରତୀଶ୍ୱରୀ, ତର୍କ, ଶାସନେଶ୍ୱରୀ,, ସ୍ୱର୍ଗ ଏବଂ ପୃଥିବୀର ଅଧିଶ୍ୱରୀ, ନିକୁଂଜ କାନନେଶ୍ୱରୀ, ବ୍ରଜରାଜେଶ୍ୱରୀ, ବ୍ରଜରାଣୀ, ଶ୍ରୀରାଧିକେ ମୁଁ ଆପଣଙ୍କୁ ପ୍ରଣିପାତ କରୁଛି ।

ଇତିମମଦ୍ଭୁତଂ ସ୍ତବଂ ନିଶମ୍ୟ ଭାନୁ ନନ୍ଦିନୀ
କରୋତୁ ସତତଂ ଜନଂ କୃପାକଟାକ୍ଷ ଭାଜନମ୍
ଭବେତ୍ତଦୈବ ସଚିତ ତ୍ରିରୂପ କର୍ମ ନାଶନଂ
ଭବେତ୍ତଦା ବ୍ରଜେନ୍ଦ୍ରସୁନୁ ମଣ୍ଡଳ ପ୍ରବେଶନମ୍ । (୧୩)

ଏହି ଅଦ୍ଭୁତ ସ୍ତବ ଶ୍ରବଣ କରି ବୃଷଭାନୁ ନନ୍ଦିନୀ ଅନନ୍ତ କାଳ ପାଇଁ କୃପା କଟାକ୍ଷ ଭାଜନ କରନ୍ତୁ । ଅତୀତ ବହୁଜନ୍ମର ସଂଚିତ କର୍ମଫଳ ଛେଦନ କରନ୍ତୁ । ବ୍ରଜେନ୍ଦ୍ର ନନ୍ଦନ ଶ୍ରୀକୃଷ୍ଣଙ୍କ ଶାଶ୍ୱତ ମଣ୍ଡଳରେ ପ୍ରବେଶ ଅନୁଗ୍ରହ କରନ୍ତୁ ।



# ଶ୍ରୀକୃଷ୍ଣ ପ୍ରଣାମ

ନିଷ୍କଳାୟଃ ବିମୋହାୟ ଶୁଦ୍ଧାୟା ଶୁଦ୍ଧ ବୈରିଣେ
ଅଦ୍ୱିତୀୟାୟ ମହତେ ଶ୍ରୀକୃଷ୍ଣାୟ ନମୋନମଃ । (୧)

ପରମ ପୁରୁଷ ଶ୍ରୀକୃଷ୍ଣଙ୍କୁ ପ୍ରଣାମ, ଯେ ଅଦ୍ୱିତୀୟ ଯେ ଅବିଭକ୍ତ, ମହତ୍ ବିଶୁଦ୍ଧ ଯେ ଅଶୁଦ୍ଧର ବୈରୀ ।

ପ୍ରସୀଦ ପରମାନନ୍ଦ ପ୍ରସୀଦ ପରମେଶ୍ୱର
ଆଧି ବ୍ୟାଧି ଭଜଂଗେନ ଦଂଷ୍ଟ୍ର ମାମୁଦ୍ଧର ପ୍ରଭୋ । (୨)

ହେ ପରମାନନ୍ଦ ! ପରମେଶ୍ୱର, ମୋତେ କଲ୍ୟାଣ କରନ୍ତୁ । ଅଧି-ବ୍ୟାଧି ଭଜଂଗ ଦଂଷ୍ଟ୍ର, ନିପୀଡ଼ିତ ସନ୍ତପ୍ତ ମୋତେ ଉଦ୍ଧାର କରନ୍ତୁ ।

ଶ୍ରୀକୃଷ୍ଣ ରୁକ୍ମିଣୀ କାନ୍ତ ଗୋପୀଜନ ମନୋହର
ସଂସାର ସାଗରେ ମଗ୍ନଂ ମାମୁଦ୍ଧର ଜଗଦ୍‌ଗୁରୋ । (୩)

ହେ କୃଷ୍ଣ ! ରୁକ୍ମିଣୀକାନ୍ତ, ହେ ଜଗତ୍‌ଗୁରୁ, ଗୋପୀଜନ ଆହ୍ଲାଦନକାରୀ ମୁଁ ସଂସାର ସାଗରରେ ନିମଗ୍ନ ହୋଇଥିବା ମୋତେ ଉଦ୍ଧାର କରନ୍ତୁ ।

କେଶବ କ୍ଲେଶହରଣ ନାରାୟଣ ଜନାର୍ଦ୍ଦନ
ଗୋବିନ୍ଦ ପରମାନନ୍ଦ ମାଂ ସମୁଦ୍ଧର ମାଧବ । (୪)

ହେ କେଶବ ସମସ୍ତ କ୍ଲେଶହାରୀ, ହେ ନାରାୟଣ, ହେ ଜନାର୍ଦ୍ଦନ, ହେ ଗୋବିନ୍ଦ, ହେ ପରମାନନ୍ଦ, ମୋତେ ଉଦ୍ଧାର କରନ୍ତୁ ମାଧବ ।

କଂସ ବଂଶ ବିନାଶାୟ କେଶିଚାଣୂର ଘାତିନେ
ବୃଷଭଧ୍ୱଜ ବନ୍ଦ୍ୟାୟ ପାର୍ଥ ସାରଥୟେ ନମଃ । (୫)

ଶ୍ରୀକୃଷ୍ଣଙ୍କୁ ପ୍ରଣାମ, ଯେ ପାର୍ଥର ସାରଥୀ, ଯେ କଂସ ନିଧନକାରୀ, କେଶୀ, ଚାଣୁରର ଯେ ହନ୍ତା, ବୃଷଭଧ୍ୱଜ ଭଗବାନ ସଦାଶିବ ଯାହାଙ୍କୁ ପୂଜା କରନ୍ତି ।

ବେଣୁନାଦ ବିନୋଦାୟ ଗୋପାଳାୟାହି ମର୍ଦ୍ଦିନେ
କାଳିନ୍ଦୀ କୂଳ ଲୋଳାୟ ଲୋଳ କୁଣ୍ଡଳ ଧାରିଣେ । (୬)
ବଲ୍ଲବୀ ବଦନାମ୍ଭୋଜ ମାଳିନେ ନୃତ୍ୟଶାଳିନେ
ନମଃ ପ୍ରଣତ ପାଳାୟ ଶ୍ରୀକୃଷ୍ଣାୟ ନାମୋନମଃ । (୭)

ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ପ୍ରଣାମ, ଯେ ବେଣୁ ନାଦ ବିନୋଦ, ଗୋପାଳ ଏବଂ କାଳୀୟ ଦର୍ପ ବିମର୍ଦ୍ଦନ, ଯମୁନା ପୁଳିନ ବିହାରୀ, ସଦା ଚଞ୍ଚଳ କୁଣ୍ଡଳଧାରୀ, ସେ କମଳମୁଖୀ ଗୋପୀ ପରିବେଷ୍ଟିତ ନୃତ୍ୟ ନିପୁଣ ଓ ଶରଣ ରକ୍ଷଣ ।

ନମଃ ପାପ ପ୍ରଣାଶାୟ ଗୋବର୍ଦ୍ଧନ ଧରାୟଚ
ପୂତନା ଜୀବିତାନ୍ତାୟ ତୃଣାବର୍ତ୍ତା ସୁହାରିତେ । (୮)

ଶ୍ରୀକୃଷ୍ଣଙ୍କୁ ପ୍ରଣାମ, ଯେ ସକଳ ପାପର ବିନାଶକାରୀ, ଯେ ଗୋବର୍ଦ୍ଧନ ପର୍ବତକୁ କାଣି ଆଙ୍ଗୁଠିରେ ଧାରଣ କରିଥିଲେ । ଯେ ପୁତନାକୁ ବିନାଶ କରିଥିଲେ । ତୃଣାବର୍ତ୍ତ ଅସୁରକୁ ବିନାଶ କରିଥିଲେ (ଯେ ବାତଚକ୍ର (ଖଣ୍ଡିଆଭୂତ) ଭାବରେ ଆବିର୍ଭୂତ ହୋଇଥିଲା) ।

(ଗୋପାଳ ପୂର୍ବ ତାପିନୀ ଉପନିଷଦ)



# କୀର୍ତ୍ତନୀୟଃ ସଦାହରିଃ

ଯସ୍ମିନ୍ ନ୍ୟସ୍ତ ମତିର୍ନ ଯାତି ନରକଂ ସ୍ୱର୍ଗୋଽପି ଯଚ୍ଚିନ୍ତନେ
ବିଘ୍ନୋ ଯତ୍ର ନିବେଶିତାତ୍ମ ମନସୋ ବ୍ରାହ୍ମ୍ୟୋଽପି ଲୋକୋଽଳ୍ପକଃ ।
ମୁକ୍ତି ଚେତାସି ଯଃ ସ୍ଥିତୋଽମଳଧିୟାଂ ପୁଂସାଂ ଦଦାତ୍ୟବ୍ୟୟଃ
କି ଚିତ୍ରଂ ଯଦଘଂ ପ୍ରୟାତି ବିଲୟଂ ତତ୍ରାଚ୍ୟୁତ କୀର୍ତିତେ ।। (୧)
ଯଜ୍ଞୈଯଜ୍ଞ ବିଦୋ ଯଜନ୍ତି ସତତଂ ଯଜ୍ଞେଶ୍ୱର କର୍ମିଣୋ
ଯଂ ବୈ ବ୍ରହ୍ମମୟଂ ପରାବର ମୟଂ ଧ୍ୟାୟନ୍ତି ଯଃ ଜ୍ଞାନିନଃ ।
ଯଂ ସଂ ଚିନ୍ତ୍ୟ ନ ଜାୟତେ ନମ୍ରିୟତେ ନୋ ବର୍ଧତେ ହୀୟତେ
ନୈବାସନ୍ନ ଚ ସଦ୍‌ଭବତ୍ୟତି ତତଃ କିଂ ବା ହରେଃ ଶ୍ରୂୟତାମ୍ ।। (୨)
କବ୍ୟଂ ଯଃ ପିତୃରୂପ ଧୃଗ୍ ବିଧିହୁତଂ ହବ୍ୟଂ ଚ ଭଙ୍‌କ୍ତେ ବିଭୁ
ଦେବତ୍ୱେ ଭଗବାନ ନାଦିନିଧନଃ ସ୍ୱାହାସ୍ୱଧା ସଂଜ୍ଞିତେ ।
ଯସ୍ମିନ୍ ବ୍ରହ୍ମଣି ସର୍ବଶକ୍ତି ନିଳୟେ ମାନାନି ନୋ ମାନିନାଂ
ନିଷ୍ଠାୟୈପ୍ରଭବନ୍ତି ହନ୍ତି କଳୁଷଂ ଶ୍ରୋତଂ ସ ଯାତୋହରିଃ ।।

ନାନ୍ତୋଽସ୍ତି ଯସ୍ୟ ନଚ ଯସ୍ୟ ସମୁଦ୍‌ଭବୋଽସ୍ତି ବୃଦ୍ଧିର୍ନ ଯସ୍ୟ ପାରିଣାମ ବିବର୍ଜିତସ୍ୟ ନାପକ୍ଷୟଂ ଚ ସମୁପୈତ୍ୟ ବିକାରି ବସ୍ତୁ ଯସ୍ତଂ ନତୋଽସ୍ମି ପୁରୁଷୋତ୍ତମ ମୀଶ ମୀଡ୍ୟାମ୍ ।। ।୬୦।    (ବିଷ୍ଣୁପୁରାଣ ଅଂଶ ୬/ଅ.୮)

ଯାହାଙ୍କଠାରେ ଚିତ୍ତ ଲଗାଇଥିବା ବ୍ୟକ୍ତି କେବେ ନରକଗାମୀ ହୁଏ ନାହିଁ । ଯାହାଙ୍କ ସ୍ମରଣରେ ସ୍ୱର୍ଗ ମଧ୍ୟବିଘ୍ନ ରୂପ ହୋଇଥାଏ, ଯାହାଙ୍କଠାରେ ଚିତ୍ତ ଲାଗିଯିବା ପରେ ବ୍ରହ୍ମଲୋକ ତୁଚ୍ଛ ପ୍ରତୀତ ହୁଏ ଏବଂ ଯେଉଁ ଅବ୍ୟୟ ପ୍ରଭୁ ନିର୍ମଳ ଚିତ୍ତ ପୁରୁଷ ହୃଦୟରେ ସ୍ଥିତ ହୋଇ ତାକୁ ମୋକ୍ଷ ଦେଇଥାନ୍ତି, ସେହି ଅଚ୍ୟୁତଙ୍କ କଥାର କୀର୍ତ୍ତନରେ ଯଦି ପାପ ବିଲୀନ ହୋଇଯାଏ, ଏଥିରେ ଆଶ୍ଚର୍ଯ୍ୟ କ'ଣ ଅଛି ! ଯଜ୍ଞବେତ୍ତା କର୍ମନିଷ୍ଠ ବ୍ୟକ୍ତି ଯଜ୍ଞ ଦ୍ୱାରା ଯାହାଙ୍କ ଯଜ୍ଞେଶ୍ୱର ରୂପରେ ଯଜ୍ଞ କରିଥାନ୍ତି, ଜ୍ଞାନୀମାନେ ଯାହାଙ୍କୁ ପରାବରମୟ ରୂପରେ ଧ୍ୟାନ କରିଥାନ୍ତି, ଯାହାଙ୍କ ସ୍ମରଣ କରିବା ଦ୍ୱାରା ପୁରୁଷ ଜନ୍ମ ହୁଏ ନାହିଁ, ମରେ ନାହିଁ, ବଢ଼େ ନାହିଁ, କ୍ଷୀଣ ହୁଏ

ନାହିଁ, ତଥା ଯେନ ସତ୍ (କାରଣ) ଏବଂ ଅସତ୍ ନୁହଁନ୍ତି (କାର୍ଯ୍ୟ), ସେହି ଶ୍ରୀହରିଙ୍କ (ଯଶ) ବ୍ୟତୀତ ଆଉ କ'ଣ ଶୁଣାଯିବ ? ଯେ ଅନାଦି ନିଧନ ଭଗବାନ୍ ବିଭୁ ପିତୃରୂପ ଧାରଣ କରି ବିଧି ପୂର୍ବକ ଶ୍ରାଦ୍ଧାରେ ବିନିଯୁକ୍ତ କାବ୍ୟକୁ ସ୍ୱଧାଶବ୍ଦରେ ଉଚ୍ଚାରିତ ହୋଇ ବ୍ରାହ୍ମଣ ରୂପରେ ତଥା ଅଗ୍ନିରେ ବିଧିପୂର୍ବକ ହବନ କରାଯାଉଥିବା ହବ୍ୟକୁ ଦେବତା ହୋଇ ସ୍ୱାହା ଶବ୍ଦ ଦ୍ୱାରା ଗ୍ରହଣ କରନ୍ତି ଏବଂ ଯେଉଁ ସମସ୍ତ ଶକ୍ତିର ଆଶ୍ରୟଭୂତ ସ୍ୱୟଂ ପ୍ରକାଶ ଭଗବାନଙ୍କ ବିଷୟରେ ବଡ଼ ବଡ଼ ପ୍ରମାଣ କୁଶଳପୁରୁଷଙ୍କ ପ୍ରମାଣ ଇୟତ୍ତା କରିବାରେ ସମର୍ଥ ହୁଏ ନାହିଁ, ସେହି ଶ୍ରୀହରି ଶ୍ରବଣ ପଥରେ ଯିବା ଦ୍ୱାରା ହିଁ ସମସ୍ତ ପାପର ନଷ୍ଟ କରିଦିଏ । ଯାହାଙ୍କ ହ୍ରାସ ବିକାଶ ରହିତ ପ୍ରଭୁଙ୍କର ଆଦି ନାହିଁ, ଅନ୍ତ ନାହିଁ, ବୃଦ୍ଧି ନାହିଁ, ଅପକ୍ଷୟ ନାହିଁ, ଯେ ନିତ୍ୟ ନିର୍ବିକାର, ସେହି ସ୍ତବନୀୟ ପ୍ରଭୁ ପୁରୁଷୋତ୍ତମଙ୍କୁ ମୁଁ ପ୍ରମାଣ କରୁଅଛି ।



# ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ପ୍ରାର୍ଥନା

ଅବିନୟ ମପନୟ ବିଷ୍ଣୋ ଦମୟ ମନଃ ଶମୟ ବିଷୟ ମୃଗତୃଷ୍ଣାମ୍
ଭୂତଦୟାଂ ବିସ୍ତାରୟ ତାରୟ ସଂସାର ସାଗରତଃ । ୧ ।
ଦିବ୍ୟଧୁନୀ ମକରନ୍ଦେ ପରିମଳ ପରି ଭୋଗ ସଚ୍ଚିଦାନନ୍ଦେ
ଶ୍ରୀପତି ପଦାରବିନ୍ଦେ ଭବଭୟ ଖେଦଚ୍ଛିଦେ ବନ୍ଦେ । ୨ ।
ସତ୍ୟାପି ଭେଦାପଗମେ ନାଥ ତବାହଂ ନ ମାମ କୀନସ୍ତ୍ୱମ୍
ସାମୁଦ୍ରୋ ହି ତରଙ୍ଗଃ କ୍ୱଚନ ସମୁଦ୍ରୋ ନ ତାରଙ୍ଗଃ । ୩ ।
ଉଦ୍ଧୃତନଗ ନଗାଭି ଦନୁଜ ଦନୁଜ କୁଳାମିତ୍ର ମିତ୍ର ଶଶିଦୃଷ୍ଟେ
ଦୃଷ୍ଟେ ଭବତି ପ୍ରଭବତି ନ ଭବତି କିଂ ଭବତିରସ୍କାରଃ । ୪ ।
ମତ୍ସ୍ୟାଦିଭି ରବତାରୈ ରବତାର ବତାବତା ସଦାବସୁଧାମ୍
ପରମେଶ୍ୱର ପରିପାଲ୍ୟୋ ଭବତା ଭବତାପ ଭୀତୋଽହମ୍ । ୫ ।

ଦାମୋଦର ଗୁଣ ମନ୍ଦିର ସୁନ୍ଦର ବଦନାରବିନ୍ଦ ଗୋବିନ୍ଦ
ଭବ ଜଳଧି ମଥନ ମନ୍ଦର ପରମଂ ଦରମପନୟ ତ୍ୱଂ ମେ ।
ନାରାୟଣ କରୁଣାମୟ ଶରଣଂ କରବାଣି ତାବକୌ ଚରଣୌ
ଇତି ଷଟ୍‌ପଦୀ ମଦୀୟେ ବଦନ ସରୋଜେ ସଦା ବସତୁ ।

ହେ ଭଗବାନ୍ ବିଷ୍ଣୁ ! ମୋର ଅବିନୟ ଦୂର କରନ୍ତୁ । ମୋର ମନକୁ ଦମନ କରନ୍ତୁ ଏବଂ ବିଷୟର ମୃଗ ତୃଷ୍ଣାକୁ ଶାନ୍ତ କରିଦିଅନ୍ତୁ । ଜଗତରେ ପ୍ରାଣୀମାତ୍ରକ ପ୍ରତି ଦୟାଭାବର ବିସ୍ତାର କରନ୍ତୁ । ଏହି ସଂସାର ସାଗରରୁ ମୋର ଉଦ୍ଧାର କରନ୍ତୁ । ମୁଁ ଶ୍ରୀପତିଙ୍କ ସେହି ଚରଣାରବିନ୍ଦର ବଂଦନା କରୁଛି; ଯାହାର ମକରନ୍ଦ ଗଂଗା ଏବଂ ସୌରଭ ହେଉଛି ସଚ୍ଚିଦାନନ୍ଦ ତଥା ସଂସାର (ଜନ୍ମ ମରଣ)ର ଭୟର ତଥା ଖେଦର ଛେଦନକାରୀ ଅଟନ୍ତି । ହେ ନାଥ ! (ବସ୍ତୁତଃ ମୋର ଏବଂ ଆପଣଙ୍କଠାରେ) ଭେଦ ନାହିଁ, ତଥାପି ମୁଁ ଆପଣଙ୍କର, ଆପଣ ମୋର ନୁହଁନ୍ତି । କାରଣ ତରଂଗ ହିଁ ସମୁଦ୍ରର ହୋଇଥାଏ, ସମୁଦ୍ର ତରଂଗର କେବେ ହୁଏ ନାହିଁ । ହେ ଗୋବର୍ଦ୍ଧନଧାରୀ ! ହେ ଇନ୍ଦ୍ରଙ୍କ ଅନୁଜ (ବାମନ) । ହେ ଦାନବ କୁଳ ଶତ୍ରୁ ! ହେ ସୂର୍ଯ୍ୟ ଚନ୍ଦ୍ରନେତ୍ରଧାରୀ ! ଆପଣଙ୍କ ସଦୃଶ ପ୍ରଭୁଙ୍କ ଦର୍ଶନ ହୋଇଯିବା ପରେ କ'ଣ ଭବ (ଜନ୍ମ-ମୃତ୍ୟୁ)ର ଲୋପ ହୋଇଯାଏ ନାହିଁ ? ହେ ପରମେଶ୍ୱର ! ମତ୍ସ୍ୟାଦି ଅବତାରରେ ଅବତରିତ ହୋଇ ବସୁଧାର ସର୍ବଦା ରକ୍ଷାକାରୀ ଆପଣଙ୍କ ଦ୍ୱାରା ସଂସାର ତାପରୁ ଭୟଭୀତ କ'ଣ ମୁଁ ରକ୍ଷାର ଯୋଗ୍ୟ ନୁହେଁ ।
ହେ ଗୁଣର ମନ୍ଦିର ଦାମୋଦର ! ହେ ସୁନ୍ଦର ବଦନାରବିନ୍ଦ ଗୋବିନ୍ଦ ! ସଂସାର ସାଗରକୁ ମଂଥନ କରିବା ପାଇଁ ମନ୍ଦର (ପର୍ବତ) ! ମୁଁ ସମସ୍ତ ପ୍ରକାର ସେ ଆପଣଙ୍କ ଚରଣରେ ଶରଣ ଗ୍ରହଣ କରୁଛି । ଏହି 'ଛଅ' ପଦରେ କରାଯାଇଥିବା ପ୍ରାର୍ଥନା ରୂପ ଭ୍ରମର ସଦା ମୋର ମୁଖ କମଳରେ ନିବାସ କରୁ ।



# ଶ୍ରୀ ଯାମୁନାଚାର୍ଯ୍ୟଙ୍କ ପ୍ରାର୍ଥନା

ନଧର୍ମ ନିଷ୍ଠୋଽସ୍ମି ନ ଚାତ୍ମବେଦୀ
ନଭକ୍ତି ମାଂ ସ୍ତ୍ୱଚ୍ଚରଣାରବିନ୍ଦେ ।
ଅକିଞ୍ଚନୋଽ ନନ୍ୟଗତଃ ଶରଣ୍ୟଂ
ତ୍ୱ ତ୍ପାଦ ମୂଳଂ ଶରଣଂ ପ୍ରପଦ୍ୟେ ।
ନ ନିନ୍ଦିତଂ କର୍ମ ତଦସ୍ତି ଲୋକେ
ସହସ୍ରଶୋ ଯନ୍ନ ମୟା ବ୍ୟଧାୟି ।
ସୋଽହଂ ବିପାକା ବସରେ ମୁକୁନ୍ଦ
କ୍ରନ୍ଦାମି ସମ୍ପ୍ରତ୍ୟ ଗତି ସ୍ତବାଗ୍ରେ ।
ନିମ ଜ୍ଜତୋଽନନ୍ତ ଭବାର୍ଣ୍ଣବାନ୍ତ
ଶ୍ଚିରାୟ ମେ କୂଳ ମିବାସି ଲବ୍ଧଃ ।
ତ୍ୱୟାପି ଲବ୍ଧଂ ଭଗବନ୍ନିଦାନୀ
ମନୁତ୍ତମଂ ପାତ୍ରମିଦଂ ଦୟାୟାଃ ।।

ମୁଁ ଧର୍ମନିଷ୍ଠ ନୁହେଁ, ଆତ୍ମଜ୍ଞାନୀ ନୁହେଁ ଏବଂ ଆପଣଙ୍କ ଚରଣାରବିନ୍ଦର ଭକ୍ତ ନୁହେଁ । ମୁଁ ତ ଅକିଞ୍ଚନ, ଅନନ୍ୟ ଗତି ଏବଂ ଶରଣାଗତ ରକ୍ଷକ, ଆପଣଙ୍କ ଚରଣ କମଳର ଶରଣକୁ ଆସୁଅଛି । ସଂସାରରେ ଏପରି କୌଣସି ନିନ୍ଦିତକର୍ମ ନାହିଁ, ଯାହାକୁ ହଜାରବାର ମୁଁ ନକରିଛି । ଏହିପରି ମୁଁ ଏବେ ଫଳ ଭୋଗର ସମୟରେ ବିବଶ (ଅନ୍ୟ ସାଧନହୀନ) ହୋ ହେ ମୁକୁନ୍ଦ ! ଆପଣଙ୍କ ଆଗେ ବାରମ୍ବାର ରୋଦନ କରୁଅଛି । ଅନନ୍ତ ମହାସାଗର ଭିତରେ ବୁଡ଼ୁଥିବା ମୋତେ ଆଜି ଅତିବିଳମ୍ବରେ ଆପଣ ତଟରୂପ ହୋଇ ମିଳିଛନ୍ତି ଏବଂ ହେ ଭଗବାନ ! ଆପଣଙ୍କୁ ଆଜି ଏହି ଦୟାର ଅନୁପମ ପାତ୍ର ମିଳିଛି ।

(ଶ୍ରୀଆଳବନ୍ଦାର ସ୍ତୋତ୍ର)



# ଶ୍ରୀକୃଷ୍ଣାଷ୍ଟକମ୍

ଭଜେ ବ୍ରଜୈକ ମଣ୍ଡନଂ ସମସ୍ତ ପାପ ଖଣ୍ଡନଂ
ସ୍ୱଭକ୍ତ ଚିତ୍ତରଂଜନଂ ସଦୈବ ନନ୍ଦନନ୍ଦନମ୍ ।
ସୁପିଚ୍ଛ ଗୁଚ୍ଛ ମସ୍ତକଂ ସୁନାଦ ବେଣୁ ହସ୍ତକଂ
ଅନଙ୍ଗ ରଂଗ ସାଗରଂ ନମାମି କୃଷ୍ଣ ନାଗରମ୍ ।। (୧)

ମୁଁ ସର୍ବଦା ନନ୍ଦତନୟଙ୍କୁ ଭଜନ କରୁଅଛି ଯେ ବ୍ରଜଭୂମିର ଶୀର୍ଷ ଅଳଂକାର, ଯେ ସମସ୍ତ ପାପ ରାଶିର ଖଣ୍ଡନକର୍ତ୍ତା, ଭକ୍ତ ହୃଦୟାହ୍ଲାଦକାରୀ, ମୁଁ ତାଙ୍କୁ ପ୍ରାର୍ଥନା କରୁଛି ଯେ ନଟ ନାଗର କୃଷ୍ଣ ଶିରରେ ଯାହାଙ୍କ ମୟୂରଚୂଳ, ହସ୍ତରେ ବେଣୁଧାରଣ କରିଛନ୍ତି, ଯେ (କନ୍ଦର୍ପ) (କାମକଳା)ର ସାଗର ସେହି କୃଷ୍ଣ ନାଗରଙ୍କୁ ଭଜନ କରୁଅଛି ।

ମନୋଜ ଗର୍ବମୋଚନଂ ବିଶାଳଲୋଳ ଲୋଚନଂ
ବିଧୂତ ଗୋପ ଶୋଚନଂ ନମାମି ପଦ୍ମ ଲୋଚନଂ ।
କରାରବିନ୍ଦ ଭୂଧରଂ ସ୍ମିତାବ ଲୋକ ସୁନ୍ଦରଂ
ମହେନ୍ଦ୍ର ମାନଦାରଣଂ ନମାମି କୃଷ୍ଣବାରଣମ୍ । (୨)

ମୁଁ ସେହି କନ୍ଦର୍ପ ଗର୍ବ ମୋଚନକାରୀ ବିଶାଳ ସୁନ୍ଦରନେତ୍ର ଯୁକ୍ତ ଭଗବାନଙ୍କୁ ନମସ୍କାର କରୁଅଛି । ଗୋପର ଶୋକ ବିନାଶନ, ସେହି ପଦ୍ମଲୋଚନ କୃଷ୍ଣ ଚନ୍ଦ୍ରଙ୍କୁ ମୁଁ ପ୍ରମାଣ କରୁଛି । ଯେ ନିଜ ହସ୍ତରେ ପର୍ବତ ରାଜକୁ ଧାରଣ କରିଥିଲେ ଯାହାଙ୍କ ସ୍ମିତବଦନ ଅତ୍ୟନ୍ତ ସୁନ୍ଦର, ଯେ ଇନ୍ଦ୍ରଙ୍କର ଦର୍ପ ଦଳନ କରିଥିଲେ, ମୁଁ ସେହି ଗଜରାଜ କୃଷ୍ଣଙ୍କୁ ପ୍ରଣାମ ଜ୍ଞାପନ କରୁଛି ।

କଦମ୍ବସୂନକୁଣ୍ଡଳଂ ସୁଚାରୁ ଗଣ୍ଡମଣ୍ଡଳଂ
ବ୍ରଜାଙ୍ଗ ନୈକ ବଲ୍ଲଭଂ ନମାମି କୃଷ୍ଣ ଦୁର୍ଲଭମ୍ ।
ଯଶୋଦୟା ସମୋଦୟା ସଗୋପୟା ସାନନ୍ଦୟା
ଯୁତଂ ସୁଖୈକ ଦାୟକଂ ନମାମି ଗୋପନାୟକମ୍ । (୩)

କଦମ୍ବ କୁସୁମକୁ ଯେ କର୍ଣ୍ଣରେ କୁଣ୍ଡଳ କରି ପିନ୍ଧିଛନ୍ତି, ଯାହାଙ୍କର ଗଣ୍ଡ ମଣ୍ଡଳ ଅତ୍ୟନ୍ତ ସୁନ୍ଦର, ବ୍ରଜାଙ୍ଗନାମାନଙ୍କର ଏକାନ୍ତ ପ୍ରିୟ ସେହି ଦୁର୍ଲଭ କୃଷ୍ଣଙ୍କୁ ମୁଁ

ନମସ୍କାର କରୁଅଛି । ଯେ ଯଶୋଦା ରାଣୀ ଏବଂ ନନ୍ଦ ରାଜାଙ୍କର ସୁଖ ବର୍ଦ୍ଧନକାରୀ ଗୋପର ମଂଗଳକାରୀ, ଆନନ୍ଦ ପ୍ରଦାନକାରୀ ଗୋପ ନାୟକ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ପ୍ରଣାମ ଜ୍ଞାପନ କରୁଛି ।

ସଦୈବ ପଦ ପଙ୍କଜଂ ମଦୀୟ ମାନସେ ନିଜଂ
ଦଧାନ ମୁକ୍ତ ମାଳକଂ ନମାମି ନନ୍ଦ ବାଳକମ୍
ସମସ୍ତ ଦୋଷ ଶୋଷଣଂ ସମସ୍ତ ଲୋକ ପୋଷଣଂ
ସମସ୍ତ ଗୋପ ମାନସଂ ନମାମି ନନ୍ଦ ଲାଲସମ । (୪)

ମୁଁ ସେହି ଗୋପାଳଙ୍କୁ ପ୍ରଣାମ ଜଣାଉଛି, ନନ୍ଦ ସୁତଙ୍କୁ ପ୍ରଣାମ । ସୁନ୍ଦର କୁଂଚିତ କୁଣ୍ଡଳ ଯୁକ୍ତ, ଯେ ମୋ' ହୃଦୟ ସାଗରରେ ତାଙ୍କ ପାଦପଙ୍କଜ ସ୍ଥାପନ କରିଅଛନ୍ତି, ଯେ ସମସ୍ତ ଦୋଷର ନିରାକରଣ କର୍ତ୍ତା, ସେ ସମସ୍ତ ଜଗତର ସ୍ରଷ୍ଟା ଏବଂ ପାଳକ, ଯେ ସମସ୍ତ ଗୋପର ହୃଦୟ ସେହି ନନ୍ଦ ସୁତଙ୍କୁ ମୁଁ ପ୍ରମାଣ କରୁଅଛି ।

ଭୁବୋ ଭରାବତାରକଂ ଭାବାବଧି କର୍ଣ୍ଣଧାରକଂ
ଯଶୋମତୀ କିଶୋରକଂ ନମାମି ଚିତ୍ତଚୋରକମ୍ ।
ଦୃଗନ୍ତକାନ୍ତ ଭଙ୍ଗିନଂ ସଦା ସଦାଲସଙ୍ଗିନଂ
ଦିନେ ଦିନେ ନବଂ ନବଂ ନମାମି ନନ୍ଦ ସମ୍ଭବମ୍ ।। (୫)

ମୁଁ ସେହି ଭବାବଧି କର୍ଣ୍ଣଧାର ଯଶୋଦା କୁମର ଚିତ୍ତଚୋରଙ୍କୁ ପ୍ରଣାମ ଜ୍ଞାପନ କରୁଛି । ସମଗ୍ର ପୃଥିବୀର ଯେ ସଂରକ୍ଷକ, ସମସ୍ତ ଚାପରୁ ଯେ ମୁକ୍ତି ଦିଅନ୍ତି, ଯେ ନିତ୍ୟ ନୂତନ, ନବନବ ବିଭା ବିମଣ୍ଡିତ ମୁଁ ସେହି ନନ୍ଦ କୁମରଙ୍କୁ ପ୍ରଣାମ ଜ୍ଞାପନ କରୁଛି ।

ଗୁଣାକରଂ ସୁଖାକରଂ କୃପାକରଂ କୃପାପରଂ
ସୁରଦ୍ୱିଷନ୍ନିକନ୍ଦନଂ ନମାମି ଗୋପନନ୍ଦନମ୍ ।
ନବୀନ ଗୋପନାଗରଂ ନବୀନ କେଳି ଲମ୍ପଟଂ
ନମାମି ମେଘ ସୁନ୍ଦରଂ ତଡ଼ିତପ୍ରଭାଲସତ୍‌ପଟମ୍ ।। (୬)

ମୁଁ ସେହି ଗୋପାଳଙ୍କ ପଦାରବିନ୍ଦରେ ମୋର ମସ୍ତକ ଲୋଟୁଥାଉ । ଯେ ସମଗ୍ର ଗୁଣର ସାଗର, ଆନନ୍ଦ ସିନ୍ଧୁ, କୃପାର ଗନ୍ତାଘର, ଦେବତାମାନଙ୍କୁ ଶତ୍ରୁ- ସଂହାରକ ପ୍ରଭୃତି ଦୈବୀଗୁଣ ସମ୍ପନ୍ନ, ସେହି ଲୀଳା ବିହାରୀଙ୍କୁ ପ୍ରଣାମ । ଯେ ଚିତ୍ତ ନବୀନ,

ସେ ନୃତ୍ୟ ପଟୁ ଏବଂ ମେଘ ଘନଶ୍ୟାମବର୍ଣ୍ଣ, ବିଦ୍ୟୁତ କାନ୍ତି (ସୁବର୍ଣ୍ଣ/ ପୀତ) ବାସ ପରିହିତ ।

ସମସ୍ତ ଗୋପନନ୍ଦନଂ ହୃଦମ୍ବୁ ଜୈକ ମୋଦନଂ
ନମାମି କୁଂଜ ମଧ୍ୟଗଂ ପ୍ରସନ୍ନ ଭାନୁ ଶୋଭନମ୍ ।
ନିକାମ କାମ ଦାୟକଂ ଦୃଗନ୍ତ ଚାରୁ ସାୟକଂ
ରସାଳ ବେଣୁ ଗାୟକଂ ନମାମି କୁଂଜନାୟକମ୍ ।। (୭)

ସେହି ଶ୍ୟାମସୁନ୍ଦରଙ୍କୁ ମୁଁ ପ୍ରଣାମ କରୁଛି, ଯେ ଗୋପ ବାଳକଙ୍କର ହୃଦୟ-ଆହ୍ଲାଦକ ଯେ କୁଂଜ ମଧ୍ୟରେ ସ୍ଥିତ, ଯେ ପ୍ରସନ୍ନ ସୂର୍ଯ୍ୟସମ ତେଜସ୍ୱୀ, ସେହି ପ୍ରଭୁଙ୍କୁ ପ୍ରଣାମ କରୁଛି, ଯେ କାମନା ପୂର୍ଣ୍ଣ କରିଥାନ୍ତି, ଯାହାଙ୍କର ନେତ୍ରଛଟା ଶାୟକ ତୁଲ୍ୟ, ଯହାଙ୍କ ମୁରଲୀରୁ ସର୍ବଦା ମଧୁର ସ୍ୱର ନିଶ୍ରୁତ ହେଉଛି ।

ବିଦଗ୍ଧ ଗୋପୀକା ମନୋ ମନୋଜ୍ଞ ତଳ୍ପ ଶାୟିନଂ
ନମାମି କୁଂଜ କାନନେ ପ୍ରବୃଦ୍ଧ ବହ୍ନି ପାୟିନମ୍ ।
କିଶୋର କାନ୍ତିରଂଜନଂ ଦୃଗଂଜନ ସୁଶୋଭିତ
ଗଜେନ୍ଦ୍ର ମୋକ୍ଷ କାରିଣଂ ନମାମି ଶ୍ରୀବିହାରିଣମ୍ ।। (୮)

ମୁଁ ସେହି କୃଷ୍ଣଚନ୍ଦ୍ରଙ୍କୁ ନମସ୍କାର କରୁଛି, ଯେ ଗୋପୀମାନଙ୍କ ହୃଦୟ କୋମଳ ଶଯ୍ୟାରେ ଶାୟିତ, କୁଂଜ କାନନ ନିବାସୀ ଏବଂ ଅନଳ ଗ୍ରାସ କରିଥିଲେ । ଯେ ସଦା କିଶୋର ତଥା ନେତ୍ରରେ ଅଂଜନ ଶୋଭାମାନ, ସେ ଗଜେନ୍ଦ୍ର ମୋକ୍ଷକାରୀ ଏବଂ ଲକ୍ଷ୍ମୀଙ୍କ ସହ ବିହାର କରିଥାନ୍ତି ।

ଯଦାତଦା ଯଥାତଥା ତଥୈବ କୃଷ୍ଣ ସତ୍‌କଥା
ମୟା ସଦୈବ ଗୀୟତାଂ ତଥା କୃପା ବିଧିୟତାମ୍
ପ୍ରମାଣିକାଷ୍ଟକ ଦ୍ୱୟଂ ଜପତ୍ୟଧୀତ୍ୟ ଯଃ ପୁମ୍ାନ
ଭବେତ୍ସ ନନ୍ଦନନ୍ଦନେ ଭବେଭବେ ସୁଭକ୍ତିମାନ୍ ।। (୯)

ହେ ମୋର ପ୍ରଭୁ ! ମୋତେ ତୁମ ଆଶୀର୍ବାଦ ପ୍ରଦାନ କର, ମୁଁ ଯେଉଁଠି ବା ଯେଉଁ ପରିସ୍ଥିତିରେ ଥାଏ, ମୁଁ ତୁମର ଗୁଣକୀର୍ତ୍ତନ କରୁଥାଏ । ଯେକୌଣସି ବ୍ୟକ୍ତି ପ୍ରାମାଣିକ ନାମ ସଂକୀର୍ତ୍ତନ (ସ୍ମରଣ) କରୁଥିଲେ, ସେ ନନ୍ଦନନ୍ଦନ ଶ୍ୟାମସୁନ୍ଦରଙ୍କ ଆଶ୍ରିତ ହୋଇ ଜନ୍ମ- ଜନ୍ମାନ୍ତରେ ଭକ୍ତ ହୋଇଥାଏ ।



# ଶ୍ରୀ ଶିକ୍ଷାଷ୍ଟକ

## ଶ୍ରୀକୃଷ୍ଣ ଚୈତନ୍ୟ ଦେବକୃତ

ଚେତୋ ଦର୍ପଣ ମାର୍ଜନଂ ଭବମହାଦାବାଗ୍ନି ନିର୍ବାପଣଂ
ଶ୍ରେୟଃ କୈରବ ଚନ୍ଦ୍ରିକା ବିତରଣଂ ବିଦ୍ୟା ବଧୂ ଜୀବନମ୍ ।
ଆନନ୍ଦାମ୍ବୁଧି ବର୍ଦ୍ଧନଂ ପ୍ରତିପଦଂ ପୂର୍ଣ୍ଣାମୃତା ସ୍ୱାଦନଂ
ସର୍ବତ୍ମସ୍ନପନଂ ପରଂ ବିଜୟତେ ଶ୍ରୀକୃଷ୍ଣ ସଂକୀର୍ତ୍ତନମ୍ । (୧)

ଅର୍ଥ- ଚିତ୍ତରୂପ ଦର୍ପଣର ମାର୍ଜନକାରୀ, ଭବ ସଂସାର ରୂପ ମହା ଦାବାଗ୍ନିର ନିର୍ବାପଣକାରୀ, ବିଦ୍ୟାବଧୂର ଜୀବନ ସ୍ୱରୂପ, ଆନନ୍ଦ ସମୁଦ୍ରର ବର୍ଦ୍ଧନକାରୀ, ପଦେପଦେ ପୂର୍ଣ୍ଣମୃତା ସ୍ୱାଦନ ସ୍ୱରୂପ ଏବଂ ସର୍ବ ସ୍ୱରୂପର ଶୀତଳକାରୀ ଶ୍ରୀକୃଷ୍ଣ କୀର୍ତ୍ତନ ବିଶେଷ ରୂପେ ଜୟଯୁକ୍ତ ହୁଅନ୍ତି । (୧)

ନାମ୍ନାମକାରି ବହୁଧା ନିଜସର୍ବଶକ୍ତି
ସ୍ତତ୍ରାର୍ପିତ ନିୟମିତଃ ସ୍ମରଣେନକାଳଃ
ଏତାଦୃଶୀ ତବକୃପା ଭଗବନ୍! ମମାପି
ଦୁର୍ଦ୍ଦୈବ ମିଦୃଶ ମିହାଜନି ନାନୁରାଗଃ ।। (୨)

ହେ ଭଗବାନ! ତୁମର ନାମ ହିଁ ଜୀବର ସର୍ବମଂଗଳ ବିଧାନ କରେ, ଏଥିପାଇଁ କୃଷ୍ଣ ଗୋବିନ୍ଦାଦି ବହୁବିଧ ନାମ ତୁମେ ବିସ୍ତାର କରିଅଛ । ସେହି ନାମରେ ତୁମେ ସ୍ୱୟଂ ସର୍ବଶକ୍ତି ଅର୍ପଣ କରିଅଛ ଏବଂ ସେହି ନାମ ସ୍ମରଣ କାଳାଦି ନିୟମ (ବିଧି କିମ୍ୱା ବିଚାର) କର ନାହିଁ । ପ୍ରଭୋ ! ଜୀବର ପ୍ରକ୍ଷେ ଏ ରୂପେ କୃପାକରି ତୁମେ ତୁମର ନାମକୁ ସୁଲଭ କରିଅଛ, ତଥାପି ଆମର ନାମାପରାଧରୂପ ଦୁର୍ଦ୍ଦୈବ ଏ ରୂପ କରିଅଛ ଯେ, ତୁମର ସୁଲଭ ନାମରେ ମୋର କିଞ୍ଚିତ ମାତ୍ରାରେ ଅନୁରାଗ ଜନ୍ମିବାକୁ ଦିଏ ନାହିଁ ।

ତୃଣାଦପି ସୁନୀଚେନ ତରୋରିବ ସହିଷ୍ଣୁନା
ଅମାନିନା ମାନଦେନ କୀର୍ତ୍ତନୀୟ ସହାହରି । (୩)

ଅର୍ଥ- ଯେଉଁମାନେ ତୃଣ ଅପେକ୍ଷା ନିଜକୁ କ୍ଷୁଦ୍ର ମନେକରନ୍ତି, ଏବଂ ଯେ ବୃକ୍ଷପରି ସହିଷ୍ଣୁ ହୁଅନ୍ତି, ନିଜେ ମହାଶୂନ୍ୟ ହୋଇ ଅନ୍ୟକୁ ସମ୍ମାନ ଦିଅନ୍ତି, ସେମାନେ ସର୍ବଦା ହରିକୀର୍ତ୍ତନର ଅଧିକାରୀ । (୩)

ନଧନଂ ନଜନଂ ନସୁନ୍ଦରୀ, କବିତା ବା ଜଗଦୀଶ କାମୟେ
ମମ ଜନ୍ମନି ଜନ୍ମନିଶ୍ୱରେ, ଭବତାଦ୍ ଭକ୍ତିର ହୈତୁକୀତ୍ୱୟୀ ।। (୪)

ଅର୍ଥ- ହେ ଜଗଦୀଶ ! ମୁଁ ଧନ, ଜନ ବା ସୁନ୍ଦରୀ କବିତା କାମନା କରେ ନାହିଁ । ମୋ' ମନରେ ଏକମାତ୍ର କାମନା କରେ ଯେ ଜନ୍ମେ ଜନ୍ମେ ତୁମଠାରେ ମୋର ଅହୈତୁକୀ ଭକ୍ତି ହେଉ । (୪)

ଅୟି ନନ୍ଦ ତନୁଜ କିଙ୍କରଂ ପତିତ ମାଂ ବିଷମେ ଭବାମ୍ବୁଧୌ
କୃପୟା ତବପାଦ ପଙ୍କଜ ସ୍ଥିତ ଧୂଳି ସଦୃଶଂ ବିଚିନ୍ତୟ ।। (୫)

ଅର୍ଥ- ଆହେ ନନ୍ଦନନ୍ଦନ ! ମୁଁ ତୁମର ନିତ୍ୟକିଙ୍କର ହୋଇ ମଧ୍ୟ ସ୍ୱକର୍ମ ବିପାକେ ବିଷମ ଭବ ସମୁଦ୍ର ମଧ୍ୟରେ ପଡ଼ିଅଛି, ତୁମେ କୃପାକରି ତୁମର ପାଦପଦ୍ମ ସ୍ଥିତ ଧୂଳି ସଦୃଶ ପରିମତେ ଚିନ୍ତାକର । (୫)

ନୟନଂ ଗଳଦଶ୍ରୁଧାରୟା ବଦନଂ ଗଦ୍‌ଗଦ୍‌ରୁଦ୍ଧୟାଗିରା
ପୁଲକୈର୍ନିଚିତଂ ବପୁଃ କଦା ତବ ନାମଗ୍ରହଣ ଭବିଷ୍ୟତି ।।

ଅର୍ଥ- ହେ କୃଷ୍ଣ ! ତୁମର ନାମ ଗ୍ରହଣରେ କେବେ ମୋର ନୟନଯୁଗଳ ଗଳଦଶ୍ରୁଧାରାରେ ଶୋଭିତ ହେବ, ବାକ୍ୟ ନିଃସରଣ- ସମୟରେ ବାକ୍ୟ ଗଦ୍‌ଗଦ୍ ହୋଇଯିବ ଏବଂ ସମଗ୍ର ଶରୀର ପୁଲକାଞ୍ଚିତ ହେବ ?

ଯୁଗାୟିତଂ ନିମିଷେଣ ଚକ୍ଷୁସା ପ୍ରାବୃଷାୟିତମ୍
ଶୂନ୍ୟାୟିତଂ ଜଗତ ସର୍ବଂ ଗୋବିନ୍ଦ ବିରହେଣ ମେ ।। (୭)

ହେ ଗୋବିନ୍ଦ ! ତୁମର ଅଦର୍ଶନରେ ମୋର 'ନିମିଷ'କାଳ 'ଯୁଗବତ୍' ବୋଧ ହେଉଛି । ଚକ୍ଷୁରୁ ବର୍ଷାପରି ଜଳ ଝରିଯାଉଛି, ସମସ୍ତ ଜଗତ ଶୂନ୍ୟ ପ୍ରାୟ ବୋଧ ହେଉଅଛି । (୭)

ଆଶ୍ଲିଷ୍ୟ ବା ପାଦଗତାଂ ପିନଷ୍ଟୁ, ମାମ ଦର୍ଶନାନ୍ମର୍ମହତାଂ କରୋତୁବା
ଯଥାତଥାବା ବିଦଧାତୁ ଲମ୍ପଟୋ, ମତ୍ ପ୍ରାଣନାଥସ୍ତୁ ଏବନାଽପରଂ ।।(୮)

ଅର୍ଥ- ଏହି ପାଦରତା ଦାସୀକୁ ଶ୍ରୀକୃଷ୍ଣ ଆଲିଙ୍ଗନ ପୂର୍ବକ, ପେଷଣ କରନ୍ତୁ, ଅଥବା ଅଦର୍ଶନ ଦ୍ୱାରା ମର୍ମାହତ କରନ୍ତୁ, ସେହି ଲମ୍ପଟପୁରୁଷ, ମୋ' ପ୍ରତି ଯେଉଁ ରୂପରେ ବିଧାନ କରନ୍ତୁନା କାହିଁକି, ସେ ଅନ୍ୟକେହି ନୁହଁନ୍ତି, ସେ ମୋର ପ୍ରାଣନାଥ ଅଟନ୍ତି ।(୮)



# (ଶ୍ରୀଜଗନ୍ନାଥାଷ୍ଟକମ୍)

## ଓଡ଼ିଆ ପଦ୍ୟ ରୂପାନ୍ତର

ଗୋପ ଅଙ୍ଗନା ବଦନ କମଳୁ ଯେ ମଧୁପାନ
କଲେକ ଆବର ଯା'ଙ୍କ ମୁରଲୀ ନାଦ,
କାଳିନ୍ଦୀ ତଟ ବିପିନ କଲାକ ମୋଦେ ମଗନ
ରମ୍ଭାଶମ୍ଭୁ ଆଦିରେ ଯେ ପୂଜିତ ପଦ,
ପଥୁକୀ ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣ ସ୍ୱାମୀ ମୋ'ସେ ଜଗନ୍ନାଥେ । (୧)

ବାମକରେ ମୁରଲୀକା ଶିରେ ଶିଖିପୁଚ୍ଛ ଶିଖା
କଟୀତଟେ ପୀତାମ୍ବର ଯା'ଙ୍କ ଶୋଭିତ,
କଟାକ୍ଷ ବାଣ ପ୍ରହାରି ମୋହନ୍ତି ଯେ ଗୋପନାରୀ
ଶ୍ରୀବୃନ୍ଦାକାନନେ ନିତ୍ୟ ହୋଇଣ ସ୍ଥିତ,
ପଥୁକୀ ମୋ' ନୟନପଥେ,
ହୁଅନ୍ତୁ ପ୍ରାଣ ସ୍ୱାମୀ ମୋ' ସେ ଜଗନ୍ନାଥେ । (୨)

ଯେହୁ ମହୋଦଧି ତୀରେ ସ୍ୱର୍ଣ୍ଣକାନ୍ତି ନୀଳାଦ୍ରିରେ
ସ୍ଥିତ ମହାମନ୍ଦିରରେ ନିତ୍ୟ ରାଜିତ,
ସାଦରେ ସଂଗତେ ଘେନି ବଳଭଦ୍ର ଭଦ୍ରାବେନି
ଦେବଙ୍କୁ ପୟର ସେବା କରିଣ ଦତ୍ତ,
ପଥୁକୀ ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣ ସ୍ୱାମୀ ମୋ' ସେ ଜଗନ୍ନାଥେ । (୩)

ଯେହୁ କୃପା ପାରାବାର　　　　　ନବନୀରଦ ରୁଚିର
ରମାବାଣୀ ବିନୋଦନ କମଳାନନ,
ଲକ୍ଷକୋଟି ଦେବରାଜ　　　　　ଶିରେଯାଙ୍କ ପଦରଜ
କହନ୍ତି ବେଦାନ୍ତ ଯାଙ୍କୁ କରେ ବଖାଣ,
ପଥୁକୀ ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣ ସ୍ୱାମୀ ମୋ' ସେ ଜଗନ୍ନାଥେ । (୪)

ଯେ ପ୍ରଭୁ କରୁଣା ସିନ୍ଧୁ　　　　　ଅଖିଳ ଜଗତବଂଧୁ
ସିନ୍ଧୁ-ସୁତା ଚିର ଇନ୍ଦୁ ଗମନ୍ତେ ରଥେ,
ବିପ୍ରଗଣ ପଥେ ମିଳି　　　　　ଗାଆନ୍ତେ ସ୍ତୁତିଆବଳୀ
ଘେନା ଯେ କରନ୍ତି ସ୍ତୁତି କଥା ସୁଚିରେ
ପଥୁକୀ ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣ ସ୍ୱାମୀ ମୋ' ସେ ଜଗନ୍ନାଥେ । (୫)

ବିରଞ୍ଚି ଶିର ଭୂଷଣ　　　　　ପଦ୍ମପଳାଶ ଲୋଚନ
ନୀଳାଦ୍ରି ବିହାରୀ ଯେ ଅନନ୍ତ ମସ୍ତକେ,
ପୟର ଥାପି ଆସନ　　　　　ସଦା ରସାନନ୍ଦ ଘନ
ମଗନ ଶ୍ରୀ ରାଧା ଅଂଗ ଆଶ୍ଳେଷ ସୁଖେ,
ପଥୁକୀ ମୋ' ନୟନ ପଥେ,
ହୁଅନ୍ତୁ ପ୍ରାଣ ସ୍ୱାମୀ ମୋ ନୟନ ପଥେ । (୬)

ନମାଗଇଁ ରାଜ୍ୟ ସୁଖ　　　　　ନମାଗେଁ ମଣି ମାଣିକ୍ୟ
ନମାଗେଁ ନୟନ ନିଧି ବର କାମିନୀ
ଯାହାଙ୍କ ଚରିତାବଳୀ　　　　　ଗାଆନ୍ତି ଚନ୍ଦ୍ରମଉଳୀ
ପରାଣ ଲାଡ଼େ ମୋ' ତାଙ୍କୁ ଦିନ ଯାମିନୀ
ପଥୁକୀ ମୋ' ନୟନପଥେ
ହୁଅନ୍ତୁ ପ୍ରାଣ ସ୍ୱାମୀ ମୋ' ସେ ଜଗନ୍ନାଥେ । (୭)

ଅସାର ସଂସାର ବଂଧ ଛେଦ ମୋ' ଖରେ ମୁକୁନ୍ଦ

ଅଥଳ ପାପ ପୟୋଧି ଦିଅ ଶୁଖାଇ

ହେ ନାଥ ! ଦୀନଅନାଥ ପାଇଁ ଶାଶ୍ୱତ ନିଶ୍ଚିତ

ପ୍ରେମ ପତ୍ର କ୍ଷେତ୍ରେ ଏଥି ଅଛ ବୁହାଇ

ପଥୁକୀ ମୋ' ନୟନ ପଥେ

ହୁଅନ୍ତୁ ପ୍ରାଣ ସ୍ୱାମୀ ମୋ' ସେ ଜଗନ୍ନାଥେ । (୮)

ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ୍ ପୟତଃ ଶୁଚିଃ

ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁଲୋକଂ ସ ଗଚ୍ଛତି,

ପ୍ରାକୃତ ପଦେ ପୟାର ରଚିଲା ବିଚ୍ଛନ୍ଦଛାର

ସ୍ଥିର ମନେ ଶୁଚିମନ୍ତ ହୋଇ ଗାଇଲେ,

ପାତକୀ ପାତକ ମାନ ହୁଅଇ ହେଳେ ଦହନ

ଅନ୍ତେ ବିଷ୍ଣୁଲୋକେ ଗତି ହୁଏ ତା' ଭଲେ

ଜୟ ଜୟ ଜଗନ୍ନାଥ

ନିତ୍ୟକାଳ ପଦେ ତୁମ୍ଭ ଲୋଟୁ ମୋ' ମଥା ॥

(ଓଡ଼ିଆ ରୂପାନ୍ତର ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ)







ସନ୍ଥ କହିଲେ ଆମେ କେଉଁ ତଥାକଥିତ ସଂସାରତ୍ୟାଗୀଙ୍କୁ ନବୁଝି ବୁଝୁ ଆଧ୍ୟାତ୍ମିକତାର ଅସଲ ମର୍ମ ଉପଲବ୍ଧି କରିଥିବା, ଜଗତର ସବୁକିଛିକୁ ଶ୍ରଦ୍ଧାଶୀଳ ଭାବରେ ଦେଖୁଥିବା ଓ ଭଲପାଉଥିବା ଗୋଟିଏ ଉତ୍ତରିତ ଚେତନାର ଦିବ୍ୟାତ୍ମାଙ୍କୁ । କୀଟଠାରୁ ମହାପ୍ରକୃତି ଯାଏ ଜୀବନର ସବୁ ଆଧାର ଓ ଜୀବଙ୍କ ଭିତରେ ପରମବ୍ରହ୍ମଙ୍କର ବିଭୂତି ଦର୍ଶନ କରୁଥିବା ଓ ପରମ ସତ୍ୟକୁ ସ୍ୱାଭାବିକ ଭାବରେ ଦର୍ଶନ କରୁଥିବା ଏଇ ସନ୍ଥମାନେ ବିଶ୍ୱରେ ସର୍ବତ୍ର ପରମପରୁଷଙ୍କ ପ୍ରତିନିଧିତ୍ୱ କରୁଥା'ନ୍ତି । ସେହି ପରମ୍ପରାର କତିପୟ ଭାରତୀୟ ସନ୍ଥଙ୍କ ଜୀବନଦର୍ଶନକୁ ନେଇ ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡାଙ୍କର 'ଭାରତୀୟ ସନ୍ଥ ପରମ୍ପରା' ସଦ୍ୟତମ ଆଧ୍ୟାତ୍ମିକ ଶବ୍ଦାଞ୍ଜଳି ।

ପ୍ରକାଶକ

ISBN 9789393178206

